# ଭାରତୀୟ ସଂସ୍କୃତି

**ସପ୍ତମ ଖଣ୍ଡ**

**(ରାମାୟଣପର୍ବ—ଦ୍ୱିତୀୟ)**

ଲେଖକ

**ଶ୍ରୀ ସୁରେନ୍ଦ୍ରନାଥ ଶତପଥୀ**

ପ୍ରକାଶକ :

**ଶ୍ରୀ ଗୋବିନ୍ଦ ଚରଣ ପାତ୍ର**

ଓଡ଼ିଶା ବୁକ୍ ଷ୍ଟୋର୍

ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରଚ୍ଛଦ

**ଶ୍ରୀ ଅସିତ୍ ମୁଖାର୍ଜୀ**

ପ୍ରଥମ ମୁଦ୍ରଣ : ୧୯୯୮

ମୁଦ୍ରଣ

**ସପ୍ତର୍ଷି ପ୍ରିଣ୍ଟର୍ସ,** କଟକ-୧୦

# BHARATIYA SANSKRUTI

SEVENTH PART

**(Ramayana Parva—Vol-II)**

*Written by*

**Sri Surendranath Satapathy**

*Published by*

**Sri Gobinda Charan Patra**

ORISSA BOOK STORE

Binod Behari, Cuttack-753 002

1st Edition : 1998

Price : Rs. 90/-

I.S.B.N 81-7400-205-7

ଓଡ଼ିଶାର ଲବ୍ଧପ୍ରତିଷ୍ଠ ମନସ୍ୱୀ ସାହିତ୍ୟିକ
ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ହସ୍ତରେ ସମର୍ପିତ...

ସୁରେନ୍ଦ୍ରନାଥ ଶତପଥୀ

# ଭାରତୀୟ ସଂସ୍କୃତି

## ସପ୍ତମ ଖଣ୍ଡ

( ରାମାୟଣପର୍ବ—ଦ୍ୱିତୀୟ )

ଶ୍ରୀ ସୁରେନ୍ଦ୍ରନାଥ ଶତପଥୀ



ଓଡ଼ିଶା ବୁକ୍ ଷ୍ଟୋର

# ପଦେ କଥା

ବଡ଼ ଖୁସିର କଥା ଯେ ଆଜି ଭାରତୀୟ ସଂସ୍କୃତି ସିରିଜ୍‌ର ସପ୍ତମ ଖଣ୍ଡଟି ପ୍ରକାଶିତ ହେଉଅଛି । ଏହା ରାମାୟଣ ପର୍ବର ଦ୍ୱିତୀୟ ଭାଗ । ଏଥିରେ ରାମାୟଣୀୟ ସଂସ୍କୃତିର କେତେକ ନିର୍ଦ୍ଦିଷ୍ଟ ବିଷୟ, ଯଥା— 'ସମାଜଚିତ୍ର', 'ବିବାହବନ୍ଧନ', 'ଶିକ୍ଷାର ସ୍ୱରୂପ', 'ନାରୀସମାଜ' ଓ 'ଆଶ୍ରମଜୀବନ' ପୃଥକ୍ ପୃଥକ୍ ପରିଚ୍ଛେଦରେ ସନ୍ନିବେଶିତ । ପରବର୍ତ୍ତୀ ଖଣ୍ଡରେ ରାମାୟଣୀୟ ସଂସ୍କୃତିକୁ ସମ୍ପୂର୍ଣ୍ଣ କରିବାର ଆଶା ଅଛି । ପୂର୍ବ ପ୍ରକାଶିତ ଖଣ୍ଡଗୁଡ଼ିକ ଭଳି ଏହି ଖଣ୍ଡଟି ଓଡ଼ିଶାର ପାଠକ-ପାଠିକାମାନଙ୍କ ଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ମନେ କରିବ ।

ପରିଶେଷରେ ପୁସ୍ତକଟିର ପ୍ରକାଶନ ଭାର ବହନ କରିଥିବାରୁ ଓଡ଼ିଶା ବୁକ୍ ଷ୍ଟୋରର ସତ୍ତ୍ୱାଧିକାରୀ ଶ୍ରୀ ଗୋବିନ୍ଦ ଚରଣ ପାଣ୍ଡିଙ୍କୁ କୃତଜ୍ଞତା ଜଣାଉଅଛି ।

**ସୁରେନ୍ଦ୍ରନାଥ ଶତପଥୀ**

# ବିଷୟ ସୂଚୀ





## ଏହି ଲେଖକଙ୍କର ଭାରତୀୟ ସଂସ୍କୃତି ସିରିଜ୍‌ର ପୁସ୍ତକାବଳୀ

| | | | |
|---|---|---|---|
| ୧ । | ଭାରତୀୟ ସଂସ୍କୃତି | ପ୍ରଥମ ଖଣ୍ଡ | ପ୍ରାଗୈତିହାସିକ ପର୍ବ |
| ୨ । | ଭାରତୀୟ ସଂସ୍କୃତି | ଦ୍ୱିତୀୟ ଖଣ୍ଡ | ବୈଦିକ ପର୍ବ—ପ୍ରଥମ |
| ୩ । | ଭାରତୀୟ ସଂସ୍କୃତି | ତୃତୀୟ ଖଣ୍ଡ | ବୈଦିକ ପର୍ବ—ଦ୍ୱିତୀୟ |
| ୪ । | ଭାରତୀୟ ସଂସ୍କୃତି | ଚତୁର୍ଥ ଖଣ୍ଡ | ବୈଦିକ ପର୍ବ—ତୃତୀୟ |
| ୫ । | ଭାରତୀୟ ସଂସ୍କୃତି | ପଞ୍ଚମ ଖଣ୍ଡ | ବୈଦିକ ପର୍ବ—ଚତୁର୍ଥ |
| ୬ । | ଭାରତୀୟ ସଂସ୍କୃତି | ଷଷ୍ଠ ଖଣ୍ଡ | ରାମାୟଣ ପର୍ବ—ପ୍ରଥମ |
| ୭ । | ଭାରତୀୟ ସଂସ୍କୃତି | ସପ୍ତମ ଖଣ୍ଡ | ରାମାୟଣ ପର୍ବ—ଦ୍ୱିତୀୟ |

## ପ୍ରଥମ ପରିଚ୍ଛେଦ

# ସମାଜଚିତ୍ର

ହିନ୍ଦୁମାନଙ୍କର ଧର୍ମ, ଦର୍ଶନ, ଆଧ୍ୟାତ୍ମିକତା ଓ ସାମାଜିକ ଚେତନାର ମୂଳ ଉତ୍ସ ହେଉଛି ସହସ୍ର ସହସ୍ର ବର୍ଷତଳେ ସୃଷ୍ଟି ହୋଇଥିବା ବୈଦିକ ମନ୍ତ୍ରରାଶି ଯାହା ମନ୍ତ୍ରଦ୍ରଷ୍ଟା ଋଷିମାନଙ୍କ ଦ୍ୱାରା ଉପଲବ୍ଧ ହୋଇଥିଲା । ସେଥିପାଇଁ ଋଷିମାନଙ୍କୁ ବେଦର ସ୍ରଷ୍ଟା ବୋଲି କୁହା ନଯାଇ ଯଥାର୍ଥରେ କୁହାଯାଇ ଥାଏ ମନ୍ତ୍ରସମୂହର ଦ୍ରଷ୍ଟା । ହିନ୍ଦୁମାନଙ୍କର ଆଜିକାର ବିବାହ-ପଦ୍ଧତି ଓ ବୈଦିକ କାଳର ବିବାହ-ପଦ୍ଧତି ମଧ୍ୟରେ ଅନେକଟା ସାମ୍ୟ ବିଦ୍ୟମାନ; ଏବଂ ଯାହା ବା କିଛି ବୈଷମ୍ୟ ରହିଛି ତାହା ବାହ୍ୟ । ଯୁଗ ଯୁଗ ଧରି ବହୁ ପ୍ରକାର ଅତ୍ୟାଚାର ଏହି ଧର୍ମ ଉପରେ କରାଯାଇଛି; ଏହାକୁ ସମ୍ପୂର୍ଣ୍ଣ ଭାବରେ ଲୋପ କରିଦେବା ପାଇଁ ମଧ୍ୟ କେତେକ ଶାସକ ଅପଚେଷ୍ଟା କରିଛନ୍ତି । କିନ୍ତୁ ଏହା ଲୋପ ନହୋଇ ବଞ୍ଚି ରହିଛି । ଏହି ସମାଜକୁ ତଳିତଳାନ୍ତ କରିଦେବା ଲାଗି ଅତୀତରେ ବହୁ ଉଦ୍ୟମ କରାଯାଇଛି । କିନ୍ତୁ ଏହା ମଧ୍ୟରେ ଥିବା ଚିରନ୍ତନୀ ଜୀବନୀ-ଶକ୍ତି ଏହାକୁ ଏପର୍ଯ୍ୟନ୍ତ ପୂର୍ବଭଳି ଉଜ୍ଜୀବିତ କରି ରଖିଛି । କାଳକ୍ରମେ ବୈଦିକ ମନ୍ତ୍ରରାଶିର ତାତ୍ପର୍ଯ୍ୟ ଓ ଅନ୍ତର୍ନିହିତ ଅର୍ଥ ଲୋକମାନଙ୍କ ପାଖରେ ଦୁର୍ବୋଧ ହୋଇଉଠିଲା । ସେଥିପାଇଁ ସମାଜକୁ ଉପଯୁକ୍ତ ଦିଗ୍‌ଦର୍ଶନ ଦେବା ଲାଗି ସୃଷ୍ଟି ହେଲା ଦୁଇଟି ମହାକାବ୍ୟ, ରାମାୟଣ ଓ ମହାଭାରତ । ଅତଏବ, ହିନ୍ଦୁ ସମାଜକୁ ତିନୋଟି ସ୍ତମ୍ଭ ଦୃଢ଼ ଭାବରେ ଧରି ରଖିଛନ୍ତି । ସେଗୁଡ଼ିକ ହେଲେ ବେଦ, ରାମାୟଣ ଓ ମହାଭାରତ । ଏହି ସ୍ତମ୍ଭଗୁଡ଼ିକ ଏତେ ପାତାଳଭେଦୀ ଓ ଏଗୁଡ଼ିକର ଭିତ୍ତିଭୂମି ଏତେ ଟାଣ ଯେ ଏଗୁଡ଼ିକ ଯୁଗ ଯୁଗ ଧରି ହୋଇ ଆସିଥିବା ନାନା ଘାତ-ପ୍ରତିଘାତ ସତ୍ତ୍ୱେ ଏ ପର୍ଯ୍ୟନ୍ତ ଦୃଢ଼ ଭାବରେ ମୁଣ୍ଡ ଟେକି ଠିଆ ହୋଇଛନ୍ତି ଏବଂ ଯୁଗ ଯୁଗ ଧରି ସେହିପରି ଠିଆ ହୋଇଥିବେ ମଧ୍ୟ । ଏଥିପ୍ରତି ଲକ୍ଷ୍ୟ କରି ସେଦିନ ରାୟ ପ୍ରମଥନାଥ ମଲ୍ଲିକ ବାହାଦୁର ଯଥାର୍ଥରେ କହିଥିଲେ

The Vedas and the great Indian Epics are the foundation and corner-stones on which the whole fabric of Hindu religion and society rest and have rested, affected by the thousand. external influences and misfortunes of foreign domination to which any other religion in the world would have succumbed. It is the innate truth and intrinsic merit of the philosophy and tenets of the Hindu religion that has preserved it in its pristine glory from the ravages of time and misfortune. (୧)

ଏହି ଦୃଷ୍ଟିରୁ ବିଚାର କଲେ ପ୍ରାଚୀନ ଭାରତୀୟ ସମାଜ ସମ୍ପର୍କରେ ସମ୍ୟକ୍ ଜ୍ଞାନ ଆହରଣ କରିବା ପାଇଁ ଏବଂ ସେହି ସମାଜର ଆର୍ଥିକ ସତ୍ତା ଓ ଚିରନ୍ତନୀୟତା କିପରି ଭାବରେ ପରବର୍ତ୍ତୀ କାଳରେ ସମାଜ ଉପରେ ପ୍ରଭାବ ପକାଇଛି, ତଦ୍‌ବିଷୟରେ ଜାଣିବା ପାଇଁ ରାମାୟଣରେ ସମାଜ ସମ୍ପର୍କରେ ଅଧ୍ୟୟନ ଓ ଅନୁଧ୍ୟାନ କରିବା ନିଶ୍ଚିତ ଭାବରେ କାମ୍ୟ ।

ଏହି ପୁସ୍ତକର ପ୍ରଥମ ଭାଗରେ ରାମାୟଣ କେବେ ରଚିତ ହୋଇଥିଲା, ରାମାୟଣ-ଘଟଣାବଳୀ କେବେ ସଂଘଟିତ ହୋଇଥିଲା ଏବଂ କେଉଁ କେଉଁ ସମୟରେ କେଉଁ କେଉଁ କାରଣବଶତଃ ବିଭିନ୍ନ ପ୍ରକ୍ଷେପମାନ ଏଥିରେ ଅନୁପ୍ରବେଶ କରିଥିଲେ, ତାହା ବର୍ଣ୍ଣିତ । ରାମାୟଣର ଘଟନାବଳୀ ସଂଘଟିତ ହୋଇଥିଲା ବେଦ-ସୃଷ୍ଟିର ପରବର୍ତ୍ତୀ କାଳରେ ଖ୍ରୀ: ପୂ: ୨୦୦୦ରେ କିମ୍ବା ତାହାର ନିକଟବର୍ତ୍ତୀ ଶହେ-ଦୁଇ ଶହ ବର୍ଷ ପୂର୍ବେ କିମ୍ବା ପରେ । ବାଲ୍ମୀକି ରାମାୟଣକୁ ରଚନା କରିଥିଲେ ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀରେ । ପରମ୍ପରା କ୍ରମେ ଜନଶ୍ରୁତି ଆକାରରେ ଯେଉଁ ରାମାୟଣକାହାଣୀ ଶତ ଶତ ବର୍ଷ ଧରି ଗଢ଼ି ଆସୁଥିଲା, ତହିଁରେ ତତ୍କାଳୀନ ସାମାଜିକ ପ୍ରତିଚ୍ଛବି କିଛିଟା ନିଶ୍ଚିତ ଭାବରେ ଥିଲା । ବାଲ୍ମୀକିଙ୍କ ସମୟରେ ଯେଉଁ ସାମାଜିକ ସ୍ଥିତି ଥିଲା, ତହାର ପ୍ରଭାବ ମଧ୍ୟ ତାଙ୍କ ରଚନାରେ ଯଥେଷ୍ଟ ଭାବରେ ପଡ଼ିଥିବ । ଏତଦ୍‌ବ୍ୟତୀତ ପରବର୍ତ୍ତୀ କାଳରେ ଯେଉଁ ପ୍ରକ୍ଷେପମାନ ଏଥିରେ ଅନୁପ୍ରବେଶ କରିଥିଲେ, ସେମାନଙ୍କ ମାଧ୍ୟମରେ ମଧ୍ୟ କିଛିଟା ସାମାଜିକ ଚିତ୍ରର ପ୍ରତିଫଳନ ଏହି ଗ୍ରନ୍ଥରେ ହୋଇଥିବ । ଏହିପରି ଭାବରେ ଉକ୍ତ ଗ୍ରନ୍ଥରେ ଏକ ପ୍ରକାର ସାମାଜିକ ବିବର୍ତ୍ତନର ଇତିହାସ ସ୍ଥାପିତ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏହା କିପରି ଭାବରେ ସ୍ଥାନିତ, ତାହା ନିମ୍ନଲିଖିତ ଅନୁଚ୍ଛେଦମାନଙ୍କରେ ହୋଇଥିବା ଆଲୋଚନାରୁ ଜଣାପଡ଼ିବ ।

## ଚାରି ବର୍ଣ୍ଣ

ଭାରତୀୟମାନଙ୍କ ମଧ୍ୟରେ ଚାରି ବର୍ଣ୍ଣର ବ୍ୟବସ୍ଥା ବୈଦିକ କାଳରୁ ଚାଲି ଆସୁଛି । ଋଗ୍‌ବେଦର ପୁରୁଷ ସୂକ୍ତ ଅନୁସାରେ (୧୦।୯୦) ଏହି ବର୍ଣ୍ଣ ହେଲେ ବ୍ରାହ୍ମଣ, ରାଜନ୍ୟ, ବୈଶ୍ୟ ଓ ଶୂଦ୍ର । 'ରାଜନ୍ୟ' ବର୍ଣ୍ଣ ପରେ 'କ୍ଷତ୍ରିୟ' ବର୍ଣ୍ଣ ନାମରେ ଅଭିହିତ ହେଲା । ଉକ୍ତ ସୂକ୍ତରେ ଚାରି ବର୍ଣ୍ଣର ସୃଷ୍ଟି-ପ୍ରକ୍ରିୟା ସମ୍ପର୍କରେ କୁହାଯାଇଛି ଯେ ବିରାଟ ପୁରୁଷଙ୍କର ମୁଖରୁ ସୃଷ୍ଟି ହେଲେ ବ୍ରାହ୍ମଣ, ବକ୍ଷରୁ ସୃଷ୍ଟି ହେଲେ ରାଜନ୍ୟ, ଉରୁରୁ ସୃଷ୍ଟି ହେଲେ ବୈଶ୍ୟ ଏବଂ ପାଦରୁ ସୃଷ୍ଟି ହେଲେ ଶୂଦ୍ର । ରାମାୟଣ ମଧ୍ୟ ଏହିପରି ବର୍ଣ୍ଣବିଭାଗକୁ ମାନ୍ୟତା ଦେଇଆସିଛି । ଖାଲି ସେତିକି ନୁହେଁ, ଚାରି ବର୍ଣ୍ଣର ସୃଷ୍ଟିପ୍ରକ୍ରିୟା ସମ୍ପର୍କରେ ଥିବା ଋଗ୍‌ବେଦୀୟ ଚିନ୍ତାଧାରା ମଧ୍ୟ ସମ୍ୟକ୍ ଭାବରେ ରାମାୟଣରେ ପ୍ରତିଫଳିତ । ପଞ୍ଚବଟୀକୁ ଯିବା ବାଟରେ ରାମ, ଲକ୍ଷ୍ମଣ, ସୀତା ପକ୍ଷିରାଜ ଜଟାୟୁଙ୍କୁ ଭେଟିଥିଲେ । ଜଟାୟୁ ସେମାନଙ୍କୁ ବିଭିନ୍ନ ଜୀବମାନଙ୍କର ଉତ୍ପତ୍ତି ବିଷୟରେ କେତେକ କଥା କହିଥିଲେ । ଚାରିବର୍ଣ୍ଣର ଉତ୍ପତ୍ତି ବିଷୟରେ ସେ କହିଥିଲେ

> ମନୁର୍ମନୁଷ୍ୟାଞ୍ଜନୟତ୍ କଶ୍ୟପସ୍ୟ ମହାତ୍ମନଃ ।
> ବ୍ରାହ୍ମଣାନ୍ କ୍ଷତ୍ରିୟାନ୍ ବୈଶ୍ୟାନ୍ ଶୂଦ୍ରାଂଶ୍ଚ ମନୁଜର୍ଷଭ ।।
> ମୁଖତୋ ବ୍ରାହ୍ମଣା ଜାତା ଉରସଃ କ୍ଷତ୍ରିୟାସ୍ତଥା ।
> ଊରୁଭ୍ୟାଂ ଜଜ୍ଞିରେ ବୈଶ୍ୟାଃ ପଦ୍‌ଭ୍ୟାଂ ଶୂଦ୍ରା ଇତି ଶ୍ରୁତିଃ ।। (୬)

ଅର୍ଥାତ୍ ହେ ନରଶ୍ରେଷ୍ଠ ମହାତ୍ମା କଶ୍ୟପଙ୍କ ପତ୍ନୀ ମନୁଙ୍କଠାରୁ ବ୍ରାହ୍ମଣମାନେ, କ୍ଷତ୍ରିୟମାନେ, ବୈଶ୍ୟମାନେ ଓ ଶୂଦ୍ରମାନେ ଜନ୍ମ ନେଇଥିଲେ । ବ୍ରାହ୍ମଣମାନେ ଜନ୍ମ ନେଇଥିଲେ ମୁଖରୁ; କ୍ଷତ୍ରିୟମାନେ ଜନ୍ମ ନେଇଥିଲେ ବକ୍ଷୋଦେଶରୁ; ବୈଶ୍ୟମାନେ ଜନ୍ମ ନେଇଥିଲେ ଉରୁଦ୍ୱୟରୁ; ଏବଂ ଶୂଦ୍ରମାନେ ଜନ୍ମ ନେଇଥିଲେ ପାଦଦ୍ୱୟରୁ । ବୈଦିକ ବର୍ଣ୍ଣବିଭାଗ ପରି ରାମାୟଣର ବର୍ଣ୍ଣବିଭାଗ ମଧ୍ୟ ଥିଲା ଗୁଣ ଓ କର୍ମ ସହିତ ସମ୍ପର୍କିତ । ଜନ୍ମ ସହିତ ଏହାର ଆଦୌ ସମ୍ପର୍କ ନଥିଲା । ବ୍ରାହ୍ମଣମାନଙ୍କଠାରେ ଥିଲା ବାକ୍-ଶୁଦ୍ଧି ଓ ବାକ୍‌ପଟୁତା । ଚାରି ବେଦକୁ ଆୟତ୍ତ କରିବାରେ ସେମାନେ ଥିଲେ ଅନ୍ୟସବୁ ବର୍ଣ୍ଣମାନଙ୍କଠାରୁ ପ୍ରବୀଣତମ । ତେଣୁ ସେମାନଙ୍କ ସୃଷ୍ଟି ମୁଖରୁ ହୋଇଥିଲା ବୋଲି କଳ୍ପିତ । କ୍ଷତ୍ରିୟମାନଙ୍କର ଛାତି ଖୁବ୍ ଚାଣ; ସେମାନେ ଖୁବ୍ ସାହସୀ, ସେମାନଙ୍କର ଧୈର୍ଯ୍ୟ ଅସୀମ । ଶୌର୍ଯ୍ୟ ଓ ବୀର୍ଯ୍ୟ ଦ୍ୱାରା ସେମାନେ ରାଷ୍ଟ୍ର ତଥା ସମାଜକୁ ରକ୍ଷା କରିଥାନ୍ତି । ତେଣୁ

ସେମାନଙ୍କର ଉଦ୍ଭବ ବକ୍ଷୋଦେଶରୁ ହୋଇଛି ବୋଲି କୁହାଯାଇଛି । ବୈଶ୍ୟମାନେ କୃଷି କରନ୍ତି; ବେପାରବଣିଜ କରନ୍ତି । ସେମାନଙ୍କ ଉଦ୍ୟମ ଫଳରେ ରାଷ୍ଟ୍ରର ସମ୍ପତ୍ତି ବୃଦ୍ଧିପ୍ରାପ୍ତ ହୋଇଥାଏ । ସେମାନଙ୍କ ଉରୁର ସାମର୍ଥ୍ୟ ସେମାନଙ୍କୁ ସ୍ୱକର୍ତ୍ତବ୍ୟ ପାଳନ କରିବାରେ ସହାୟକ ହୋଇଥାଏ । ତେଣୁ ସେମାନେ ଉରୁଦ୍ୱୟରୁ ଜାତ ହୋଇଛନ୍ତି ବୋଲି କଳ୍ପନା କରାଯାଇଛି । ଶୂଦ୍ରମାନେ ଅନ୍ୟ ତିନି ବର୍ଣ୍ଣମାନଙ୍କ ପାଦତଳେ ଦାସ ଭଳି ଖଟିଆନ୍ତି । ସେବା ଥାଏ ସେମାନଙ୍କର ଧର୍ମ । ତେଣୁ ସେମାନଙ୍କର ଉତ୍ପତ୍ତି-ସ୍ଥଳ ପାଦଦ୍ୱୟ ବୋଲି କଳ୍ପନା କରାଯାଇଛି । ଅତଏବ, ଯୋଗ୍ୟତା ଭିତ୍ତିରେ ବର୍ଣ୍ଣନିର୍ଣ୍ଣୟ କରିଯିବା ନୀତିକୁ ରାମାୟଣରେ ସ୍ୱୀକୃତି ଦିଆଯାଇଛି ।

ବୈଦିକ କାଳରୁ ଏ ଦେଶରେ ଯେଉଁ ଚାରି ବର୍ଣ୍ଣର ବ୍ୟବସ୍ଥା କରାଯାଇଛି ଏବଂ ଯାହାକି ରାମାୟଣ କାଳରେ ମଧ୍ୟ ଅତୁଟ ଥିଲା, ତାହାକୁ ବହୁ ବିଚାରବୁଦ୍ଧି ପ୍ରୟୋଗ ଦ୍ୱାରା ସମାଜତତ୍ତ୍ୱବିତ୍‌ମାନେ ସ୍ଥିର କରିଥିଲେ । କେବଳ ସ୍ୱକର୍ତ୍ତବ୍ୟ ସୁଚାରୁ ରୂପେ ସମାପନ କରିବା ଲାଗି ଏହା ଉଦ୍ଦିଷ୍ଟ ନଥିଲା । ଜନ୍ମଠାରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ନିଜ କର୍ତ୍ତବ୍ୟ ବିଷୟରେ କିପରି ବ୍ୟକ୍ତି ସଚେତନ ରହିବ ଏବଂ ସେହି କର୍ତ୍ତବ୍ୟ ପାଳନକୁ କିପରି ବ୍ୟଷ୍ଟିର ବୃତ୍ତକୁ ଅତିକ୍ରମ କରି ସମଷ୍ଟିର ବୃତ୍ତ ମଧ୍ୟରେ ପ୍ରବେଶ କରାଇବାକୁ ହେବ, ତାହା ଥିଲା ଏହାର ଆଉ ଏକ ଲକ୍ଷ୍ୟ । 'ଚାତୁର୍ବର୍ଣ୍ଣ'ର ବ୍ୟବସ୍ଥା ମୁଖ୍ୟତଃ ନିମ୍ନଲିଖିତ ପାଞ୍ଚଗୋଟି ଲକ୍ଷ୍ୟ ପୂରଣ କରୁଥିଲା

କ) ବ୍ୟକ୍ତିର କର୍ତ୍ତବ୍ୟାବଳୀ ଏଭଳି ଭାବରେ ସ୍ଥିର କରାଯାଇଥିଲା ଯେ ତାହା ସମ୍ପୃକ୍ତ ବ୍ୟକ୍ତି ସମେତ ସମାଜର ଅନ୍ୟାନ୍ୟ ଗୋଷ୍ଠୀର ଲୋକମାନେ ମଧ୍ୟ ବୁଝିପାରୁଥିଲେ ।

ଖ) ସମାଜ ପ୍ରତି ନିଜର କର୍ତ୍ତବ୍ୟ କ'ଣ ଏବଂ ତାହା କିପରି ଦୃଢ଼ତାର ସହିତ ସମାପନ କରିବାକୁ ହେବ, ତାହା ବ୍ୟକ୍ତିର ସମ୍ପୂର୍ଣ୍ଣ ଗୋଚର ଥିଲା ।

ଗ) ସାଧାରଣ ବ୍ୟକ୍ତିର ମାନସିକ ଓ ଶାରୀରିକ କ୍ଷମତା ଓ ସାମର୍ଥ୍ୟକୁ ନେଇ ତାହାର କର୍ତ୍ତବ୍ୟାବଳୀ ନିର୍ଣ୍ଣିତ ହେଉଥିଲା ।

ଘ) ବ୍ୟକ୍ତି ତା'ର ଶୈଶବାବସ୍ଥାରୁ ସ୍ୱୀୟ କର୍ତ୍ତବ୍ୟାବଳୀ ବିଷୟରେ ଅବହିତ ହେଉଥିଲା ଏବଂ ତେଣୁ ଉପଯୁକ୍ତ ତାଲିମ ନେଇ ସେଗୁଡ଼ିକ ଉତ୍ତର ଜୀବନରେ ସୁଚାରୁ ରୂପେ ସମାହିତ କରିବା ପାଇଁ ସୁବିଧା ଓ ସୁଯୋଗ ପାଉଥିଲା ।

ଙ) ଶୈଶବ କାଳରୁ ହିଁ ବ୍ୟକ୍ତି ବୁଝିପାରୁଥିଲା ଯେ ତାହାର ଜୀବନ କେବଳ ନିଜର ସୁଖୋପଭୋଗ ଲାଗି ଉଦ୍ଦିଷ୍ଟ ନୁହେଁ । ଅନ୍ୟ ପକ୍ଷରେ, ଏହା ସମାଜର

କଲ୍ୟାଣ ଲାଗି ଉଦ୍ଦିଷ୍ଟ । ଏହି ସମାଜକଲ୍ୟାଣ ରୂପକ ଯଜ୍ଞରେ ଆତ୍ମାହୁତି ଦେବା ଲାଗି ପିଲାଦିନୁ ହିଁ ତା' ମନରେ ଅନୁପ୍ରେରଣା ଓ ଉଦ୍ଦୀପନା ଜାଗ୍ରତ ହେଉଥିଲା ।

ସେଥିପାଇଁ ପରି ଆର୍ଷ ବଚନ ସମସ୍ତଙ୍କ କର୍ଣ୍ଣମୂଳେ ବାରମ୍ବାର ଅନୁରଣିତ ହେଉଥିଲା

ସର୍ବେଽତ୍ର ସୁଖିନଃ ସନ୍ତୁ ସର୍ବେ ସନ୍ତୁ ନିରାମୟାଃ ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ।।
ଅପୁତ୍ରାଃ ପୁତ୍ରିଣଃ ସନ୍ତୁ ପୁତ୍ରିଣଃ ସନ୍ତୁ ପୌତ୍ରିଣଃ ।
ଅଧନାଃ ସଧନାଃ ସନ୍ତୁ ଜୀବନ୍ତୁ ଶରଦାଂ ଶତମ୍ ।।

ଅର୍ଥାତ୍ ଏଠି ସମସ୍ତେ ସୁଖୀ ଓ ନୀରୋଗ ରହନ୍ତୁ । ସମସ୍ତେ ଭଲ କଥା ଦେଖନ୍ତୁ । କେହି ଜଣେ ହେଲେ ଦୁଃଖୀ ହୋଇ ନରହନ୍ତୁ । ଯେଉଁମାନଙ୍କର ପୁଅ ନାହାନ୍ତି ସେମାନଙ୍କର ପୁଅ ହେଉ । ଯେଉଁମାନଙ୍କର ନାତି ନାହାନ୍ତି ସେମାନଙ୍କର ନାତି ହୁଅନ୍ତୁ । ଗରିବ ଲୋକମାନେ ଧନୀ ହୁଅନ୍ତୁ । ସମସ୍ତେ ଶହେ ବର୍ଷ ଧରି ବଞ୍ଚନ୍ତୁ ବା ଦୀର୍ଘାୟୁ ହୁଅନ୍ତୁ । ଗୃହଚର୍ଯ୍ୟର ବ୍ୟବସ୍ଥାଟି ଏହିପରି ଭାବରେ ସମସ୍ତଙ୍କୁ ସାର୍ବଜନୀନ ସୁଖ ଓ କଲ୍ୟାଣ କାମନା ଲାଗି ଶିକ୍ଷା ଦେଇଥିଲା । ରାମାୟଣ-ଯୁଗରେ ଏହି ସ୍ଥିତି ପ୍ରାୟ ଥିଲା ।

ସେତେବେଳେ ସମାଜ ଯେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରମାନଙ୍କୁ ନେଇ ଚାରି ଭାଗରେ ବିଭକ୍ତ ହୋଇଥିଲା, ତାହାର ପ୍ରମାଣ ରାମାୟଣର ଆହୁରି ଅନେକ ପଙ୍କ୍ତିରେ ମଧ୍ୟ ମିଳିଥାଏ । ଉଦାହରଣସ୍ୱରୂପ, ବାଲକାଣ୍ଡର ନିମ୍ନଲିଖିତ ପଙ୍କ୍ତିଟିକୁ ନିଆଯାଉ । ନାରଦ ଏଠାରେ ବାଲ୍ମୀକିଙ୍କୁ ରାମାୟଣର ମୂଳ କଥାବସ୍ତୁଟିକୁ ଅତି ସଂକ୍ଷେପରେ କହିବା ଅବସରରେ କେଉଁ ବର୍ଣ୍ଣର ଲୋକେ ତାହାକୁ ପଢିଲେ କି କି ଫଳ ପାଇଥାନ୍ତି, ତଦ୍ବିଷୟରେ ଉଲ୍ଲେଖ କରିଛନ୍ତି । ତାଙ୍କ ଭାଷାରେ

ପଠନ୍ ଦ୍ୱିଜୋ ବାଗୃଷଭତ୍ୱମୀୟାତ୍
ସ୍ୟାତ୍ କ୍ଷତ୍ରିୟୋ ଭୂମିପତିତ୍ୱମୀୟାତ୍ ।
ବଣିଗ୍ ଜନଃ ପୁଣ୍ୟଫଳତ୍ୱମୀୟା-
ଜ୍ଜନଶ୍ଚ ଶୂଦ୍ରୋଽପି ମହତ୍ତ୍ୱମୀୟାତ୍ ।। (୩)

ଅର୍ଥାତ୍ ଏହାକୁ (ରାମାୟଣକୁ) ପଢିଲେ ବ୍ରାହ୍ମଣ ଖୁବ୍ ବିଦ୍ୱାନ୍ ହୁଅନ୍ତି, କ୍ଷତ୍ରିୟଙ୍କୁ ପୃଥିବୀର ରାଜ୍ୟପ୍ରାପ୍ତି ହୁଏ । 'ବଣିକ୍ଜନ' ବା ବୈଶ୍ୟଙ୍କୁ ବ୍ୟବସାୟରେ

ଭଲ ଲାଭ ମିଳେ ଏବଂ ଶୂଦ୍ରଲୋକ ବି ଖୁବ୍ ପ୍ରତିଷ୍ଠାଲାଭ କରନ୍ତି । କୌଣସି ରାଜ୍ୟର ଲୋକସମୁଦାୟ କହିଲେ ବୁଝା ଯାଉଥିଲା ଏହି ଚାରି ବର୍ଣ୍ଣବିଶିଷ୍ଟ ଲୋକଙ୍କ ସମାହାର । ଭରତ ଯେତେବେଳେ ରାମଙ୍କୁ ଫେରାଇ ଆଣିବା ଲାଗି ବନଯାତ୍ରା କରିଥିଲେ, ତାଙ୍କ ସାଥିରେ ରଥ ଓ ଅନ୍ୟାନ୍ୟ ବାହନ ସଜାଇ ଯେଉଁ ଲୋକମାନେ ବାହାରିଥିଲେ ସେମାନେ ହେଲେ ରାଜନ୍ୟ ବା କ୍ଷତ୍ରିୟ, ବୈଶ୍ୟ, କୃଷକ ବା ଶୂଦ୍ର ଓ ବ୍ରାହ୍ମଣ (ରାଜନ୍ୟବୈଶ୍ୟାଃ ବୃଷଲାଶ୍ଚ ବିପ୍ରାଃ) । (୪) ସେହିପରି ଉତ୍ତର କାଣ୍ଡରେ ଠାଏ (୭ । ୭୦ । ୧୧) ମଥୁରା ନଗରୀର ବର୍ଣ୍ଣନା ପ୍ରସଙ୍ଗରେ କୁହାଯାଇଛି । ତାହା ଥିଲା

"ଚାତୁର୍ବର୍ଣ୍ଣ୍ୟସମାଯୁକ୍ତା ନାନାବାଣିଜ୍ୟଶୋଭିତା" ।

ଅର୍ଥାତ୍ ସେଠାରେ ଚାରି ବର୍ଣ୍ଣର ଲୋକମାନେ ଥିଲେ ଏବଂ ତାହା ନାନା ପ୍ରକାର ବାଣିଜ୍ୟ ବ୍ୟବସାୟରେ ଶୋଭା ପାଉଥିଲା । ଏଥିରୁ ସ୍ପଷ୍ଟ ଭାବରେ ଉପଲବ୍ଧ ହେବ ଯେ (କ) ସମାଜ ସେତେବେଳେ ଚାରିଗୋଟି ସ୍ତରରେ ବିଭକ୍ତ ହୋଇଥିଲା; (ଖ) ଏହି ସ୍ତରଗୁଡ଼ିକୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚାରି ବର୍ଣ୍ଣର ଲୋକମାନେ ଗଠନ କରିଥିଲେ; ଏବଂ (ଗ) କର୍ମ ଓ ଗୁଣକୁ ନେଇ ଏହି ବର୍ଣ୍ଣଗୁଡ଼ିକର ଉଦ୍ଭବ ହୋଇଥିଲା ।

ଉପର ଲିଖିତ 'ରାଜନ୍ୟବୈଶ୍ୟାଃ ବୃଷଲାଶ୍ଚ ବିପ୍ରାଃ' ପଙ୍କ୍ତିଟି ପଢ଼ିଲେ ହୁଏତ କେହି କେହି ଭାବି ପାରନ୍ତି ଯେ ସମାଜରେ କ୍ଷତ୍ରିୟବର୍ଣ୍ଣକୁ ପ୍ରାଥମିକତା ଦିଆଯାଉଥିଲା ଏବଂ ବ୍ରାହ୍ମଣ ବର୍ଣ୍ଣକୁ ସର୍ବନିମ୍ନ ଆସନ ଦିଆଯାଉଥିଲା । ତାହା କିନ୍ତୁ ଠିକ୍ ନୁହେଁ । ସଂସ୍କୃତ କାବ୍ୟରେ ଏହି ବର୍ଣ୍ଣଗୁଡ଼ିକର ଉଲ୍ଲେଖ ଯେଉଁ କ୍ରମରେ ହୋଇ ଥାଉନା କାହିଁକି ସମାଜରେ ସର୍ବଦା ବ୍ରାହ୍ମଣ-ବର୍ଣ୍ଣକୁ ହିଁ ପ୍ରାଥମିକତା ଦିଆଯାଉଥିଲା ଏବଂ ଶୂଦ୍ରମାନେ ସମାଜର ନିମ୍ନତମ ସ୍ତରଟିକୁ ଗଠନ କରିଥିଲେ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର, ଏହି କ୍ରମରେ ହିଁ ବର୍ଣ୍ଣଗତ ସ୍ତର ଗଠିତ ହୋଇଥିଲା । ଏ ପ୍ରକାର ସ୍ଥିତି ବୈଦିକ ଯୁଗରୁ ହିଁ ଚାଲି ଆସୁଥିଲା ।

ବର୍ଣ୍ଣଧର୍ମର ମୁଖ୍ୟ ଭିତ୍ତି ହେଲା ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଥିବା ମାନସିକ ତଥା ଶାରୀରିକ ଶକ୍ତିର ତାରତମ୍ୟ । ସମସ୍ତେ ଏକ ପ୍ରକାର କାମ ପାଇଁ ଉପଯୁକ୍ତ ନୁହନ୍ତି । ଯେ ଯେଉଁ କର୍ମ କରିବା ପାଇଁ ଉପଯୁକ୍ତ, ତା'କୁ ସେହି କର୍ମ କରିବାକୁ ସୁଯୋଗ ଦେବା ହେଉଛି ବର୍ଣ୍ଣଧର୍ମର ଉଦ୍ଦେଶ୍ୟ । ବାସ୍ତବିକ ଗୁଣଭେଦରେ ତିନି ପ୍ରକାର ଲୋକ ପୃଥିବୀରେ ଅଛନ୍ତି ବୋଲି ରାମାୟଣ କହିଥାଏ । ହନୁମାନ୍ ଲଙ୍କାପୋଡ଼ି, ଅଶୋକବନ ନଷ୍ଟ ଆଦି କରି ସାରିବା ପରେ ରାବଣ ଖୁବ୍ ଚିନ୍ତିତ

ହୋଇ ପଡ଼ିଥିଲା । ସେ ନିଜର ମନ୍ତ୍ରୀସଭା ଡ଼କାଇ ତା'ର କ'ଣ କର୍ତ୍ତବ୍ୟ ତଦ୍‌ବିଷୟରେ ସଭାସଦମାନଙ୍କର ପରାମର୍ଶ ଲୋଡ଼ିଥିଲା । ସେହି ଅବସରରେ ବାଲ୍ମୀକି ତା' ମୁଖରେ ସଭାସଦନମାନଙ୍କୁ କୁହାଇଛନ୍ତି

"ତ୍ରିବିଧା ପୁରୁଷାଲୋକେ ଉତ୍ତମାଧମମଧ୍ୟମାଃ" । (୫)

ଅର୍ଥାତ୍ ଏ ସଂସାରରେ ତିନି ପ୍ରକାର ଲୋକ ଅଛନ୍ତି । ଗୋଟିଏ ପ୍ରକାର ଲୋକଙ୍କୁ ଉତ୍ତମ ବୋଲି କୁହାଯିବ । ଆଉ ଗୋଟିଏ ପ୍ରକାର ଲୋକଙ୍କୁ ଅଧମ ବୋଲି କୁହାଯିବ ଏବଂ ତୃତୀୟ ପ୍ରକାର ଲୋକଙ୍କୁ ମଧ୍ୟମ ବୋଲି କୁହାଯିବ । ସତ୍ତ୍ୱ, ରଜ ଓ ତମ ଏହି ତିନି ଗୁଣକୁ ନେଇ ଉତ୍ତମ, ମଧ୍ୟମ ଓ ଅଧମ ଶ୍ରେଣୀୟ ବ୍ୟକ୍ତିଙ୍କୁ ନିର୍ଣ୍ଣୟ କରିବାକୁ ହେବ । ଆଉ ଗୋଟିଏ ପ୍ରକାର ବ୍ୟକ୍ତି ଅଛନ୍ତି ଯେଉଁମାନଙ୍କ ପାଖରେ ଏହି ସମସ୍ତ ଗୁଣ ମିଶିକରି ରହିଛି । ଏହି ଚାରି ପ୍ରକାର ବ୍ୟକ୍ତିଙ୍କୁ ନେଇ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ବର୍ଣ୍ଣର କଳ୍ପନା କରାଯାଇଛି । ଯେ ଯେଉଁ କୁଳରେ ଜନ୍ମ ହୋଇଥାଉ ନା କାହିଁକି, ତା'ର ଗୁଣ, ସ୍ୱଭାବ ଓ କର୍ମ-ବଳରେ ସେ ତା'ପାଇଁ ଉପଯୁକ୍ତ ଥିବା ବର୍ଣ୍ଣରେ ସାମିଲ୍ ହୋଇ ପାରୁଥିଲା । ଶୂଦ୍ରାଣୀ ଗର୍ଭରୁ ଜାତ ସନ୍ତାନ ମଧ୍ୟ ବ୍ରାହ୍ମଣର ମର୍ଯ୍ୟାଦା ପାଇ ଋଷି ଭଳି ସମ୍ମାନ ଅଧିକାର କରିଥିବାର ପରଂପରା ବୈଦିକ କାଳରୁ ହିଁ ଗଢ଼ିଆସିଛି । କକ୍ଷିବାନ୍, ମହୀଦାସ ଆଦି ଋଷିମାନେ ଏହାର ନିଦର୍ଶନ । ଅବ୍ରାହ୍ମଣ ନାରୀଙ୍କ ଗର୍ଭରୁ ଜନ୍ମ ନେଇ ଅନେକ ବ୍ୟକ୍ତି ବ୍ରାହ୍ମଣବର୍ଣ୍ଣର ମର୍ଯ୍ୟାଦା ପାଇ ପାରିଥିଲେ । ରାଧାକୃଷ୍ଣନ୍‌ଙ୍କ ଭାଷାରେ

> Hindu Acharyas denounced the spirit of caste separatism. Vajra-suchikopanishad, holds that many who were born of non-Brahmin women had risen to the rank of Brahmin saints. (୫-କ)

ଅତଏବ, ଗୁଣ ଓ କର୍ମରେ ନିପୁଣତା ହାସଲ କରିବା ପାଇଁ ଜନ୍ମଗତ ବାଧାବନ୍ଧନ ଆଦୌ ନଥିଲା । ବର୍ଣ୍ଣଧର୍ମର ଏହି ପ୍ରକାର ସ୍ଥିତି ପ୍ରତି ଲକ୍ଷ୍ୟ କରି ରାଧାକୃଷ୍ଣନ୍ ପୁନର୍ବାର ଯଥାର୍ଥରେ କହିଛନ୍ତି

> "Yaska in his Nirukta tells us that of the two brothers Santanu and Devapi, one became a Khyatriya and the other a Brahmin priest. Kavasa, the son of a slave-girl Ilusha, was ordained as a

Brahmin preist at a sacrifice. Janāka, a Khyatriya by birth, attained the rank of a Brahmin by virtue of his ripe wisdom and saintly character. (୬)

ବ୍ୟକ୍ତିଗତ ଗୁଣ ଓ ସ୍ୱଭାବକୁ ନେଇ କିପରି ଭାବରେ ଚାରି ବର୍ଣ୍ଣର ସୃଷ୍ଟି ହୋଇଛି ତତ୍ସମ୍ପର୍କରେ ନିମ୍ନଲିଖିତ ଶାସ୍ତ୍ରୋକ୍ତି ଯଥେଷ୍ଟ ପ୍ରମାଣ ଯୋଗାଇଥାଏ :

ସତ୍ତ୍ୱାଧିକୋ ବ୍ରାହ୍ମଣଃ ସ୍ୟାତ୍ କ୍ଷତ୍ରିୟସ୍ତୁ ରଜୋଧିକଃ ।
ତମୋଧିକୋ ଭବେଦ୍ବୈଶ୍ୟୋ ଗୁଣସାମ୍ୟାତ୍ତୁ ଶୂଦ୍ରତା ।

ଅର୍ଥାତ୍ ବ୍ରାହ୍ମଣଙ୍କ ଠାରେ ସତ୍ତ୍ୱଗୁଣ ଅଧିକ ପରିମାଣରେ ଥାଏ; କ୍ଷତ୍ରିୟଙ୍କଠାରେ ରଜୋଗୁଣ ଅଧିକ ପରିମାଣରେ ଥାଏ; ବୈଶ୍ୟଙ୍କଠାରେ ତମୋଗୁଣ ଅଧିକ ପରିମାଣରେ ଥାଏ; ଶୂଦ୍ରଙ୍କ ଠାରେ ସବୁ ପ୍ରକାର ଗୁଣ ସମାନ ଭାବରେ ଥାଏ ।

ବର୍ଣ୍ଣଧର୍ମକୁ ଉତ୍ତମ ରୂପରେ ପାଳନ କଲେ ଯେ ବ୍ୟକ୍ତିର ଅଭ୍ୟୁଦୟ ହେବା ସଙ୍ଗେ ସଙ୍ଗେ ସମାଜର ସାମଗ୍ରିକ ବିକାଶ ସମ୍ଭବପର, ଏହା ଥିଲା ଏକ ବଳିଷ୍ଠ ଆର୍ଯ୍ୟଧାରଣା । ଏହି ଧାରଣା ବୈଦିକ କାଳରୁ ହିଁ ପରିପୋଷିତ ହୋଇ ଆସିଥିଲା । ରାଧାକୃଷ୍ଣନ୍ଙ୍କ ଭାଷାରେ

The basis of the Varna-dharma is that every human being must try to fulfil the law of his development. We must discipline our life in conformity with the pattern of our being, instead of wasting our energies in following those which we lack. (୭)

ବଡ଼ ଦୁଃଖର କଥା ଯେ ଆଜିକାଲି ଆମ ଦେଶରେ ଏଥି ପ୍ରତି ଯଥେଷ୍ଟ ଦୃଷ୍ଟି ଦିଆଯାଉ ନାହିଁ । ଯୋଗ୍ୟତା ଅନୁସାରେ ଶ୍ରମର ବିଭାଜନ କରାଯାଉ ନାହିଁ । ଶିକ୍ଷାକ୍ଷେତ୍ରର ଉଦାହରଣ ନିଆଯାଉ । ଯାହାର ପଇସା ଅଛି, ସେ ଉଚ୍ଚଶିକ୍ଷା ପାଇବା ପାଇଁ ଉଦ୍ୟମ କରୁଛି । ସମସ୍ତଙ୍କର ଉଦ୍ଦେଶ୍ୟ ସେଇ ଗୋଟିଏ ପାଠ ପଢ଼ି ସାରିଲେ ଚାକିରି କରିବା । ଯାହାର ପଇସା ନାହିଁ ସେ ଯୋଗ୍ୟତା ଥାଇ ମଧ୍ୟ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହେଉଛି । ଏହା ଫଳରେ ସମାଜ ଯୋଗ୍ୟ ବ୍ୟକ୍ତିଙ୍କ ସେବାରୁ ବଞ୍ଚିତ ହେଉଛି । ଏହାର ଫଳଶ୍ରୁତିସ୍ୱରୂପ ଦେଖା ଦେଉଛି ନାନା ପ୍ରକାର ସାମାଜିକ ବିଶୃଙ୍ଖଳା । ରାଷ୍ଟ୍ର ଏ ପ୍ରକାର ସ୍ଥିତିକୁ ପ୍ରତିହତ କରିବା ପାଇଁ

ଯାହାକିଛି କରୁଛି, ତାହା କିନ୍ତୁ ପର୍ଯ୍ୟାପ୍ତ ନୁହେଁ । ପ୍ରାଚୀନ କାଳରେ ରାଜଶାସ୍ତ୍ରମାନେ କଡ଼ାକଡ଼ି ଭାବରେ ବର୍ଣ୍ଣଧର୍ମକୁ ପାଳନ କରିବା ଫଳରେ ଏ ପ୍ରକାର ବିଶୃଙ୍ଖଳା ସ୍ଥିତିକୁ ଅତି ଫଳପ୍ରଦ ଭାବରେ ପ୍ରତିହତ କରିପାରିଥିଲେ । ରାଜାଙ୍କ ପାଇଁ ରାଜଧର୍ମ ପାଳନ ଉଦ୍ଦେଶ୍ୟରେ ସମାଜତତ୍ତ୍ୱବିତ୍‌ମାନେ ଯେଉଁ ନୀତିନିୟମମାନ ଖଞ୍ଜିଥିଲେ, ତନ୍ମଧ୍ୟରେ ବର୍ଣ୍ଣଧର୍ମ-ସଂରକ୍ଷଣ ହେଉଛି ଅନ୍ୟତମ । ରାମାୟଣରେ ମଧ୍ୟ ଏହି ବାଣୀ ସମଧିକ ଅନୁରଣିତ । ପମ୍ପା ସରୋବର ନିକଟରେ ରାମଲକ୍ଷ୍ମଣ ହନୁମାନଙ୍କୁ ଭେଟିଛନ୍ତି । ହନୁମାନ ରାମଙ୍କ ବନାଗମନର କାରଣ ପଚାରିବା ପ୍ରସଙ୍ଗରେ ତାଙ୍କର ପରିଚୟ ପଚାରିଛନ୍ତି । ଲକ୍ଷ୍ମଣ ରାମଙ୍କୁ ଇକ୍ଷ୍ୱାକୁ ବଂଶଜ ରାଜା ଦଶରଥଙ୍କ ଜ୍ୟେଷ୍ଠ ପୁତ୍ର ଭାବରେ ପରିଚିତ କରାଇଛନ୍ତି । ଦଶରଥଙ୍କ ମହତ୍ତ୍ୱ ବର୍ଣ୍ଣନା କ୍ରମରେ ସେ କହିଛନ୍ତି :

ରାଜା ଦଶରଥନାମୋ ଦ୍ୟୁତିମାନ୍ ଧର୍ମବତ୍ସଲଃ ।
ଚତୁର୍ବର୍ଣ୍ଣ୍ୟଂ ସ୍ୱଧର୍ମେଣ ନିତ୍ୟମେବାଭିପାଳୟନ୍ ।। (୮)

ଅର୍ଥାତ୍ ଦଶରଥ ନାମରେ ଜଣେ ତେଜସ୍ୱୀ ଓ ଧର୍ମପରାୟଣ ରାଜା ପୃଥିବୀରେ ଥିଲେ । ସେ ଚାରି ବର୍ଣ୍ଣର ଲୋକଙ୍କୁ ନିଜ ନିଜ କାମରେ ଠିକଣା ଭାବରେ ଲଗାଇ ପ୍ରଜାପାଳନ କରୁଥିଲେ । ଏଥିରୁ ଏହି ସତ୍ୟ ପ୍ରକଟିତ ହେଉଛି ଯେ ରାଜାଙ୍କର ତେଜସ୍ୱିତା ଓ ଧର୍ମପରାୟଣତାର ପ୍ରଧାନ ମାପକାଠି ହେଉଛି ତାଙ୍କ ରାଜ୍ୟରେ ଉତ୍ତମ ରୂପେ ବର୍ଣ୍ଣଧର୍ମ ପାଳନ କରାଇ ପାରିବାରେ ତାଙ୍କଠାରେ ଥିବା ଦକ୍ଷତା । ଦକ୍ଷ ରାଜା ହିଁ ତାଙ୍କ ରାଜ୍ୟରେ ଉତ୍ତମ ରୂପେ ଶ୍ରମବିଭାଜନ କରାଇ ଉପଯୁକ୍ତ ଲୋକମାନଙ୍କୁ ସେମାନଙ୍କ ଯୋଗ୍ୟତାନୁରୂପ କର୍ମରେ ନିୟୋଜିତ କରିଥାନ୍ତି । ଏତଦ୍ୱାରା ଶ୍ରମ ବଳକା ପଡ଼ିଲେ କିମ୍ବା ନିଅଣ୍ଟ ହେଲେ ଯେଉଁ ଶ୍ରମସଙ୍କଟ ଦେଖା ଦେଇଥାନ୍ତା, ତାହାକୁ ସଫଳ ଭାବରେ ପ୍ରତିହତ କରିହୁଏ । ଅଶୋକବନରେ ସୀତାଙ୍କ ମନରେ ବିଶ୍ୱାସ ଅଣାଇବା ଲାଗି ହନୁମାନ ରାମଙ୍କର ସ୍ତୁତି-ଗାନ କରିଛନ୍ତି ଏବଂ ତାଙ୍କର ଗୁଣାବଳୀ ଗୋଟିକ ପରେ ଗୋଟିଏ ଦର୍ଶାଇଛନ୍ତି । ଏହି ଅନୁକ୍ରମରେ ସେ କହିଛନ୍ତି

ରାମୋ ଭାମିନି ଲୋକସ୍ୟ ଚାତୁର୍ବର୍ଣ୍ଣସ୍ୟ ରକ୍ଷିତା । (୯)

ଅର୍ଥାତ୍ ଆଗୋ ମାନିନି ! ରାମ ହେଉଛନ୍ତି ସଂସାରର ଚାରି ବର୍ଣ୍ଣର ରକ୍ଷକ । ରାମ-ରାଜ୍ୟର ଭାରି ନାଁ ଥିଲା । ରାମ-ରାଜ୍ୟ କହିଲେ ସବୁ ପ୍ରକାର ସୁଖ-ସମୃଦ୍ଧିରେ ଭରପୂର ରାଜ୍ୟକୁ ବୁଝାଉଥିଲା । ଏହା ସମ୍ଭବ ହୋଇ ପାରିଥିଲା ସେଠାରେ ବର୍ଣ୍ଣଧର୍ମ ଉତ୍ତମ ରୂପେ ପାଳିତ ହେଉଥିବା ଯୋଗରୁ । ଏହାର ପାଳନ ପାଇଁ ରାମ ଏଭଳି କଠୋର ନୀତି ଅବଲମ୍ବନ କରୁଥିଲେ ଯେ ବର୍ଣ୍ଣଧର୍ମକୁ ଅବହେଳା

କରି ଶମ୍ବୂକ ନାମକ ଜଣେ ଶୂଦ୍ର ତପସ୍ୟା କରିଥିବା ହେତୁ ସେ ତାହାର ମୁଣ୍ଡକାଟି କରିଥିଲେ ।

ଏଠାରେ ପ୍ରଶ୍ନ ହୋଇପାରେ ଶୂଦ୍ରର କ'ଣ ତପସ୍ୟା କରିବାର ଅଧିକାର ନାହିଁ ? ରାମଙ୍କ ଭଳି ଜଣେ ଗୁଣୀ ରାଜା ମଣିଷ ମଣିଷ ଭିତରେ ଶ୍ରେଷ୍ଠ ବଡ଼ର ଏଭଳି ବାଛବିଚାର କଲେ ବା କେମିତି ? ପୂର୍ବରୁ କୁହାଯାଇଛି, ବର୍ଣ୍ଣ ଜନ୍ମଗତ ନଥିଲା; ଏହା ଥିଲା ଗୁଣ ଓ କର୍ମ ସହିତ ସଂପୃକ୍ତ । କେହି ଜନ୍ମରେ ବ୍ରାହ୍ମଣ ହୁଏ ନାହିଁ କିମ୍ବା ଶୂଦ୍ର ହୁଏ ନାହିଁ । ବାସ୍ତବିକ ସ୍ମୃତି-ଶାସ୍ତ୍ର ତ କହିଥାଏ

ଜନ୍ମନା ଜାୟତେ ଶୂଦ୍ରଃ ସଂସ୍କାରାତ୍ ଦ୍ୱିଜ ଉଚ୍ୟତେ ।
ବେଦାଭ୍ୟାସାଦ୍ ଭବେଦ୍ ବିପ୍ରଃ ବ୍ରହ୍ମ ଜାନାତି ବ୍ରାହ୍ମଣଃ ।

ଅର୍ଥାତ୍ ମଣିଷ ଜନ୍ମ ହୋଇଥାଏ ଶୂଦ୍ର ହିସାବରେ । ସଂସ୍କାର ମଧ୍ୟ ଦେଇ ଗତି କରି ସେ ହୁଏ ଦ୍ୱିଜ; ବେଦାଭ୍ୟାସ କରି ହୁଏ ବିପ୍ର; ଏବଂ ବ୍ରହ୍ମ ବିଷୟରେ ଜ୍ଞାନ ଅର୍ଜନ କରି ହୁଏ ବ୍ରାହ୍ମଣ । ଜଣେ ଶୂଦ୍ରଭାବାପନ୍ନ ବ୍ୟକ୍ତି ତା'ର ସ୍ୱଧର୍ମକୁ ଛାଡ଼ି ଯଦି ତପସ୍ୟା କରିବସେ, ତାହା ସମାଜ ପକ୍ଷରେ ମଙ୍ଗଳଦାୟକ ହେବ ନାହିଁ । ସେ ଜାଣି ଜଣେ ଭଣ୍ଡ ତପସ୍ୱୀ ହିସାବରେ ଗଣା ହେବ । ଅତଏବ ତପସ୍ୟାରତ ହେବା ପାଇଁ ବ୍ୟକ୍ତିର ଉପଯୁକ୍ତ ମାନସିକ ସାମର୍ଥ୍ୟ ଥିବା ଆବଶ୍ୟକ । ଏହିପରି ମାନସିକ ସାମର୍ଥ୍ୟ ନଥିବା ଜଣେ ବ୍ୟକ୍ତି ଭଣ୍ଡ ତପସ୍ୱୀ ସାଜିବା ପାଇଁ ଅପଚେଷ୍ଟା କରୁଥିବାରୁ ଧର୍ମବତ୍ସଳ ଓ ବର୍ଣ୍ଣଧର୍ମର ରକ୍ଷକ ରାଜା ରାମ ତାଙ୍କୁ ଦଣ୍ଡ ଦେଇଥିଲେ । ଏହି ଦୃଷ୍ଟିରୁ ବିଚାର କଲେ ଆମେ ଦେଖିବା ଯେ ରାମଙ୍କ କାର୍ଯ୍ୟ ଧର୍ମଦୃଷ୍ଟିରୁ ଆଦୌ ଗର୍ହିତ ନଥିଲା କିମ୍ବା ଏହା କରିବାରେ ତାଙ୍କ ପାଖରେ ଜାତିଗତ ଭେଦଭାବର ସାମାନ୍ୟତମ ବିଚାର ନଥିଲା । ରାମ ଜାତିବିଭେଦରେ ବିଶ୍ୱାସ କରୁଥିଲେ ଶବରୀର ଉଚ୍ଛିଷ୍ଟ କ'ଣ ଖାଇଥାନ୍ତେ ?

ଆବଶ୍ୟକ ପଡ଼ିଲେ ବଳ ପ୍ରୟୋଗପୂର୍ବକ ରାଜାଙ୍କୁ ବର୍ଣ୍ଣଧର୍ମ ରକ୍ଷା କରିବାକୁ ପଡ଼ୁଥିଲା । ରାଜପୁତ୍ର ଓ ଅନ୍ୟାନ୍ୟ କ୍ଷତ୍ରିୟମାନେ ମଧ୍ୟ ସେହି ନୀତି ଅନୁସରଣ କରୁଥିଲେ । ତାଡ଼କା ରାକ୍ଷସୀକୁ ବଧ କରିବା ପାଇଁ ସ୍ତ୍ରୀହତ୍ୟା ଦୂଷଣୀୟ ବୋଲି ଭାବି କାଳେ ରାମଙ୍କ ମନରେ ଦ୍ୱିଧାଭାବ ଆସିବ, ସେଥିପାଇଁ ଋଷି ବିଶ୍ୱାମିତ୍ର ତାଙ୍କୁ ଆଗରୁ ବୁଝାଇ ଦେଇ କହିଛନ୍ତି

ନହି ତେ ସ୍ତ୍ରୀବଧକୃତେ ଘୃଣା କାର୍ଯ୍ୟା ନରୋତ୍ତମ ।
ଚାତୁର୍ବର୍ଣ୍ଣ୍ୟଂ ହିତାର୍ଥଂ ହି କର୍ତ୍ତବ୍ୟଂ ରାଜସୂନୁନା । (୧୦)

ଅର୍ଥାତ୍ ହେ ପୁରୁଷଶ୍ରେଷ୍ଠ ! ଏଠାରେ ସ୍ତ୍ରୀବଧ କରିବା ତୁମ ପକ୍ଷରେ ଘୃଣିତ କର୍ମ ନୁହେଁ । ରାଜପୁତ୍ରଙ୍କର କର୍ତ୍ତବ୍ୟ ହେଉଛି ଚାରି ବର୍ଣ୍ଣଙ୍କର ମଙ୍ଗଳସାଧନ

କରିବା । ଏଠାରେ ପ୍ରଶ୍ନ ହୋଇପାରେ ତାଟକାବଧ ଦ୍ୱାରା କଭଳି ଭାବରେ ଚାତୁର୍ବର୍ଣ୍ଣ୍ୟ-ଧର୍ମ ରକ୍ଷିତ ହେବ ? ଋଷିମାନେ ଥିଲେ ଅରଣ୍ୟବାସୀ । ସେମାନେ ତପସ୍ୟାରତ ଥିଲେ; ଯଜ୍ଞ କର୍ମାଦ କରୁଥିଲେ; ଏବଂ ସମାଜର ମଙ୍ଗଳ ଲାଗି ସର୍ବଦା ଚନ୍ତିତ ଥିଲେ । ଜନସମୁଦାୟଙ୍କର କପରି ଆଧ୍ୟାତ୍ମିକ ଓ ଭୌତକ ଉଭୟବଧ ଉନ୍ନତ ସାଧିତ ହେବ, ସେ ବଷୟରେ ନରତ ଅନୁଧ୍ୟାନ ଓ ଅନୁଚନ୍ତନ ଥିଲା ସେମାନଙ୍କର କର୍ତ୍ତବ୍ୟ । ସେମାନେ ଥିଲେ ଶାନ୍ତକାମୀ ଓ ଅହିଂସ । କନ୍ତୁ ରାକ୍ଷସମାନେ ସେମାନଙ୍କୁ ଏହି କର୍ମ କରିବାରେ ବାଧା ଦେଉଥିଲେ । ଏହା ଫଳରେ ମୁନଋଷିମାନଙ୍କର ନ୍ୟାୟ୍ୟ କର୍ମସାଧନ ବ୍ୟାହତ ହେଉଥିଲା । ରାଜାଙ୍କ କର୍ତ୍ତବ୍ୟ ଥିଲା ସମସ୍ତଙ୍କୁ ବର୍ଣ୍ଣଧର୍ମ ଅନୁସାରେ କର୍ତ୍ତବ୍ୟ ପାଳନ ପାଇଁ ସୁବଧା-ସୁଯୋଗ ଦେବା ଏବଂ ଏଥିପାଇଁ ଥିବା ସମସ୍ତ ବାଧାବପଦକୁ ପ୍ରତହତ କରିବା । ତାଟକା ରାକ୍ଷସୀ ସ୍ତ୍ରୀ ହେଲେ ମଧ୍ୟ ତାହାର କାର୍ଯ୍ୟାବଳୀ ଋଷି ବ୍ରାହ୍ମଣମାନଙ୍କର ସ୍ୱଧର୍ମପାଳନରେ ବାଧା ଉପୁଜାଉଥିଲା । ତେଣୁ ସେ ଥିଲା ରାମଙ୍କର ବଧଯୋଗ୍ୟା । ବଶ୍ୱାମିତ୍ର ରାମଙ୍କ ଆଗରେ ବାଢ଼ିଥିବା ଯୁକ୍ତିର ଏହା ହିଁ ହେଉଛି ତାତ୍ପର୍ଯ୍ୟ । ଏଥିରୁ ଏହି ସତ୍ୟ ନଷ୍କାସିତ ହେବ ଯେ ବର୍ଣ୍ଣଧର୍ମର ରକ୍ଷା ଲାଗି ରାମାୟଣୀୟ ରାଜଶକ୍ତି ସର୍ବଦା ଥିଲା ସଜାଗ ଏବଂ ଆବଶ୍ୟକ ହେଲେ ଏଥିପାଇଁ ବଳପ୍ରୟୋଗ ମଧ୍ୟ କରାଯାଉଥିଲା ।

ରାଜାଙ୍କର କର୍ତ୍ତବ୍ୟ ଥିଲା ସମୁଦାୟ ପ୍ରଜାଙ୍କର ମଙ୍ଗଳ ଚାହିଁବା । ଚାତୁର୍ବର୍ଣ୍ଣ୍ୟର ଲକ୍ଷ୍ୟ ମଧ୍ୟ ଥିଲା ଅନୁରୂପ । ଏଣୁ ରାଜାଙ୍କ କର୍ତ୍ତବ୍ୟ ଓ ଚାତୁର୍ବର୍ଣ୍ଣ୍ୟର ଲକ୍ଷ୍ୟ ମଧ୍ୟରେ ଆଦୌ ବବାଦ ଓ ସଂଘର୍ଷ ଉପୁଜୁ ନଥିଲା । ସେଥିପାଇଁ ରାଜା ସର୍ବଦା ଚାତୁର୍ବର୍ଣ୍ଣ୍ୟର ରକ୍ଷଣ ଲାଗି ଚେଷ୍ଟିତ ଥିଲେ । ଚାତୁର୍ବର୍ଣ୍ଣ୍ୟବ୍ୟବସ୍ଥା କପରି ସମସ୍ତଙ୍କର କଲ୍ୟାଣ ଲାଗି ଉଦ୍ଦିଷ୍ଟ ଥିଲା, ସେ ବଷୟରେ ବାଳଶାସ୍ତ୍ରୀ ହରଦାସ ଯେଉଁ ସ୍ପଷ୍ଟ ମତ ବ୍ୟକ୍ତ କରିଛନ୍ତି, ତାହା ଏଠାରେ ପ୍ରଣିଧାନଯୋଗ୍ୟ

> No strife, or causes of hatred, or discontent could be traced to the source of this 'Chaturverya' system. It was inspired by intense love and anxiety for the welfare of the whole society as such. (୧୧)

ଅତଏବ ଜନସମୁଦାୟର ଅଭିବୃଦ୍ଧି ଘଟାଇବା ଥିଲା ଚାତୁର୍ବର୍ଣ୍ଣ୍ୟର ଲକ୍ଷ୍ୟ । ଚାତୁର୍ବର୍ଣ୍ଣ୍ୟ ଜାତବଭାଗରେ ସଙ୍କୀର୍ଣ୍ଣ ଦଳ୍ଗୁଡ଼ଳକୁ ଅତକ୍ରମ କରିଯାଇଥିଲା । ସକଳ ବ୍ୟକ୍ତଙ୍କର କର୍ମକୌଶଳ ଅଣାଇବା ଲାଗି ଏହା ଥିଲା ଏକ ବହୁଚନ୍ତିତ ଉତ୍ତମ ବ୍ୟବସ୍ଥା ।

## ବ୍ରାହ୍ମଣବର୍ଣ୍ଣର ପ୍ରାଥମିକତା

ଭାରତୀୟ ସମାଜରେ ବ୍ରାହ୍ମଣମାନେ ବୈଦିକ କାଳରୁ ହିଁ ପ୍ରାଥମିକତା ପାଇଆସିଛନ୍ତି । ରାଜନ୍ୟଗୋଷ୍ଠୀ (କ୍ଷତ୍ରିୟଗୋଷ୍ଠୀ) ବାହୁବଳର ଅଧିକାରୀ ଥିଲେ ହେଁ ବ୍ରାହ୍ମଣଗୋଷ୍ଠୀ ନିକଟରେ ଥିଲେ ନତମସ୍ତକ । ବ୍ରାହ୍ମଣମାନଙ୍କୁ କୁହାଯାଉଥିଲା 'ପୁରୋହିତ' ବା 'ଆଗରେ ରହିଥିବା ବ୍ୟକ୍ତି' । ବାସ୍ତବିକ ବ୍ରାହ୍ମଣମାନେ ଥିଲେ ସବୁ କଥାକୁ ଆଗୁଆ । ସେଥିପାଇଁ ତ ଅଥର୍ବବେଦରେ ଠାଏ କୁହାଯାଇଛି

ବୟଂ ରାଷ୍ଟ୍ରେ ଜାଗୃୟାଂସଃ ପୁରୋହିତାଃ

ଅର୍ଥାତ୍ ଆମେ ପୁରୋହିତମାନେ ରାଷ୍ଟ୍ରରେ ସର୍ବଦା ଜାଗ୍ରତ ରହିଛୁ । ସମସ୍ତେ ଶୋଇପଡ଼ି ପାରନ୍ତି; କିନ୍ତୁ ପୁରୋହିତମାନଙ୍କୁ ବା ବ୍ରାହ୍ମଣମାନଙ୍କୁ ରାଷ୍ଟ୍ର ଓ ସମାଜର ହିତ ଲାଗି ସଦା ଜାଗ୍ରତ ରହିବାକୁ ପଡ଼ିବ । ସେମାନଙ୍କର ଏହି ପ୍ରତିବଦ୍ଧତା ସେମାନଙ୍କୁ ସମାଜରେ ଉଚ୍ଚତମ ଆସନ ଆଣି ଦେଇଥିଲା । ସେମାନେ ସମାଜ କଥା ଚିନ୍ତା କରୁଥିଲେ; ନିଜର ସଙ୍କୀର୍ଣ୍ଣ ସ୍ୱାର୍ଥକୁ ଜଳାଞ୍ଜଳି ଦେଇଥିଲେ । ତେଣୁ ସମାଜ ସେମାନଙ୍କ କଥା ଚିନ୍ତା କରୁଥିଲା । ଯେଉଁ ଦିନଠାରୁ ସେମାନେ ନାନା ଐତିହାସିକ କାରଣରୁ ନିଜ କଥା ଭାବିବା ପାଇଁ ବାଧ୍ୟ ହେଲେ, ସେହିଦିନଠାରୁ ସେମାନଙ୍କର ସାମାଜିକ ପ୍ରତିବଦ୍ଧତା ଊଣା ହେବାକୁ ଲାଗିଲା ଏବଂ ସେମାନଙ୍କର ସାମାଜିକ ସ୍ଥିତିରେ ଅବକ୍ଷୟ ଦେଖା ଦିବାକୁ ଲାଗିଲା । ବିବାହ ହେଉ ବା ବ୍ରତ ହେଉ ବା ମନ୍ତ୍ରି-ସଭା ହେଉ ବା ଯୁଦ୍ଧ ହେଉ ସବୁ କ୍ଷେତ୍ରରେ ବ୍ରାହ୍ମଣଙ୍କ ବାଣୀ ଥିଲା ଶେଷ ବାଣୀ ଏବଂ ତାହାକୁ ସମସ୍ତେ ସ୍ୱୀକାର କରୁଥିଲେ । ପୁରୋହିତଙ୍କୁ ଯୁଦ୍ଧକ୍ଷେତ୍ରରେ ମଧ୍ୟ ସୈନ୍ୟବାହିନୀର ସର୍ବାଗ୍ରେ ରହିବାକୁ ପଡ଼ୁଥିଲା । ବୈଦିକ 'ଦାଶରାଜ୍ଞ' ଯୁଦ୍ଧରେ କିପରି ବଶିଷ୍ଠ ଓ ବିଶ୍ୱାମିତ୍ର ସ୍ୱ ସ୍ୱ ସେନାବାହିନୀକୁ ପରିଚାଳିତ କରିଥିଲେ ତାହା ଅତି ରୋଚକ ଭାବରେ ବର୍ଣ୍ଣିତ । ସେତେବେଳେ ସେମାନେ ଏତେ ଶକ୍ତିଶାଳୀ ଥିଲେ ଯେ ସେମାନଙ୍କ ଯୋଗରୁ ହିଁ ରାଜାମାନଙ୍କୁ ମହା ମହା ଯୁଦ୍ଧରେ ଅବତୀର୍ଣ୍ଣ ହେବାକୁ ପଡ଼ିଥିଲା । କିପରି ବଶିଷ୍ଠ ଓ ବିଶ୍ୱାମିତ୍ରଙ୍କ ମଧ୍ୟରେ ଥିବା ବିବାଦ ଯୋଗୁ 'ଦଶରାଜ୍ଞ ଯୁଦ୍ଧ'ର ଉଦ୍ଭବ ହୋଇଥିଲା ତାହା ଏହି ପୁସ୍ତକର ପ୍ରଥମ ଭାଗସ୍ଥ ଚତୁର୍ଥ ପରିଚ୍ଛେଦରେ ବର୍ଣ୍ଣିତ । ଏ ତ ଗଲା ବୈଦିକ ଯୁଗର ସ୍ଥିତି । ରାମାୟଣ ଯୁଗରେ ମଧ୍ୟ ଅଳ୍ପ ବହୁତ ଏହି ପ୍ରକାର ସ୍ଥିତି ବ୍ରାହ୍ମଣମାନଙ୍କ ପାଇଁ ଥିଲା; ଏହିଭଳି ଉଚ୍ଚ ଆସନ ସେମାନଙ୍କୁ ଦିଆଯାଉଥିଲା । କିନ୍ତୁ ସେମାନେ ଆଉ ସେମାନଙ୍କ ବୈଦିକ ପୂର୍ବଜମାନଙ୍କ ଭଳି ସମର କ୍ଷେତ୍ରରେ

ଅବଶାର୍ଣ୍ଣ ହୋଇ ନଥିଲେ । ରାମାୟଣରେ କୁଆପି କୌଣସି ପୁରୋହିତ ସେନା-ବଳ ସହିତ ଯୁଦ୍ଧକୁ ବାହାରିଥିବା କଥାର ଉଲ୍ଲେଖ ନାହିଁ ।

ସମାଜକଲ୍ୟାଣ ଲାଗି ବ୍ରାହ୍ମଣମାନଙ୍କର ବ୍ରତ, ଆତ୍ମତ୍ୟାଗ, ତପୋନିଷ୍ଠତା, ଚରିତ୍ରର୍କି ଆଦି ସଦ୍‌ଗୁଣରାଶି ସେମାନଙ୍କୁ ଏଭଳି ଶୀର୍ଷତମ ଆସନ ଦେଇଥିଲା । ସେଥିପାଇଁ ତ ସେମାନେ ଥିଲେ ଦେବତାମାନଙ୍କ ଭଳି ପୂଜ୍ୟ ଏବଂ ସେମାନଙ୍କୁ କୁହାଯାଉଥିଲା 'ଭୂଦେବ' ବା 'ପୃଥିବୀର ଦେବତା' । ଧୂଳିମାଟିର ସଂସାରରେ ରକ୍ତମାଂସର ଶରୀର ଧରି ଯଦି କେହି ବିଚରଣ କରୁଥାନ୍ତି, ସେ ହୋଉଛନ୍ତି ବ୍ରାହ୍ମଣ । ବାସମ୍ ବ୍ରାହ୍ମଣମାନଙ୍କର ଏହି ସାମାଜିକ ସ୍ଥିତି ପ୍ରତି ଲକ୍ଷ୍ୟ କରି ଯାହା କହିଛନ୍ତି, ତାହା ଏଠାରେ ପ୍ରଣିଧାନଯୋଗ୍ୟ

> The Brahmin was a great divinity in human form. It was thought that his spiritual power could instantly destroy the king and the army, if they attempted to infringe his rights. In law he claimed great privileges and in every respect he demanded precedence, honour and worship. (୧୨)

ବାଲ୍ମୀକି ରାମାୟଣ ଗ୍ରନ୍ଥଟିକୁ ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀରେ ପୂର୍ବରୁ ପରମ୍ପରାକ୍ରମେ ଗଢ଼ିଆସୁଥିବା ଲୋକ-କଥା ଭିତ୍ତିରେ ରଚନା କରିଥିଲେ । ଏହା ଥିଲା ବୌଦ୍ଧ ଧର୍ମର ଅଭ୍ୟୁଦୟର କାଳ । ସେତେବେଳେ ସମାଜରେ ବ୍ରାହ୍ମଣମାନଙ୍କ ଅବସ୍ଥା ଯାହା ଥିଲା, ତାହା ନିଶ୍ଚିତ ଭାବରେ ବାଲ୍ମୀକିଙ୍କ ମନରେ ରେଖାପାତ କରିଛି ଏବଂ ତଦନୁଯାୟୀ ତାହା ରାମାୟଣରେ ପ୍ରତିଫଳିତ । ବୌଦ୍ଧମାନେ ସାଧାରଣତଃ ବ୍ରାହ୍ମଣବିରୋଧୀ ଥାଇ କ୍ଷତ୍ରିୟମାନଙ୍କୁ ଅଧିକତର ମାନ୍ୟତା ଦେଉଥିଲେ ମଧ୍ୟ ଶୀଳନିଷ୍ଠ ବ୍ରାହ୍ମଣ ଦେଖିଥିଲେ ତାଙ୍କୁ ଉପଯୁକ୍ତ ମର୍ଯ୍ୟାଦା ଦେଉଥିଲେ । ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନ ନାମକ ଦୁଇ ଜଣ ବ୍ରାହ୍ମଣଙ୍କୁ ବୁଦ୍ଧଦେବ ଭିକ୍ଷୁ-ସମ୍ପ୍ରଦାୟରେ ଗ୍ରହଣ କରି ସେମାନଙ୍କୁ 'ଅଗ୍ରଶ୍ରାବକ' ଆଖ୍ୟା ଦେଇଥିବା କଥାଟି ଏହାର ନିଦର୍ଶନ । ଖାଲି ସେତିକି ନୁହେଁ, ବୁଦ୍ଧଦେବଙ୍କ ଉପଦେଶବାଣୀ ସନ୍ନିବେଶିତ ହୋଇଥିବା ପାଲି ଧମ୍ମପଦ୍ୟ ଗ୍ରନ୍ଥରେ ବ୍ରାହ୍ମଣମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ବର୍ଗ ରହିଅଛି ଏବଂ ଉପଯୁକ୍ତ ବ୍ରାହ୍ମଣ କିପରି ମାନ୍ୟାର୍ହ, ତାହା ଦର୍ଶାଯାଇଛି । (୧୩) ପୁନଶ୍ଚ ବାସମ୍‌ଙ୍କ ଭାଷାରେ

Even the Budbist scriptures, though they do not admit the more extravagant Brahminical claims and regularly exalt the Kshatriya over the Brahmin, recognise his greatness, if he is pious and sincere. (୧୪)

ଏଥିରୁ ଅନୁମିତ ହେବ ଯେ ବୌଦ୍ଧ ଧର୍ମର ପ୍ରଭାବ ଫଳରେ ମଧ୍ୟ ସମାଜରେ ପୂର୍ବ ଭଳି ଯୋଗ୍ୟ ବ୍ରାହ୍ମଣମାନଙ୍କ ପ୍ରତି ଆଦର ସମ୍ମାନ ରହିଥିଲା । ଏହି ପୃଷ୍ଠଭୂମିରେ ବାଲ୍ମୀକି ବ୍ରାହ୍ମଣ-ସମ୍ପ୍ରଦାୟକୁ ଚାରି ବର୍ଣ୍ଣ ମଧ୍ୟରେ ପ୍ରାଥମିକତା ଦେବା ଥିଲା ଅତ୍ୟନ୍ତ ସ୍ୱାଭାବିକ ।

ବାଲ୍ମୀକିଙ୍କ ରାମାୟଣରେ ବ୍ରାହ୍ମଣଙ୍କୁ ଏହିଭଳି ପ୍ରାଥମିକତା ଦେଇଥିବାର ବହୁ ଦୃଷ୍ଟାନ୍ତ ପରିଲକ୍ଷିତ । ଉଦାହରଣସ୍ୱରୂପ ପୁରୋହିତ ବଶିଷ୍ଠଙ୍କୁ ଆସୁଥିବାର ଦେଖି ରାଜା ଦଶରଥ ତାଙ୍କୁ ସମ୍ମାନ ଦେଖାଇବା ପାଇଁ ନିଜ ଆସନରୁ ଉଠି ଯାଇଥିବା କଥାର ବର୍ଣ୍ଣନା ତହିଁରେ ଅଛି । ଦଶରଥ ରାମଙ୍କୁ ଯୁବରାଜପଦରେ ଅଭିଷିକ୍ତ କରାଇବା ଲାଗି ଇଚ୍ଛାପୋଷଣ କରିଛନ୍ତି । ସେଥିପାଇଁ ଯାବତୀୟ ବ୍ୟବସ୍ଥା କରିବା ପାଇଁ ସେ ପୁରୋହିତ ବଶିଷ୍ଠଙ୍କୁ ଅନୁରୋଧ କରିଛନ୍ତି । ବଶିଷ୍ଠ ତାହା କରି ସାରି ଯେତେବେଳେ ଦଶରଥଙ୍କ ଦରବାରରେ ପଦାର୍ପଣ କରିଛନ୍ତି, ସେହି ସ୍ଥିତିକୁ ବର୍ଣ୍ଣନା କରିବାକୁ ଯାଇ ବାଲ୍ମୀକି କହିଛନ୍ତି

ତମାଗତମଭିପ୍ରେକ୍ଷ୍ୟ ହିତ୍ୱା ରାଜାସନଂ ନୃପଃ ।
ପପ୍ରଚ୍ଛ ସ୍ୱମତଂ ତସ୍ମୈ କୃତମିତ୍ୟଭିବେଦୟତ୍ ॥ (୧୫)

ଅର୍ଥାତ୍ ତାଙ୍କୁ (ବଶିଷ୍ଠଙ୍କୁ) ଆସୁଥିବାର ଦେଖି ରାଜା ସିଂହାସନ ଛାଡ଼ି ଠିଆ ହୋଇଗଲେ ଏବଂ ତାଙ୍କୁ ପଚାରିବାକୁ ଲାଗିଲେ, "ମହାଶୟ ! ମୋ'ର ଇଚ୍ଛା କ'ଣ ଆପଣ ସିଦ୍ଧ କଲେ ?" ବଶିଷ୍ଠ ଉତ୍ତର ଦେଲେ, "ହଁ, କଲି ।" ଏଥିରୁ ଜଣାପଡ଼ିବ ରାଜା ଦଶରଥଙ୍କ ଆଖିରେ ବ୍ରାହ୍ମଣ ପୁରୋହିତ ବଶିଷ୍ଠ କେତେ ଦୂର ଥିଲେ ବରଣୀୟ ଓ ପୂଜାସ୍ପଦ ! ଆଉ ଉଦାହରଣ ଆମେ ପାଇବା ରାମାୟଣର ୧୦୦ତମ ସର୍ଗରେ ଯେଉଁଠି ରାମଙ୍କୁ ଭରତ ବନବାସରୁ ଫେରିଯିବା ପାଇଁ ଆକୁଳ ଅନୁରୋଧ କରିଛନ୍ତି ଏବଂ ସେହି ଅବସରରେ ରାମ ତାଙ୍କୁ କିଛି କୁଶଳ ପ୍ରଶ୍ନ ପଚାରିଛନ୍ତି । ଏହି ପ୍ରଶ୍ନ ପଚାରିବା ମାଧ୍ୟମରେ ରାଜାଙ୍କର ପୁରୋହିତଙ୍କ ପ୍ରତି ଥିବା କର୍ତ୍ତବ୍ୟ ବିଷୟରେ ମଧ୍ୟ ସେ କିଛିଟା ସୂଚନା ଦେଇଛନ୍ତି । ସେ କହିଛନ୍ତି

"ସ କଚ୍ଚିତ୍ ବ୍ରାହ୍ମଣୋ ବିଦ୍ୱାନ୍ ଧର୍ମନିତ୍ୟୋ ମହାଦ୍ୟୁତିଃ ।
ଇକ୍ଷ୍ୱାକୂଣାମୁପାଧ୍ୟାୟୋ ଯଥାବତ୍ ତାତ ପୂଜ୍ୟତେ ॥" (୧୬–କ)

ଅର୍ଥାତ୍ ଆରେ ବାପା ତୁମେ କ'ଣ ସବୁବେଳେ ଧର୍ମନିଷ୍ଠ ତେଜସ୍ୱୀ ବିଦ୍ୱାନ୍ ଇକ୍ଷ୍ୱାକୁ-କୁଳର ବ୍ରାହ୍ମଣ ପୁରୋହିତଙ୍କୁ ପୂଜା କରୁଛ ? ଏଥିରୁ ବ୍ରାହ୍ମଣ ରାଜ-ପୁରୋହିତ କେତେ ଦୂର ପୂଜାର୍ହ ଥିଲେ, ତାହା ସହଜରେ ଜଣାପଡ଼େ । ଦାନକୁ ସେତେବେଳେ ମହା ପୁଣ୍ୟ ବୋଲି ଧରାଯାଉଥିଲା ଏବଂ ଏହା କେବଳ ଯୋଗ୍ୟ ବ୍ୟକ୍ତିଙ୍କୁ ହିଁ ଦେବା ଲାଗି ଧର୍ମର ବିଧି ଥିଲା । ଏହାକୁ ଗ୍ରହଣ କରିବାର ଅଧିକାର କେବଳ ବ୍ରାହ୍ମଣମାନଙ୍କର ହିଁ ଥିଲା । ସୀତା ରାମଙ୍କ ସହିତ ବନଗମନ କଲାବେଳେ ଗଙ୍ଗା ପାରି ହେବା ସମୟରେ ଗଙ୍ଗା ମାତାଙ୍କୁ ପ୍ରାର୍ଥନା କରି ତାଙ୍କ ଆଶୀର୍ବାଦ ଭିକ୍ଷା କରୁଛନ୍ତି ଏବଂ ବନବାସକାଳ ଉତ୍ତୀର୍ଣ୍ଣ ହେବାପରେ ଭଲରେ ଭଲରେ ଫେରି ଆସିବା ପାଇଁ ପ୍ରାର୍ଥନା କରୁଛନ୍ତି । ସେତେବେଳେ ସେ କହୁଛନ୍ତି;

ଗବାଂ ଶତସହସ୍ରଂ ଚ ବସ୍ତ୍ରାଣ୍ୟନ୍ନଂ ଚ ପେଶଲମ୍ ।
ବ୍ରାହ୍ମଣେଭ୍ୟଃ ପ୍ରଦାସ୍ୟାମି ତବ ପ୍ରିୟଚିକୀର୍ଷୟା ॥ (୧୭)

ଅର୍ଥାତ୍ ତୁମକୁ ଖୁସି କରାଇବା ପାଇଁ ମୁଁ (ଫେରି ଆସିଲେ) ବ୍ରାହ୍ମଣମାନଙ୍କୁ ଲକ୍ଷେ ଗାଈ, ପ୍ରଚୁର ବସ୍ତ୍ର ତଥା ଅନ୍ନ ଦାନ କରିବି । ବ୍ରାହ୍ମଣଙ୍କୁ ଦାନ କଲେ, ବ୍ରାହ୍ମଣଙ୍କୁ ଖୁସି କରାଇଲେ ଦେବଦେବୀମାନେ ଯେ ତୁଷ୍ଟ ହୁଅନ୍ତି ଏହି ଭାବଟି ଏଠାରେ ବିଦ୍ୟମାନ । ବ୍ରାହ୍ମଣ ଯାହା ମାଗନ୍ତି, ତାଙ୍କୁ ଯଦି ତାହା ଦିଆ ନଯାଏ, ତେବେ ତାହା ଏକ ବଡ଼ ପାପ ବୋଲି ଧରାଯାଉଥିଲା । ଅତିଥିଙ୍କୁ ଦେବତା ଭଳି ଜ୍ଞାନ କରି ତାଙ୍କର ପୂଜା କରାଯାଉଥିଲା । ଆଉ ଏହି ଅତିଥି ଯଦି ବ୍ରାହ୍ମଣ ଥିଲେ, ତେବେ ତାଙ୍କ ପ୍ରତି ଅଧିକତର ମାନ୍ୟତା ପ୍ରଦର୍ଶନ କରାଯାଉଥିଲା । ସେଥିପାଇଁ ତ ବ୍ରାହ୍ମଣରୂପଧାରୀ ରାବଣକୁ ଭିକ୍ଷା ଦେବାଲାଗି ସୀତାଙ୍କୁ ନିଜ ନିରାପତ୍ତା ପ୍ରତି ଭ୍ରୂକ୍ଷେପ ନକରି ଆଗେଇ ଆସିବାକୁ ପଡ଼ିଥିଲା ! ବ୍ରକିଙ୍ଗ୍ଟନ ଏହି ସ୍ଥିତିକୁ ବର୍ଣ୍ଣନା କରିବାକୁ ଯାଇ କୁହନ୍ତି

Linked with the obligation to give alms to Brahmins is that to provide hospitality, of which one instance is central to the narrative, since it is for this reason that Sita feels obliged to receive Ravana when he comes as a wandering Brahmin. (୧୭)

ଦେବତାମାନଙ୍କ ଭଳି ବ୍ରାହ୍ମଣମାନଙ୍କୁ ମାନ୍ୟତା ଦିଆଯାଉଥିଲା । ସେମାନଙ୍କୁ 'ଭୂମିଦେବାଃ' ବା ପୃଥିବୀର ଦେବଗଣ ବୋଲି କହି ଦେବତାଙ୍କ ସହିତରେ ପୂଜା କରାଯାଉଥିଲା । ପୁରୋହିତ ହିସାବରେ ସେମାନେ ହିଁ କେବଳ ଯଜ୍ଞାଦି କର୍ମ ସମ୍ପନ୍ନ କରୁଥିଲେ । ସେତେବେଳେ ବିଶ୍ୱାସ ଥିଲା ଯେ ଯଜ୍ଞାଦି କର୍ମ ସମ୍ପାଦନ ଦ୍ୱାରା ମନୁଷ୍ୟର ସ୍ୱର୍ଗପ୍ରାପ୍ତି ଘଟିବ । ଅତଏବ, ସ୍ୱର୍ଗପ୍ରାପ୍ତିରେ ସହାୟକ ହେଉଥିବା ଗୋଷ୍ଠୀଙ୍କୁ ମାନ୍ୟତା ଦେବା ଛଡ଼ା ସମାଜର ଗତ୍ୟନ୍ତର ନଥିଲା । ବ୍ରାହ୍ମଣମାନଙ୍କର ପରାମର୍ଶ ସକଳ ପ୍ରକାର ସଙ୍କଟ ସମୟରେ ନିଆ ଯାଉଥିଲା । ଧର୍ମସମ୍ପର୍କୀୟ ସଙ୍କଟ ହେଉ ଅଥବା ଧର୍ମେତର କୌଣସି ବିଷୟକ ସଙ୍କଟ ହେଉ, ସବୁ କ୍ଷେତ୍ରରେ ବ୍ରାହ୍ମଣମାନଙ୍କର ପରାମର୍ଶ ନିଆଯାଉଥିଲା । ରାଜା ଲୋମପାଦଙ୍କ ରାଜ୍ୟରେ ଦୁର୍ଭିକ୍ଷ ପଡ଼ିଥିଲା ବେଳେ ସେଥିରୁ ଉଦ୍ଧାର ପାଇବା ଲାଗି ସେ ବ୍ରାହ୍ମଣମାନଙ୍କ ପରାମର୍ଶ ଲୋଡ଼ିଥିଲେ ଏବଂ ସେମାନଙ୍କ ପରାମର୍ଶ କ୍ରମେ ଋଷ୍ୟଶୃଙ୍ଗ ମୁନିଙ୍କୁ ତାଙ୍କ ପିତୃଆଶ୍ରମରୁ ଆଣେଇବା ଲାଗି ସକଳ ପ୍ରକାର ବ୍ୟବସ୍ଥା କରିଥିଲେ । ବ୍ରାହ୍ମଣପୁତ୍ରର ଅକାଳ ବିୟୋଗରେ ବିଚଳିତ ହୋଇ ସଂପୃକ୍ତ ବ୍ରାହ୍ମଣ ଯେତେବେଳେ ଆସି ରାମଙ୍କ ଆଗରେ ବିଳାପ କଲେ ଏବଂ କହିଲେ ଯେ ରାମଙ୍କ ରାଜ୍ୟରେ ଘଟିଥିବା ପାପାଚରଣ ଯୋଗୁଁ ହିଁ ତାଙ୍କ ପୁତ୍ରର ଅକାଳ ବିୟୋଗ ଘଟିଲା, ସେତେବେଳେ ରାମ ଖୁବ୍ ଉଦ୍‌ବିଗ୍ନ ହୋଇଉଠିଲେ । ଏହାର କାରଣ ଜାଣିବା ପାଇଁ ସେ ବଶିଷ୍ଠ, ମାର୍କଣ୍ଡେୟ, ମୌଦ୍‌ଗଲ୍ୟ, ବାମଦେବ, କାଶ୍ୟପ ଆଦି ବ୍ରାହ୍ମଣଙ୍କ ସହିତ ପରାମର୍ଶ କଲେ । ଏଥିରୁ ଜଣାପଡ଼ୁଛି ଯେ ସକଳ ପ୍ରକାର ସଙ୍କଟରେ ବ୍ରାହ୍ମଣମାନଙ୍କ ସହିତ ପରାମର୍ଶ କରିବା ଥିଲା ଶାସକଙ୍କର କର୍ତ୍ତବ୍ୟ ଏବଂ ସେମାନେ ଯାହା କହୁଥିଲେ ତାହା ଥିଲା ଅଲଂଘନୀୟ । ଶାସକ ଯାହା କରୁଥିଲେ ପ୍ରଜାମାନେ ତାହାକୁ ଅନୁସରଣ କରୁଥିଲେ । ତେଣୁ ପ୍ରଜାମାନଙ୍କ ନିକଟରେ ମଧ୍ୟ ବ୍ରାହ୍ମଣଙ୍କ ଉପଦେଶ ଥିଲା ଅଲଂଘନୀୟ ।

ବ୍ରାହ୍ମଣମାନେ କେବଳ ବେଦାଧ୍ୟୟନ ସମ୍ପର୍କରେ ଶିକ୍ଷା ଦେଉ ନଥିଲେ । ସେମାନେ ମଧ୍ୟ ରାଜନୀତି, ସମାଜ ବିଜ୍ଞାନ ଓ ଯୁଦ୍ଧବିଦ୍ୟା ସମ୍ପର୍କରେ ଶିକ୍ଷା ଦେଉଥିଲେ । ଏହା ଶର୍ମାଙ୍କ ନିମ୍ନଲିଖିତ ମନ୍ତବ୍ୟ ଦ୍ୱାରା ସମର୍ଥିତ

> From these references it is also clear that the Brahmana teachers provided instructions not only in religion and philosophy, but also in such practical subjects like archery and politics. (୧୭-କ)

ଦଶରଥଙ୍କ ବ୍ରାହ୍ମଣ ମନ୍ତ୍ରୀମାନଙ୍କୁ ରାମାୟଣରେ (୧। ।୮) 'ଶସ୍ତ୍ରଜ୍ଞାଃ ଦୃଢ଼ବିକ୍ରମାଃ' ବୋଲି କୁହାଯାଇଛି । ଅର୍ଥାତ୍ ସେମାନେ ଥିଲେ ଶସ୍ତ୍ରବିଦ୍ୟାରେ ପ୍ରବୀଣ ବୀର ପୁରୁଷ । ଏହା ବ୍ରାହ୍ମଣମାନଙ୍କ ଶସ୍ତ୍ରବିଦ୍ୟାରେ ଥିବା ପ୍ରବୀଣତା ସମ୍ପର୍କରେ ସୂଚନା ଦେଇଥାଏ । ମହାଭାରତ ସୂତ୍ରରେ ମଧ୍ୟ ବ୍ରାହ୍ମଣମାନଙ୍କ ଦ୍ୱାରା ଯୁଦ୍ଧବିଦ୍ୟା ଶିକ୍ଷାଦାନ କରାଯାଉଥିବାର ପ୍ରମାଣ ମିଳିଥାଏ । ଏଭଳି ଜଣେ ସୁଯୋଗ୍ୟ ଆଚାର୍ଯ୍ୟ ଥିଲେ ଦ୍ରୋଣ ଯେ କି କୌରବ ଓ ପାଣ୍ଡବମାନଙ୍କୁ ଯୁଦ୍ଧବିଦ୍ୟା ଶିଖାଉଥିଲେ । ଏଥିରୁ ଜଣା ପଡ଼େ ଯେ ବ୍ରାହ୍ମଣ ଆଚାର୍ଯ୍ୟମାନଙ୍କୁ ବହୁ ଶସ୍ତ୍ରରେ ପାଣ୍ଡିତ୍ୟ ହାସଲ କରିବାକୁ ପଡ଼ୁଥିଲା ଯାହା ଫଳରେ କି ସେମାନେ ବିଭିନ୍ନ ଗୋଷ୍ଠୀର ଶିଷ୍ୟମାନଙ୍କୁ ସେମାନଙ୍କ କୌଶଳ ବୃତ୍ତି ଅନୁଯାୟୀ ବିଶାରଦ-ଶିକ୍ଷା ଦେବାକୁ ସମର୍ଥ ହୋଇ ପାରୁଥିଲେ । କେବଳ ସେତିକି ନୁହେଁ ସେମାନେ ମଧ୍ୟ ସଦାଚାରୀ ଥିଲେ ଓ ସରଳ ଜୀବନ କରୁଥିଲେ । ସେମାନଙ୍କ ବିଦ୍ୱତ୍ତା ଓ ନିର୍ମଳ ସଦାଚାରର ଆଧାର ଥାଇ ସେମାନେ ଏମାନଙ୍କର ସମସ୍ତଙ୍କ ଦ୍ୱାରା ପୂଜିତ ହେଉଥିଲେ । ସେଥିପାଇଁ ବାଲ୍ମୀକିଙ୍କ ଭାଷାରେ ସେମାନଙ୍କୁ କୁହାଯାଉଥିଲା 'ବର୍ଣ୍ଣଶ୍ରେଷ୍ଠାଃ' ବା 'ବର୍ଣ୍ଣମାନଙ୍କ ମଧ୍ୟରେ ଶ୍ରେଷ୍ଠ' ।

ବ୍ରାହ୍ମଣମାନଙ୍କୁ ମାନ୍ୟତା ଦିଆଯିବାର ଅନ୍ୟ ଗୋଟିଏ କାରଣ ଥିଲା ସେମାନଙ୍କ ଅଧ୍ୟାପନ ଓ ଅଧ୍ୟୟନ ପ୍ରବୃତ୍ତି ଥିବା ଏକଚାଟିଆ । କେବଳ ଯେ ବ୍ରାହ୍ମଣମାନେ ସେମାନଙ୍କ ପାଖରେ ଅଧ୍ୟୟନ କରୁଥିଲେ, ତାହା ନୁହେଁ । ଦ୍ୱିଜ ତିନି ବର୍ଣ୍ଣର (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ) ପିଲାମାନେ ସମସ୍ତେ ଅଧ୍ୟୟନ କରୁଥିଲେ; ସମସ୍ତଙ୍କୁ ଉପନୟନବିଧି ପାଳି ଗୁରୁଙ୍କ ଆଶ୍ରମକୁ ଯିବାକୁ ପଡ଼ୁଥିଲା; ସମସ୍ତଙ୍କୁ ବ୍ରହ୍ମଚର୍ଯ୍ୟାଶ୍ରମ ମଧ୍ୟ ଦେଇ ଗତି କରିବାକୁ ପଡ଼ୁଥିଲା, କିନ୍ତୁ ଅନ୍ୟମାନଙ୍କ ତୁଳନାରେ ଅଧ୍ୟୟନରେ ବ୍ରାହ୍ମଣମାନେ ଥିଲେ ପର୍ବତ ପରି ଦୃଢ଼ ଓ ଅଟଳ । ଏହି କୁଶଳତା ହେତୁ ସାଧାରଣତଃ ସେମାନଙ୍କୁ ହିଁ ଆଚାର୍ଯ୍ୟ ରୂପରେ ବରଣ କରାଯାଉଥିଲା । ରାମାୟଣକାଳୀନ ଏହି ସ୍ଥିତି ବୁଦ୍ଧଙ୍କ ସମୟରେ (ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ) ଏବଂ ବୁଦ୍ଧୋତ୍ତର କାଳରେ ମଧ୍ୟ ଥିଲା । ବୌଦ୍ଧଜାତକ ଲେଖମାନଙ୍କରେ ତଥା ଅନ୍ୟାନ୍ୟ ବୌଦ୍ଧଗ୍ରନ୍ଥମାନଙ୍କରେ ଆମେ ଏଭଳି ଆଚାର୍ଯ୍ୟମାନଙ୍କ ଆଶ୍ରମ ବିଷୟରେ ଉଲ୍ଲେଖ ଦେଖିଥାଉଁ । ବିଶେଷ କରି ତକ୍ଷଶିଳାରେ ଅନେକ ବଶିଷ୍ଟ ଆଚାର୍ଯ୍ୟଙ୍କର ଆଶ୍ରମମାନ ଥିବାର ଉଲ୍ଲେଖ ଆମେ ଦେଖିଥାଉଁ । ମେଗାସ୍ଥିନିସ୍‌ଙ୍କ ବିବରଣୀରେ ମଧ୍ୟ (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) ବ୍ରାହ୍ମଣମାନଙ୍କର ଏହି ଅଧ୍ୟୟନ-ଅଧ୍ୟାପନ ପ୍ରବୀଣତା ସମ୍ପର୍କରେ ଉଲ୍ଲେଖ ଅଛି ଏବଂ ବାସ୍ତବରେ ସେ ଭାରତୀୟ ସମାଜକୁ ସାତୋଟି ଶ୍ରେଣୀରେ ବିଭକ୍ତ କରିଛନ୍ତି ସେଥି ମଧ୍ୟରେ ବ୍ରାହ୍ମଣଙ୍କୁ ସର୍ବଶ୍ରେଷ୍ଠ ଆସନ ଦେଇଛନ୍ତି । ବାଲ୍ମୀକି ରାମାୟଣରେ (୩।୬୮।୧୦) ଠିକ୍ ଅନୁରୂପ ଭାବରେ ବ୍ରାହ୍ମଣମାନଙ୍କର

ଅଧ୍ୟୟନ ପ୍ରତି ନିଷ୍ଠା ଉପରେ ଗୁରୁତ୍ୱ ଦିଆଯାଇଛି ଏବଂ କୁହାଯାଇଛି, ‘ବ୍ରାହ୍ମଣମାନଙ୍କର ଅଧ୍ୟୟନ ହେଉଛି ପର୍ବତ ପରି ଦୃଢ଼ ।’

ବ୍ରାହ୍ମଣମାନଙ୍କୁ ମାନ୍ୟତା ଦିଆଯିବାର ଆଉ ଗୋଟିଏ ବଡ଼ କାରଣ ହେଲା ସେମାନଙ୍କ ଦ୍ୱାରା ବ୍ୟକ୍ତିଗତ ଜୀବନରେ ଅନୁସୃତ ହେଉଥିବା ଆଚାର-ଶୁଦ୍ଧି ଏବଂ ସମାଜକୁ ଆଧ୍ୟାତ୍ମିକ-ଧାର୍ମିକ-ସାଂସ୍କୃତିକ କ୍ଷେତ୍ରରେ ଦେଉଥିବା ମାର୍ଗଦର୍ଶନ । ଏଥିରୁ କିଞ୍ଚିତ୍‌ବିଚ୍ୟୁତି ଘଟିଲେ ସେମାନେ ନିନ୍ଦିତ ହେଉଥିଲେ । ଉଦାହରଣସ୍ୱରୂପ, ସେତେବେଳେ କେତେକ ବ୍ରାହ୍ମଣ ଥିଲେ ଯେଉଁମାନଙ୍କର ‘ଅଧ୍ୟାତ୍ମବାଦ’ ଉପରେ ଆଦୌ ଆସ୍ଥା ନଥିଲା । ସେମାନେ ଥିଲେ ସମ୍ପୂର୍ଣ୍ଣ ବସ୍ତୁବାଦୀ । ସେମାନଙ୍କୁ କୁହାଯାଉଥିଲା ‘ଲୋକାୟତପନ୍ଥୀ’ । ସାଧାରଣ ଲୋକମାନଙ୍କୁ ଏହି ଧର୍ମ ଖୁବ୍ ଆକୃଷ୍ଟ କରୁଥିବାରୁ ଏହାକୁ କୁହାଯାଉଥିଲା ‘ଲୋକାୟତ’ ଧର୍ମ । ଭରତ ଯେତେବେଳେ ରାମଙ୍କୁ ଅରଣ୍ୟରେ ଭେଟିଥିଲେ ଏବଂ ତାଙ୍କୁ ଅଯୋଧ୍ୟାକୁ ଫେରିଆସିବା ପାଇଁ ଅନୁରୋଧ କରିଥିଲେ, ସେତେବେଳେ ରାମ ତାଙ୍କୁ ଅନେକ କୁଶଳ ପ୍ରଶ୍ନ ପଚାରିଥିଲେ । ପ୍ରତିଟି ପ୍ରଶ୍ନର ମୂଳରେ ‘କଚ୍ଚିତ୍’ ଶବ୍ଦଟି ଥିବାରୁ ଏହାକୁ ପଣ୍ଡିତମାନେ କଚ୍ଚିତ୍ ସର୍ଗ (ଅଯୋଧ୍ୟା କାଣ୍ଡ, ୧୦୦ତମ ସର୍ଗ) ବୋଲି କୁହନ୍ତି । ସେହି ସର୍ଗରେ (୩୮ତମ ଶ୍ଳୋକ) ରାମ ଲକ୍ଷ୍ମଣଙ୍କୁ ପ୍ରଶ୍ନ ପଚାରୁଛନ୍ତି

କଚ୍ଚିନ୍ନ ଲୋକାୟତିକାନ୍ ବ୍ରାହ୍ମଣାଂସ୍ତାତ ସେବସେ ।
ଅନର୍ଥକୁଶଳା ହ୍ୟେତେ ବାଳାଃ ପଣ୍ଡିତମାନିନଃ ॥

ଅର୍ଥାତ୍ ଆରେ ବାପା ଲୋକାୟତପନ୍ଥୀ ବ୍ରାହ୍ମଣମାନେ ବହୁ ଅନର୍ଥ ଭିଆଇ ଥାଆନ୍ତି । ସେମାନେ ନିଜକୁ ପଣ୍ଡିତ ବୋଲି ଭାବିଥାନ୍ତି, ଅଥଚ ସେମାନେ ମୂର୍ଖ । ତୁମେ ସେମାନଙ୍କର ସେବା କରୁନାହଁ ତ ? ଅତଏବ ଏଥିରୁ ଜଣାପଡୁଛି ଯେ ଆଧ୍ୟାତ୍ମିକ କ୍ଷେତ୍ରରେ ଘଟୁଥିବା ବ୍ରାହ୍ମଣଙ୍କର ପତନକୁ ସମାଜ ଆଦୌ କ୍ଷମା କରୁନଥିଲା । ଅନ୍ୟ ପକ୍ଷରେ ସାମାଜିକ କ୍ଷେତ୍ରରେ ଯେତେ ବଡ଼ ଅପରାଧ ସେ କରୁଥିଲେ ମଧ୍ୟ ସେଥିପ୍ରତି କୋହଳ ଦୃଷ୍ଟି ଦିଆଯାଉଥିଲା । ଏଠାରେ ମନେ ରଖିବାକୁ ହେବ ଯେ ବ୍ରାହ୍ମଣଙ୍କ ପକ୍ଷରେ ଏଭଳି ସାମାଜିକ ଅପରାଧ କରିବାର ଦୃଷ୍ଟାନ୍ତ ଥିଲା ଖୁବ୍ ବିରଳ ।

ଯେତେ ବଡ଼ ଅପରାଧ କଲେ ମଧ୍ୟ ବ୍ରାହ୍ମଣଙ୍କୁ ମୃତ୍ୟୁଦଣ୍ଡ ଦିଆଯାଉନଥିଲା । ମନୁ-ସ୍ମୃତିରେ ମଧ୍ୟ (୮ । ୨୭୯-୨୮୩) ବ୍ରାହ୍ମଣ ଅବଧ ବୋଲି କୁହାଯାଇଛି । ଯେତେ ଯାହା ପାପ କଲେ ମଧ୍ୟ ବ୍ରହ୍ମହତ୍ୟା ପାପରୁ ମୁକ୍ତି ମିଳିପାରିବ ନାହିଁ ବୋଲି ରାମାୟଣ-କାଳରେ ମଧ୍ୟ ବିଶ୍ୱାସ ଥିଲା । ଦଶରଥ ରାଜକୁମାର ଥିବା ଅବସ୍ଥାରେ ଶବ୍ଦବେଧୀ ବାଣ ପ୍ରୟୋଗରେ ମୃଗ ବୋଲି ଭ୍ରମ କରି ସରଣାରେ

ମାଠିଆ ବୁଡ଼ାଇ ପାଣି ଆଣୁଥିବା ମୁନିକୁମାରଙ୍କୁ ଆହତ କରିଥିଲେ । ମୁନିକୁମାରଙ୍କ ଆର୍ତ୍ତ ଚିତ୍କାର ଶୁଣି ସେ ତାଙ୍କ ପାଖକୁ ଧାଇଁ ଆସିଥିଲେ ଏବଂ ସେତେବେଳେ ତାଙ୍କୁ ମୁମୂର୍ଷୁ ଅବସ୍ଥାରେ ଦେଖି ମନେ ମନେ ଖୁବ୍ ଅନୁତାପ କରିଥିଲେ । ବ୍ରହ୍ମହତ୍ୟା ପାପରୁ ଯେ କମା ମୁକୁଳି ହେବନାହିଁ ଏହା ଥିଲା ତାଙ୍କ ଅନୁତାପର କାରଣ । ତାଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ମୁନିକୁମାର କହିଲେ

> ବ୍ରହ୍ମହତ୍ୟାକୃତଂ ପାପଂ ହୃଦୟାଦପନୀୟତାମ୍ ।
> ନ ଦ୍ୱିଜାତିରହଂ ରାଜନ୍ ମା ଭୂତ୍ ତେ ମନସୋ ବ୍ୟଥା ।।
> ଶୂଦ୍ରାୟାମସ୍ମି ବୈଶ୍ୟେନ ଜାତୋ ନରବରାଧିପ । (୧୮)

ଅର୍ଥାତ୍ ହେ ରାଜା ! ତୁମେ ବ୍ରହ୍ମହତ୍ୟା କରିଛ ଏବଂ ସେଥିପାଇଁ ପାପ କରିଛ ବୋଲି ଯାହା ଭାବୁଛ, ସେ କଥା ମନରୁ ଦୂର କରିଦିଅ । ମୁଁ ଦ୍ୱିଜକୁଳରେ ଜାତ ନୁହେଁ । ମନରୁ ଦୁଃଖ ଦୂର କର । ଜଣେ ବୈଶ୍ୟଙ୍କ ଔରସରେ ଜଣେ ଶୂଦ୍ରାଙ୍କ ଗର୍ଭରୁ ମୋ'ର ଜନ୍ମ । ଏହା ଶୁଣି ଦଶରଥଙ୍କ ମନ କିଛିତ୍ ପରିମାଣରେ ଆଶ୍ୱସ୍ତ ହୋଇଥିଲା । ଏଥିରୁ ଏହି ସୂଚନା ମିଳୁଛି ଯେ ବାଲ୍ମୀକିଙ୍କ ଭାଷାରେ ବ୍ରାହ୍ମଣ ଥିଲେ ଅବଧ୍ୟ ଏବଂ ଭୁଲ କ୍ରମେ କେହି ବ୍ରହ୍ମହତ୍ୟା କରି ବସିଲେ ତାଙ୍କୁ ସେହି ପାପକର୍ମରୁ ନିସ୍ତାର ମିଳିପାରିବ ନାହିଁ । ବ୍ରହ୍ମହତ୍ୟା ଅପରାଧକୁ ସେତେବେଳେ କେତେ ଗୁରୁତର ବୋଲି ଧରାଯାଉଥିଲା ତାହା ଆର୍. ଏସ୍. ଶର୍ମାଙ୍କ ମନ୍ତବ୍ୟରୁ ସ୍ପଷ୍ଟ ଜଣାପଡ଼େ । ଖାଲି ତ ବ୍ରହ୍ମହତ୍ୟା ଦୂଷଣୀୟ ନଥିଲା, ବ୍ରାହ୍ମଣମାନଙ୍କୁ ଶାରୀରିକ ଦଣ୍ଡ ଦେବା ମଧ୍ୟ ଥିଲା ଏକ ମହାପାପ । ତାଙ୍କ ଭାଷାରେ :

> Similarly no corporal punishment could be given to a Brahmin and under no circumstances he could be killed. Brahma-hatya was one of the most grievous sins which degraded not only men but also Gods like Indra (୧୯-କ)

ସମାଜରେ ବ୍ରାହ୍ମଣବର୍ଣ୍ଣର ପ୍ରାଥମିକତା ଥିବାର ଏହା ଆଉ ଏକ ନିଦର୍ଶନ ।

କୌଣସି ରାଜ୍ୟର ସମୃଦ୍ଧି ତଦନ୍ତର୍ଗତ ବ୍ରାହ୍ମଣମାନଙ୍କର ଶାନ୍ତିପୂର୍ଣ୍ଣ ଯଜ୍ଞାନୁଷ୍ଠାନ କରିବା ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିଲା । ବାସ୍ତବିକ, ଅଯୋଧ୍ୟାର ସମୃଦ୍ଧି ବର୍ଣ୍ଣନା କରିବାକୁ ଯାଇ ବାଲ୍ମୀକି କହିଛନ୍ତି ଯେ ଏଠାରେ ବ୍ରାହ୍ମଣମାନେ ଶାନ୍ତିପୂର୍ଣ୍ଣ ଭାବରେ ବିନା ବାଧାରେ ଯଜ୍ଞ-କାର୍ଯ୍ୟ ସମାହିତ କରୁଥିଲେ । ବ୍ରାହ୍ମଣମାନଙ୍କର ଏହି କର୍ମସାଧନରେ ବେଳେ ବେଳେ

(ଖ) ସେମାନେ ରାଜସୂୟ, ଅଶ୍ୱମେଧାଦି ଯଜ୍ଞ ସମ୍ପାଦନ କରି ଧର୍ମ ଅର୍ଜନ କରୁଥିଲେ ।

(ଗ) ସେମାନେ ବ୍ରାହ୍ମଣ ରାଜପୁରୋହିତଙ୍କୁ ତଥା ସକଳ ବ୍ରାହ୍ମଣଙ୍କୁ ପୂଜାର୍ହ ଦୃଷ୍ଟିରେ ଦେଖୁଥିଲେ ।

(ଘ) ଠିକ୍ କେଉଁବେଳେ ଅଗ୍ନିରେ ହବନ କରିବାକୁ ହେବ, ସେ ସଂପର୍କରେ ପୁରୋହିତଙ୍କ ପରାମର୍ଶ ଅନୁସାରେ ସେମାନଙ୍କୁ ଚାଲିବାକୁ ପଡୁଥିଲା ।

(ଙ) ସେମାନଙ୍କୁ ଦେବତା, ପିତାମାତା, ଭୃତ୍ୟ, ଗୁରୁ, ଗୁରୁଜନ, ବୃଦ୍ଧ, ବୈଦ୍ୟ ଓ ବ୍ରାହ୍ମଣମାନଙ୍କୁ ଅଭ୍ୟର୍ଥନା କରି ସମ୍ମାନ ଦେଖାଇବାକୁ ପଡୁଥିଲା ।

(ଚ) ସେମାନେ ଦୁଇ ପ୍ରକାର ବାଣ ବ୍ୟବହାର କରୁଥିଲେ । ଗୋଟିଏ ହେଲା ମନ୍ତ୍ରଯୁକ୍ତ ଏବଂ ଅପରଟି ହେଲା ମନ୍ତ୍ରରହିତ । ଏହି ବାଣପ୍ରୟୋଗରେ ନିପୁଣ ବୀର ପୁରୁଷଙ୍କୁ ସେମାନେ ସର୍ବଦା ସମ୍ମାନ ଦେଖାଉଥିଲେ ।

(ଛ) ସେମାନେ ଯାହାଙ୍କୁ ମନ୍ତ୍ରୀ ବୋଲି ବାଛୁଥିଲେ, ସେ ଥିଲେ ନିଜ ଭଳି ବୀର, ଜିତେନ୍ଦ୍ରିୟ, ଶାସ୍ତ୍ରଜ୍ଞ ତଥା କୁଳୀନ ।

(ଜ) ଠିକଣା ଭାବରେ ଉପଦେଶ ଦେଉଥିବା ମନ୍ତ୍ରୀଙ୍କୁ ସେମାନେ ବିଜୟର କାରଣ ବୋଲି ମାନୁଥିଲେ ।

(ଝ) ସେମାନଙ୍କୁ ଠିକଣା ସମୟରେ ଶୋଇବାକୁ ପଡୁଥିଲା ଏବଂ ଠିକଣା ସମୟରେ ଜାଗ୍ରତ ରହିବାକୁ ପଡୁଥିଲା ।

(ଞ) ସେମାନଙ୍କୁ ଖୁବ୍ ସାବଧାନତାର ସହିତ ଗୁପ୍ତ ମନ୍ତ୍ରଣା କରିବାକୁ ପଡୁଥିଲା । ଗୁପ୍ତ ମନ୍ତ୍ରଣା କେବଳ ଜଣେ ବ୍ୟକ୍ତିଙ୍କ ସହିତ କରାଯାଉଥିଲା ଏବଂ ଏହା ଯେପରି ଗୃହ କାନକୁ ଅତିକ୍ରମ କରି କ୍ରମେ ରାଜ୍ୟସାରା ବ୍ୟାପି ନଯାଏ, ସେଥି ପ୍ରତି ସେମାନେ ସର୍ବଦା ସଜାଗ ଦୃଷ୍ଟି ଦେଉଥିଲେ ।

(ଟ) ସେମାନେ ହଜାର ସାଧାରଣ ଲୋକଙ୍କ ବଦଳରେ ଜଣେ ପଣ୍ଡିତଙ୍କୁ ପାଖରେ ରଖିବା ପାଇଁ ପସନ୍ଦ କରୁଥିଲେ ।

(ଠ) ସେମାନେ ବିଭିନ୍ନ ବ୍ୟକ୍ତିଙ୍କର ମାନସିକ ତଥା ଶାରୀରିକ କ୍ଷମତାକୁ ଦୃଷ୍ଟିରେ ରଖି ସେହି ସେହି ବ୍ୟକ୍ତିମାନଙ୍କୁ ବିଭିନ୍ନ କାର୍ଯ୍ୟରେ ନିଯୁକ୍ତ କରୁଥିଲେ ।

(ଡ) ଲାଞ୍ଚ,ମିଛ, ଦୁର୍ନୀତି ଆଦି ଦୋଷଠାରୁ ଦୂରରେ ରହିଥିବା ବ୍ୟକ୍ତିଙ୍କୁ ସେମାନେ ମନ୍ତ୍ରୀ ଭାବରେ ନିଯୁକ୍ତ କରୁଥିଲେ ।

(ଢ) ପ୍ରଜାମାନଙ୍କୁ ସେମାନେ ଅତି କଠୋର ଦଣ୍ଡରେ ଦଣ୍ଡିତ କରୁନଥିଲେ ।

ନିଯ୍ନୋଜିତ କରି ରଚିଥିଲେ । ସେମାନେ ସମାଜ କଥା ଭାବୁଥିଲେ; ତେଣୁ ସମାଜ ସେମାନଙ୍କ କଥା ଭାବୁଥିଲା । ସମାଜ ପ୍ରତି ସେମାନଙ୍କର ପୂର୍ଣ୍ଣ ପ୍ରତିବଦ୍ଧତା ନଥିଲେ ସମାଜ ସେମାନଙ୍କୁ 'ପୃଥିବୀର ଦେବତା' ବୋଲି କହି ପୂଜା କରୁ ନଥାନ୍ତା ।

### ଅନ୍ୟ ତିନି ବର୍ଣ୍ଣ

ଅନ୍ୟ ତିନି ବର୍ଣ୍ଣ ହେଲେ କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର । ଏମାନେ ଉପରୋକ୍ତ କ୍ରମରେ ହିଁ ସମାଜରେ ଆସନ ଲାଭ କରିଥିଲେ । ସମାଜରେ ବ୍ରାହ୍ମଣମାନଙ୍କୁ ଅବଶ୍ୟ ଉଚ୍ଚତମ ଆସନ ଦିଆ ଯାଇଥିଲା । କିନ୍ତୁ ଏହାର ଅର୍ଥ ନୁହେଁ ଯେ ଅନ୍ୟ ତିନି ବର୍ଣ୍ଣଙ୍କୁ ଅବହେଳା ପ୍ରଦର୍ଶନ କରା ଯାଉଥିଲା କିମ୍ବା ସେମାନଙ୍କ କର୍ତ୍ତବ୍ୟାବଳୀ ପ୍ରତି ଗୁରୁତ୍ୱ ଦିଆଯାଉ ନଥିଲା । ବାସ୍ତବିକ ରାମାୟଣବର୍ଣ୍ଣିତ ବର୍ଣ୍ଣ-ଧର୍ମ ସବୁ ବର୍ଣ୍ଣର ଲୋକମାନେ ଠିକଣା ଭାବରେ କିପରି ନିଜ ନିଜର କର୍ତ୍ତବ୍ୟାବଳୀ ସମାହିତ କରିବେ, ସେଥି ପ୍ରତି ଗୁରୁତ୍ୱ ଆରୋପ କରିଛି । ଏହି ଧର୍ମ କେବଳ କେତେକ ନୀତିଗତ ଉପଦେଶ ମଧ୍ୟରେ ସୀମାବଦ୍ଧ ନଥିଲା । ଅନ୍ୟ ପକ୍ଷରେ ଏହି ନୀତିଗୁଡ଼ିକୁ ଅକ୍ଷରେ ଅକ୍ଷରେ ପାଳନ କରିବା ଏବଂ ନିଜ ଜୀବନରେ ରୂପାନ୍ତରିତ କରିବା ଥିଲା ସମସ୍ତଙ୍କର ଲକ୍ଷ୍ୟ ଓ ଆଦର୍ଶ । ଯେ ଯେତେ ଦୂର ଏହି ଲକ୍ଷ୍ୟ ଓ ଆଦର୍ଶକୁ ରୂପାନ୍ତରିତ କରି ପାରୁଥିଲା, ସେ ସେତେ ଦୂର ମୁକ୍ତିପଥରେ ଆଗେଇ ଚାଲିଛି ବୋଲି ବିଶ୍ୱାସ କରି ଯାଉଥିଲା । ଆଉ ମଧ୍ୟ ବିଶ୍ୱାସ କରାଯାଉଥିଲା ଯେ ନୈତିକ କାର୍ଯ୍ୟାବଳୀ କେବଳ ତଦର୍ଥରେ ହିଁ କରାଯିବା ଉଚିତ, କୌଣସି ଅନୈତିକ ସ୍ୱାର୍ଥ-ସାଧନ ପାଇଁକି କିନ୍ତୁ ନୁହେଁ । ଏହା ତ କେବଳ ରାମାୟଣ-ଧର୍ମ ନୁହେଁ; ଏହା ଭାରତୀୟ ସଂସ୍କୃତିର ଦ୍ୱାର । କର୍ମବାଦର ମୂଳ ମନ୍ତ୍ର ଗୀତାବର୍ଣ୍ଣିତ ନିଷ୍କାମତତ୍ତ୍ୱର ମୂଳାଧାର । ରାମାୟଣର ଚରିତ୍ରମାନେ ସ୍ୱ ସ୍ୱ କର୍ତ୍ତବ୍ୟମାନ ଶାସ୍ତ୍ରାନୁମୋଦିତ ମତେ ନିଖୁଣ ଭାବରେ ସମାପନ କରିଥିବାରୁ ମାନ୍ୟତା ପାଇଥାନ୍ତି । ଏ ସଂପର୍କରେ ରଙ୍ଗସ୍ୱାମୀ ଆୟାଙ୍ଗାରଙ୍କ ନିମ୍ନଲିଖିତ ମନ୍ତବ୍ୟ ଉଲ୍ଲେଖନୀୟ

> Positive help in attaining Mukti can be derived only by practising the highest morality. Ritual has a place subordinate to ethics. Virtuous action is commendable only when it is practised for its own sake, and not for detaining a obenefit or an advantage. (୧୯)

ରାମ, ଲକ୍ଷ୍ମଣ, ଭରତ, ସୀତା ଆଦି ଚରିତ୍ରମାନେ ପୂଜା ପାଇ ଆସୁଛନ୍ତି ବିଭିନ୍ନ ପରିସ୍ଥିତିରେ ବିଭିନ୍ନ ନୀତିପୂର୍ଣ୍ଣ ଉପଦେଶ ବାଣୀ ଉପସ୍ଥାପିତ କରିବା ଦ୍ୱାରା ନୁହେଁ, ବରଂ ସେହି ଉପଦେଶଗୁଡ଼ିକୁ ସ୍ୱ ସ୍ୱ ଜୀବନରେ ପାଳନ କରିବା ଦ୍ୱାରା, ଯେଉଁ ଆଦର୍ଶ କଥା ସେମାନେ କହିଛନ୍ତି, ତାହାକୁ ସ୍ୱ ସ୍ୱ ଜୀବନରେ ରୂପାନ୍ୱିତ କରିବା ଦ୍ୱାରା । ରାମଙ୍କୁ ମର୍ଯ୍ୟାଦା ପୁରୁଷୋତ୍ତମ କୁହାଯାଇଛି ସେ ନିଜ ଜୀବନରେ ସକଳ ମର୍ଯ୍ୟାଦାକୁ ରୂପାନ୍ୱିତ କରିଥିଲେ ବୋଲି ।

କୌଣସି ଫଳକୁ ଆଶା ନରଖି ନିଜ ନିଜର ବର୍ଣ୍ଣଧର୍ମ ପାଳନ କରିଯିବା ପାଇଁ ରାମାୟଣ ବାରମ୍ବାର କହି ଆସିଛି । ଏଥିର ବ୍ୟତିକ୍ରମ ଯେଉଁଠି ଘଟିଛି, ତାହାକୁ ନିନ୍ଦା କରାଯାଇଛି । ଗୋଟିଏ ଉଦାହରଣ ଦିଆଯାଉ । କ୍ଷତ୍ରିୟମାନଙ୍କର ଧର୍ମ ହେଲା ଲଢ଼େଇ କରିବା । ଏ ଲଢ଼େଇରେ ସେମାନେ ଜିଣି ପାରନ୍ତି କିମ୍ବା ହାରି ପାରନ୍ତି; ମାରି ପାରନ୍ତି କିମ୍ବା ମରି ପାରନ୍ତି । ଏହାର ପରିଣତିସ୍ୱରୂପ ଯେ କୌଣସି ପ୍ରକାର ଫଳ ମିଳିଲେ ମଧ୍ୟ ସେଥିପାଇଁ ଅନୁଶୋଚନା କରିବା ଉଚିତ ନୁହେଁ । ରାବଣର ମୃତ୍ୟୁରେ ବିଭୀଷଣ ଯେତେବେଳେ ବ୍ୟଥିତ ହୋଇ ଉଠିଛନ୍ତି, ରାମ ତାଙ୍କୁ ସାନ୍ତ୍ୱନା ଦେଇ କହିଛନ୍ତି ଯେ ତାଙ୍କର ଏଭଳି ଶୋକ କରିବା ଉଚିତ ନୁହେଁ । ଯୁଦ୍ଧଭୂମିରେ ଯୋଦ୍ଧାର ମୃତ୍ୟୁବରଣକୁ କୁହାଯାଏ ବୀରଗତି । ସେଥିରେ ହିଁ ସେ ମୁକ୍ତି ପାଇଥାଏ । ଏହି ସ୍ଥିତିରେ ରାମ କହିଛନ୍ତି :

ନୈକାନ୍ତବିଜୟୋ ଯୁଦ୍ଧେ ଭୂତପୂର୍ବଃ କଦାଚନ ।
ପରୈର୍ବା ହନ୍ୟତେ ବୀରଃ ପରାନ୍ ବା ହନ୍ତି ସଂଯୁଗେ । (୨୦)

ଅର୍ଥାତ୍ ଯୁଦ୍ଧରେ ଯେ ସବୁବେଳେ ବିଜୟ ମିଳିବ ଏ କଥା କେବେହେଲେ ପୂର୍ବେ ଘଟିନାହିଁ । ଯୁଦ୍ଧଭୂମିରେ ଯୋଦ୍ଧା ନିଜେ ଶତ୍ରୁମାନଙ୍କୁ ମାରିପାରେ କିମ୍ବା ଶତ୍ରୁମାନେ ତା'କୁ ମାରିପାରନ୍ତି । ଏହିଭଳି ଉପଦେଶ ଦେଇ ରାମ ରାବଣ ଲାଗି ପ୍ରେତସଂସ୍କାରାଦି କର୍ମର ଶୀଘ୍ର ବ୍ୟବସ୍ଥା କରିବା ପାଇଁ ବିଭୀଷଣଙ୍କୁ ପରାମର୍ଶ ଦେଇଥିଲେ । ସେ ସ୍ପଷ୍ଟ ଭାବରେ (୬ । ୧୦୯ । ୧୮) କହିଥିଲେ :

କ୍ଷତ୍ରିୟୋ ନିହତଃ ସଂଖ୍ୟେ ନ ଶୋଚ୍ୟ ଇତି ନିଶ୍ଚୟଃ ।

ଅର୍ଥାତ୍ ଯୁଦ୍ଧଭୂମିରେ କ୍ଷତ୍ରିୟଙ୍କୁ ମରିଯିବାର ଦେଖି ଶୋକ କରିବା ଉଚିତ ନୁହେଁ । ରାମାୟଣ ତେଣୁ ନିଷ୍କାମ କର୍ମ ସମାହିତ କରିବା ଉପରେ ଗୁରୁତ୍ୱ ଦେଇଆସିଛି । ରାମ ବିଭୀଷଣଙ୍କୁ କ୍ଷାତ୍ରଧର୍ମ ବିଷୟରେ ସେହି ସମୟରେ ଆହୁରି ବି ଅନେକ ଉପଦେଶ ଦେଇଛନ୍ତି । ସଂକ୍ଷେପରେ ସେଗୁଡ଼ିକ ହେଲା

(କ) ଯୁଦ୍ଧଭୂମିରେ କ୍ଷତ୍ରିୟ ବୀରଙ୍କୁ ଅସମର୍ଥ ଭାବରେ ଲଢ଼ିବାକୁ ହେବ ନାହିଁ । ତାଙ୍କୁ ସମ୍ପୂର୍ଣ୍ଣ ପରାକ୍ରମ ଦେଖାଇବାକୁ ହେବ ।

(ଖ) ଯୁଦ୍ଧଭୂମିରେ ମୃତ୍ୟୁକୁ ଭୟ କରିବାକୁ ହେବ ନାହିଁ ।

(ଗ) ଉପଯୁକ୍ତ କ୍ଷାତ୍ରଧର୍ମ ରକ୍ଷା କରି ଯୁଦ୍ଧଭୂମିରେ ବୀରଗତି ପାଉଥିବା ଯୋଦ୍ଧାଙ୍କ ଲାଗି ଅନୁଶୋଚନା କରିବାକୁ ହେବ ନାହିଁ । ବାସ୍ତବିକ ସେ ମରନ୍ତି ନାହିଁ; ସେ ମୁକ୍ତ ହୋଇଯାନ୍ତି ।

(ଘ) ବୀରଙ୍କୁ ଜୟ ମିଳୁ ଅଥବା ପରାଜୟ ମିଳୁ ସେଥିପାଇଁ ଅନୁଶୋଚନା କରିବାକୁ ହେବ ନାହିଁ । କାରଣ ଏହି ଦୁଇଟିରୁ ତାଙ୍କୁ ଗୋଟିଏ ହେଲେ ନିଶ୍ଚିତ ଭାବରେ ମିଳିବ ।

(ଙ) ବୀରଙ୍କ ପକ୍ଷରେ ଭୀରୁ କାପୁରୁଷ ଭଳି ଯୁଦ୍ଧଭୂମିରୁ ପଳାଇ ଯିବା ଅତ୍ୟନ୍ତ ନିନ୍ଦାର୍ହ ।

(ଚ) ଯୋଦ୍ଧା ନିଜେ ଶତ୍ରୁମାନଙ୍କୁ ମାରିବେ କିମ୍ବା ଶତ୍ରୁମାନଙ୍କ ଦ୍ୱାରା ନିହତ ହେବେ, ଏହି ଦୁଇଟିରୁ ଯେ କୌଣସି ଗୋଟିଏ ସ୍ଥିତି ପାଇଁ ତାଙ୍କୁ ପ୍ରସ୍ତୁତ ହୋଇ ରହିବାକୁ ପଡ଼ିବ ।

(ଛ) କ୍ଷତ୍ରିୟ ବୀରଙ୍କ ପାଇଁ ଶତ୍ରୁର ମୃତ୍ୟୁ ପରେ ତା' ପ୍ରତି ଥିବା ବୈରଭାବ ତୁଟି ଯାଇଥାଏ ।

(ଜ) ଯୁଦ୍ଧଭୂମିରେ ପଡ଼ିଥିବା ଶତ୍ରୁର ଶବ ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିବା ବୀରଙ୍କ କର୍ତ୍ତବ୍ୟ ।

ଏଥିରୁ ଜଣାଯାଏ ଯେ କ୍ଷତ୍ରିୟମାନଙ୍କ ଦ୍ୱାରା ଏହି କର୍ତ୍ତବ୍ୟାବଳୀ ଯେପରି ପାଳିତ ହୁଏ, ସେଥିପ୍ରତି ରାମାୟଣକାଳୀନ ସମାଜତତ୍ତ୍ୱବିତ୍‌ମାନେ ସମ୍ୟକ୍ ଦୃଷ୍ଟି ଦେଇଥିଲେ । ଏହି କର୍ତ୍ତବ୍ୟାବଳୀ ଥିଲା ସେମାନଙ୍କ ବର୍ଣ୍ଣଧର୍ମର ଅନ୍ତର୍ଗତ ।

ପୂର୍ବରୁ କୁହାଯାଇଛି ଭରତ ରାମଙ୍କୁ ବଣରେ ଭେଟି ତାଙ୍କୁ ରାଜଧାନୀକୁ ଫେରିଯିବା ପାଇଁ ଅନୁରୋଧ କରିବାର ଅବ୍ୟବହିତ ପୂର୍ବରୁ ରାମ ତାଙ୍କୁ କୁଶଳ ପ୍ରଶ୍ନାଦି ପଚାରିଥିଲେ । ଏହା ରାମାୟଣର ଅଯୋଧ୍ୟାକାଣ୍ଡସ୍ଥ ୧୦୦ତମ ସର୍ଗ । ଏହା 'କଚ୍ଚିତ୍ ସର୍ଗ' ନାମରେ ଖ୍ୟାତ । ଏଥିରେ ମଧ୍ୟ କ୍ଷତ୍ରିୟମାନଙ୍କର କର୍ତ୍ତବ୍ୟାକର୍ତ୍ତବ୍ୟ ବିଷୟ ସୂଚିତ । ଏହା ଅନୁଧ୍ୟାନ କଲେ ଜଣାଯାଏ ଯେ କ୍ଷତ୍ରିୟମାନେ ନିମ୍ନଲିଖିତ କର୍ତ୍ତବ୍ୟାବଳୀ ମଧ୍ୟ ସମାହିତ କରୁଥିଲେ :

(କ) କ୍ଷତ୍ରିୟମାନଙ୍କର ହିଁ କେବଳ ରାଜା ହେବାର ଅଧିକାର ଥିଲା । ଅନ୍ୟମାନଙ୍କର ସେହି ଅଧିକାର ନଥିଲା ।

ଅଯୋଧ୍ୟାରେ ତାଙ୍କର ଲୋକମାନେ ବାଧା ଦେଉଥିଲେ । ସେମାନଙ୍କୁ କୁହାଯାଉଥିଲା ରାକ୍ଷସ । କ୍ଷତ୍ରିୟମାନଙ୍କର ପ୍ରଧାନ କର୍ତ୍ତବ୍ୟ ଥିଲା ରାକ୍ଷସମାନଙ୍କ ଅତ୍ୟାଚାରକୁ ପ୍ରତିହତ କରିବା ଏବଂ ଋଷି ବ୍ରାହ୍ମଣମାନଙ୍କୁ ନିର୍ବିଘ୍ନରେ ସ୍ୱ ସ୍ୱ କର୍ତ୍ତବ୍ୟପାଳନ କରିବାରେ ସାହାଯ୍ୟ କରିବା । ରାକ୍ଷସମାନଙ୍କର ଅତ୍ୟାଚାର ବିଷୟରେ ଅଭିଯୋଗ ଆଣିଲେ ଋଷି ବିଶ୍ୱାମିତ୍ର ଯେତେବେଳେ ରାଜା ଦଶରଥଙ୍କୁ ତାଙ୍କ ପୁତ୍ରଦ୍ୱୟ ରାମଲକ୍ଷ୍ମଣଙ୍କୁ ତାଙ୍କ ସାଥିରେ ପଠାଇବା ପାଇଁ କହିଲେ, ଦଶରଥ ସେଥିରେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ; କାରଣ ଋଷି ବ୍ରାହ୍ମଣମାନଙ୍କୁ ରକ୍ଷା କରିବା ଥିଲା ରାଜାଙ୍କର ଏକ ପ୍ରଧାନ କର୍ତ୍ତବ୍ୟ । ବ୍ରାହ୍ମଣମାନଙ୍କୁ ଅନ୍ୟ ବର୍ଣ୍ଣମାନଙ୍କଠାରୁ ପ୍ରାଥମିକତା ଦିଆଯାଉଥିବାର ଏହା ଆଉ ମଧ୍ୟ ଏକ ନିଦର୍ଶନ ।

ବ୍ରାହ୍ମଣମାନଙ୍କ ପ୍ରାଥମିକତାର ଆଉ କେତେକ ଅନ୍ୟାନ୍ୟ କାରଣ ହେଲା, ସେମାନେ ଥିଲେ, ସଦାଚାରୀ ଓ ସଂଯମୀ । ଜ୍ଞାନାର୍ଜନ ଥିଲା ସେମାନଙ୍କର ବ୍ରତ-ସ୍ୱରୂପ ଏବଂ ଏହି ଜ୍ଞାନକୁ ସେମାନେ ସମାଜର କଲ୍ୟାଣ ନିମିତ୍ତ ଉପଯୋଗ କରୁଥିଲେ । ଦଶରଥଙ୍କ ରାଜ୍ୟରେ ବ୍ରାହ୍ମଣମାନେ କିପରି ଥିଲେ, ତାହାର ସୂଚନା ଆମେ ରାମାୟଣର (୧ । ୬ । ୧୩) ନିମ୍ନୋକ୍ତ ଶ୍ଳୋକରେ ପାଉଥାଉଁ

ସ୍ୱକର୍ମନିରତା ନିତ୍ୟ ବ୍ରାହ୍ମଣା ବିଜିତେନ୍ଦ୍ରିୟାଃ ।
ଦାନାଧ୍ୟୟନଶୀଳାଶ୍ଚ ସଂଯତାଶ୍ଚ ପ୍ରତିଗ୍ରହେ ।

ଅର୍ଥାତ୍ ବ୍ରାହ୍ମଣମାନେ ସର୍ବଦା ନିଜ ନିଜର କର୍ମରେ ଲିପ୍ତ ରହୁଥିଲେ । ସେମାନେ ଥିଲେ ଜିତେନ୍ଦ୍ରିୟ ତଥା ଦାନ ଓ ଅଧ୍ୟୟନଶୀଳ । ସେମାନେ 'ପ୍ରତିଗ୍ରହ' ବା ଦାନରେ ଥିଲେ ସଂଯତ । ଏହାର ତାତ୍ପର୍ଯ୍ୟ ହେଲା ବେଶି ରୁଜାଏ ଦାନ ଗ୍ରହଣ କରିବାର ଲୋଭ ସେମାନଙ୍କର ନଥିଲା । ଯେତିକି ଆବଶ୍ୟକ ସେତିକି ହିଁ ସେମାନେ ଗ୍ରହଣ କରୁଥିଲେ । ବ୍ରାହ୍ମଣଙ୍କ ସଂପତ୍ତି ସମ୍ପର୍କରେ ମଧ୍ୟ ସ୍ୱତନ୍ତ୍ର ନୀତି-ନିୟମ ଥିଲା । ଯେତେ ଯାହା କଲେ ବି ସେମାନଙ୍କ ସମ୍ପତ୍ତି ଅପହରଣଯୋଗ୍ୟ ବୋଲି ଧରାଯାଉ ନଥିଲା । ଦଶରଥଙ୍କ ମନ୍ତ୍ରୀମାନଙ୍କଠାରେ କି କି ଗୁଣସମୂହ ଥିଲା ତାହା ରାମାୟଣରେ (୧।୭) ବର୍ଣ୍ଣନା କରାଯାଇଛି । ସେମାନେ ଥିଲେ 'ବ୍ରହ୍ମସ୍ୱସ୍ୟାବିହଂସକାଃ' । ଅର୍ଥାତ୍ ସେମାନେ 'ବ୍ରହ୍ମସ୍ୱ' ପ୍ରତି ହିଂସା କରୁନଥିଲେ ବା ବ୍ରହ୍ମସ୍ୱକୁ ଅପହରଣ କରୁ ନଥିଲେ ।

ଏହିସବୁ ଆଲୋଚନାରୁ ଆମେ ଜାଣିପାରିବା ଯେ ରାମାୟଣକାଳୀନ ସମାଜରେ ବ୍ରାହ୍ମଣମାନଙ୍କୁ ଖୁବ୍ ମାନ୍ୟତା ଦିଆଯାଉଥିଲା । ଏହାର ସବୁଠାରୁ ବଡ଼ କାରଣ ହେଲା, ସେମାନେ ସର୍ବଦା ନିଜକୁ ସମାଜର କଲ୍ୟାଣରେ

(ଣ) ଯେଉଁ ବ୍ୟକ୍ତି ସର୍ବଦା ସନ୍ତୁଷ୍ଟ ରହୁଥିଲେ, ଯେ ଶୂରବୀର, ଧୈର୍ଯ୍ୟବାନ୍, ବୁଦ୍ଧିମାନ ଓ କୁଳୀନ, ତାଙ୍କୁ ହିଁ ସେମାନେ ସେନାପତି-ପଦରେ ବରଣ କରୁଥିଲେ ।

(ତ) ସେମାନେ ସେମାନଙ୍କ ପ୍ରଧାନ ପ୍ରଧାନ ଯୋଦ୍ଧାମାନଙ୍କ ବଳକୁ ପରୀକ୍ଷା କରି ନେଉଥିଲେ ଏବଂ ସେମାନଙ୍କୁ ଯଥୋଚିତ ମାନ୍ୟତା ଦେଖାଉ-ଥିଲେ ।

(ଥ) ସେମାନଙ୍କୁ ଠିକଣା ସମୟରେ ସୈନ୍ୟମାନଙ୍କର ଯଥୋଚିତ ପ୍ରାପ୍ୟ ଦେବାକୁ ହେଉଥିଲା; କାରଣ ଏହା ନକଲେ ସୈନ୍ୟମାନେ ସେମାନଙ୍କ ନିଯୁକ୍ତି-ଦାତାଙ୍କ ଉପରେ କ୍ରୁଦ୍ଧ ହେବାର ଅବକାଶ ଥିଲା ।

(ଦ) ସେମାନେ ବିଦ୍ୱାନ୍ ଓ ପ୍ରତିଭାଶାଳୀ ବ୍ୟକ୍ତିଙ୍କୁ ରାଜଦୂତ ଭାବରେ ନିଯୁକ୍ତ କରୁଥିଲେ ।

(ଧ) ସେମାନେ ନିଜ ରାଜ୍ୟର ତଥା ଶତ୍ରୁ-ରାଜ୍ୟର ଠିକଣା ଖବର ପାଇବା ପାଇଁ ଉପଯୁକ୍ତ ଲୋକଙ୍କୁ ଗୁପ୍ତଚର ଭାବରେ ନିଯୁକ୍ତ କରୁଥିଲେ ।

(ନ) ସେମାନଙ୍କୁ ବେଦବିରୋଧୀ ନାସ୍ତିକ ବ୍ରାହ୍ମଣଙ୍କ ସଙ୍ଗତ୍ୟାଗ କରିବାକୁ ପଡୁଥିଲା ।

(ପ) କୃଷି ତଥା ଗୋପାଳନରେ ରତ ଥିବା ବୈଶ୍ୟମାନେ ସେମାନଙ୍କର ପ୍ରିୟପାତ୍ର ଥିଲେ ।

(ଫ) ସେମାନେ ରାଜମହଲର ସ୍ତ୍ରୀମାନଙ୍କୁ ସୁରକ୍ଷିତ ରଖୁଥିଲେ ।

(ବ) ସେମାନେ ସ୍ତ୍ରୀମାନଙ୍କୁ ଅତ୍ୟଧିକ ପରିମାଣରେ ବିଶ୍ୱାସ କରୁନଥିଲେ ଏବଂ ସେମାନଙ୍କ ଆଗରେ ଗୁପ୍ତ କଥା କହୁନଥିଲେ ।

(ଭ) ସେମାନଙ୍କୁ ପ୍ରତିଦିନ ପୂର୍ବାହ୍ଣରେ ଯଥାଯୁକ୍ତ ପୋଷାକ-ପରିଚ୍ଛଦ ପିନ୍ଧି ରାଜଦାଣ୍ଡରେ ଲୋକଙ୍କ ଦର୍ଶନ ଲାଗି ଯିବାକୁ ପଡୁଥିଲା ।

(ମ) ସେମାନେ ନିର୍ଭୟରେ ଆସି ନିଜ ନିଜର ଗୁହାରି ଜଣାଇବା ପାଇଁ ପ୍ରଜାମାନଙ୍କୁ ସୁବିଧା ସୁଯୋଗ ଦେଉଥିଲେ ।

(ଯ) ସେମାନେ ରାଜକୋଷର ରକ୍ଷଣ-ଦାୟିତ୍ୱ ସୁପାତ୍ର ହସ୍ତରେ ନ୍ୟସ୍ତ କରୁଥିଲେ ଏବଂ ସର୍ବଦା ଖର୍ଚ୍ଚକୁ ଆୟ ତୁଳନାରେ କମ୍ ସୀମା ମଧ୍ୟରେ ରଖୁଥିଲେ ।

(ର) ସେମାନେ ବିଚାରକୁଶଳ ବ୍ୟକ୍ତିଙ୍କୁ ହିଁ ବିଚାରପତି ପଦରେ ନିଯୁକ୍ତ କରୁଥିଲେ । ଯେପରି ନିର୍ଦ୍ଦୋଷ ବ୍ୟକ୍ତି ଦଣ୍ଡିତ ନହୁଅନ୍ତି, ସେଥିପ୍ରତି ସେମାନେ ସର୍ବଦା ସଜାଗ ଦୃଷ୍ଟି ରଖୁଥିଲେ ।

(ଳ) ଧନୀ ଓ ଗରିବ ମଧ୍ୟରେ ବିବାଦ ଉପୁଜିଲେ ଧନୀର ଧନ ପ୍ରତି ଲୋଭ କରି ବିଚାରପତି ଯେପରି ତା'ର ପକ୍ଷ ନ ଧରନ୍ତି, ସେଥି ପ୍ରତି ସେମାନେ କଡ଼ା ନଜର ରଖିଥିଲେ । ବିଚାରବିଭାଗରେ ଦୁର୍ନୀତି କିପରି ଅନୁପ୍ରବେଶ ନକରେ ସେଥି ପ୍ରତି ସେମାନଙ୍କର ଦୃଷ୍ଟି ଥିଲା ସର୍ବଦା ସଜାଗ ।

(ବ) ସେମାନଙ୍କ ମନ୍ତ୍ରିସଭାରେ ତିନି ଜଣ କିମ୍ବା ଚାରି ଜଣ ମନ୍ତ୍ରୀ ରହୁଥିଲେ । ସେମାନେ ମନ୍ତ୍ରୀମାନଙ୍କ ସହିତ ଏକତ୍ର କିମ୍ବା ପୃଥକ୍ ପୃଥକ୍ ଭାବରେ ମନ୍ତ୍ରଣା କରୁଥିଲେ ।

ସ୍ଥୂଳତଃ ଉପରୋକ୍ତ ମତେ କ୍ଷତ୍ରିୟମାନେ ସେମାନଙ୍କ ସ୍ୱଧର୍ମନିର୍ଦ୍ଦିଷ୍ଟ କର୍ତ୍ତବ୍ୟମାନ ସମାହିତ କରୁଥିଲେ । ଏହି କର୍ତ୍ତବ୍ୟପାଳନର ଲକ୍ଷ୍ୟ ଥିଲା କିପରି ରାଜ୍ୟର ଅଭ୍ୟୁଦୟ ହେବ, ପ୍ରଜାମାନେ ସୁଖଶାନ୍ତିରେ ରହିବେ ଏବଂ ଧର୍ମ ରକ୍ଷିତ ହେବ । ଆବଶ୍ୟକ ସ୍ଥଳେ କ୍ଷତ୍ରିୟମାନଙ୍କୁ ସେଥିପାଇଁ ଅସ୍ତ୍ରଧାରଣ କରିବାକୁ ପଡ଼ୁଥିଲା । ବ୍ରାହ୍ମଣମାନେ ଧର୍ମର ପ୍ରବର୍ତ୍ତକ, ପ୍ରଚାରକ ତଥା ପ୍ରସାରକ ଥିଲା ବେଳେ କ୍ଷତ୍ରିୟମାନ ଥିଲେ ଏହାର ସଂରକ୍ଷକ । ବ୍ରାହ୍ମଣ ଓ କ୍ଷତ୍ରିୟ ଉଭୟ ଗୋଷ୍ଠୀର ପାରସ୍ପରିକ ସହଯୋଗ କ୍ରମେ ଆର୍ଯ୍ୟଧର୍ମର ପରିପ୍ରସାର ଓ ସଂରକ୍ଷଣ ସମ୍ଭବ ହୋଇ ପାରିଥିଲା । ବାସ୍ତବିକ ରାମାୟଣର ଛନ୍ଦେ ଛନ୍ଦେ କ୍ଷତ୍ରିୟମାନେ କିପରି ଧର୍ମରକ୍ଷା ଲାଗି ଅସ୍ତ୍ରଧାରଣ କରିଥିଲେ, ତାହା ହିଁ ଅତି ରୋଚକ ଭାବରେ ବର୍ଣ୍ଣିତ ।

ଦୁର୍ବଳକୁ ରକ୍ଷଣ କରିବା ଥିଲା କ୍ଷତ୍ରିୟଙ୍କର ପରମ କର୍ତ୍ତବ୍ୟ । ତାଙ୍କୁ ନିଜ ଶକ୍ତି ବଳରେ ଅନ୍ୟମାନଙ୍କୁ ରକ୍ଷା କରିବା ସଙ୍ଗେ ସଙ୍ଗେ ନିଜକୁ ମଧ୍ୟ ରକ୍ଷା କରିବାକୁ ପଡ଼ୁଥିଲା । ତାଙ୍କୁ ନିଜ ଉଦ୍ୟମରେ ଜୀବନ-ନିର୍ବାହ କରିବାକୁ ପଡ଼ୁଥିଲା । ତାହାଙ୍କଠାରୁ ଦାନ ଗ୍ରହଣ କରିବା ତାଙ୍କ ପକ୍ଷରେ ଥିଲା ନିତାନ୍ତ ଦୂଷଣୀୟ । ବାସ୍ତବିକ ଭିକ୍ଷାବୃତ୍ତି କ୍ଷତ୍ରିୟମାନଙ୍କ ପାଇଁ ଥିଲା ଏକ ଅତି ପାପକର୍ମ । ଗୌତମ ବୁଦ୍ଧ କ୍ଷତ୍ରିୟ ଥାଇ ଭିକ୍ଷାବୃତ୍ତି କରିଥିବାରୁ ବ୍ରାହ୍ମଣମାନେ ତାଙ୍କୁ କ୍ଷମା ଦେଇନଥିଲେ; ତାଙ୍କୁ ଅତ୍ୟନ୍ତ କଠୋର ଭାବରେ ସମାଲୋଚନା କରିଥିଲେ; ଏବଂ ତାଙ୍କର ପ୍ରବଳ ବିରୋଧ କରିଥିଲେ । କାରଣ ଭିକ୍ଷାବୃତ୍ତି ଯେ କେବଳ ବ୍ରାହ୍ମଣମାନଙ୍କ ଦ୍ୱାରା କରଣୀୟ, ଏହା ଥିଲା ଏକ ପାରମ୍ପରିକ ଧାରଣା, ଯାହା କି ବୈଦିକ କାଳରୁ ଗଢ଼ି ଆସିଥିଲା । ରାମାୟଣ-ଯୁଗରେ ଏହି ସ୍ଥିତି ଥିଲା । ଏ ସମ୍ପର୍କରେ ସୂଚନା ଦେବାକୁ ଯାଇ ଶର୍ମା ଆଉ ଠାଏ କହିଛନ୍ତି

"Bodily strength was one of the chief attributes of a Kshatriya and as such he was to make exertions for the fulfilment of his needs and

deisres; accepting anything in charity from others was ignominous for a Kshatriya. Unlike a Brahman the Kshatriya was expected to give rather than accept from others." (୨୧)

କ୍ଷତ୍ରିୟମାନେ ରାଜସୂୟ, ଅଶ୍ୱମେଧ ଆଦି ନାନା ପ୍ରକାର ଯଜ୍ଞ ସମ୍ପାଦିତ କରୁଥିଲେ । ସେମାନେ ଥିଲେ ଯଜମାନ ଏବଂ ବ୍ରାହ୍ମଣମାନେ ଥିଲେ ପୁରୋଧା । ଏତଦ୍ ବ୍ୟତୀତ ଆଉ ଅନ୍ୟ ବ୍ରାହ୍ମଣମାନେ ମଧ୍ୟ ଯଜ୍ଞକର୍ମରେ ଅଂଶ ସ୍ୱରୂପ ଦାନ ଗ୍ରହଣ କରୁଥିଲେ । ଏହା ଦ୍ୱୈତ ଉଦ୍ଦେଶ୍ୟ ସାଧନ କରୁଥିଲା । ପ୍ରଥମତଃ ଏହା କ୍ଷତ୍ରିୟମାନଙ୍କର ପୁଣ୍ୟସଞ୍ଚୟ ଲାଗି ସହାୟକ ହେଉଥିଲା । ଦ୍ୱିତୀୟତଃ ଏହା ବ୍ରାହ୍ମଣମାନଙ୍କ ଜୀବିକା-ନିର୍ବାହ ପାଇଁ ଏକ ପନ୍ଥା ବାହାର କରୁଥିଲା । ବ୍ରାହ୍ମଣମାନଙ୍କ ବ୍ୟତୀତ ଅନ୍ୟ ଗୋଷ୍ଠୀର ଲୋକମାନେ ମଧ୍ୟ ଦୀର୍ଘଦିନବ୍ୟାପୀ ଚାଲୁଥିବା ଏହି ଯଜ୍ଞାନୁଷ୍ଠାନମାନଙ୍କରେ କିଛି କିଛି ଅର୍ଥ ଉପାର୍ଜନ ପାଇଁ ସମର୍ଥ ହୋଇ ପାରୁଥିଲେ । ଉଦାହରଣସ୍ୱରୂପ ଦଶରଥଙ୍କ 'ପୁତ୍ରେଷ୍ଟି ଯଜ୍ଞ'କୁ ବ୍ରାହ୍ମଣମାନଙ୍କ ସମେତ ରଥକାର, ଚର୍ମକାର, ବଢ଼େଇ, କମାର, ଜୋତିଷୀ ଆଦି ବିଭିନ୍ନ ଗୋଷ୍ଠୀର ଲୋକମାନଙ୍କୁ ଡକାଇବାର ବ୍ୟବସ୍ଥା ବିଶିଷ୍ଟ କରିଥିଲେ ଏବଂ ସେମାନଙ୍କ ରହିବା ଲାଗି ସ୍ୱତନ୍ତ୍ର ବ୍ୟବସ୍ଥାମାନ ଖଞ୍ଜିଥିଲେ । ସେତେବେଳର ବିରାଟ ଯଜ୍ଞାନୁଷ୍ଠାନଗୁଡ଼ିକୁ ଆଜିକାର ସାଂସ୍କୃତିକ ଉତ୍ସବ, ବାଣିଜ୍ୟ ମେଳା, ପ୍ରଦର୍ଶନୀ ଆଦି ସହିତ ତୁଳନା କରାଯାଇପାରେ । ସବୁଠାରୁ ବଡ଼ କଥା ହେଲା ଦାନକୁ ଏକ ପରମ ଧର୍ମ ବୋଲି ଧରା ଯାଉଥିବାରୁ କ୍ଷତ୍ରିୟମାନଙ୍କ ମଧ୍ୟରେ ସମ୍ପତ୍ତି ଠୁଳ ନକରି ତାହାକୁ ଦାନ ଦେଇଦେବା ଲାଗି ଅଭୀପ୍ସା ଜାଗ୍ରତ ହେଉଥିଲା । ଏହା ଫଳରେ ସମ୍ପତ୍ତି ଠୁଳ କରି ରଖିବାର ସାମାଜିକ କୁପରିଣତିସମୂହକୁ ପ୍ରତିହତ କରାଯାଇ ପାରୁଥିଲା । ସ୍ୱାମୀ ନିଃଶ୍ରେୟସାନନ୍ଦଙ୍କ ନିମ୍ନୋକ୍ତ ବକ୍ତବ୍ୟ ଦ୍ୱାରା ଏହା ପରିପୁଷ୍ଟ

Without dakshina and presents no sacrifice was thought complete; and if wealth, power, long life, progeny and even heaven were the results the performer had in view for himself, food, kind treatment, honour, rewards for merit, chances to compete in the display of skill, and a redistribution of riches and political power were none the

less benefits which sacrifices conferred upon society as a whole. (୨୨)

ଏହିପରି ଭାବରେ କ୍ଷତ୍ରିୟମାନଙ୍କ ଦ୍ୱାରା ଆୟୋଜିତ ଯଜ୍ଞସମୂହ ଦ୍ୱାରା ବ୍ରାହ୍ମଣ-ଗୋଷ୍ଠୀ ସମେତ ସାରା ସମାଜ ଉପକୃତ ହେଉଥିଲେ ।

ବାଲ୍ମୀକି ରାମାୟଣ ହେଉଛି ମୁଖ୍ୟତଃ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର କାବ୍ୟ । ଏଥିରେ ବୈଶ୍ୟ ଓ ଶୂଦ୍ରମାନଙ୍କ ବିଷୟରେ ଖୁବ୍ କମ୍ ଉଲ୍ଲେଖ ଅଛି । ସେତେବେଳେ ସମାଜରେ ଯେ ଏହି ଉଚ୍ଚ ଦୁଇ ବର୍ଣ୍ଣର ଖୁବ୍ ପ୍ରାଧାନ୍ୟ ଥିଲା, ତାହା ଏଥିରୁ ସହଜରେ ଅନୁମେୟ । ବାଲ୍ମୀକିଙ୍କ ରାମାୟଣ ରଚନାର ଉଦ୍ଦେଶ୍ୟ କ'ଣ ଥିଲା, ସେ ସମ୍ପର୍କରେ ଆଲୋକପାତ କରିବାକୁ ଯାଇ ସ୍ୱାମୀ ନିଃଶ୍ରେୟସାନନ୍ଦ ଆଉ ଠାଏ କୁହନ୍ତି :

We are brought face to face with a series of difficult, baffling and tragic situations, and shown how Rama and the other principal characters react to them and ultimately tide over them without severing in the least from the highest principles of spiritual life laid down in the scriptures. Inner perfection issuing out of the virtuous action which overcomes evil and transforms the evil-doer is thus Valmiki's main theme. (୨୩)

ଯଦି ସାମାଜିକ କଲ୍ୟାଣ ଥିଲା ବାଲ୍ମୀକିଙ୍କର ଲକ୍ଷ୍ୟ, ତେବେ କେହି କେହି ପ୍ରଶ୍ନ କରିପାରନ୍ତି, କେବଳ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କୁ ଏହି ଗ୍ରନ୍ଥରେ ପ୍ରାଧାନ୍ୟ ଦିଆଗଲା କାହିଁକି ? ଅନ୍ୟ ବର୍ଣ୍ଣର ବ୍ୟକ୍ତିମାନଙ୍କ ବିଷୟରେ ସମ୍ୟକ ଚର୍ଚ୍ଚା କରାଯାଇ ନଥିଲା ବା କାହିଁକି ? କେବଳ ବ୍ରାହ୍ମଣ ଓ କ୍ଷତ୍ରିୟଗୋଷ୍ଠୀର ଯଦି ଅଭ୍ୟୁଦୟ ହେବ, ତଦ୍ୱାରା କ'ଣ ସାରା ସମାଜର କଲ୍ୟାଣ ସାଧିତ ହୋଇପାରିବ ? ଏହି ପ୍ରଶ୍ନ ଯୁକ୍ତି-ଯୁକ୍ତ ବୋଲି ମନେ ହେଲେ ହେଁ, ଯେଉଁ ପରିପ୍ରେକ୍ଷୀରେ ବାଲ୍ମୀକି ରାମାୟଣ ରଚନାରେ ବ୍ରତୀ ହୋଇଥିଲେ ତାହା ବିଚାର କଲେ ଆମେ ଦେଖିବା ଯେ ସେ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କୁ ପ୍ରାଧାନ୍ୟ ଦେବା ଦ୍ୱାରା କିଛି ଅନ୍ୟାୟ କରିନାହାନ୍ତି । ନିମ୍ନଲିଖିତ କାରଣରୁ ବାଲ୍ମୀକିଙ୍କ କାର୍ଯ୍ୟ ଯଥାର୍ଥ

(କ) ସେତେବେଳେ ଭାରତୀୟ ଧାର୍ମିକ, ଆଧ୍ୟାତ୍ମିକ ଓ ସାଂସ୍କୃତିକ ଚିନ୍ତାଧାରା ଏକ ଦ୍ରୁତ ବିବର୍ତ୍ତନ ଦେଇ ଗତି କରୁଥିଲା । ଆର୍ଯ୍ୟଧର୍ମର ପରିପ୍ରସାର,

ଧର୍ମପ୍ରସାର ଓ ସଂରକ୍ଷଣରେ ବ୍ରାହ୍ମଣ ଓ କ୍ଷତ୍ରିୟ ଗୋଷ୍ଠୀଙ୍କର ଭୂମିକା ଥିଲା ଅତି ଗୁରୁତ୍ୱପୂର୍ଣ୍ଣ । ଏଥିପାଇଁ ଯେତେ ଯାହା ବାଧା, ବିପଦ ଆସୁଥିଲା, ତାହା ସେମାନେ ନିଜେ ନିଜେ ଅଙ୍ଗେ ନିଭାଉଥିଲେ ଏବଂ ଏହି ବାଧାସମୂହକୁ ଅତିକ୍ରମ କରିଯିବା ପାଇଁ ସତତ ଉଦ୍ୟମଶୀଳ ଥିଲେ । ସେମାନଙ୍କର ଏହି ଭୂମିକାକୁ ଯଥାଯଥ ଭାବରେ ପ୍ରତିପାଦିତ କରିବା ଥିଲା ବାଲ୍ମୀକିଙ୍କର ଲକ୍ଷ୍ୟ ।

(ଖ) ରାମାୟଣର ଅର୍ଥ ହେଲା ରାମଙ୍କ ଜୀବନଚରିତ । ଧରଣୀବକ୍ଷରେ କିଭଳି ଭାବରେ କଲ୍ୟାଣର ଆନୟନ କରାଯାଇ ପାରିବ, ତାହା ହେଉଛି ଏହି ଗ୍ରନ୍ଥର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ଏଥିପାଇଁ ରାମାୟଣରେ କେତେକ ପ୍ରକୃତ ଚରିତ୍ର, ଏବଂ ଆଉ କେତେକ କାଳ୍ପନିକ ପାର୍ଶ୍ୱ ଚରିତ୍ରର ଅବତାରଣା କରାଯାଇଛି । ବାଲକାଣ୍ଡର ପ୍ରଥମ ଶ୍ଳୋକରୁ ଆମେ ଜାଣି ପାରିବା ଯେ ବାଲ୍ମୀକି ନାରଦଙ୍କୁ ଏହି ସଂସାରରେ ସର୍ବଗୁଣସଂପନ୍ନ କେଉଁ ରାଜା ଅଛନ୍ତି ବୋଲି ପଚାରିଥିଲେ ଏବଂ ନାରଦ ରାମଙ୍କ ନାମ କହିବାରୁ ସେ ତାଙ୍କ ଜୀବନଚରିତ ଲେଖିବା ପାଇଁ ମନସ୍ଥ କରିଥିଲେ । ରାମଙ୍କ ଜୀବନଚରିତ ଆଲୋଚନା କଲାବେଳେ କ୍ଷତ୍ରିୟ ଓ ବ୍ରାହ୍ମଣମାନଙ୍କ କଥା ବେଶି ସମ୍ମୁଖକୁ ଆସିବା ସ୍ୱାଭାବିକ; କାରଣ ସେହିମାନଙ୍କ ସହିତ ତାଙ୍କର ପାରସ୍ପରିକ ସମ୍ପର୍କ, ଘାତ-ପ୍ରତିଘାତ, କ୍ରିୟା-ପ୍ରତିକ୍ରିୟା ଅଧିକତର ଭାବରେ ସଂଘଟିତ ହୋଇଥିଲା ।

(ଗ) ଏହା ଥିଲା ନ୍ୟାୟ ଓ ଅନ୍ୟାୟ ମଧ୍ୟରେ, ଧର୍ମ ଓ ଅଧର୍ମ ମଧ୍ୟରେ ଚାଲିଥିବା ଯୁଦ୍ଧର କାହାଣୀ । ନ୍ୟାୟ ଓ ଧର୍ମ ପକ୍ଷରେ ଥିଲେ ଋଷି, ବ୍ରାହ୍ମଣ ଓ କ୍ଷତ୍ରିୟମାନେ । ଅନ୍ୟାୟ ଓ ଅଧର୍ମ ପକ୍ଷରେ ଥିଲେ ଅସୁର ଓ ରାକ୍ଷସମାନେ । ତେଣୁ ଏଥିରେ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ଗୁରୁତ୍ୱ ପାଇବା ସ୍ୱାଭାବିକ ।

ଏସବୁର ଅର୍ଥ ନୁହେଁ ଯେ ବୈଶ୍ୟ-ବର୍ଣ୍ଣର ଆଦୌ ଉଲ୍ଲେଖ ରାମାୟଣରେ କରାଯାଇନାହିଁ । ବାସ୍ତବିକ ବୈଶ୍ୟ-ବର୍ଣ୍ଣର ଉଲ୍ଲେଖ ଯତ୍ରତତ୍ର କେଉଁଠି କେମିତି କରାଯାଇଛି । କିନ୍ତୁ କୌଣସିଠାରେ ଦାସ-ବର୍ଣ୍ଣର କୌଣସି ନାମ ଉଲ୍ଲେଖ କରାଯାଇନାହିଁ । କେବଳ ଯାହା ନୀଚ ବର୍ଣ୍ଣର ବ୍ୟକ୍ତି ଶମ୍ବୁକ ତପସ୍ୟାରେ ରତ ହେବା କଥାର ଉଲ୍ଲେଖ ଅଛି ଏବଂ ରାମ ଦଣ୍ଡବିଧାନ-ସ୍ୱରୂପ ସେହି ମୁନିଙ୍କର ମୁଣ୍ଡକାଟି କରିଥିବା କଥା କୁହାଯାଇଛି । ଏହାର ପ୍ରଧାନ କାରଣ ହେଲା ଉପରଲିଖିତ ସାଂସ୍କୃତିକ-ଧାର୍ମିକ ସଂଘର୍ଷରେ ସେମାନଙ୍କର ଭୂମିକା ପ୍ରାୟ ନଥିଲା କହିଲେ ଚଳେ । ରାମାୟଣର ବାଲ କାଣ୍ଡରେ ଅଯୋଧ୍ୟା-

ନଗରୀର ବର୍ଣ୍ଣନା ପ୍ରସଙ୍ଗରେ ଦୋକାନ-ବଜାରମାନଙ୍କର ଉଲ୍ଲେଖ ଅଛି । ଏଥିରେ ନିୟୋଜିତ ବ୍ୟକ୍ତିମାନେ ଥିଲେ ବୈଶ୍ୟ । ଏମାନଙ୍କୁ ବାଲ୍ମୀକୀୟ ଭାଷାରେ କୁହାଯାଉଥିଲା 'ବଣିକ୍‌ଜନ' । ସେହିପରି ତହିଁରେ ଆଉ ଠାଏ ବ୍ୟବସାୟୀମାନଙ୍କର ସଂଘକୁ 'ନିଗମ' ଓ 'ଶ୍ରେଣୀ' କୁହାଯାଉଥିବାର ଉଲ୍ଲେଖ ଅଛି । ବୁଦ୍ଧଙ୍କ ସମୟରେ ମଧ୍ୟ (ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ) 'ନିଗମ' ଓ 'ଶ୍ରେଣୀ' ପ୍ରଚଳିତ ଥିବା କଥା ଆମେ ଜାତକ ଗ୍ରନ୍ଥସମୂହ ଅଧ୍ୟୟନ କଲେ ଜାଣିପାରୁ । ଶର୍ମା ମଧ୍ୟ ଏହି ମତର ପୃଷ୍ଟପୋଷକତାପୂର୍ବକ କହନ୍ତି

"The Vaishyas are often mentioned just to complete the list of the Varnas. However, by gleaning through the information scattered loosely in the Ramayana, it appears that they were a community engaged in trade, agriculture and cattlerearing ।" (୨୪)

ରାମାୟଣରେ ଠାଏ (ଅଯୋଧ୍ୟାପର୍ବ, ୧୦୦ । ୪୧) ରାମ ଭରତଙ୍କୁ ପ୍ରଶ୍ନ କରୁଛନ୍ତି, "ଅଯୋଧ୍ୟାରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ ସେମାନଙ୍କର କର୍ମମାନ ଠିକଣା ଭାବରେ କରୁଛନ୍ତି ତ ?" ଏଠାରେ ଶୂଦ୍ର-ସଂପ୍ରଦାୟ ସମ୍ପର୍କରେ ଉଲ୍ଲେଖ ନଥିବାରୁ ହୁଏତ ପ୍ରଶ୍ନ ହୋଇପାରେ, ଶୂଦ୍ରମାନଙ୍କ ପାଇଁ କ'ଣ ନିର୍ଦ୍ଦିଷ୍ଟ କର୍ମ କିଛି ନଥିଲା ? ଅଥବା ଶୂଦ୍ର ବୋଲି କୌଣସି ଗୋଟିଏ ସଂପ୍ରଦାୟ କ'ଣ ସେତେବେଳେ ନଥିଲା ? ଶୂଦ୍ର ନାମର ଉଲ୍ଲେଖ କାହିଁ କେତେ ପ୍ରାଚୀନ କାଳରୁ ଋଗ୍‌ବେଦର ଦଶମ ମଣ୍ଡଳସ୍ଥ 'ପୁରୁଷ-ସୂକ୍ତ'ରେ ବର୍ଣ୍ଣିତ । ଅତଏବ, ରାମାୟଣ-କାଳରେ ଶୂଦ୍ର-ସଂପ୍ରଦାୟ ନଥିଲା ବୋଲି କହିବା ଠିକ୍ ହେବନାହିଁ । ବାସ୍ତବିକ ପୂର୍ବୋକ୍ତ ମତେ ଶମ୍ବୂକ ନାମକ ଜଣେ ଶୂଦ୍ର ତପସ୍ୟାରତ ଥିବାରୁ ରାମ ତାକୁ ଦଣ୍ଡ ଦେଇଥିବା କଥା ରାମାୟଣରେ (ଉତ୍ତରକାଣ୍ଡ) ବର୍ଣ୍ଣିତ । ଶୂଦ୍ରମାନେ ଥିଲେ ସେବାକାରୀ ସଂପ୍ରଦାୟର ଏବଂ ପ୍ରଥମରୁ ସେମାନେ ଆସିଥିଲେ ଆର୍ଯ୍ୟେତର ଗୋଷ୍ଠୀରୁ । ସେମାନଙ୍କ ସୃଷ୍ଟିର ଇତିହାସ ଅଧ୍ୟୟନ କଲେ ଆମେ ଜାଣିପାରିବା ଯେ ବୈଦିକ କାଳରେ ଯେଉଁ ଆର୍ଯ୍ୟ-ଦାସ ସଂଗ୍ରାମ ହୋଇଥିଲା ତାହା ହେଉଛି ସେମାନଙ୍କ ସୃଷ୍ଟିର କାରଣ । ପରାଜିତ ଦାସମାନେ ଆର୍ଯ୍ୟମାନଙ୍କର ଦାସ ହୋଇଗଲେ ଏବଂ କାଳକ୍ରମେ ସେମାନେ ଆର୍ଯ୍ୟ-ସଂପ୍ରଦାୟରେ ମିଶିଗଲେ । କିନ୍ତୁ ଏ ମିଶ୍ରଣ ସଂପୂର୍ଣ୍ଣ ହୋଇ ପାରିନଥିଲା । ସେମାନଙ୍କୁ ସମାଜରେ ଏକ ସ୍ୱତନ୍ତ୍ର ସର୍ବନିମ୍ନ ସ୍ଥିତି ଦିଆଯାଇଥିଲା । ରାମାୟଣକାଳୀନ

ଭାରତରେ ଅଲ୍ପବହୁତ ଏହି ସ୍ଥିତି ହିଁ ପ୍ରାପ୍ତ ଥିଲା । ସେମାନେ ମୁଖ୍ୟତଃ ଥିଲେ ଏକ ସେବାକାରୀ ଗୋଷ୍ଠୀ । ସେମାନେ ଅନ୍ୟ ତିନି ବର୍ଣ୍ଣଙ୍କର ସେବା କରୁଥିଲେ । ବର୍ଣ୍ଣର ଭିନ୍ନତା ଦୃଷ୍ଟିରୁ ସେମାନଙ୍କ କର୍ମର ମଧ୍ୟ ପାର୍ଥକ୍ୟ ରହୁଥିଲା । ଅତଏବ, ସେମାନଙ୍କ ପାଇଁ ବର୍ଣ୍ଣଗତ କିଛି ନିର୍ଦ୍ଦିଷ୍ଟ କର୍ମ ନଥିଲା । ସେମାନେ ଅବଶ୍ୟ ବେଦପାଠରୁ ବଞ୍ଚିତ ଥିଲେ ଏବଂ ଯଜ୍ଞୋପବୀତ ଧାରଣ କରି ପାରୁ ନଥିଲେ । ଏହା ସତ୍ତ୍ୱେ ସେମାନେ ସମାଜରେ ନିନ୍ଦିତ କିମ୍ବା ଅତ୍ୟାଚାରିତ ହେଉନଥିଲେ । ରାଜା ଦଶରଥ ଯେତେବେଳେ ପୁତ୍ରେଷ୍ଟି ଯଜ୍ଞର ଆୟୋଜନ କରିଥିଲେ, ସେତେବେଳେ ଅନ୍ୟମାନଙ୍କ ମଧ୍ୟରେ ଶୂଦ୍ରମାନେ ମଧ୍ୟ ତାଙ୍କ ଯଜ୍ଞୋତ୍ସବକୁ ନିମନ୍ତ୍ରଣ ପାଇଁ ଆସିଥିବା କଥା ରାମାୟଣରେ ବର୍ଣ୍ଣିତ । ଅନ୍ୟ ବର୍ଣ୍ଣମାନଙ୍କ ସହିତ ଶୂଦ୍ରବର୍ଣ୍ଣର ଖୁବ୍ ସଦ୍‌ଭାବ ଥିଲା ବୋଲି ଶର୍ମା ମଧ୍ୟ ଆଜି ଠାଏ ମତ ଦେଇଥାନ୍ତି । ତାଙ୍କ ଭାଷାରେ

> The shudras were living in perfect goodwill of the people. (୨୫)

ଅତଏବ, ଆର୍ଯ୍ୟ-ସଂସ୍କୃତିର ପ୍ରଚାର, ପ୍ରସାର ଓ ସଂରକ୍ଷଣରେ ବିଶେଷ ଭୂମିକା ନେଇ ନଥିଲେ ମଧ୍ୟ ରାମାୟଣ ଯୁଗରେ ବୈଶ୍ୟ ଓ ଶୂଦ୍ର ସଂପ୍ରଦାୟର ଲୋକେ ଥିଲେ ଏବଂ ସେମାନଙ୍କର ଅନ୍ୟ ଦୁଇ ଉଚ୍ଚ ସଂପ୍ରଦାୟଙ୍କ ସହିତ ସୁସଂପର୍କ ଥିଲା ।

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ମୁଖ୍ୟତଃ ଏହି ଚାରି ବର୍ଣ୍ଣ ସେତେବେଳେ ଥିଲେ ହେଁ ସେମାନଙ୍କ ଅତିରିକ୍ତ ଚଣ୍ଡାଳ, ଅନ୍ତ୍ୟଜ, ପୁକ୍‌କସ ଆଦି ଆଉ କେତେକ ଉପଜାତି ମଧ୍ୟ ସେତେବେଳେ ଥିଲେ । ଧର୍ମଶାସ୍ତ୍ର କୁହେ ଯେ ଗୋଟିଏ ଜାତିର ପୁରୁଷ ଅନ୍ୟ ଜାତିର ସ୍ତ୍ରୀ ଗ୍ରହଣ କରିବା ଫଳରେ ଏହି ଉପଜାତିଗୁଡ଼ିକର ଉଦ୍ଭବ ହୋଇଥିଲା ଏବଂ ଏମାନେ ସାମର୍ଥ୍ୟ ଅନୁସାରେ ସ୍ୱୀୟ ସାମାଜିକ କର୍ତ୍ତବ୍ୟକର୍ମ ବାଛି ନେଇଥିଲେ । ପ୍ରତିଲୋମ ବିବାହ (ସ୍ତ୍ରୀ ଉଚ୍ଚ ବର୍ଣ୍ଣର ଓ ପୁରୁଷ ନୀଚ ବର୍ଣ୍ଣର) ଆର୍ଯ୍ୟମାନଙ୍କ ପାଇଁ ନିଷିଦ୍ଧ ଥିଲେ ମଧ୍ୟ ବିଭିନ୍ନ ପରିସ୍ଥିତିରେ ଏଭଳି ବିବାହମାନ ବେଳେ ବେଳେ ଘଟୁଥିଲା । ଏହି ବିବାହଜନିତ ସୃଷ୍ଟ ସନ୍ତାନମାନଙ୍କୁ ପିତାଙ୍କ କୁଳରୁ ଅପେକ୍ଷାକୃତ ନୀଚ କୁଳରେ ଅନ୍ତର୍ଭୁକ୍ତ କରାଯାଉଥିଲା । ଏହିଭଳି ଭାବରେ ନାନା ଉପଜାତିର ସୃଷ୍ଟି ହୋଇଥିଲା । ଶେଷକୁ ଗୋଟିଏ ପ୍ରକାର ଉପଜାତି ଆସିଲେ ଯେଉଁମାନେ କି ସମାଜରେ ଅସ୍ପୃଶ୍ୟ ବୋଲି ଗଣା ହେଲେ । ଚଣ୍ଡାଳ ସେମାନଙ୍କ ମଧ୍ୟରେ ଅନ୍ୟତମ । ରାଜା ତ୍ରିଶଙ୍କୁ ଥିଲେ କ୍ଷତ୍ରିୟ । ବଶିଷ୍ଠଙ୍କ ପୁତ୍ରମାନଙ୍କ ଅଭିଶାପ ଫଳରେ ସେ ଯେତେବେଳେ ଚଣ୍ଡାଳ ହୋଇଗଲେ, ସେତେବେଳେ ତାଙ୍କୁ

ପାତ୍ରମନ୍ତ୍ରୀ, ସୈନ୍ୟସାମନ୍ତ ସମସ୍ତେ ପରିତ୍ୟାଗ କଲେ । ତାଙ୍କୁ ସ୍ୱୀୟ ରାଜସିଂହାସନ ତ୍ୟାଗିବାକୁ ପଡ଼ିଥିଲା । ଗୌତମଙ୍କ ପୁତ୍ର ଶତାନନ୍ଦ ବିଶ୍ୱାମିତ୍ରଙ୍କଠାରୁ ରାମଲକ୍ଷ୍ମଣଙ୍କ ପରିଚୟ ପାଇବା ପରେ ରାମଙ୍କ ଆଗରେ ତ୍ରିଶଙ୍କୁ ଉପାଖ୍ୟାନ ବର୍ଣ୍ଣନା କରିବା ପ୍ରସଙ୍ଗରେ କହୁଛନ୍ତି

ତଂ ଦୃଷ୍ଟ୍ୱା ମନ୍ତ୍ରିଣଃ ସର୍ବେ ତ୍ୟକ୍ତ୍ୱା ଚଣ୍ଡାଳରୂପିଣମ୍ ।
ପ୍ରାଦ୍ରବନ୍ ସହିତା ରାମ ପୌରା ଯେଽସ୍ୟାନୁଗାମିନଃ ॥" (୨୭)

ଅର୍ଥାତ୍ ହେ ରାମ ! ରାଜାଙ୍କୁ ଚଣ୍ଡାଳ ରୂପରେ ଦେଖି ତାଙ୍କ ସାଥିରେ ଆସିଥିବା ସବୁ ମନ୍ତ୍ରୀ ଓ ପୁରବାସୀ ତାଙ୍କୁ ଛାଡ଼ିଦେଇ ଚାଲିଗଲେ । ଚଣ୍ଡାଳ ଯେ ଅସ୍ପୃଶ୍ୟ ଓ ସର୍ବଜନ ପରିତ୍ୟାଜ୍ୟ, ଏହି ଭାବଟି ଏଠାରେ ବିବକ୍ଷିତ । ଚଣ୍ଡାଳମାନେ ପାଇଖାନା ସଫା କରିବା, ମୃତଜୀବମାନଙ୍କର ଶବ ବହନ କରିବା ଆଦି ନୀଚ କର୍ମ କରୁଥିଲେ । ତେଣୁ ଜନ୍ମସ୍ଥଳୀରେ ସେମାନଙ୍କର ଉପସ୍ଥିତି ଥିଲା ବର୍ଜନୀୟ । ସେମାନଙ୍କ ଅଧୋବାସ ଥିଲା କୃଷ୍ଣବର୍ଣ୍ଣର ଏବଂ ଉତ୍ତରୀବାସ ଥିଲା ରକ୍ତ ବର୍ଣ୍ଣର । ସେମାନଙ୍କ ଆଭୂଷଣମାନ ଥିଲା ଲୌହନିର୍ମିତ । (୨୭) ଚଣ୍ଡାଳବସ୍ତି ପ୍ରଧାନ ବସ୍ତିର ଗୋଟିଏ ମୁଣ୍ଡରେ ରହୁଥିଲା । 'ପୁକ୍କସ' ଆଦି ଗୋଟିଏ ଗୋଷ୍ଠୀ ଯାହାର ସାମାଜିକ ସ୍ଥିତି ମଧ୍ୟ ଥିଲା ଅନୁରୂପ ଭାବରେ ଦୟନୀୟ । ସେମାନେ ଯେଉଁ ପାତ୍ରରେ ଖାଉଥିଲେ ଏପରିକି ଅଗ୍ନିରେ ମଧ୍ୟ ତାହା ପବିତ୍ରକୃତ ହୋଇପାରିବ ନାହିଁ ବୋଲି କୁହାଯାଉଥିଲା । ପି. ଭି. କାଣେଙ୍କ ଭାଷାରେ

The Pukkasas are included by Mahabhashya under Sudras that are nirvasitas, i. e. those who are so low in the caste system that if a vessel is used by them for eating their food, it cannot be used by any one of the other castes even after the vessel is purified by fire. (୨ )

ବୁଦ୍ଧଙ୍କ ସମୟରେ (ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀ) ଚଣ୍ଡାଳ, ପୁକ୍କସ ଆଦିଙ୍କର ସାମାଜିକ ସ୍ଥିତି ଅନୁରୂପ ଥିବାର ଦୃଷ୍ଟାନ୍ତ ଆମେ ବୌଦ୍ଧ ଜାତକଗଳ୍ପସମୂହ ଅଧ୍ୟୟନ କଲେ ଜାଣିଥାଉଁ । ରାମାୟଣର ରଚନା ଆନୁମାନିକ ସେହି ସମୟର ହୋଇଥିବାରୁ ବାଲ୍ମୀକି ଏବଂବିଧ ସମସାମୟିକ ସାମାଜିକ ସ୍ଥିତି ପ୍ରତି ସଚେତନ ଥିବା ସ୍ୱାଭାବିକ ।

## ଦାସତ୍ୱ ପ୍ରଥା

କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ରରେ (ଖ୍ରୀ. ପୂ. ୪ର୍ଥ ଶତାବ୍ଦୀ) କହିଛନ୍ତି "ନତ୍ୱେ ଆର୍ଯ୍ୟସ୍ୟ ଦାସଭାବଃ" । ଅର୍ଥାତ୍ ଆର୍ଯ୍ୟଙ୍କର ଦାସଭାବ ନଥାଏ ବା ଆର୍ଯ୍ୟମାନଙ୍କ ମଧ୍ୟରେ କେହି ଦାସ ହୁଅନ୍ତି ନାହିଁ । ଯଦି କେହି ଦାସ ହୁଏ, ତେବେ ତା'ର ଆର୍ଯ୍ୟତ୍ୱ ଚାଲିଯାଏ । ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ରାଜସଭାକୁ ଆସିଥିବା ଗ୍ରୀକ୍ ରାଜଦୂତ ମେଘାସ୍ଥିନିସ୍ ମଧ୍ୟ ତତ୍‌କାଳୀନ ସାମାଜିକ ଅବସ୍ଥା ବର୍ଣ୍ଣନା ପ୍ରସଙ୍ଗରେ କହିଛନ୍ତି ଯେ ଭାରତୀୟମାନଙ୍କ ମଧ୍ୟରେ ଦାସତ୍ୱ ପ୍ରଥା ନଥିଲା । ଏହାକୁ ଭିତ୍ତି କରି ଅନେକ ପଣ୍ଡିତ କୁହନ୍ତି ଯେ ଭାରତୀୟମାନଙ୍କ ମଧ୍ୟରେ ସେତେବେଳେ ଦାସତ୍ୱ ପ୍ରଥା ଆଦୌ ନଥିଲା । ଏହା କିନ୍ତୁ ଆଂଶିକ ଭାବରେ ଠିକ୍ । ସେତେବେଳେ ଦାସତ୍ୱ ପ୍ରଥା ନଥିଲା; ଅଥଚ 'ଦାସ' ଥିଲେ ଏବଂ ସେମାନେ ଥିଲେ ଆର୍ଯ୍ୟେତର ଗୋଷ୍ଠୀର । ପାଶ୍ଚାତ୍ୟ ଦେଶରେ ଦାସତ୍ୱ ପ୍ରଥାକୁ (slavery) ଯେଭଳି ଅର୍ଥରେ ବ୍ୟବହାର କରାଯାଉଥିଲା, ଭାରତରେ ଅବଶ୍ୟ ତାହା ସେଭଳି ଅର୍ଥରେ ବ୍ୟବହୃତ ହେଉ ନଥିଲା । ମେଘାସ୍ଥିନିସ୍ ଯେଉଁ ଗ୍ରୀସୀୟ ଅନୁଭୂତିର ପୃଷ୍ଠଭୂମି ନେଇ ତାଙ୍କ ବିବରଣୀ ଲେଖିଛନ୍ତି, ତାଙ୍କ ଆଖି ଆଗରେ ନିଜ ଜନ୍ମଭୂମିରେ ଦାସମାନଂକ ପ୍ରତି ପଶୁ ଭଳି କରାଯାଉଥିବା ବ୍ୟବହାର ବାରମ୍ବାର ନାଚି ଯାଉଥିବ । ସେଥିପାଇଁ ସେ କହିଗଲେ ଯେ ଭାରତ ସେଭଳି ପ୍ରଥାରୁ ମୁକ୍ତ । ଯଦି ଭାରତରେ ଦାସ ନଥିଲେ ତେବେ 'ଦାସ' ଶବ୍ଦଟି ଆସିଥାନ୍ତା କୁଆଡ଼ୁ ? ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀରେ ମଧ୍ୟ ଦାସଦାସୀ ଥିବାର ପ୍ରମାଣ ଆମକୁ ମିଳିଥାଏ । ଗୌତମ ବୁଦ୍ଧଙ୍କ ସମସାମୟିକ 'ବିକ୍ଷେପବାଦ'ର ପ୍ରବର୍ତ୍ତକ ସଞ୍ଜୟ ବେଲଥୀପୁତ୍ର ଥିଲେ ଜଣେ ଦାସୀପୁତ୍ର । ତାଙ୍କ ପିତା ଅବଶ୍ୟ ଥିଲେ ଜଣେ ବ୍ରାହ୍ମଣ । ବୌଦ୍ଧଜାତକ ଗଳ୍ପମାନଙ୍କରେ ତିନି ପ୍ରକାର ଦାସମାନଙ୍କ ବିଷୟରେ ଉଲ୍ଲେଖ ଅଛି । ପ୍ରଥମ ପ୍ରକାର ଦାସ ହେଲେ ଜନ୍ମଦାସ । ଦ୍ୱିତୀୟ ପ୍ରକାର ଦାସ ହେଲେ କ୍ରୀତଦାସ । ତୃତୀୟ ପ୍ରକାର ଦାସ ସ୍ୱୀୟ ଗ୍ରାସାଚ୍ଛାଦନ ଲାଗି ଅନ୍ୟ ବ୍ୟକ୍ତିଙ୍କ ପାଖରେ ଦାସ ହୋଇ ରହୁଥାନ୍ତି । (୨୯) ଉପନିଷଦ-ଯୁଗରେ ମଧ୍ୟ ଆମେ ଦାସତ୍ୱ ପ୍ରଥାର କିଞ୍ଚିତ୍ ଆଭାସ ଆମେ ପାଇଥାଉଁ ଐତରେୟ ମହୀଦାସ ଓ ସତ୍ୟକାମ ଜାବାଲଙ୍କ ନାମଦ୍ୱୟରୁ ଯେଉଁମାନେ କି ଥିଲେ ଯଥାକ୍ରମେ ଦାସୀ ଇତରା ଓ ଜବାଲାର ପୁତ୍ର । ରାମାୟଣରେ ମଧ୍ୟ ଆମେ 'ଦାସ' ଶବ୍ଦର ଅନେକତ୍ର ଉଲ୍ଲେଖ ଦେଖିଥାଉଁ । ରାମାୟଣରେ ଦାସୀ ମନ୍ଥରାର ନାମ ଉଲ୍ଲିଖିତ । ଆଉ ମଧ୍ୟ ଜନକ ତାଙ୍କ ଝିଅ ଓ ଝିଆରୀମାନଙ୍କୁ ଶ୍ୱଶୁରଘରକୁ ପଠାଇଲା ବେଳେ ସେମାନଙ୍କ ସାଥିରେ ଅନେକ ଦାସୀ ପଠାଇଥିଲେ ବୋଲି ଉକ୍ତ ଗ୍ରନ୍ଥରେ ବର୍ଣ୍ଣିତ । ଅତଏବ, ରାମାୟଣ-ଯୁଗରେ ଦାସତ୍ୱ

ପ୍ରଥା ଥିଲା ବୋଲି କହିଲେ ସମୀଚୀନ ହେବ । କିନ୍ତୁ ଏହାର ରୂପରେଖ କିଭଳି ଥିଲା, ସେ ବିଷୟରେ ସମ୍ୟକ୍ ସୂଚନା ଉକ୍ତ ଗ୍ରନ୍ଥରେ ନାହିଁ । ଶର୍ମାଙ୍କ ମତ ମଧ୍ୟ ଅନୁରୂପ । ସେ କୁହନ୍ତି

> It may be stated at the very outset that besides employing the words 'dasa' and 'dasi' the epic provides little information about the institution of slavery. (୩୦)

ରାମାୟଣର ଅଯୋଧ୍ୟାକାଣ୍ଡରେ ଠାଏ 'ଦାସଃ' ଶବ୍ଦ ସହିତ 'ପ୍ରେଷ୍ୟାଃ' ଶବ୍ଦର ଉଲ୍ଲେଖ ଅଛି । ବନବାସ-ଜୀବନ ଯେ କିଭଳି କଷ୍ଟକର ସେ କଥା କୌଶଲ୍ୟା ରାମଙ୍କ ଆଗରେ ବର୍ଣ୍ଣନା କରି କହୁଛନ୍ତି

> ଯସ୍ୟ ପ୍ରେଷ୍ୟାଶ୍ଚ ଦାସାଶ୍ଚ ମୃଷ୍ଟାନ୍ୟନ୍ନାନି ଭୁଞ୍ଜତେ ।
> କଥଂ ସ ଭୋକ୍ଷ୍ୟତେ ରାମୋ ବନେ ମୂଲଫଳାନ୍ୟୟମ୍ ।। (୩୧)

ଅର୍ଥାତ୍ ଯାହାଙ୍କ ଭୃତ୍ୟମାନେ ଓ ଦାସମାନେ ବିଶୁଦ୍ଧ, ସ୍ୱାଦିଷ୍ଟ ଅନ୍ନ ଖାଉଛନ୍ତି, ଏହି ସେହି ରାମ ବନରେ କିପରି ବା ଫଳମୂଳ ଖାଇବେ ? ଏଠାରେ ଦୁଇ ପ୍ରକାର ଚାକର-ବାକର କଥାର ଉଲ୍ଲେଖ ଅଛି । ଗୋଟିଏ ହେଲା 'ପ୍ରେଷ୍ୟ' ଏବଂ ଅପରଟି ହେଲା 'ଦାସ' । ଯେଉଁ ଚାକର ବୋଲହାକ ଶୁଣୁଥିଲା ଏବଂ ପ୍ରଭୁଙ୍କ ନିର୍ଦ୍ଦେଶ ଧରି ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିଲା, ତାହାକୁ କୁହାଯାଉଥିଲା 'ପ୍ରେଷ୍ୟ' । ଇଂରାଜୀରେ ଏହାର ପ୍ରତିଶବ୍ଦ ହେବ messenger । ରାମାୟଣ-ଟୀକାକାର ଗୋବିନ୍ଦରାଜ ତାଙ୍କ 'ରାମାୟଣ-ଶିରୋମଣି-ଟୀକା'ରେ ଏହି ଶବ୍ଦକୁ ଭୃତ୍ୟ ଅର୍ଥରେ ଗ୍ରହଣ କରିଛନ୍ତି । 'ଦାସ'ର ସାମାଜିକ ସ୍ଥିତି ସମ୍ଭବତଃ ଆଉ ଟିକିଏ ଉନ୍ନତର ଥିଲା ଏବଂ ସେ ପ୍ରଭୁଙ୍କର ପାରିବାରିକ-ସାମାଜିକ ଜୀବନ ସହିତ ଅଧିକତର ଓତଃପ୍ରୋତଃ ଭାବରେ ଜଡ଼ିତ ରହୁଥିଲା । ସେଥିପାଇଁ ତ ଦାସୀ ମନ୍ଥରା ରାଣୀ କୈକେୟୀଙ୍କୁ ମନ୍ତ୍ରଣା ଦେବାକୁ ସାହସ କରିଥିଲା ଏବଂ କୈକେୟୀ ତାହାକୁ ବିନା ପ୍ରତିବାଦରେ ଗ୍ରହଣ କରିଯାଇଥିଲେ । ଦାସମାନେ ସୁସ୍ୱାଦୁଯୁକ୍ତ ଅନ୍ନ ଖାଉଥିବା କଥାର ଯେଉଁ ବର୍ଣ୍ଣନା ଏଠାରେ ଅଛି, ସେଥିରୁ ସୂଚନା ମିଳେ ଯେ ସେମାନେ ଖାଇବା, ପିଇବା, ରହିବା ଇତ୍ୟାଦି ବିଷୟରେ ପ୍ରଭୁମାନଙ୍କଠାରୁ ଉତ୍ତମ ବ୍ୟବହାର ପାଉଥିଲେ । ଏହା ସତ୍ତ୍ୱେ ସେମାନଙ୍କ ଅବସ୍ଥା ସବୁବେଳେ ଭଲ ନଥିଲା । ଆର୍ଯ୍ୟମାନଙ୍କ ପ୍ରତି ସାଧାରଣତଃ ବ୍ୟବହୃତ ହେଉ ନଥିବା ଶବ୍ଦମାନ ପ୍ରୟୋଗ ମାଧ୍ୟମରେ ସେମାନଙ୍କୁ ଲାଞ୍ଛିତ ଓ ଅପମାନିତ କରାଯାଉଥିଲା ଏବଂ ସେମାନେ ଏହାକୁ ଅକାତରେ ସହି ଯାଉଥିଲେ । ରାବଣ ଦ୍ୱାରା ଲାଞ୍ଛିତ

ହେବା ପରେ ବଭୀଷଣ ତାଙ୍କ ମାତା କୈକସୀଙ୍କ ଆଗରେ ଦୁଃଖ କରି କହିଥିଲେ ଯେ ସେ ଦାସଟିଏ ଭଳି ଅପମାନିତ ହୋଇଛନ୍ତି । ତାଙ୍କ ଦ୍ୱାରା ବ୍ୟବହୃତ 'ଦାସବଚ୍ଚାବମାନିତଃ' ପଙ୍କ୍ତିଟି ଏହାର ନିଦର୍ଶନ । ଏଥିରୁ ଏହି ସୂଚନା ମିଳୁଛି ଯେ ଦାସମାନଙ୍କୁ ଅପମାନ ଦେବା ପାଇଁ ଯେଉଁ ଭାଷା ବ୍ୟବହୃତ ହେଉଥିଲା ତାହା ଥିଲା ଖୁବ୍ କର୍କଶ ଏବଂ ତାହା ସାଧାରଣତଃ ଅନ୍ୟ କାହା ପ୍ରତି ପ୍ରୟୋଗ କରାଯାଉ ନଥିଲା ।

ପୂର୍ବକଥିତ ମତେ ରାମାୟଣରେ (୧।୭୪।୫) ଜନକ ସୀତା, ଉର୍ମିଳା ଆଦିଙ୍କ ବିବାହ ସମୟରେ ଯୌତୁକସ୍ୱରୂପ ଅନ୍ୟାନ୍ୟ ଜିନିଷ ମଧ୍ୟରେ ସଖୀ ଭାବରେ କାର୍ଯ୍ୟ କରିବା ପାଇଁ ଶହେ ଝିଅ ଓ ଅସଂଖ୍ୟ ଦାସଦାସୀ ଦାନ କରିଥିଲେ । ବିବାହ ସମୟରେ ଉଚ୍ଚ ବର୍ଣ୍ଣର କନ୍ୟା ତା' ସାଥିରେ ଦାସଦାସୀ ଆଣିବାର ପରମ୍ପରା ସେତେବେଳେ ପ୍ରଚଳିତ ଥିଲା । ଏହି ପରମ୍ପରାଟି ଖ୍ରୀଷ୍ଟପର ବହୁ ଶତାବ୍ଦୀ ପରେ ମଧ୍ୟ ଆମ ଦେଶରେ ପ୍ରଚଳିତ ଥିଲା । ଚଳିତ ଶତାବ୍ଦୀରେ ଭୂତପୂର୍ବ ରାଜା-ମହାରାଜାମାନଙ୍କ ବିବାହକ୍ଷେତ୍ରରେ ଏହା ବିଶେଷ ଭାବରେ ପ୍ରଚଳିତ ଥିଲା । ମନ୍ଥରାକୁ ରାମାୟଣରେ କୁହାଯାଇଛି 'ଜ୍ଞାତଦାସୀ' ବୋଲି । କେକୟ ରାଜ୍ୟର ରାଜା କୈକେୟୀଙ୍କୁ ଦଶରଥଙ୍କ ହସ୍ତରେ ଟେକି ଦେଲା ବେଳେ ମନ୍ଥରାକୁ ଦାସୀସ୍ୱରୂପ ଅର୍ପଣ କରିଥିବାରୁ ତାହାର ନାମ ଥିଲା ଜ୍ଞାତଦାସୀ । ଉପରୋକ୍ତ ଆଲୋଚନା ଦୃଷ୍ଟିରୁ ଆମେ ଦାସତ୍ୱ ପ୍ରଥା ସମ୍ପର୍କରେ ନିମ୍ନଲିଖିତ ନିଷ୍କର୍ଷ ଆଣିପାରିବା

(କ) ରାମାୟଣ-ଯୁଗରେ ଦାସତ୍ୱ ପ୍ରଥା ପ୍ରଚଳିତ ଥିଲା;

(ଖ) ଆର୍ଯ୍ୟ-ଗୋଷ୍ଠୀରୁ ଦାସମାନଙ୍କୁ ଗ୍ରହଣ କରା ନଯାଇ ଆର୍ଯ୍ୟେତର ଗୋଷ୍ଠୀରୁ ଗ୍ରହଣ କରା ଯାଉଥିଲା;

(ଗ) ଦାସମାନଙ୍କର ସାମାଜିକ ସ୍ଥିତି ଖୁବ୍ ନିମ୍ନ ସ୍ତରରେ ଥିଲା ଏବଂ ସେମାନେ ପ୍ରଭୁମାନଙ୍କ ଦ୍ୱାରା ନାନା ପ୍ରକାର ଅପମାନିତ ଓ ନିର୍ଯ୍ୟାତିତ ହେଉଥିଲେ;

(ଘ) କିନ୍ତୁ ଆଦର୍ଶ ପରିସ୍ଥିତିରେ ସେମାନେ ପରିବାରର ଜଣେ ଜଣେ ସଭ୍ୟ ଭାବରେ ଗଣିତ ହେଉଥିଲେ ଏବଂ ପରିବାରର ଅନ୍ୟାନ୍ୟ ସଭ୍ୟମାନଙ୍କ ଭଳି ପାନଭୋଜନ ଆଦିରେ ସମଭାଗୀ ହେଉଥିଲେ; ଏବଂ

(ଙ) ବିବାହ କାଳରେ ଦାସ-ଦାସୀମାନେ କନ୍ୟା ସହିତ ଯୌତୁକସ୍ୱରୂପ ବରଗୃହକୁ ଆସୁଥିଲେ । ଏପରି କ୍ଷେତ୍ରରେ ସେମାନଙ୍କୁ 'ଜ୍ଞାତଦାସ' ବା 'ଜ୍ଞାତଦାସୀ' ବୋଲି କୁହା ଯାଉଥିଲା ।

**ଚାରି ଆଶ୍ରମ :**

ଆର୍ଯ୍ୟମାନଙ୍କର 'ଚାତୁର୍ବର୍ଣ୍ଣ୍ୟ-ବ୍ୟବସ୍ଥା' ଭଳି 'ଚତୁରାଶ୍ରମ-ବ୍ୟବସ୍ଥା' ମଧ୍ୟ ଥିଲା ଏକ ଅତି ପ୍ରାଚୀନ ବ୍ୟବସ୍ଥା ଯାହା କି ବୈଦିକ କାଳରୁ ଗଢ଼ି ଆସୁଥିଲା । ବୈଦିକ ସାହିତ୍ୟରେ, ବିଶେଷ କରି ସଂହିତା-ସାହିତ୍ୟରେ ଆମେ ବ୍ରହ୍ମଚର୍ଯ୍ୟାଶ୍ରମ ଓ ଗୃହସ୍ଥାଶ୍ରମର ଯେପରି ସୁସ୍ପଷ୍ଟ ରୂପ ଦେଖିପାରୁଁ, ଅପର ଦୁଇଟି ଆଶ୍ରମ, ଯଥା, ବାନପ୍ରସ୍ଥ ଓ ସନ୍ନ୍ୟାସ ସଂପର୍କରେ ସେଭଳି ସ୍ପଷ୍ଟ ରୂପ ଦେଖି ପାରି ନଥାଉଁ । କାରଣ ସେତେବେଳେ କର୍ମକାଣ୍ଡର ପ୍ରାଧାନ୍ୟ ଥିବାରୁ ନିବୃତ୍ତି-ମାର୍ଗ ତଥା ସନ୍ନ୍ୟାସ-ମାର୍ଗ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉ ନଥିଲା । କିନ୍ତୁ ସଂହିତୋତ୍ତର ଯୁଗରେ ଉପନିଷଦମାନଙ୍କରେ ଏହି ନିବୃତ୍ତି-ମାର୍ଗ ଉପରେ ବିଶେଷ ଗୁରୁତ୍ୱ ଦିଆ-ଯିବାକୁ ଲାଗିଲା ଏବଂ ସେହି ପୃଷ୍ଠଭୂମିରେ 'ବାନପ୍ରସ୍ଥ' ଓ 'ସନ୍ନ୍ୟାସ' ଆଶ୍ରମ-ଚିନ୍ତାଧାରାର ଭୂୟୋବିକାଶ ସାଧିତ ହେଲା । ଯେଉଁ ଚିନ୍ତାଧାରା ବୈଦିକ କାଳରେ ଏକ ପ୍ରକାର ଭ୍ରୂଣାବସ୍ଥାରେ ଥିଲା, ତାହା ଉପନିଷଦ-କାଳରେ ପଲ୍ଲବିତ ଓ ପୁଷ୍ପିତ ହୋଇ ଉଠିଲା । ମନୁଷ୍ୟ-ଜୀବନକୁ ଚାରିଗୋଟି ଆଶ୍ରମ ବା ଅବସ୍ଥାରେ ବିଭକ୍ତ କରି ଦିଆଗଲା । ସେଗୁଡ଼ିକର ନାମ ହେଲା ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ । ଅମରକୋଷର ଟୀକାକାର ମନୁଜି ଦୀକ୍ଷିତ 'ଆଶ୍ରମ' ଶବ୍ଦର ବ୍ୟାଖ୍ୟା କରିବାକୁ ଯାଇ କୁହନ୍ତି

ଆଶ୍ରମ୍ୟନ୍ତ୍ୟନ୍ତ ଅନେନ ବା ।

ଅର୍ଥାତ୍ ଯେଉଁଠାରେ ସମ୍ୟକ୍ ଭାବରେ ଶ୍ରମ କରାଯାଏ, ତାହା ହେଲା ଆଶ୍ରମ । ଏଥିରୁ ଜଣାପଡ଼ୁଛି ଯେ ଆଶ୍ରମ-ବ୍ୟବସ୍ଥା ଚାଲୁ ରଖିବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଜୀବନକୁ ସର୍ବଦା କର୍ମମୁଖର କରି ତୋଳିବା ଏବଂ ଜୀବନରେ ଠିକଣା ସମୟରେ ଠିକଣା କର୍ମଟିମାନ କରିବା । ଉଦାହରଣସ୍ୱରୂପ ଶୈଶବାବସ୍ଥାରେ ବିଦ୍ୟାଧ୍ୟୟନ କରିବାକୁ ହେବ । ତାହାକୁ କୁହାଯାଉଥିଲା ବ୍ରହ୍ମଚର୍ଯ୍ୟାଶ୍ରମ । ଏହା ପରେ ଯୌବନାବସ୍ଥା ଆସିଲେ ବାହାସାହା ହୋଇ ଘରସଂସାର କରିବାକୁ ହେବ । ଏହାକୁ କୁହାଯାଉଥିଲା ଗୃହସ୍ଥାଶ୍ରମ । ବାର୍ଦ୍ଧକ୍ୟ ଅବସ୍ଥା ଆସିଗଲେ ସଂସାର-ପ୍ରତି କ୍ରମେ କ୍ରମେ ବୈରାଗ୍ୟଭାବ ଆଣିବାକୁ ହେବ ଏବଂ ଧୀରେ ଧୀରେ କାମନା-ବାସନାର ବନ୍ଧନଗୁଡ଼ିକୁ ତୁଟାଇବା ପାଇଁ ଉଦ୍ୟମ କରିବାକୁ ହେବ । ଏହି ଅବସ୍ଥାଟି ହେଉଛି ମାନବ-ଜୀବନର ଏକ ସନ୍ଧି-ସ୍ଥଳ । ଏଥିରେ ମନୁଷ୍ୟର ଗୋଟିଏ ଗୋଡ଼ ମାଟି-ଗୋଡ଼ର ସଂସାରରେ ପଡ଼ିଥିଲା ବେଳେ ଆର ଗୋଡ଼ଟି ପଡ଼ିଥାଏ ଆଧ୍ୟାତ୍ମିକତାର ସ୍ୱର୍ଣ୍ଣମୟ ସରଣୀରେ । ତା'କୁ ଧୀରେ ଧୀରେ ସଂପୂର୍ଣ୍ଣ ଆଧ୍ୟାତ୍ମିକ ଜଗତ୍‌କୁ ଚାଲିଯିବା ପାଇଁ ସଜ୍ଞାନ ଉଦ୍ୟମ କରିବାକୁ ପଡ଼ିଥାଏ । ଏହା

ହେଲା ବାନପ୍ରସ୍ଥାଶ୍ରମ । ଏହା ପରେ ଆସେ ସନ୍ନ୍ୟାସାଶ୍ରମ । ଏଥିରେ ମନୁଷ୍ୟଙ୍କୁ ସଂପୂର୍ଣ୍ଣ ଭାବରେ ବୈରାଗୀ ଜୀବନ ବିତାଇବାକୁ ପଡ଼ୁଥାଏ; ବିଶେଷ କରି ପରଲୋକ ଲାଗି ଚିନ୍ତା କରିବାକୁ ପଡ଼ୁଥାଏ । ଜୀବନରେ ସବୁବେଳେ ତାକୁ ଆଧ୍ୟାତ୍ମିକତାରେ ମଜ୍ଜି ରହିବାକୁ ପଡ଼ୁଥାଏ । ବ୍ୟକ୍ତିର ଶାରୀରିକ ଓ ମାନସିକ ବିକାଶ ଓ ସାମର୍ଥ୍ୟକୁ ଦୃଷ୍ଟି ଆଗରେ ରଖି ଆର୍ଯ୍ୟ ଚିନ୍ତାନାୟକମାନେ ଏହିଭଳି ଆଶ୍ରମମାନଙ୍କର ବ୍ୟବସ୍ଥା ଖଞ୍ଜିଥିଲେ । କିନ୍ତୁ ସବୁ ଅବସ୍ଥାରେ କର୍ମନିଷ୍ଠତା ଉପରେ ଗୁରୁତ୍ୱ ଆରୋପ କରାଯାଉଥିଲା; କର୍ମହୀନତା ବା ଆଳସ୍ୟପରାୟଣତା ଉପରେ କିନ୍ତୁ ନୁହେଁ । ଈଶ ଉପନିଷଦ (୨ୟ ମନ୍ତ୍ର) ସେଥିପାଇଁ କହିଥାଏ

କୁର୍ବନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଂ ସମାଃ ।

ଅର୍ଥାତ୍ ମନୁଷ୍ୟ ଏହି ସଂସାରରେ କର୍ମ କରି କରି ଶହେ ବର୍ଷ ପର୍ଯ୍ୟନ୍ତ ବଞ୍ଚିବା ଉଚିତ । ଜୀବନର ପ୍ରତିଟି ମୁହୂର୍ତ୍ତକୁ କର୍ମମୁଖର କରି ରଖିବା ଥିଲା ଆଶ୍ରମ-ବ୍ୟବସ୍ଥାର ଉଦ୍ଦେଶ୍ୟ ।

ଉପନିଷଦ-ଯୁଗରେ ବିଶେଷ ଭାବରେ ବିକଶିତ ହୋଇ ଉଠିଥିବା ଏହି ଚାରି ଆଶ୍ରମ-ବ୍ୟବସ୍ଥା ସୂତ୍ରଯୁଗରେ ଅବଶ୍ୟ ବିଭିନ୍ନ ନାମ ନେଇଥିଲା । କିନ୍ତୁ ତଦ୍ୱାରା ପ୍ରତିଟି ଆଶ୍ରମର ମୌଳିକ ଲକ୍ଷ୍ୟରେ କିଛି ପରିବର୍ତ୍ତନ ଘଟିନଥିଲା । ଉଦାହରଣ-ସ୍ୱରୂପ, 'ଆପସ୍ତମ୍ବ ଧର୍ମସୂତ୍ର'ରେ ଏହି ଚାରି ଆଶ୍ରମର ନାମ ହେଲା ଗାର୍ହସ୍ଥ୍ୟ, ଆଚାର୍ଯ୍ୟକୁଳ ବା ବ୍ରହ୍ମଚର୍ଯ୍ୟ, ମୌନ ତଥା ବାନପ୍ରସ୍ଥ । ସେହିପରି 'ଗୌତମ ଧର୍ମସୂତ୍ର' ଅନୁସାରେ ଏହି ଚାରି ଆଶ୍ରମର ଅନୁବର୍ତ୍ତୀ ବ୍ୟକ୍ତିମାନଙ୍କୁ କୁହାଯାଉଥିଲା ବ୍ରହ୍ମଚାରୀ; ଗୃହସ୍ଥ, ଭିକ୍ଷୁ ଓ ବୈଖାନସ । 'ବଶିଷ୍ଠ ଧର୍ମସୂତ୍ର' ଏହି ବ୍ୟକ୍ତିମାନଙ୍କୁ କୁହେ ବ୍ରହ୍ମଚାରୀ, ଗୃହସ୍ଥ, ବାନପ୍ରସ୍ଥୀ ଓ ପରିବ୍ରାଜକ ବୋଲି । (୩୨)

ଆମେ ବାଲ୍ମୀକି ରାମାୟଣ ଅଧ୍ୟୟନ କଲେ ଜାଣିପାରୁଁ ଯେ ତହିଁରେ ଏହି ଚାରି ଆଶ୍ରମ ସମ୍ପର୍କରେ ଭବ୍ୟ ବର୍ଣ୍ଣନା ବିଦ୍ୟମାନ । ଗୃହସ୍ଥାଶ୍ରମକୁ ତହିଁରେ ଅବଶ୍ୟ ଖୁବ୍ ପ୍ରାଧାନ୍ୟ ଦିଆ ଯାଇଛି ଏବଂ ସର୍ବୋତ୍ତମ ଆଶ୍ରମ ବୋଲି କୁହାଯାଇଛି । ଏତତ୍ ସତ୍ତ୍ୱେ ଅନ୍ୟ ଆଶ୍ରମଗୁଡ଼ିକୁ ଅବହେଳାପୂର୍ଣ୍ଣ ଦୃଷ୍ଟିରେ ଦେଖା ଯାଇନାହିଁ । ରାମାୟଣୀୟ ଆଶ୍ରମ-ବ୍ୟବସ୍ଥା ଯେ ପାରମ୍ପରିକ ଆଶ୍ରମ ସଂପର୍କୀୟ ଚିନ୍ତାଧାରା ଉପରେ ଆଧାରିତ ଏ ବିଷୟରେ ଶର୍ମାଙ୍କର ନିମ୍ନଲିଖିତ ମତ ପ୍ରଣିଧାନଯୋଗ୍ୟ

These four ashramas have been mentioned in the Ramayana both collectively as well as severally and there is sufficient evidence to show that the

Aryans of Valmiki's times resorted to these stages, broadly in consonance with the directions contained in the Dharma-shastras. (୩୩)

ରାମାୟଣରେ କିପରି ଭାବରେ ଆଶ୍ରମଧର୍ମର ଅବତାରଣା କରାଯାଇଛି ତାହା ଏହି ପୁସ୍ତକର ପ୍ରଥମ ଭାଗସ୍ଥ 'ରାମାୟଣରେ ଧର୍ମ' ଶୀର୍ଷକ ପରିଚ୍ଛେଦରେ (ତୃତୀୟ ପରିଚ୍ଛେଦ) ବିଶେଷ ଭାବରେ ଆଲୋଚିତ । ଏଣୁ, ତାହାର ପୁନରାଲୋଚନା ଅନାବଶ୍ୟକ । ଅତଏବ, ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ ରାମାୟଣ ସର୍ବଥା ପ୍ରାଚୀନ ପାରମ୍ପରିକ ବର୍ଣ୍ଣାଶ୍ରମ-ଧର୍ମକୁ ଅନୁସରଣ କରିଛି ।

ଏଠାରେ ଆଉ ଗୋଟିଏ ବିଷୟ ସ୍ପଷ୍ଟ କରିଦେବାର ଆବଶ୍ୟକତା ଅନୁଭୂତ ହୁଏ । ତାହା ହେଉଛି 'ସନ୍ନ୍ୟାସ' ଆଶ୍ରମ ସମ୍ପର୍କରେ । ଅନେକଙ୍କ ଧାରଣା ଯେ ରାମାୟଣ-ଯୁଗରେ କେହି ସନ୍ନ୍ୟାସୀ ନଥିଲେ ଏବଂ ମୁନି-ଋଷିମାନେ ମଧ୍ୟ ଗୃହୀଙ୍କ ଭଳି ପତ୍ନୀ, ପୁତ୍ର, କନ୍ୟା ନେଇ ରହୁଥିଲେ । ବୌଦ୍ଧ ଧର୍ମର ପରେ ପରେ ସନ୍ନ୍ୟାସ-ଚିନ୍ତାଧାରା ଭାରତୀୟ ସମାଜରେ ପ୍ରବେଶ କଲା ଏବଂ ଏହି ବୌଦ୍ଧ ଚିନ୍ତାଧାରା ସହିତ ସମତାଳ ରକ୍ଷା କରିବା ପାଇଁ ସମାଜତତ୍ତ୍ୱବିତ୍‌ମାନେ ସନ୍ନ୍ୟାସକୁ ଆଶ୍ରମ-ଧର୍ମ ମଧ୍ୟରେ ଆଣି ଭର୍ତ୍ତି କରାଇଲେ । ଏସ. ଏନ. ବ୍ୟାସଙ୍କ ଭଳି ପଣ୍ଡିତ ଏହି ମତର ପ୍ରଖ୍ୟାପକ । କିନ୍ତୁ ଏହା ଠିକ୍ ନୁହେଁ । ବୁଦ୍ଧ ଗୃହତ୍ୟାଗୀ ହେବା ପାଇଁ ଯେଉଁ ଯେଉଁ ଲୋକମାନଙ୍କୁ ଦେଖି ଉଦ୍‌ବୁଦ୍ଧ ହୋଇଥିଲେ, ତନ୍ମଧ୍ୟରୁ ସନ୍ନ୍ୟାସୀ ହେଉଛନ୍ତି ଅନ୍ୟତମ । ତାଙ୍କ ପୂର୍ବରୁ କେହି ସନ୍ନ୍ୟାସୀ ନଥିଲେ ସେ ସନ୍ନ୍ୟାସୀ ଜଣେ ଦେଖିଥାନ୍ତେ ବା କିପରି ? କେହି କେହି କୁହନ୍ତି ଯେ ଏହି ସନ୍ନ୍ୟାସୀ ଜଣକ ହୁଏତ 'ଆଜୀବିକ' କିମ୍ବା ବୁଦ୍ଧଙ୍କ ସମକାଳୀନ ଅନ୍ୟାନ୍ୟ ବୁଦ୍ଧବିରୋଧୀ ଗୋଷ୍ଠୀର ବ୍ୟକ୍ତି ହୋଇପାରନ୍ତି । ସେ ଯେ ହୁଅନ୍ତୁ ନା କାହିଁକି, ସେ ତ ଆର୍ଯ୍ୟଧର୍ମର ଅନୁପନ୍ଥୀ ବୋଲି ଦାବି କରୁଥିଲେ; ତେଣୁ ଯଦି ସନ୍ନ୍ୟାସଧର୍ମ ପରମ୍ପରାଗତ ନଥାନ୍ତା, ତେବେ ସେମାନେ ତାହାକୁ ଗ୍ରହଣ କରିଥାନ୍ତେ ବା କାହିଁକି ? ଅତଏବ, ଏଥିରୁ ଏହି ସତ୍ୟ ନିଷ୍ପାଦିତ ହେବ ଯେ ସନ୍ନ୍ୟାସ-ଚିନ୍ତାଧାରା ବୌଦ୍ଧଧର୍ମରୁ ଆନୀତ ନୁହେଁ; ଅନ୍ୟ ପକ୍ଷରେ ଏହା ଏକ ଅତି ପ୍ରାଚୀନ ଆର୍ଯ୍ୟ ଚିନ୍ତାଧାରା ଯାହା କି ବୁଦ୍ଧଙ୍କ ବହୁ ପୂର୍ବରୁ ଏ ଦେଶରେ ପ୍ରବର୍ତ୍ତିତ ଥିଲା । ମନୁସ୍ମୃତି ଅନୁଯାୟୀ (୬।୩୩-୩୭) ସନ୍ନ୍ୟାସୀ, ଯତି ଓ ପରିବ୍ରାଜକ ଏକାର୍ଥବୋଧକ । ଧର୍ମଶାସ୍ତ୍ରମାନଙ୍କରେ ମଧ୍ୟ ଏହି ଅର୍ଥରେ ଉକ୍ତ ଶବ୍ଦ-ଗୁଡ଼ିକର ପ୍ରୟୋଗ ଦେଖାଯାଏ । ଯେଉଁ ବ୍ୟକ୍ତି ସାଂସାରିକ ସକଳ ବସ୍ତୁକୁ ପରିତ୍ୟାଗ କରିଥାନ୍ତି ତାଙ୍କୁ ସନ୍ନ୍ୟାସୀ ବା ଯତି ବା ପରିବ୍ରାଜକ କୁହାଯାଏ ।

ରାମାୟଣରେ 'ସନ୍ନ୍ୟାସୀ' ଶବ୍ଦର ପ୍ରୟୋଗ ନଥିଲେ ମଧ୍ୟ ସାଧୁ ଓ ପରିବ୍ରାଜକ ଶବ୍ଦ-ଦ୍ୱୟର ବହୁଳ ପ୍ରୟୋଗ ଅଛି । ରାବଣ ସୀତାଙ୍କ କୁଟୀରରେ ପରିବ୍ରାଜକ ରୂପରେ ଦଣ୍ଡାୟମାନ ହୋଇ ଭିକ୍ଷା ମାଗିଥିବା କଥା ରାମାୟଣରେ ବର୍ଣ୍ଣିତ । (୩୩-କ) ପୁଣି ଶର୍ମାଙ୍କ ମତରେ

> The word 'yati' is fairly popular in the Ramayana. (୩୩-ଖ)

ଏହିସବୁ ଆଲୋଚନାରୁ ପ୍ରତୀତ ହେବ ଯେ ରାମାୟଣ-ଯୁଗରେ 'ସନ୍ନ୍ୟାସ ଆଶ୍ରମ' ଚାରି ଆଶ୍ରମ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା ।

**ପରିବାର**

ପରିବାରର ସୃଷ୍ଟି ହୋଇଛି ଅତି ଆଦିମ କାଳରୁ । ପରିବାର ବିନା ମନୁଷ୍ୟ ରହିପାରେନା । ସେ ହୁଏତ ସାମୟିକ ଭାବରେ ଏକାକୀ ରହିପାରେ ଏବଂ ସେଥିରେ କିଛି ମାତ୍ରାରେ ସୁଖ ପାଇପାରେ । କିନ୍ତୁ ପାରିବାରିକ ସୁଖ ଯେ ମହତ୍ତର ତାହା ସେ ବୁଝିଥାଏ ଏବଂ ସେଥିପାଇଁ ମନ ତା'ର ସର୍ବଦା ପାରି ହେଉଥାଏ । ପ୍ରାଚୀନ କାଳରେ ମୁନିଋଷିମାନେ ମଧ୍ୟ ସେମାନଙ୍କର ପରିବାର ରଚନା କରି ରହିଥିଲେ । ସନ୍ନ୍ୟାସୀମାନେ ମଧ୍ୟ ସେମାନଙ୍କ ଶିଷ୍ୟମାନଙ୍କୁ ସାଥିରେ ନେଇ ଥାଆନ୍ତି । ଶିଷ୍ୟମାନଙ୍କୁ ନେଇ ସେମାନଙ୍କର ପରିବାର ଗଢ଼ା । ପ୍ରକୃତରେ ସୁଖ ମିଳେ ଅନ୍ୟକୁ ସୁଖ ଦେଲେ । ସ୍ୱାମୀ ସ୍ତ୍ରୀକୁ ସୁଖ ଦେଇ ସୁଖୀ ହୋଇଥାଏ; ପିତାମାତା ପୁତ୍ରକନ୍ୟାଙ୍କୁ ସୁଖ ଦେଇ ସୁଖୀ ହୋଇଥାନ୍ତି । ଠିକ୍ ଅନୁରୂପ ଭାବରେ ଜଣେ ଅନ୍ୟର ଦୁଃଖରେ ମଧ୍ୟ ଭାଗୀ ହୋଇଥାଏ । ଏହିପରି ଭାବରେ ସୁଖଦୁଃଖର ଦୋଳାୟମାନ ମଧ୍ୟରେ ମନୁଷ୍ୟର ପାରିବାରିକ ଜୀବନ କଟିଯାଏ । ସେ ଏକାକୀ ରହିଲେ ଏହା ସମ୍ଭବ ହୋଇପାରିବ ନାହିଁ । ସେଥିପାଇଁ ସେ ପରିବାର ଖୋଜେ । ଆରିଷ୍ଟୋଟଲ୍ ସେଥିପାଇଁ ମନୁଷ୍ୟକୁ 'ପାରିବାରିକ ପ୍ରାଣୀ' (civic animal) ବୋଲି ଅଭିହିତ କରିଛନ୍ତି । ପରିବାରରେ ବ୍ୟକ୍ତିର କେବଳ ତ ଦୈହିକ ବିକାଶ ହୋଇନଥାଏ; ବରଂ ଏଥିରେ ତା'ର ମନସ୍ତାତ୍ତ୍ୱିକ ବିକାଶ ସାଧିତ ହୋଇଥାଏ ଏବଂ ସେ କିପରି ସମାଜ ନାମକ ଏକ ବୃହତ୍ତର ପରିବାରର ସଭ୍ୟ ଭାବରେ ସୁସ୍ଥିର ରୂପରେ ଜୀବନ-ନିର୍ବାହ କରିପାରିବ, ସେଥିପାଇଁ ଆବଶ୍ୟକ ପ୍ରବୃତ୍ତିର ଅଭିବୃଦ୍ଧି ଏହିଠାରେ ହିଁ ଘଟିଥାଏ । ୟଙ୍ଗଙ୍କ (Young) ନିମ୍ନଲିଖିତ ବକ୍ତବ୍ୟ ଉପରୋକ୍ତ ମତର ପରିପୋଷଣ କରିଥାଏ :

It is in the family that the biological, psychological and sociological forces meet together in giving the individual his start in life." (୩୪)

ଏହି ଦୃଷ୍ଟିରୁ ବିଚାର କଲେ ପରିବାର ଯେ ଉଭୟ ବ୍ୟକ୍ତି ଓ ସମାଜର ବିକାଶ ଲାଗି ଏକ ଦୃଢ଼କେନ୍ଦ୍ର ସ୍ୱରୂପ କାର୍ଯ୍ୟ କରିଥାଏ, ଏଥିରେ ସନ୍ଦେହ ନାହିଁ ।

ପ୍ରାଗ୍‌ବୈଦିକ କାଳରେ ପରିବାର ଯେ ଥିଲା, ତାହାର ନିଦର୍ଶନ ଆମେ ବିଭିନ୍ନ ପ୍ରତ୍ନତାତ୍ତ୍ୱିକ ଖୋଦନ ଫଳରେ ପାଇଥାଉଁ । କିନ୍ତୁ ଏହାର ସଭ୍ୟ-ମାନଙ୍କର ମନସ୍ତାତ୍ତ୍ୱିକ ସ୍ଥିତି ବିଷୟରେ ଆମେ କୌଣସି ସଠିକ୍ ପ୍ରମାଣ ପାଇ ପାରୁନାହିଁ । କାରଣ ସେତେବେଳର କିଛି ଲିଖିତ ଗ୍ରନ୍ଥ ନାହିଁ । ସେମାନଙ୍କର ପ୍ରବୃତ୍ତି କ'ଣ ହୋଇଥିବ, ଆମେ ସେ ବିଷୟରେ ଖାଲି ଯାହା ଅନୁମାନ କରିଥାଉଁ । ଉଦାହରଣ ସ୍ୱରୂପ, ମାଆର ସନ୍ତାନକୁ ଭଲ ପାଇବା, ପୁରୁଷ ଓ ସ୍ତ୍ରୀ ପରସ୍ପରକୁ ଭଲ ପାଇବା, ସ୍ତ୍ରୀ ଲାଗି ପୁରୁଷମାନଙ୍କ ମଧ୍ୟରେ ପ୍ରତିଯୋଗିତା ହେବା ଇତ୍ୟାଦି ବିଷୟରେ ଆମେ ଯାହା ଅନୁମାନ କରିଥାଉଁ । ଋଗ୍‌ବେଦ ହେଉଛି ପୃଥିବୀର ସର୍ବପ୍ରାଚୀନ ଲିଖିତ ଗ୍ରନ୍ଥ ଏବଂ ଏଥିରେ ଆମେ ପରିବାରର ସ୍ଥିତି ଓ ସ୍ୱରୂପ ସମ୍ପର୍କରେ ସମ୍ୟକ୍ ଜ୍ଞାନ ପାଇଥାଉଁ । ଏଥିରୁ ଆମେ ଜାଣିପାରୁଁ ଯେ ବୈଦିକ କାଳରେ ପରିବାର ଥିଲା ପିତୃକୈନ୍ଦ୍ରିକ । ହଜାର ହଜାର ବର୍ଷ ପରେ ଆମର ସାମାଜିକ କ୍ଷେତ୍ରରେ ବହୁ ପରିବର୍ତ୍ତନ ଆସିଯାଇଥିଲେ ହେଁ ଆମ ପରିବାର ଏ ପର୍ଯ୍ୟନ୍ତ ପିତୃକୈନ୍ଦ୍ରିକତାରୁ ମୁକ୍ତ ହୋଇନାହିଁ । ଏ ପର୍ଯ୍ୟନ୍ତ ମଧ୍ୟ ପିତା ଗୃହର କର୍ତ୍ତା ଭାବରେ ଗଣ୍ୟ ହୋଇ ଆସୁଛନ୍ତି । ଅତଏବ, ଏହି ପାରମ୍ପରିକ ନିରବଚ୍ଛିନ୍ନତାକୁ ଅନୁସରଣ କରି ରାମାୟଣକାଳୀନ ସମାଜରେ ମଧ୍ୟ ପରିବାର ଥିଲା ପିତୃପ୍ରଧାନ । ରାମଙ୍କ ଦ୍ୱାରା ଶିବଧନୁ ଭଙ୍ଗ ପରେ ଜନକଙ୍କଠାରୁ ସମ୍ବାଦ ପାଇ ଯେତେବେଳେ ଦଶରଥ ବଶିଷ୍ଠାଦିଙ୍କ ସହିତ ସପୁତ୍ରଙ୍କ ବିବାହୋପଲକ୍ଷ୍ୟେ ମିଥିଳାରେ ପ୍ରବେଶ କଲେ, ସେତେବେଳେ ବଶିଷ୍ଠ ଜନକଙ୍କ ଆଗରେ ଦଶରଥଙ୍କ ବଂଶ-ପରିଚୟ କରାଇ ଦେଇଥିଲେ । ଏହି ସମୟରେ ସେ କହିଥିଲେ, ଏହି ବଂଶର ପ୍ରଥମ ପ୍ରତିଷ୍ଠାତା ହେଉଛନ୍ତି ଇକ୍ଷ୍ୱାକୁ । ତତ୍ପରେ ଗୋଟିକ ପରେ ଗୋଟିଏ କରି ଯେଉଁ ରାଜାମାନେ ଆସିଛନ୍ତି ସେମାନଙ୍କୁ ଅମୁକଙ୍କ ପୁତ୍ର ବୋଲି ପରିଚିତ କରାଇ ଦିଆଯାଇଥିଲା । (୩୫) ପରବର୍ତ୍ତୀ ସର୍ଗରେ ଜନକ ମଧ୍ୟ ନିଜର ବଂଶ ପରିଚୟ ଠିକ୍ ଅନୁରୂପ ଭାବରେ ଦେଇଛନ୍ତି ଏବଂ କହିଛନ୍ତି ଯେ ସେ ହେଉଛନ୍ତି ରାଜା ହ୍ରସ୍ୱରୋମଙ୍କର ପୁତ୍ର । (୩୬) ସୀତାଙ୍କ ଅଗ୍ନିପ୍ରବେଶ ସମୟରେ ରାମ ବଡ଼

ବ୍ୟାକୁଳଚିତ୍ତ ହୋଇଉଠିଥିଲେ । ସେତେବେଳେ ଆକାଶରେ ଦେବଗଣ ଖୁବ୍ ବିସ୍ମିତ ହୋଇଯାଇଥିଲେ । ସେମାନେ ରାମଙ୍କୁ ପ୍ରଶ୍ନ କରିଥିଲେ

କଥଂ ଦେବଗଣଶ୍ରେଷ୍ଠମାତ୍ମାନଂ ନାବବୁଧ୍ୟସେ ?

ଅର୍ଥାତ୍ ଆପଣ ତ ହେଉଛନ୍ତି ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଆପଣ କେମିତି ବା ନିଜକୁ ବୁଝିପାରୁନାହାନ୍ତି ? ସେ ଏହାର ଉତ୍ତର ଦେଇ କହିଥିଲେ

ଆତ୍ମାନଂ ମାନୁଷଂ ମନ୍ୟେ ରାମଂ ଦଶରଥାତ୍ମଜମ୍ ।

ଅର୍ଥାତ୍ ମୁଁ ନିଜକୁ ମନୁଷ୍ୟ ବୋଲି ମନେ କରୁଛି; ମୁଁ ହେଉଛି ଦଶରଥଙ୍କ ପୁତ୍ର ରାମ । ଏଠି ସେ କୌଶଲ୍ୟାଙ୍କ ପୁତ୍ର ବୋଲି ନିଜକୁ ପରିଚିତ କରାଇ ନାହାନ୍ତି । ପୁତ୍ର ପିତାଙ୍କ ଗୋତ୍ରକୁ ଗ୍ରହଣ କରୁଥିଲା; ମାତାଙ୍କ ଗୋତ୍ରକୁ କିନ୍ତୁ ନୁହେଁ । ଏଥିରୁ ସ୍ପଷ୍ଟ ଭାବରେ ସୂଚନା ମିଳୁଛି ଯେ ରାମାୟଣ-ଯୁଗରେ ପରିବାର ଆଜି-କାଲି ଭଳି ପିତୃପ୍ରଧାନ ଥିଲା ।

ଆଜିକାଲି ଅବଶ୍ୟ ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରେ ଭାରତୀୟ ପରିବାର ଖଣ୍ଡବିଖଣ୍ଡ ହୋଇଯାଇଛି । ସ୍ୱାମୀ, ସ୍ତ୍ରୀ ଓ ପିଲାମାନଙ୍କୁ ନେଇ ଛୋଟ ଛୋଟ ପରିବାରମାନ ଗଢ଼ି ଉଠିଛି । ସେହି ପିଲାମାନେ ପୁଣି ବଡ଼ ହୋଇ ସେମାନଙ୍କର ଛୋଟ ଛୋଟ ପରିବାରମାନ ଗଢ଼ୁଛନ୍ତି । କିନ୍ତୁ ଏହି ସ୍ଥିତି ପୂର୍ବେ ନଥିଲା । ଭାରତୀୟ ପରିବାର ଥିଲା ଏକ ବୃହତ୍ ଯୌଥ ପରିବାର ଏବଂ ଏଥିରେ ଥିବା ସବୁଠାରୁ ବୟସ୍କ ବ୍ୟକ୍ତି ଥିଲେ ପରିବାରର କର୍ତ୍ତା । ସେହି ବ୍ୟକ୍ତି ପିତା ହୋଇ ପାରନ୍ତି କିମ୍ବା ପିତାମହ ହୋଇପାରନ୍ତି । ପରିବାରର ଏହି ଯୌଥ ସ୍ୱଭାବ ବୈଦିକ କାଳରୁ ହିଁ ଗଡ଼ି ଆସିଥିଲା । ରାମାୟଣକାଳରେ ଏହି ସ୍ଥିତି ଥିଲା । ଦଶରଥଙ୍କ ପରିବାର କଥା ବିଚାରକୁ ନେଲେ ଆମେ ଦେଖିବା ଯେ ତାଙ୍କ ରାଣୀମାନଙ୍କର ଏବଂ ପୁଅମାନଙ୍କ ସ୍ୱତନ୍ତ୍ର ଉଆସମାନ ଥିଲା । ତାହା ସତ୍ତ୍ୱେ ସେହି ପରିବାରର ଯୌଥ ସ୍ୱଭାବ କ୍ଷୁଣ୍ଣ ହୋଇ ନଥିଲା । ସେମାନେ ସମସ୍ତେ ଜଣଙ୍କୁ ପରିବାରର କର୍ତ୍ତା ବୋଲି ମାନୁଥିଲେ ଏବଂ ସମସ୍ତଙ୍କର ଭରଣପୋଷଣ ପାଇଁ ଅର୍ଥ ଆସିବାର ଆକର-କ୍ଷେତ୍ର ଥିଲା ଗୋଟିଏ । ସେମାନଙ୍କ ସମସ୍ତଙ୍କର କର୍ତ୍ତା ଥିଲେ ଦଶରଥ, ଯାହାଙ୍କ ଆଦର୍ଶ ସମସ୍ତଙ୍କ ପାଇଁ ଥିଲା ଶିରୋଧାର୍ଯ୍ୟ । ସେମାନେ ସମସ୍ତେ ପରିବାରର ବିଭିନ୍ନ ସାମାଜିକ ତଥା ଧର୍ମୀୟ ଅନୁଷ୍ଠାନ-ମାନଙ୍କରେ ଯୋଗ ଦେଉଥିଲେ । ମିଥିଳାରୁ ନିଜ ନିଜର ସ୍ତ୍ରୀଙ୍କୁ ସାଥିରେ ଧରି ଦଶରଥଙ୍କ ପୁତ୍ରମାନେ ଯେତେବେଳେ ଅଯୋଧ୍ୟାକୁ ଫେରିଲେ ସେମାନେ ସମସ୍ତେ ମିଶି କୌଶଲ୍ୟା, କୈକେୟୀ, ସୁମିତ୍ରା ଆଦିଙ୍କ ସହିତ ଏକତ୍ର ବିଭିନ୍ନ ଧର୍ମୀୟ ଅନୁଷ୍ଠାନମାନ ସଂପାଦନ କରିଥିଲେ ବୋଲି ରାମାୟଣରେ (୧।୭୭।୧୦-୧୩)

ବର୍ଣ୍ଣିତ । ଏ ସମ୍ପର୍କରେ ଶର୍ମା ଯେଉଁ ମତ ଦେଇଛନ୍ତି, ତାହା ଏଠାରେ ଅବଶ୍ୟ ଅବଧାରଣୀୟ

> In such cases the family retained its point character in the sense that all its members continued to recognise the authority of one patri-arch from whose common fund each received the material requirements of his life, and that they all participated in common family wor-ship. (୩୭)

ଏ ପ୍ରକାର ଯୌଥ ପରିବାରର ବ୍ୟବସ୍ଥା ଯେ କେବଳ ଆର୍ଯ୍ୟମାନଙ୍କ ମଧ୍ୟରେ ଥିଲା, ତାହା ନୁହେଁ; ଏ ବ୍ୟବସ୍ଥା ମଧ୍ୟ ଆର୍ଯ୍ୟାନ୍ତ ହୋଇଥିବା ବାନରମାନଙ୍କ ମଧ୍ୟରେ ଥିଲା । ପୁନଶ୍ଚ ରାକ୍ଷସମାନଙ୍କ ମଧ୍ୟରେ ମଧ୍ୟ ଏ ବ୍ୟବସ୍ଥା ଥିଲା । ବାଲୀ, ସୁଗ୍ରୀବ, ରାବଣ ଇତ୍ୟାଦିଙ୍କର ପାରିବାରିକ ସ୍ଥିତି ବିଷୟ ଅନୁଧ୍ୟାନ କଲେ ଆମେ ଏହି ସତ୍ୟରେ ଉପନୀତ ହୋଇ ପାରିବା । ସବୁ ବାପାମାଆ ପୁଅବୋହୂ, ନାତି-ନାତୁଣୀଙ୍କୁ ନେଇ ପରିବାର ଗଠିତ ହୋଇଥିଲା । ଝିଅ ବାହା ନହେବା ପୂର୍ବରୁ ଏହି ପରିବାରର ଅନ୍ତର୍ଭୁକ୍ତ ଥିଲା; କିନ୍ତୁ ବିବାହ ପରେ ତା'ର ସ୍ୱାମୀଙ୍କ ପରିବାରକୁ ଚାଲିଯାଉଥିଲା । ବ୍ରକିଙ୍ଗଟନଙ୍କ ଭାଷାରେ

> Thus by far the commonest terms for relations are those for father, mother, brother, sister, son or daughter, husband and wife. Grandparents, grandchildren, uncles, cousins and relatives by marriage are all only sporadically mentioned, particularly in the earlier part of the text. (୩୮)

ଏଠାରେ ପ୍ରଶ୍ନ ଉଠିପାରେ, ରାମାୟଣୀୟ ପରିବାରରେ କ'ଣ ପିତାମହ, ପୌତ୍ର, ପୌତ୍ରୀ ଆଦି ଅନ୍ତର୍ଭୁକ୍ତ ନଥିଲେ ? ଦଶରଥଙ୍କ ପରିବାରକୁ ବିଚାରକୁ ନିଆଯାଉ । ରାମାୟଣରେ ଦଶରଥ ଓ ତାଙ୍କ ପୁତ୍ର ରାମ, ଲକ୍ଷ୍ମଣ ଆଦିଙ୍କର ବିଭିନ୍ନ କାର୍ଯ୍ୟାବଳୀ ବର୍ଣ୍ଣିତ । ରାମଙ୍କ ପୁତ୍ର ଲବ-କୁଶଙ୍କ କଥା ପରେ ଉତ୍ତର-କାଣ୍ଡରେ ଆସିଛି । ସେତେବେଳକୁ ଦଶରଥ ମୃତ; ତେଣୁ ତାଙ୍କ କାର୍ଯ୍ୟାବଳୀ ବିଷୟରେ ଉଲ୍ଲେଖ କରିବାର ପ୍ରଶ୍ନ ହିଁ ଉଠୁନାହିଁ । କିନ୍ତୁ ରାମଙ୍କ ମାତା କୌଶଲ୍ୟା ପୁତ୍ର ଓ ପୌତ୍ରଙ୍କ ଦ୍ୱାରା ପରିବୃତା ଥାଇ ଦୀର୍ଘଦିନ ବ୍ୟତୀତ କରିବା

ପରେ ମୃତ୍ୟୁ-ବରଣ କରିଥିଲେ ବୋଲି ରାମାୟଣରେ ଉଲ୍ଲେଖ ଅଛି । ସେଠାରେ ଲୁହାଯାଇଛି

ଅଥ ଦୀର୍ଘସ୍ୟ କାଳସ୍ୟ ରାମମାତା ଯଶସ୍ୱିନୀ ।
ପୁତ୍ରପୌତ୍ରପରିବୃତା କାଳଧର୍ମମୁପାଗତା ॥ (୩୯)

ଅର୍ଥାତ୍ ରାମଙ୍କ ଯଶସ୍ୱିନୀ ମାଆ ପୁଅ ଓ ନାତିମାନଙ୍କ ମେଳରେ ବହୁଦିନ ରହିବା ପରେ ମୃତ୍ୟୁବରଣ କରିଥିଲେ । ଏଥିରୁ ଏହି ସୂଚନା ମିଳୁଛି ଯେ ତିନୋଟି ପୁରୁଷର ଲୋକମାନଙ୍କୁ ଧରି ରାମାୟଣୀୟ ପରିବାର ଗଠିତ ହୋଇଥିଲା । ଏ ସମ୍ପର୍କରେ ବ୍ରକିଙ୍ଗଟନଙ୍କର ନିମ୍ନଲିଖିତ ବକ୍ତବ୍ୟଟି ଗ୍ରହଣୀୟ ନୁହେଁ, ଯେଉଁଠି ସେ କହିଛନ୍ତି

In point of fact, the narrative of the Ramayana is concerned simply with the family across two generations. (୪୦)

କାରଣ ଆମେ ଉପରୋକ୍ତ ବର୍ଣ୍ଣନାରୁ ଦେଖିପାରୁଛୁ ଯେ କୌଶଲ୍ୟା ତାଙ୍କ ପୁତ୍ର ରାମ, ତାଙ୍କ ପୁତ୍ର ଲବ ଓ କୁଶ ଦୀର୍ଘକାଳ ଧରି ଏକତ୍ର ରହୁଥିଲେ । ଅତଏବ ପିତାମହ, ପିତାମହୀ ଏବଂ ପୌତ୍ର, ପୌତ୍ରୀ ମଧ୍ୟ ରାମାୟଣୀୟ ପରିବାରରେ ଅନ୍ତର୍ଭୁକ୍ତ ଥିଲେ ବୋଲି ଆମେ ନିଶ୍ଚିତ ଭାବରେ କହିପାରିବା । ଶର୍ମା ତେଣୁ ଯଥାର୍ଥରେ ଲୁହନ୍ତି

With the father as the head, the family was made up of brothers, their sons, son's sons together with their wives and unmarried daughters. Though its extent was flexible, normally it included three generations, for the life-span of three generations is around a hundred years and it is extremely rare for an individual to outlive a century. (୪୧)

ଏହିସବୁ ନିଦର୍ଶନରୁ ଆମକୁ ସ୍ପଷ୍ଟ ସୂଚନା ମିଳୁଛି ଯେ ରାମାୟଣକାଳୀନ ପରିବାର ଏକ ଯୌଥ ପରିବାର ଥିଲା ଏବଂ ଏହାର ସଭ୍ୟମାନଙ୍କର ସୁଖଦୁଃଖର ଦାୟିତ୍ୱ ପରିବାରର କର୍ତ୍ତାଙ୍କ ଉପରେ ନ୍ୟସ୍ତ ଥିଲା । ଏଥିରୁ ଆହୁରି ମଧ୍ୟ ସୂଚନା ମିଳୁଛି ଯେ ଏହି ପରିବାରରେ ସାଧାରଣତଃ ତିନି ପୁରୁଷର ଲୋକେ ସଭ୍ୟ ହୋଇ ରହୁଥିଲେ ।

ପରିବାର ହେଉଛି ତ୍ୟାଗ ଓ ଭୋଗର ଏକ ସମନ୍ୱିତ କ୍ଷେତ୍ର । ଜଣକୁ ତ୍ୟାଗ କରିବାକୁ ପଡ଼ୁଥାଏ ଅନ୍ୟ ଜଣକର ଭୋଗ ଲାଗି । ବାପାମାଆଙ୍କୁ ନିଜର ସୁଖସୁବିଧା ଛାଡ଼ି ସନ୍ତାନମାନଙ୍କର ସୁଖସୁବିଧା ଦେଖିବାକୁ ହୋଇଥାଏ । କିଛି ଗୋଟାଏ ଭଲ ଖାଇବା ଜିନିଷ ମିଳିଲେ ବାପାମାଆମାନେ ନିଜେ ନଖାଇ ପିଲାମାନଙ୍କୁ ଖାଇବାକୁ ଦେଇଥାନ୍ତି । ପିଲାମାନେ ବଡ଼ ହୋଇ ରୋଜଗାରକ୍ଷମ ହେଲେ ବୁଢ଼ାବୁଢ଼ୀ ହୋଇ ଯାଇଥିବା ବାପାମାଆଙ୍କ ଭଲମନ୍ଦ ବୁଝିବା ସଙ୍ଗେ ସଙ୍ଗେ ସେମାନଙ୍କ ନିଜ ପିଲାମାନଙ୍କ ଭଲମନ୍ଦ କଥା ମଧ୍ୟ ବୁଝିଥାନ୍ତି । ଏହିପରି ଭାବରେ ତ୍ୟାଗ ଓ ଭୋଗର ପାରସ୍ପରିକ ଆଦାନପ୍ରଦାନରେ ସାରା ପରିବାରଟି ସୁଖୀ ହୋଇଥାଏ । ଏଇଠି ପିଲାମାନେ ସ୍ନେହ, ପ୍ରେମ, ଦୟା ଆଦି ନାନା ପ୍ରକାର ଭଲ ଗୁଣମାନ ଶିଖନ୍ତି ଏବଂ ବଡ଼ ହେଲେ ବାହାର ଜଗତ୍ ପ୍ରତି ସେହି ସଦ୍‌ଗୁଣାତ୍ମକ ଦୃଷ୍ଟିଭଙ୍ଗୀ ପ୍ରକାଶ କରନ୍ତି । ଏହିପରି ଭାବରେ ସେମାନଙ୍କୁ ମଣିଷ କରି ଗଢ଼ିବାରେ ପରିବାର ଯଥେଷ୍ଟ ସାହାଯ୍ୟ କରିଥାଏ । ଏହି ଭାବକୁ ବ୍ୟକ୍ତ କରିବାକୁ ଯାଇ ସେବକ ପନ୍ଥୀରନାଥ ପ୍ରଭୁ ଯଥାର୍ଥରେ କହିଥିଲେ:

> Through the affectional bond in the family man, woman and child learn the technique and expression of affectional virtues which stand them in service in dealing with the outside world. (୪୨)

ରାମାୟଣକାଳୀନ ପରିବାର ମଧ୍ୟ ଏହିଭଳି ପାରସ୍ପରିକ ସ୍ନେହ ଓ ପ୍ରେମର ବିକାଶ ଲାଗି ଏକ ପ୍ରଶସ୍ତ କ୍ଷେତ୍ର ଭାବରେ ବିଦ୍ୟମାନ ଥିଲା । ରାମାୟଣରେ ପିତୃଭକ୍ତି, ପତିଭକ୍ତି, ସନ୍ତାନ-ବାତ୍ସଲ୍ୟ, ଭ୍ରାତୃପ୍ରେମ, ପତ୍ନୀପ୍ରେମ ଆଦି ସମ୍ପର୍କରେ ଯେଉଁ ବର୍ଣ୍ଣନା କରାଯାଇଛି ଏବଂ ତାହାର ନିଦର୍ଶନସ୍ୱରୂପ ଯେଉଁ ଯେଉଁ ଆଦର୍ଶ ଚରିତ୍ରମାନଙ୍କର ଅବତାରଣା କରାଯାଇଛି, ତାହା ବାସ୍ତବିକ ଅନନ୍ୟ । ସେହି ଚରିତ୍ରମାନେ ଯୁଗ ଯୁଗ ଧରି କେବଳ ତ ଭାରତୀୟମାନଙ୍କୁ ନୁହନ୍ତି, ଭାରତ ବାହାରର ଲୋକମାନଙ୍କୁ ମଧ୍ୟ ଉଦ୍‌ବୁଦ୍ଧ କରି ଆସିଛନ୍ତି । ବିଶେଷ କରି ଚୀନ୍, ଜାପାନ ଓ ଦକ୍ଷିଣ-ପୂର୍ବ ଏସିଆର ଲୋକମାନେ ଏହି ଚରିତ୍ରମାନଙ୍କ ଦ୍ୱାରା ସ୍ପଷ୍ଟ ଭାବରେ ଉଦ୍‌ବୁଦ୍ଧ ଏବଂ ଏବେ ମଧ୍ୟ ସେହି ସେହି ଦେଶମାନଙ୍କର ରାମାୟଣ-ସଂସ୍କୃତି ତାହାର ଗଭୀର ଛାପ ପକାଇ ରଖିଛି । ରାମାୟଣୀୟ ସମାଜରେ ଏହାର ଅଙ୍ଗୀଭୂତ ଥିବା ବିଭିନ୍ନ ସଭ୍ୟମାନଙ୍କର ପାରସ୍ପରିକ ସମ୍ପର୍କ ମଧୁର ଥିବା ସଙ୍ଗେ ସଙ୍ଗେ କିପରି ନ୍ୟାୟୋଚିତ ଆଧାର ଉପରେ ପ୍ରତିଷ୍ଠିତ ଥିଲା, ସେ ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ଡ. ସୀତାରାମିଆ ଯଥାର୍ଥରେ କୁହନ୍ତି

In the household all proprieties are maintained; a sense of the fair and the just prevails throughout. The high priest Vasistha is respected. The old Suta Sumantra is extended favour and regard for his devotion to the king and is trusted to enter the inner apartments of Dasarath and Rama, (୪୨-କ)

ପରିବାରର ସଭ୍ୟମାନେ ପାରସ୍ପରିକ ସୁସମ୍ପର୍କ ସ୍ଥାପିତ କରିବା ସଙ୍ଗେ ସଙ୍ଗେ ବାହାରର ଲୋକମାନଙ୍କ ସହିତ ମଧ୍ୟ ସମଧିକ ସୁସମ୍ପର୍କ ସ୍ଥାପିତ କରୁଥିଲେ । ଯାହାଙ୍କୁ ଯଥାବିଧି ସମ୍ମାନ, ଅନୁକମ୍ପା, ଦୟା କିମ୍ବା ସ୍ନେହ ଦେବାର କଥା ତାହା ଦେଉଥିଲେ । ଏହା ଫଳରେ ପରିବାର ପ୍ରତି ବାହାର ଲୋକଙ୍କର ମଧ୍ୟ ସଦିଚ୍ଛା ବଢ଼ୁଥିଲା । ଏହା ପରିବାରର ଅଭିବୃଦ୍ଧି ଲାଗି ସହାୟକ ହେଉଥିଲା ।

ରାମଚନ୍ଦ୍ର ପିତୃସତ୍ୟ ପାଳନ କରିବାକୁ ଯାଇ ବନଗମନ କଲେ । ଏହା କରିବାରେ ତାଙ୍କର ତିନୋଟି ଲକ୍ଷ୍ୟ ଥିଲା । ପ୍ରଥମତଃ ପିତୃସତ୍ୟ ପାଳିତ ହେବା ଦ୍ୱାରା ତାଙ୍କ ପିତା ପୁଣ୍ୟାର୍ଜନର ଅଧିକାରୀ ହୋଇପାରିବେ । ଦ୍ୱିତୀୟତଃ ଏହା ଦ୍ୱାରା ତାଙ୍କ ବିମାତା କୈକେୟୀ ସୁଖିନୀ ହେବେ । ତୃତୀୟତଃ ତାଙ୍କ ପ୍ରାଣପ୍ରିୟ ସାନ ଭାଇ ଭରତ ଅଯୋଧ୍ୟାର ରାଜା ହେବେ । ଏଥିରେ ରାମଙ୍କର ପିତୃଭକ୍ତି, ମାତୃଭକ୍ତି ଓ ଭ୍ରାତୃପ୍ରେମ ଏକାଧାରରେ ପ୍ରକଟିତ । ପତିଭକ୍ତିର ନିଦର୍ଶନ ହେଉଛନ୍ତି ସୀତା । ସେ ଅଯୋଧ୍ୟା ରାଜପୁରୀର ସମସ୍ତ ସୁଖସୁବିଧା ଛାଡ଼ି ପତିଙ୍କ ସହିତ ବନକୁ ଗମନ କରିଥିଲେ । ଲୋକାପବାଦକୁ ଡରି ତାଙ୍କ ସ୍ୱାମୀ ତାଙ୍କୁ ନିର୍ବାସିତା କରିଥିଲେ ମଧ୍ୟ ତାଙ୍କ ମନରେ ସ୍ୱାମୀଙ୍କ ପ୍ରତି ସାମାନ୍ୟତମ ଭାବରେ କ୍ରୋଧ କିମ୍ବା ଦ୍ୱେଷ ଆସି ନଥିଲା । ରାବଣର ନାନା ପ୍ରକାର ପ୍ରଲୋଭନ ଓ ଭୟପ୍ରଦର୍ଶନକୁ ବେଖାତିର କରି ସେ ଏକନିଷ୍ଠ ହୋଇ ସ୍ୱାମୀଙ୍କ ଆଗମନକୁ ପ୍ରତୀକ୍ଷା କରି ରହିଥିଲେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଦିନେ ନା ଦିନେ ତାଙ୍କ ସ୍ୱାମୀ ଆସିବେ ଏବଂ ତାଙ୍କୁ ରାବଣର ବନ୍ଧନରୁ ମୁକ୍ତ କରିବେ । ବାସ୍ତବିକ ସ୍ୱାମୀଙ୍କ ପ୍ରତି ଥିବା ଏଭଳି ଅଟଳ ଭକ୍ତି ଓ ବିଶ୍ୱାସ ଅନ୍ୟ କୁତ୍ରାପି ଦୁର୍ଲଭ । ଏତାଦୃଶ ରାମାୟଣରେ ଠାଏ (୨।୧୨।୬୯) ଦଶରଥ ତାଙ୍କ ସ୍ତ୍ରୀ କୌଶଲ୍ୟାଙ୍କ ସମ୍ପର୍କରେ କହୁଛନ୍ତି

ଭାର୍ଯ୍ୟାବଦ୍ ଭଗିନୀବଚ୍ଚ ମାତୃବଚ୍ଚୋପତିଷ୍ଠତ ।
ସତତଂ ପ୍ରିୟକାମା ମେ ପ୍ରିୟପୁତ୍ରା ପ୍ରିୟମ୍ବଦା ।।

ଅର୍ଥାତ୍ ସେ ହେଉଛନ୍ତି ମୋ'ର ଭାର୍ଯ୍ୟା ଭଳି, ମୋ'ର ଭଉଣୀ ଭଳି ଏବଂ ମୋ'ର ମାଆ ଭଳି । ସେ ସବୁବେଳେ ମୋ'ର ଭଲ ଚାହୁଁଥାନ୍ତି ଏବଂ ମୋ' ଆଗରେ ମିଠା ମିଠା କଥା କହୁଥାନ୍ତି । ତାଙ୍କ ପୁଅ ମୋ'ର ସବୁଠାରୁ ବଳି ବେଶି ପ୍ରିୟ । ସ୍ତ୍ରୀ ଏଠାରେ ଭାର୍ଯ୍ୟା, ଭଗିନୀ ଓ ମାତା ଏହିଭଳି ତିନି ରୂପରେ କଳ୍ପିତା । ବାସ୍ତବିକ ଏହା ଜଣେ ଆଦର୍ଶ ପତ୍ନୀଙ୍କର ଚିତ୍ର ! ରାଜା ଦଶରଥ ସନ୍ତାନ-ବାତ୍ସଲ୍ୟର ଏକ ନିଦର୍ଶନ । କୈକେୟୀ ରାମଙ୍କ ବନବାସ ଲାଗି ବର ମାଗିବା ପରେ ସେ ତାଙ୍କୁ ଖୁବ୍ ଭର୍ତ୍ସନା କରିଛନ୍ତି । ସେ ତାଙ୍କର ଅତି ପ୍ରିୟତମା ରାଣୀ ଥିଲେ ମଧ୍ୟ ପୁତ୍ରବାତ୍ସଲ୍ୟ ନିକଟରେ ଏ ପ୍ରକାର ପତି-ପତ୍ନୀ ପ୍ରେମ ତୁଚ୍ଛ ହୋଇ ଉଠିଛି । ଶେଷରେ ରାମଙ୍କ ବନବାସ ପରେ 'ହା ରାମ ! ହା ରାମ !' କହି କହି ପୁତ୍ର-ବିରହରେ ତାଙ୍କର ପ୍ରାଣ ଯାଇଛି । କୈକେୟୀ ମଧ୍ୟ ସନ୍ତାନ-ବାତ୍ସଲ୍ୟର ଆଉ ଏକ ନିଦର୍ଶନ । ସେ ଭଲ ଭାବରେ ଜାଣିଥିଲେ ଯେ ତାଙ୍କ ସ୍ୱାମୀ ରାମଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କରିବାକୁ ଚାହୁଁଛନ୍ତି । ଏହାର ଅର୍ଥ ହେଉଛି ତାଙ୍କ ପରେ ରାମ ଅଯୋଧ୍ୟାର ରାଜା ହୋଇଥାନ୍ତେ । ସେ ଆହୁରି ମଧ୍ୟ ଜାଣିଥିଲେ ଯେ ଏହି ନିଷ୍ପତ୍ତି ପାତ୍ର, ମନ୍ତ୍ରୀ, ପୁରୋହିତ ତଥା ସକଳ ପ୍ରଜାଙ୍କ ଇଚ୍ଛା ଉପରେ ପ୍ରତିଷ୍ଠିତ । ତାହା ସତ୍ତ୍ୱେ ସେ ପୁତ୍ର-ବାତ୍ସଲ୍ୟରେ ଅନ୍ଧ ହୋଇ ନିଜ ପୁତ୍ର ଭରତଙ୍କୁ ଯୁବରାଜ କରାଇବା ପାଇଁ ଏବଂ ରାମଙ୍କୁ ୧୪ ବର୍ଷ ଲାଗି ବନକୁ ପଠାଇବା ପାଇଁ ଚାହିଁଥିଲେ । ଏକ ଦୁର୍ବଳ ମୁହୂର୍ତ୍ତରେ ଦଶରଥ ତାଙ୍କୁ ବର ଦେବା ପାଇଁ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାହାର ସୁଯୋଗ ନେଇ ସେ ତାଙ୍କ ପାଖରୁ ଉପଯୁକ୍ତ ବର ଦୁଇଟି ଚାହିଁଥିଲେ । ସେ ଭଲ ଭାବରେ ଜାଣିଥିଲେ ଯେ ରାମ ଖୁବ୍ ଲୋକପ୍ରିୟତା ଅର୍ଜନ କରିଛନ୍ତି ଏବଂ ତାଙ୍କୁ ବନକୁ ପଠାଇବାର କାରଣ ହୋଇ ସେ ସମସ୍ତଙ୍କ ଦ୍ୱାରା ବହୁନିନ୍ଦିତା ହେବେ । ପୁଣି ରାମଙ୍କ ବିରହରେ ଯେ ତାଙ୍କ ସ୍ୱାମୀ ଖୁବ୍ ମାନସିକ ଯନ୍ତ୍ରଣା ପାଇବେ, ତାହା ମଧ୍ୟ ସେ ବୁଝିଥିଲେ । ଦଶରଥ ଯେତେବେଳେ କହିଲେ ଯେ ରାମଙ୍କ ବିରହରେ ସେ ଜମା ପ୍ରାଣ ଧରି ରହିପାରିବେ ନାହିଁ, ଏହାର ତାତ୍ପର୍ଯ୍ୟ ମଧ୍ୟ ସେ ଖୁବ୍ ବୁଝିଥିଲେ । ଏହା ସତ୍ତ୍ୱେ ନିଜେ ସମସ୍ତ ନିନ୍ଦା, ଅପବାଦକୁ ସହିବା ଲାଗି ପ୍ରସ୍ତୁତ ହୋଇ ଏବଂ ନିଜ ସ୍ୱାମୀଙ୍କ ପ୍ରତି ଆଶୁ ବିପଦର ସମ୍ଭାବନା ଦେଖି ମଧ୍ୟ ସେ ଉପରୋକ୍ତ ବର ଦୁଇଟି ମାଗିବାରେ ଅଟଳ ରହିଥିଲେ । ଏହା ତାଙ୍କର ଅତ୍ୟଧିକ ସନ୍ତାନ-ବାତ୍ସଲ୍ୟର ନିଦର୍ଶନ । ମାଆ ହିସାବରେ ନିଜ ପୁଅଙ୍କୁ ରାଜସିଂହାସନରେ ବସାଇବାକୁ ଚାହିଁବା ତାଙ୍କ ପକ୍ଷରେ କିଛି

ଅସ୍ୱାଭାବିକ ନଥିଲା । ହୁଏତ ଆମେ ତାଙ୍କୁ ଆଦର୍ଶ ମାଆ ବୋଲି ଗ୍ରହଣ କରି ନପାରୁଁ; କାରଣ ରାମ ତାଙ୍କୁ ନିଜ ମାଆଙ୍କଠାରୁ ବଳି ଅଧିକ ଭକ୍ତି କରୁଥିଲେ । ତାହା ସତ୍ତ୍ୱେ ସେ ତାଙ୍କ ପାଇଁ ଯଥେଷ୍ଟ ଅବିଚାର କରିଛନ୍ତି । କିନ୍ତୁ ଆମେ ନିଶ୍ଚିତ ଭାବରେ ସ୍ୱୀକାର କରିବା ଯେ ସେ ଜଣେ ରକ୍ତମାଂସଧାରିଣୀ ସ୍ୱାଭାବିକ ମାଆ ଯେ କି ପୁଅଙ୍କ ସୁଖ ଆଶାରେ ସବୁବେଳେ ଥିଲେ ଅନ୍ଧୁଣୀ । ସକଳ ସୁଖକୁ, ଏପରିକି ପତିସୁଖକୁ ବିସର୍ଜନ ହେଇ ସନ୍ତାନବାତ୍ସଲ୍ୟରେ ଏଭଳି ଅନ୍ଧୁଣୀ ଭାବରେ ମାତି ଉଠିବା ନିଶ୍ଚିତ ଭାବରେ ଏକ ଅନନ୍ୟ ଘଟଣା ।

ଭ୍ରାତୃପ୍ରେମର ବହୁଳ ନିଦର୍ଶନ ଆମେ ଦେଖିଥାଉଁ ଦଶରଥଙ୍କ ଚାରି ପୁଅଙ୍କ ମଧ୍ୟରେ । ବଡ଼ ଭାଇ ସାନ ଭାଇମାନଙ୍କ ପ୍ରତି ଯେପରି ସ୍ନେହଶୀଳ, ସାନ ଭାଇମାନେ ବଡ଼ ଭାଇଙ୍କ ପ୍ରତି ଠିକ୍ ସେହିପରି ଭକ୍ତିପରାୟଣ । ଭରତ ବଡ଼ ଭାଇ ରାମଙ୍କୁ ବନବାସରୁ ଫେରାଇ ଆଣିବା ପାଇଁ ଉଦ୍ୟମ କରିଥିଲେ । କିନ୍ତୁ ସେଥିରେ ସେ ବିଫଳ ହୋଇ ତାଙ୍କର ପାଦୁକାଦ୍ୱୟ ମୁଣ୍ଡାଇ ଆଣି ତାହାକୁ ସିଂହାସନରେ ବସାଇ ତାହାର ପ୍ରତିନିଧି ହିସାବରେ ବନବାସୀଙ୍କ ଭଳି ଦୀର୍ଘ ଚଉଦ ବର୍ଷ କାଳ କୃଚ୍ଛ୍ର ଜୀବନଯାପନ କରିଥିଲେ । ବଡ଼ ଭାଇ ବନବାସୀ ହୋଇ କୃଚ୍ଛ୍ର ଜୀବନଯାପନ କଲାବେଳେ ସେ ସାନ ଭାଇ ହୋଇ କିପରି ବା ରାଜଭୋଗରେ ମାତି ରହିଥାନ୍ତେ ? ଏହା ଭ୍ରାତୃଭକ୍ତିର କିଛି କମ୍ ପରାକାଷ୍ଠା ନୁହେଁ । ଲକ୍ଷ୍ମଣ ତ ଭ୍ରାତୃଭକ୍ତିରେ ତାଙ୍କୁ ଆହୁରି ବଳି ଯାଇଛନ୍ତି । ଦଶରଥ ରାମଙ୍କୁ ବନବାସ-ଦଣ୍ଡ ଦେଇଥିବାରୁ ତାଙ୍କ ଉପରେ ସେ କ୍ରୁଦ୍ଧ ହୋଇ ଉଠିଛନ୍ତି ଏବଂ ତାଙ୍କୁ ସ୍ତ୍ରୈଣ ବୋଲି କହି ସେ ହନନଯୋଗ୍ୟ ବୋଲି ଦାବି କରିଛନ୍ତି । ସେ ଯେ ଦଶରଥଙ୍କଠାରେ ପିତୃତ୍ୱ ଆରୋପ ନକରି ରାମଙ୍କଠାରେ ତାହା ଆରୋପ କରିଛନ୍ତି, ଏ କଥା ସୁମନ୍ତ୍ରଙ୍କ ଆଗରେ ଦେଇଥିବା ତାଙ୍କ ନିଜ ସ୍ୱୀକାରୋକ୍ତିରୁ ଅବଧାରଣୀୟ । ତାଙ୍କ ଭାଷାରେ

ଅହଂ ତାବନ୍ମହାରାଜେ ପିତୃତ୍ୱଂ ନୋପଲକ୍ଷୟେ ।
ଭ୍ରାତା ଭର୍ତ୍ତା ଚ ବନ୍ଧୁଶ୍ଚ ପିତା ଚ ମମ ରାଘବ ।।" (୪୭)

ଅର୍ଥାତ୍ ମୁଁ ମହାରାଜଙ୍କୁ (ଦଶରଥଙ୍କୁ) ପିତା ବୋଲି ମାନେନାହିଁ । ରାଘବ ହେଉଛନ୍ତି ମୋ'ର ଭ୍ରାତା, ଭରଣପୋଷଣ-କର୍ତ୍ତା ଓ ପିତା । ଆମକୁ ଏଠାରେ ସ୍ମରଣ ରଖିବାକୁ ହେବ ଯେ ଲକ୍ଷ୍ମଣଙ୍କ ମାତା ସୁମିତ୍ରା ତାଙ୍କୁ ବନବାସର ଅବ୍ୟବହିତ ପୂର୍ବରୁ ଯେଉଁ ଉପଦେଶ ଦେଇଥିଲେ ତାହାକୁ ସେ ଅକ୍ଷର ଅକ୍ଷରେ ଜୀବନରେ ପାଳନ କରିଥିଲେ । ସୁମିତ୍ରା କହିଥିଲେ

ରାମଂ ଦଶରଥଂ ବିଦ୍ଧି ମାଂ ବିଦ୍ଧି ଜନକାତ୍ମଜାମ୍ । (୪୪)

ଅର୍ଥାତ୍ ରାମଙ୍କୁ ତୁମେ ଦଶରଥ ବୋଲି ଜ୍ଞାନ କରିବ ଏବଂ ଜନକନନ୍ଦିନୀଙ୍କୁ ମୁଁ ବୋଲି ଜ୍ଞାନ କରିବ । ବାସ୍ତବିକ ଲକ୍ଷ୍ମଣ ରାମ ଓ ସୀତାଙ୍କୁ ସାରା ଜୀବନ ପିତା-ମାତା ଭଳି ଜ୍ଞାନ କରିଥିଲେ । ଏଭଳି ଅନନ୍ୟ ଭ୍ରାତୃଭକ୍ତିର ନିଦର୍ଶନ ଅନ୍ୟ କୁତ୍ରାପି ଦୁର୍ଲଭ । ବଡ଼ ଭାଇ ରାମଙ୍କର ସାନ ଭାଇମାନଙ୍କ ପ୍ରତି କମ୍ ସ୍ନେହ ନଥିଲା । ଲକ୍ଷ୍ମଣ ଯେତେବେଳେ ଇନ୍ଦ୍ରଜିତ୍‌ର ଶସ୍ତ୍ରାଘାତରେ ଯୁଦ୍ଧରେ ମୂର୍ଚ୍ଛିତ ହୋଇ ପଡ଼ିଥିଲେ, ରାମ ସେତେବେଳେ ଯେଉଁ ହୃଦୟବିଦାରକ ବିଳାପ କରିଥିଲେ, ତହିଁରୁ ତାଙ୍କର ସାନ ଭାଇଙ୍କ ପ୍ରତି ଥିବା ଅନାବିଲ ସ୍ନେହ ପ୍ରତିମ ସ୍ନେହର ଭାବ ବିଶେଷ ଭାବରେ ପ୍ରକାଶିତ । ତାଙ୍କ ଭାଷାରେ

ଶକ୍ୟା ସୀତା ସମା ନାରୀ ମର୍ତ୍ତ୍ୟଲୋକେ ବିଚିନ୍ୱତା ।
ନ ଲକ୍ଷ୍ମଣ ସମୋ ଭ୍ରାତା ସଚିବଃ ସାଂପରାୟିକଃ ।। (୪୫)

ଅର୍ଥାତ୍ ଏ ମର୍ତ୍ତ୍ୟଲୋକରେ ସୀତାଙ୍କ ପରି ସ୍ତ୍ରୀ ନିଶ୍ଚୟ ମିଳିବେ; କିନ୍ତୁ ଲକ୍ଷ୍ମଣଙ୍କ ପରି ଯୋଦ୍ଧା, ମନ୍ତ୍ରଣାଦାତା ଓ ଯୁଦ୍ଧକୁଶଳ ଭାଇ ମିଳିବା ଅସମ୍ଭବ । ଏଠାରେ ରାମ ଲକ୍ଷ୍ମଣଙ୍କୁ 'ସଚିବ' ବା ମନ୍ତ୍ରଣାଦାତା ବୋଲି କହୁଛନ୍ତି । ଏହାର ତାତ୍ପର୍ଯ୍ୟ ହେଲା ସାନ ଭାଇ କେବଳ ବଡ଼ ଭାଇଙ୍କ ଆଦେଶପାଳନକାରୀ ଭୃତ୍ୟ ଭଳି କାମ କରୁ ନଥିଲେ । ସେ ମଧ୍ୟ ବଡ଼ ଭାଇଙ୍କୁ ଭଲ ମନ୍ଦ ସଂପର୍କରେ ନାନା ପ୍ରକାର ପରାମର୍ଶ ଦେଉଥିଲେ ଏବଂ ଆବଶ୍ୟକ ପଡ଼ିଲେ ତାଙ୍କ ପାଇଁ ଯୁଦ୍ଧ ବି କରୁଥିଲେ । ଦୁଇ ଭାଇଙ୍କ ପାରସ୍ପରିକ ସଂପର୍କ ଉଭୟ ପିତାପୁତ୍ର ସୁଲଭ ଓ ବନ୍ଧୁସୁଲଭ ପ୍ରେମରେ ଥିଲା ରସାଣିତ ।

ଆର୍ଯ୍ୟ-ପରିବାରରେ ଭାଇମାନଙ୍କ ମଧ୍ୟରେ ଏଭଳି ସଂପର୍କ ଥିଲା ବେଳେ ରାକ୍ଷସ-ପରିବାର ଓ ବାନର-ପରିବାର ମଧ୍ୟରେ ତାହାର ଠିକ୍ ବିପରୀତ ସ୍ଥିତି ବିଦ୍ୟମାନ ଥିଲା । ରାବଣ ନିଜର କାମନା-ବାସନାର ପରିପୂର୍ତ୍ତି ଲାଗି ସୀତାଙ୍କୁ ଅପହରଣ କରିବା ପରେ ପରେ ତା'ର ସାଧୁ ପ୍ରକୃତିର ଭାଇ ବିଭୀଷଣ ସୀତାଙ୍କୁ ଫେରାଇ ଦେଇ ତା'କୁ ରାମଙ୍କ ସହିତ ସନ୍ଧି କରିବା ପାଇଁ ବାରମ୍ବାର ପରାମର୍ଶ କରିଛନ୍ତି । କିନ୍ତୁ ରାବଣ ସେହି ସୁପରାମର୍ଶ ସମୂହକୁ ଏଡ଼େଇ ଦେଇ ଶେଷରେ ବିଭୀଷଣଙ୍କୁ ରାଜ୍ୟରୁ ବିତାଡ଼ିତ କରିଛି । ଫଳରେ ବିଭୀଷଣଙ୍କୁ ଯାଇ ରାମଙ୍କର ଶରଣାପନ୍ନ ହେବାକୁ ପଡ଼ିଛି । ବାନର-ପରିବାରରେ ବଡ଼ ଭାଇ ବାଳୀ ସାନ ଭାଇ ସୁଗ୍ରୀବଙ୍କ ସହିତ ଲଢ଼େଇ କରି ତାଙ୍କୁ ନିର୍ବାସିତ କରିଛନ୍ତି ଏବଂ ତାଙ୍କ ସ୍ତ୍ରୀକୁ ବିବାହ କରିଛନ୍ତି । ପୁଣି ରାଜ୍ୟଲୋଭରେ ସୁଗ୍ରୀବ ରାମଙ୍କ ସହିତ ବନ୍ଧୁତା କରି ନିଜ ବଡ଼ ଭାଇକୁ ମରାଇଛନ୍ତି ଏବଂ ଭାଉଜକୁ ବିବାହ କରିଛନ୍ତି । ଭାଇ-ଭାଇ ମଧ୍ୟରେ ଏ ପ୍ରକାର ସମ୍ବନ୍ଧ କଦାପି ଆର୍ଯ୍ୟଜନୋଚିତ ନୁହେଁ । ବାଲ୍ମୀକି ବିଭିନ୍ନ ପ୍ରକାର

ଭ୍ରାତୃ-ସମ୍ପର୍କର ଚିତ୍ର ବିଭିନ୍ନ ପରିବାରରେ ଦେବାର ଉଦ୍ଦେଶ୍ୟ ହେଉଛି ଏହା ମାଧ୍ୟମରେ ମାନବ-ସମାଜକୁ କେଉଁ ପ୍ରକାର ସମ୍ପର୍କ କରଣୀୟ ତଥା ଶୁଭଙ୍କର ସେ ବିଷୟରେ ଶିକ୍ଷା ମିଳିବ । ବାସ୍ତବିକ ସବୁ ମହାକାବ୍ୟର ଲେଖକମାନଙ୍କର ଏହା ହିଁ ଥାଏ ଲକ୍ଷ୍ୟ । ଏହି ଲକ୍ଷ୍ୟ ଉପରେ ମହାକାବ୍ୟର ଲେଖକମାନେ କିପରି ଗୁରୁତ୍ୱ ଆରୋପ କରିଥାନ୍ତି, ତାହା ସ୍ପଷ୍ଟ କରି ଦେବାକୁ ଯାଇ ରାୟ ପ୍ରମଥନାଥ ମଲ୍ଲିକ ବାହାଦୂର ଯଥାର୍ଥରେ କହିଛନ୍ତି

> The epic authors represent characters to teach the world virtue and truth effectively by examples. They cite evil deeds against good ones to bring them out with greater force. (୪୬)

ପତ୍ନୀ-ପ୍ରେମର ନିଦର୍ଶନରେ ମଧ୍ୟ ରାମାୟଣ ପରିପୂର୍ଣ୍ଣ । ରାମଙ୍କର ତାଙ୍କ ପତ୍ନୀ ସୀତାଙ୍କ ସହିତ ଥିବା ପ୍ରେମକୁ ଏକ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ । ଏହି ପ୍ରେମ ଯୁଗ ଯୁଗ ଧରି ଆମ ପାଇଁ ଆଦର୍ଶସ୍ଥାନୀୟ ହୋଇ ରହି ଆସିଛି । ବାସ୍ତବିକ ରାମାୟଣର ଛନ୍ଦେ ଛନ୍ଦେ ରାମ ଓ ସୀତାଙ୍କ ଅନାବିଲ ଦାମ୍ପତ୍ୟ-ପ୍ରେମର ଝଙ୍କାର ଅନୁରଣିତ । ବୁକିଙ୍ଗ୍‌ହମ୍ ତେଣୁ ଯଥାର୍ଥରେ କୁହନ୍ତି

> The mutual affection and companionship of Rama and Sita is clear throughout. (୪୭)

ପତି ନିଜର ସୁଖସ୍ୱାଚ୍ଛନ୍ଦ୍ୟକୁ ଏଡ଼େଇ ଦେଇ ଯେତେବେଳେ ପତ୍ନୀର ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦିଅନ୍ତି, ସେତେବେଳେ ତାଙ୍କର ପତ୍ନୀ-ପ୍ରେମର ପରାକାଷ୍ଠା ଅଧିକତର ଭାବରେ ପରିସ୍ଫୁଟ ହୋଇଥାଏ । ରାମ ସୀତାଙ୍କୁ ଛାଡ଼ି ଚଉଦ ବର୍ଷ ବନବାସ କଲେ ଯେ କି ପ୍ରକାର ପତ୍ନୀବିରହ ଯନ୍ତ୍ରଣା ଭୋଗିବେ, ତାହା ତାଙ୍କୁ ଖୁବ୍ ଜଣାଥିଲା । ତେଣୁ ସୀତା ବାରମ୍ବାର ଅନୁନୟ-ବିନୟ କଲେ ମଧ୍ୟ ସେ ତାଙ୍କୁ ସାଥିରେ ଆଣିବାକୁ ମନା କରୁଥିଲେ । ସୀତାଙ୍କୁ ଯେ ବନବାସ କଷ୍ଟ ଖୁବ୍ ବାଧିବ ଏହା ତାଙ୍କୁ ଯାରୁଥିଲା । ସେଥିପାଇଁ ସେ ତାଙ୍କୁ ସାଥିରେ ଆଣିବାକୁ ପ୍ରଥମେ ରାଜି ହେଉନଥିଲେ । ବାଲ୍ମୀକିଙ୍କ ଭାଷାରେ :

> ସ ଏବଂ ବ୍ରୁବତୀଂ ସୀତାଂ ଧର୍ମଜ୍ଞାଂ ଧର୍ମବତ୍ସଳଃ
> ନ ନେତୁଂ କୁରୁତେ ବୁଦ୍ଧିଂ ବନେ ଦୁଃଖାନି ଚିନ୍ତୟନ୍ । (୪୮)

ଅର୍ଥାତ୍ ଧର୍ମକଥା ଜାଣିଥିବା ସୀତା ଏଭଳି କୁହନ୍ତେ ଧର୍ମବତ୍ସଳ ରାମ ବଣରେ ଦୁଃଖ ମିଳିବ ଭାବି ତାଙ୍କୁ ସାଥିରେ ନେବା କଥା ଭାବିଲେ ନାହିଁ । ପରେ ଅବଶ୍ୟ

ସୀତାଙ୍କ ଅକାଟ୍ୟ ଯୁକ୍ତି ଓ ଆକୁଳ ପ୍ରାର୍ଥନା ଫଳରେ ସେ ତାଙ୍କୁ ସାଥିରେ ନେବାପାଇଁ ରାଜି ହୋଇଥିଲେ । ଚିତ୍ରକୂଟର ଶୋଭା ସୀତାଙ୍କ ଆଗରେ ବର୍ଣ୍ଣନା କଲାବେଳେ (୨ । ୯୪ । ୧୫) ସେ କହିଥିଲେ, "ଆଗୋ ସତୀ-ସାଧ୍ୱୀ ସୀତେ ! ଯଦି ମତେ ତୁମ ସାଥିରେ ଓ ଲକ୍ଷ୍ମଣଙ୍କ ସାଥିରେ ଶହେ ବର୍ଷ ପର୍ଯ୍ୟନ୍ତ ବଣରେ ରହିବାକୁ ପଡ଼େ, ତେବେ ରାଜଧାନୀ ଛାଡ଼ିବାର ଶୋକ ମତେ କେବେ ହେଲେ ପୀଡ଼ା ଦେବନାହିଁ ।" ମାୟାମୃଗକୁ ମାରି ରାମ ତାଙ୍କ କୁଟୀରକୁ ଫେରି ଆସି ଦେଖନ୍ତି ତ ସୀତା ନାହାନ୍ତି । ସେ କାହା ଦ୍ୱାରା ଅପହୃତା । ସେତେବେଳେ ସେ ତାଙ୍କର ମାନସିକ ଭାରସାମ୍ୟ ସମ୍ପୂର୍ଣ୍ଣ ରୂପେ ହରାଇ ବସିଲେ । ସେ ପାଗଳ ଭଳି ବନରୁ ବନାନ୍ତର ବୁଲି ସୀତାଙ୍କୁ ଖୋଜିଲେ । ସେହି ଅବସରରେ ସେ ଯେଉଁ ହୃଦୟସ୍ପର୍ଶୀ ବିଲାପ କରିଥିଲେ, ତହିଁରୁ ତାଙ୍କର ସୀତାଙ୍କ ପ୍ରତି ଥିବା ପ୍ରଗାଢ଼ ପ୍ରେମର ନିଦର୍ଶନ ମିଳିଥାଏ । ସୀତାଙ୍କୁ ଖୋଜି ଖୋଜି ନପାଇବାରେ ସେ ଏପରି କ୍ରୁଦ୍ଧ ହୋଇ ଯାଇଥିଲେ ଯେ ତାଙ୍କୁ ନପାଇଲେ ତିନି ଲୋକର ମର୍ଯ୍ୟାଦାକୁ ସେ ନଷ୍ଟ କରିଦେବେ ବୋଲି ଲକ୍ଷ୍ମଣଙ୍କୁ କହିଥିଲେ । ତାଙ୍କ ବାଣୀ ହେଲା

> ନିର୍ମର୍ଯ୍ୟାଦାନିମାଁଲ୍ଲୋକାନ୍ କରିଷ୍ୟାମ୍ୟଦ୍ୟ ସାୟକୈଃ ।
> ହୃତାଂ ମୃତାଂ ବା ସୌମିତ୍ରେ ନ ଦାସ୍ୟନ୍ତି ମମେଶ୍ୱରାଃ ॥ (୪୯)

ଅର୍ଥାତ୍ ହେ ସୁମିତ୍ରାନନ୍ଦନ ! ଯଦି ଦେବତାମାନେ ମୋ' ହାତରେ ଅପହୃତା କିମ୍ବା ମୃତା ସୀତାଙ୍କୁ ସମର୍ପଣ ନକରନ୍ତି, ତେବେ ବାଣ ପ୍ରହାର କରି ମୁଁ ଏହି ସକଳ ଲୋକକୁ ମର୍ଯ୍ୟାଦାହୀନ କରିଦେବି ବା ନଷ୍ଟ କରିଦେବି । ଲଙ୍କାଭୂମିରେ ପାଦ ଦେଇ ଦେଇ ତାଙ୍କର ସୀତାଙ୍କ କଥା ପ୍ରଥମେ ମନେ ପଡ଼ିଛି ଏବଂ କେବେ ସେ ତାଙ୍କୁ ଉଦ୍ଧାର କରି ତାଙ୍କର ସାନ୍ନିଧ୍ୟ ଲାଭ କରିବେ ସେହି ବିଷୟ ଚିନ୍ତା କରି କରି ସେ ନାନା ଭାବରେ ବିଲାପ କରି ଉଠିଛନ୍ତି । ଯୁଦ୍ଧକାଣ୍ଡର ପଞ୍ଚମ ସର୍ଗଟି ତାଙ୍କ ବିଳାପବାଣୀରେ ଭରପୂର । ତହିଁରୁ ନିମ୍ନୋକ୍ତ ଗୋଟିଏ ପଙ୍କ୍ତି ଏଠାରେ ଉଲ୍ଲେଖନୀୟ

> କଦାନୁ ଖଳୁ ମେ ସାଧ୍ୱୀ ସୀତାମରସୁତୋପମା ।
> ସୋତ୍କଣ୍ଠା କଣ୍ଠମାଲମ୍ବ୍ୟ ମୋକ୍ଷ୍ୟତ୍ୟାନନ୍ଦଜଂ ଜଳମ୍ । (୫୦)

ଅର୍ଥାତ୍ ଦେବକନ୍ୟା ଭଳି ମୋ'ର ସୁନ୍ଦରୀ ସତୀ-ସାଧ୍ୱୀ ସୀତା କେବେ ଉତ୍କଣ୍ଠିତା ହୋଇ ମୋ'ର କଣ୍ଠଲଗ୍ନା ଥାଇ ଆଖିରୁ ଆନନ୍ଦର ଲୁହ ଝରାଇବେ ? ରାମ-ରାବଣ ଯୁଦ୍ଧ ପରେ ସୀତାଙ୍କୁ ରାମ ଉଦ୍ଧାର କଲେ; କିନ୍ତୁ ତାଙ୍କ ସତୀତ୍ୱର ପରୀକ୍ଷା ଲାଗି ସେ ତାଙ୍କୁ ଅଗ୍ନି-ପରୀକ୍ଷା ଦେବାପାଇଁ କହିଲେ । ସୀତା ତ ଥିଲେ ସତୀ-

ସାଧ୍ଵୀ । ସ୍ତ୍ରୀ ମୂର୍ତ୍ତିକ ପାଇଁ ମଧ୍ୟ ସେ ରାମଙ୍କ ବ୍ୟତୀତ ଅନ୍ୟ କୌଣସି ପୁରୁଷଙ୍କ କଥା ମନରେ ଆଣି ନାହାନ୍ତି । ସେ ତେଣୁ ହସି ହସି ଅଗ୍ନିରେ ଝାସ ଦେଲେ । ଏଭଳି ସ୍ଥିତିରେ ସୀତାଙ୍କର କାଳେ କ'ଣ ହୋଇଯିବ ଭାବି ରାମ ବ୍ୟସ୍ତ ହୋଇ ଉଠିଲେ ଏବଂ ବ୍ୟାକୁଳ ଭାବରେ ବିଳାପ କରିବାକୁ ଲାଗିଲେ । ସୀତାଙ୍କୁ ଅକ୍ଷତ ଶରୀରରେ ଫେରି ଆସିବାର ଦେଖି ତାଙ୍କ ଶୋକ ପ୍ରଶମିତ ହେଲା ।

ରାମ ସୀତାଙ୍କ ସହିତ ପ୍ରଥମ ସାକ୍ଷାତ୍କାର ବେଳୁଁ ହିଁ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ ସେ ସାରା ଜୀବନ ଏକପତ୍ନୀବ୍ରତ ଗ୍ରହଣ କରିବେ । ସେତେବେଳେ ଆର୍ଯ୍ୟମାନଙ୍କ ମଧ୍ୟରେ ବହୁ ପତ୍ନୀ ଗ୍ରହଣର ପ୍ରଥାଟି ପ୍ରଚଳିତ ଥିଲା । ତାଙ୍କ ପିତା ଦଶରଥଙ୍କର ତିନି ପତ୍ନୀ ଥିଲେ । ସେ ଚାହିଁଥିଲେ ଏକାଧିକ ପତ୍ନୀଙ୍କର ସ୍ୱାମୀ ହୋଇପାରିଥାନ୍ତେ । କିନ୍ତୁ ସେ ତାହା କରିନଥିଲେ । ସୀତାଙ୍କ ପ୍ରତି ତାଙ୍କର ଥିବା ଏକନିଷ୍ଠ ପ୍ରେମ ତାଙ୍କୁ ଏହି କର୍ମରୁ ବିରତ କରିଥିଲା । ତାଙ୍କର ଅଶ୍ୱମେଧ ଯଜ୍ଞ କରିବା ସମୟ ଆସିଲା ବେଳକୁ ସୀତା ହୋଇଥିଲେ ନିର୍ବାସିତା । ଏଣେ ଶାସ୍ତ୍ରୀୟ ନିୟମ ଅନୁସାରେ ସ୍ତ୍ରୀ ନଥାଇ ଯଜ୍ଞ-କାର୍ଯ୍ୟ କରିହେବ ନାହିଁ । ତେଣୁ ତାଙ୍କୁ ପୁନର୍ବିବାହ କରିବା ପାଇଁ ପ୍ରସ୍ତାବ ଦିଆଗଲା । କିନ୍ତୁ ସେହି ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରିଦେଲେ । ଶେଷରେ କୁଶର ସୀତା-ମୂର୍ତ୍ତିଟିଏ କରାଇ ତାହାକୁ ଯଜ୍ଞ-ବେଦୀ ଉପରେ ବସାଇବାର ବ୍ୟବସ୍ଥା କରାଇଲେ । କର୍ତ୍ତବ୍ୟର ଅନୁରୋଧରେ ପଡ଼ି ପ୍ରଜାନୁରଞ୍ଜନ ଲାଗି ସିନା ସେ ରାଜା ହିସାବରେ ତାଙ୍କ ରାଣୀ ସୀତାଙ୍କୁ ବିସର୍ଜନ କରିଥିଲେ । କିନ୍ତୁ ପତି ହିସାବରେ ପତ୍ନୀ ସୀତାଙ୍କ ପ୍ରତି ତାଙ୍କ ପ୍ରେମ ଅକ୍ଷୁଣ୍ଣ ରହିଥିଲା । ସୀତାଙ୍କୁ ନିର୍ବାସନ-ଦଣ୍ଡ ଦେବାପରେ ତାଙ୍କ ମାନସିକ ସ୍ଥିତି କ'ଣ ଥିଲା ତାହା ଅବଶ୍ୟ ସଂକ୍ଷେପରେ ବାଲ୍ମୀକି ବର୍ଣ୍ଣନା କରିଛନ୍ତି । କିନ୍ତୁ ସେଇଥିରୁ ହିଁ ତାଙ୍କ ଦୁଃଖର ଗଭୀରତା ଜଣାପଡ଼େ । ଲକ୍ଷ୍ମଣ ସୀତାଙ୍କୁ ଛାଡ଼ି ଆସିବା ପରେ ଅଯୋଧ୍ୟାକୁ ଫେରି ରାମଙ୍କୁ କିଭଳି ଅବସ୍ଥାରେ ଦେଖିଥିଲେ ତାହା ବର୍ଣ୍ଣନା କରିବାକୁ ଯାଇ ବାଲ୍ମୀକି କହିଛନ୍ତି

> ସ ଦୃଷ୍ଟ୍ୱା ରାଘବଂ ଦୀନମାସୀନଂ ପରମାସନେ ।
> ନେତ୍ରାଭ୍ୟାମଶ୍ରୁପୂର୍ଣ୍ଣାଭ୍ୟାଂ ଦଦର୍ଶାଗ୍ରଜମଗ୍ରତଃ ।
> ଜଗ୍ରାହ ଚରଣୌ ତସ୍ୟ ଲକ୍ଷ୍ମଣୋ ଦୀନଚେତନଃ ।
> ଉବାଚ ଦୀନୟା ବାଚା ପ୍ରାଞ୍ଜଳିଃ ସୁସମାହିତଃ । (୫୧)

ଅର୍ଥାତ୍ ସେ ଆସି ଦେଖିଲେ ଯେ ରାମ ଶ୍ରେଷ୍ଠ ଆସନରେ ଖୁବ୍ ଦୁଃଖୀ ହୋଇ ବସିଛନ୍ତି ଏବଂ ତାଙ୍କ ଆଖି ଦୁଇଟି ଲୁହରେ ଭରପୂର ହୋଇ ଉଠିଛି । ଏଭଳି

ଅବସ୍ଥାରେ ପଡ଼ିଥିବା ରାଇଙ୍କୁ ଆଗରେ ଦେଖି ଦୁଃଖ ମନରେ ଲକ୍ଷ୍ମଣ ତାଙ୍କର ଦୁଇ ଗୋଡ଼ ଧରିପକାଇଲେ ଏବଂ ହାତ ଯୋଡ଼ି ଏକାଗ୍ର ଚିତ୍ତରେ ଧାନସ୍ଥ ଭାବରେ କହିଲେ ।

ସୀତାଙ୍କ ପାତାଳ-ପ୍ରବେଶ ସମ୍ପର୍କରେ ରାମଙ୍କର ଦୁଃଖ କହିଲେ ନସରେ । ସେ ଦୁଃଖରେ ଅଭିଭୂତ ହୋଇ ପାଗଳ ଭଳି ପ୍ରଳାପ କରିବାକୁ ଲାଗିଲେ । ତାଙ୍କ କଣ୍ଠରୁ ମଧ୍ୟ କ୍ରୁଦ୍ଧ ବାଣୀ ଶୁଣାଗଲା । ସେ ପୃଥିବୀ-ମାତାଙ୍କ ଉପରେ ରାଗି ଯାଇ କହିଲେ :

ବସୁଧେ ଦେବି ଭବତି ସୀତା ନିର୍ଯାତ୍ୟତାଂ ମମ ।
ଦର୍ଶୟିଷ୍ୟାମି ବା ରୋଷଂ ଯଥା ମାମବଗଚ୍ଛସି ॥ (୫୨)

ଅର୍ଥାତ୍ ଆଗୋ ପୂଜନୀୟେ ଦେବି ବସୁଧେ ! ମତେ ସୀତାଙ୍କୁ ତୁମେ ଫେରାଇ ଦିଅ । ତାହା ନକଲେ ମୁଁ ମୋ'ର କ୍ରୋଧ ଦେଖାଇବି । ମୋ'ର ଶକ୍ତି କେତେ, ତାହା ତୁମେ ଜାଣିଛ ତ ? ଏହି କେତୋଟି ନିଦର୍ଶନରୁ ଆମେ ରାମଙ୍କର ସୀତାଙ୍କ ପ୍ରତି ଥିବା ଅନନ୍ୟ ପ୍ରେମର ସୂଚନା ପାଇପାରିବା ।

ଭାରତୀୟ ପରମ୍ପରାରେ ପତିଙ୍କୁ ସ୍ୱାମୀ ବା ପ୍ରଭୁ ଭାବରେ କଳ୍ପନା କରାଯାଇଛି । ପ୍ରଭୁ ଭୃତ୍ୟର ଭରଣପୋଷଣ ଭାର ବହନ କରିଥାନ୍ତି; ତା'କୁ ରକ୍ଷା କରିଥାନ୍ତି । ଠିକ୍ ସେହିପରି ପତି ପତ୍ନୀଙ୍କୁ ରକ୍ଷା କରିଥାନ୍ତି । ମନୁଙ୍କ ସମୟରେ ମଧ୍ୟ ଏହି ପରମ୍ପରା ପ୍ରତି ସମ୍ମାନ ପ୍ରଦର୍ଶନ କରାଯାଉଥିବାର ପ୍ରମାଣ ମିଳେ । ତାଙ୍କ ମତରେ, 'ଭର୍ତ୍ତା ରକ୍ଷତି ଯୌବନେ ।'

ଅର୍ଥାତ୍ ସ୍ୱାମୀ ଯୌବନ କାଳରେ (ସ୍ତ୍ରୀର) ରକ୍ଷକ ହୋଇଥାନ୍ତି । ରାମାୟଣୀୟ ପରିବାରରେ ମଧ୍ୟ ଏହି ପରମ୍ପରା ଥିଲା । ବନବାସର ଦୈନନ୍ଦିନ ଭୟପୂର୍ଣ୍ଣ ଓ କ୍ଳେଶଦାୟକ ସ୍ଥିତି କଥା ବୁଝାଇ ରାମ ଯେତେବେଳେ ସୀତାଙ୍କୁ ସେଥିରୁ ବିରତ ହେବାପାଇଁ ବାରମ୍ବାର କହିଥିଲେ, ସେତେବେଳେ ସୀତା ଉତ୍ତର ଦେଇଥିଲେ ଯେ ତାଙ୍କର ସେଥିକି ଜମା ଭୟ ନାହିଁ ଏବଂ ସେ ସେହି କ୍ଳେଶକୁ ଜମା ଖାତିର କରନ୍ତି ନାହିଁ; କାରଣ ତାଙ୍କର ରାମଙ୍କ ଭଳି ରକ୍ଷକ ସ୍ୱାମୀ ଅଛନ୍ତି । ସ୍ୱାମୀ ପାଖରେ ଥିଲେ ସ୍ତ୍ରୀ ବା ଭୟ କେଉଁଥିପାଇଁ କରିବେ ? ଏହା ତ ଅତି ପ୍ରାଚୀନ ଭାରତୀୟ ପରମ୍ପରା, ଯାହାକୁ ଏବେ ମଧ୍ୟ ଭାରତୀୟ ପରିବାରରେ ସମ୍ମାନ ଦିଆଯାଉଛି । ବ୍ରକିଙ୍ଗ୍ଟନ୍‌ଙ୍କ ନିମ୍ନୋକ୍ତ ମନ୍ତବ୍ୟ ମଧ୍ୟ ଏହି ମତର ପରିପୋଷଣ କରିଥାଏ :

The role of husband as the protector of his wife is implicit throughout. As part of Sita's efforts

to persuade Rama to let her accompany him to exile, she proclaims her confidence in his ability to protect her. (୫୩)

ରାମଙ୍କ ଅନୁପସ୍ଥିତିର ସୁଯୋଗ ନେଇ ରାବଣ ପଞ୍ଚବଟୀସ୍ଥ କୁଟୀରରୁ ସୀତାଙ୍କୁ ଅପହରଣ କରିନେଇଛି । ରାମ ଆଶ୍ରମକୁ ଫେରି ଦେଖିଛନ୍ତି ଯେ ସୀତା ସେଠାରେ ନାହାନ୍ତି । ସେ ଯେ ନିଜ ପତ୍ନୀଙ୍କୁ ରକ୍ଷା କରି ପାରିନାହାନ୍ତି, ଏବଂ ସ୍ୱୀୟ ଭର୍ତ୍ତା ନାମର ସାର୍ଥକତା ପ୍ରମାଣ କରିପାରି ନାହାନ୍ତି, ସେଥିପାଇଁ ତାଙ୍କ ମନରେ ଖୁବ୍ କ୍ଷୋଭ ଆସିଛି ଏବଂ ସେ ନିଜର ଶୌର୍ଯ୍ୟବୀର୍ଯ୍ୟକୁ ଶତ ଧିକ୍କାର କରିଛନ୍ତି । ରାବଣ ଯେତେବେଳେ ସୀତାଙ୍କୁ ଅପହରଣ କରିନେଇ-ଥିବାର ସମ୍ବାଦ ସେ ଜଟାୟୁ-ମୁଖରୁ ପାଇଛନ୍ତି, ସେହି ସମୟରୁ ହିଁ ସେ ସୀତାଙ୍କୁ ଉଦ୍ଧାର କରିବା ପାଇଁ ଜୀବନର ପ୍ରଧାନ ବ୍ରତ ରୂପେ ଗ୍ରହଣ କରି ନେଇଛନ୍ତି । ତାଙ୍କର ପରବର୍ତ୍ତୀ ସକଳ କାର୍ଯ୍ୟାବଳୀ ସେହି ଉଦ୍ଦେଶ୍ୟରେ ହିଁ ସମାହିତ । ରାମ-ରାବଣ ଯୁଦ୍ଧର ଆଉ ଯାହା ଉଦ୍ଦେଶ୍ୟ ଥାଉନା କାହିଁକି, ଏହାର ପ୍ରଧାନ ଉଦ୍ଦେଶ୍ୟ ଥିଲା ସୀତାଙ୍କୁ ରାବଣକବଳରୁ ଉଦ୍ଧାର କରିବା ଏବଂ ରାମଙ୍କ ସ୍ୱୀୟ ପତ୍ନୀଙ୍କ ପ୍ରତି ଥିବା ଭର୍ତ୍ତୃତ୍ୱକୁ ସୁପ୍ରତିପାଦିତ କରିବା । ରାମ ଯେ ସୀତାଙ୍କୁ ଦିନେ ନା ଦିନେ ନିଶ୍ଚୟ ଆସି ଉଦ୍ଧାର କରିବେ, ସେ ଆଶା ତାଙ୍କର (ସୀତାଙ୍କର) ଅଳ୍ପ । ତେଣୁ ସେ ରାବଣ ଦ୍ୱାରା ବନ୍ଦିନୀ ଥାଇ ମଧ୍ୟ ଭବିଷ୍ୟତର ସେଇ ସୁଖାଶାରେ ବନ୍ଦିନୀ-ଜୀବନର ସକଳ ଦୁଃଖ-ଯନ୍ତ୍ରଣାକୁ ଭୁଲି ଯାଇଥିଲେ । କେହି କେହି ପ୍ରଶ୍ନ କରିପାରନ୍ତି, ରାମ ଯଦି ସର୍ବଦା ନିଜକୁ ସ୍ୱୀୟ ପତ୍ନୀ ସୀତାଙ୍କର ରକ୍ଷକ ବୋଲି ଭାବୁଥିଲେ, ତେବେ ସେ ତାଙ୍କୁ ଲୋକାପବାଦ ଭୟରେ ପୁଣି ବର୍ଜନ କଲେ କାହିଁକି ? ତଦ୍ଦ୍ୱାରା ତାଙ୍କର ପତ୍ନୀଙ୍କ ରକ୍ଷକତ୍ୱ ଉପରେ ଆଞ୍ଚ ଆସିଲା ନାହିଁକି ? ଉପରକୁ ଏହା ଦୋଷାବହ ଜଣା ପଡୁଥିଲେ ହେଁ ପ୍ରକୃତରେ ଏହା ସେପରି ନଥିଲା । ରାମ ସେଠି ରାଜାଙ୍କ କର୍ତ୍ତବ୍ୟ ସମାପନ କରିଥିଲେ ମାତ୍ର । 'ପ୍ରଜାସୁଖେ ସୁଖୀ ରାଜା' ଏହି ନୀତି ଥିଲା ସେତେବେଳେ ରାମଙ୍କର ଧର୍ମ । ବାସ୍ତବିକ ରାମଙ୍କ ନାମଟିର ଅର୍ଥ ହେଉଛି 'ଅନୁରଞ୍ଜନକାରୀ' । ରଞ୍ଜୟତୀତି ରାଜନ୍ । ଅର୍ଥାତ୍ ଯେ (ପ୍ରଜାଙ୍କୁ) ଅନୁରଞ୍ଜନ କରନ୍ତି ସେ ହେଲେ ରାଜନ୍ । ଏପରି କ୍ଷେତ୍ରରେ ପ୍ରଜାନୁରଞ୍ଜନର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ରାଜାଙ୍କୁ ସ୍ୱୀୟ ସୁଖକୁ ବିସର୍ଜନ କରିବାକୁ ପଡ଼ିବ, ସ୍ୱୀୟ ସ୍ୱାର୍ଥକୁ ତ୍ୟାଗ କରିବାକୁ ପଡ଼ିବ । ପତିଙ୍କ କର୍ତ୍ତବ୍ୟ ଓ ରାଜାଙ୍କ କର୍ତ୍ତବ୍ୟ ମଧ୍ୟରେ ଯେତେବେଳେ ଦ୍ୱନ୍ଦ୍ୱ ଉପୁଜିଛି, ସେତେବେଳେ ରାମ ଆଗ ରାଜାଙ୍କ କର୍ତ୍ତବ୍ୟ ସମାହିତ କରିବାକୁ ଆଗେଇ ଆସିଛନ୍ତି । ପ୍ରଜାସମୂହଙ୍କ ପାଇଁ ରାଜାଙ୍କୁ ଦୁଃଖ ସହିବାକୁ ପଡ଼ିଲେ ତାହାକୁ ସେ

ଅକାତରେ ସହିଯିବା ଉଚିତ । ଏହି ଦୃଷ୍ଟିରୁ ବିଚାର କଲେ ତାଙ୍କର ସୀତାବର୍ଜନ ନୀତି ଦୃଷ୍ଟିରୁ ଦୂଷଣୀୟ ହୋଇନାହିଁ ।

ସ୍ତ୍ରୀ ଓ ପତ୍ନୀଙ୍କୁ ରକ୍ଷା କରିବା କେବଳ ତ ଆର୍ଯ୍ୟମାନଙ୍କର ଧର୍ମ ନଥିଲା । ଏହା ମଧ୍ୟ ଆର୍ଯ୍ୟେତର ରାକ୍ଷସସଂପ୍ରଦାୟର ଧର୍ମ ଥିଲା । ନିଜ ସ୍ତ୍ରୀ ଭଳି ପରସ୍ତ୍ରୀକୁ ଯେ ରକ୍ଷା କରିବା ଉଚିତ, ଏ କଥା ଜଟାୟୁ ରାବଣକୁ ସୀତାଙ୍କୁ ଅପହରଣ କରି ନେଉଥିବାର ଦେଖି ପ୍ରଥମେ ବୁଝାଇ ଦେଇଥିବା କଥା ରାମାୟଣରେ (୩।୫୦।୭) ବର୍ଣ୍ଣିତ । ବିଶେଷ କରି ରାକ୍ଷସମାନଙ୍କ ରାଜା ହିସାବରେ ତା'ର ଏହି ଧର୍ମପାଳନ କରିବା ଉଚିତ ବୋଲି ସେ ତାକୁ ବାରମ୍ବାର ସୂଚାଇ ଦେଇଥିଲା । ଏହିସବୁ ଆଲୋଚନାରୁ ପ୍ରତୀତ ହେବ ଯେ ଆର୍ଯ୍ୟ-ପରିବାର ହେଉ କିମ୍ବା ଆର୍ଯ୍ୟେତର ପରିବାର ହେଉ, ରାମାୟଣ-ଯୁଗରେ ସ୍ତ୍ରୀର ରକ୍ଷଣ ଦାୟିତ୍ୱ ସର୍ବଦା ସ୍ୱାମୀଙ୍କ ଉପରେ ନ୍ୟସ୍ତ ରହୁଥିଲା ।

ବୈଦିକ ଯୁଗରୁ ହିଁ ଶିଷ୍ୟମାନଙ୍କୁ ଆଚାର୍ଯ୍ୟମାନେ ଶିକ୍ଷା ଦେଇ ଆସୁଥିଲେ
ମାତୃଦେବୋ ଭବ ପିତୃଦେବୋ ଭବ ଆଚାର୍ଯ୍ୟ ଦେବୋ
ଭବ ଅତିଥିଦେବୋ ଭବ ।

ଅର୍ଥାତ୍ ତୁମେ ମାଆଙ୍କୁ ଦେବତା ବୋଲି ଜ୍ଞାନ କର; ବାପାଙ୍କୁ ଦେବତା ବୋଲି ଜ୍ଞାନ କର; ଆଚାର୍ଯ୍ୟଙ୍କୁ ଦେବତା ବୋଲି ଜ୍ଞାନ କର; ଏବଂ ଅତିଥିଙ୍କୁ ଦେବତା ବୋଲି ଜ୍ଞାନ କର । ରାମାୟଣୀୟ ପରିବାରରେ ମଧ୍ୟ ଏହି ପରମ୍ପରା ପ୍ରତି ସମଧିକ ମାନ୍ୟତା ପ୍ରଦର୍ଶନ କରାଯାଉଥିଲା । ସନ୍ତାନ-ସନ୍ତତିମାନେ ପିତାମାତାଙ୍କ ପ୍ରତି ଖୁବ୍ ମାନସମ୍ମାନ ଦର୍ଶାଉଥିଲେ । ପିତୃସତ୍ୟ ପାଳନ କରିବାକୁ ଯାଇ ରାମଙ୍କର ଚଉଦ ବର୍ଷ କାଳ ବନବାସବ୍ରତ ଗ୍ରହଣ କରିବା ପିତୃଭକ୍ତିର ଚରମ ପରାକାଷ୍ଠା ବ୍ୟତୀତ ଆଉ କିଛି ହୋଇ ନପାରେ । ପିତାଦେଶ ଯେତେ ନିଷ୍ଠୁର ହେଲେ ହେଁ ସନ୍ତାନମାନଙ୍କର ତାହା ପାଳନ କରିବା ଥିଲା ପରମ ଧର୍ମ । ଉଦାହରଣ ସ୍ୱରୂପ ପିତା ଜମଦଗ୍ନିଙ୍କ ଆଦେଶରେ ପରଶୁରାମ ନିଜ ମାତା ରେଣୁକାଙ୍କୁ ହତ୍ୟା କରିଥିବା ଘଟଣାଟି ପିତାଦେଶ ପାଳନର ଏକ ପ୍ରାବାଦିକ ନିଦର୍ଶନ ହିସାବରେ ରହି ଆସିଛି । ମାତାଦେଶ ମଧ୍ୟ ଥିଲା ସମଧିକ ମାନନୀୟ । କିନ୍ତୁ ଯେଉଁଠି ପିତାଦେଶ ଓ ମାତାଦେଶ ମଧ୍ୟରେ ଦ୍ୱନ୍ଦ୍ୱ ଉପୁଜୁଥିଲା, ସେଠି ପିତାଦେଶକୁ ପ୍ରାଥମିକତା ଦିଆଯାଉଥିଲା । ଶର୍ମାଙ୍କ ଭାଷାରେ :

A father, who was responsible for bringing the child into being was the first claimant to his devotion.(୫୩-କ)

ପିତାମାତାଙ୍କୁ କିଭଳି ରାମାୟଣ-ଯୁଗରେ ମାନ୍ୟତା ଦେଖାଯାଉଥିଲା, ସେ ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ବ୍ରକିଙ୍ଗ୍‌ଟନ୍ କହନ୍ତି :

> Audience to and respect for parents is one of the cardinal virtues, alluded to regularly and also used as a standard against which to judge other loyalties. (୫୪)

ପିତାମାତାଙ୍କ ଋଣ ସନ୍ତାନ-ସନ୍ତତିମାନେ ଶହେ ବର୍ଷ ଲାଗିଲେ ବି ଶୁଝି ପାରିବେ ନାହିଁ ବୋଲି ମନୁ କହିଛନ୍ତି । ସେହି ଉକ୍ତିଟି ହେଲା :

> ଯଂ ମାତାପିତରୌ କ୍ଳେଶଂ ସହେତେ ସମ୍ଭବେ ନୃଣାଂ ।
> ନ ତସ୍ୟ ନିଷ୍କୃତିଃ ଶକ୍ୟା କର୍ତ୍ତୁଂ ବର୍ଷଶତୈରପି । (୫୫)

ଅର୍ଥାତ୍ ମନୁଷ୍ୟମାନଙ୍କର ଜନ୍ମରେ ପିତାମାତା ଦୁହେଁ ଯେଉଁ କଷ୍ଟ ସ୍ୱୀକାର କରିଥାନ୍ତି, ଶହେ ବର୍ଷ ଲାଗିଲେ ମଧ୍ୟ ତାହା ପରିଶୋଧ କରିଯାଇ ପାରିବ ନାହିଁ । ଏ ପରମ୍ପରା ମନୁଙ୍କ ଦ୍ୱାରା ନୂତନ ଭାବରେ ସୃଷ୍ଟି ହୋଇନଥିଲା । ଅନ୍ୟ ପକ୍ଷରେ ଏହା ବୈଦିକ ଯୁଗରୁ ଗଡ଼ି ଆସୁଥିଲା ଏବଂ ମନୁ ଏହାକୁ ଦୋହରାଇ ତାଙ୍କ ଗ୍ରନ୍ଥରେ ଅନ୍ତର୍ଭୁକ୍ତ କରିଥିଲେ । ରାମାୟଣୀୟ ପରିବାରରେ ପିତାମାତାଙ୍କ ସମ୍ପର୍କରେ ଠିକ୍ ଅନୁରୂପ ଧାରଣା ଥିଲା । ରାମ ନିଜ ପିତାଙ୍କ ବିଷୟରେ ରାମାୟଣରେ ଠାଏ (୨।୧୯।୫) କହିଛନ୍ତି, ସେ ଖାଲି ପୁତ୍ରର ପାଳନ କର୍ତ୍ତା ଓ ରକ୍ଷକ ନୁହନ୍ତି; ସେ ହେଉଛନ୍ତି ପୁତ୍ରର ପରମ ଗୁରୁ । ସେ ଆଉରି ଠାଏ କହିଛନ୍ତି (୨।୨୧।୪୧) ପୁତ୍ରର ପରମ ଧର୍ମ ହେଲା ପିତାଙ୍କ ବଚନ ପାଳନ କରିବା । ଏଥିରେ ପୁତ୍ରକୁ ଯେତେ କଷ୍ଟ ସ୍ୱୀକାର କରିବାକୁ ପଡ଼ୁ ପଛକେ, ସେଥିପାଇଁ ତା'କୁ ପଛଘୁଞ୍ଚା ଦେବାକୁ ହେବ ନାହିଁ । ପୁନର୍ବାର ସେ କହିଛନ୍ତି (୨।୨୧।୩୪) ପିତାଙ୍କର ହିତସାଧନ କରିବା ପାଇଁ ପୁତ୍ରକୁ ସକଳ ପ୍ରକାର କ୍ଳାନ୍ତିବତା ପରିତ୍ୟାଗ କରିବାକୁ ହେବ । ଏ ପ୍ରକାର ହିତ ଉଭୟ ପାରଲୌକିକ ଓ ଲୌକିକ । ଏହା କରିବା ଦ୍ୱାରା ପୁତ୍ର ପିତାଙ୍କ ପାଇଁ କିଛି ଅଧିକ କାମ କରୁ କରୁ ନଥାଏ; ବରଂ ପିତୃଋଣରୁ ସାମାନ୍ୟ କିଛି ସେ ପରିଶୋଧ କରୁଥାଏ । ଆଉ ଠାଏ ରାମ ନିଜ ମାତା କୌଶଲ୍ୟାଙ୍କ ଆଗରେ ପିତାଦେଶ ପାଳନର ମହତ୍ତ୍ୱ ବୁଝାଇବାକୁ ଯାଇ କହିଛନ୍ତି (୨।୨୧।୩୩) ତାହା ପୁତ୍ର ଦ୍ୱାରା ଅବଶ୍ୟ ପାଳନୀୟ । ସେ ଏ ସଂପର୍କରେ ଋଷି ଜମଦଗ୍ନିଙ୍କ ପୁତ୍ର ପରଶୁରାମ ପିତାଦେଶ ପାଳନ କରିବାକୁ ଯାଇ କିପରି ନିଜ ମାତା ରେଣୁକାଙ୍କୁ ବଧ କରିଥିଲେ ତାହାର ଉଦାହରଣ ଆଣି ଦର୍ଶାଇଛନ୍ତି । ପିତୃବଚନ କିପରି ତାଙ୍କ ନିକଟରେ ସ୍ୱର୍ଗ, ଧନଧାନ୍ୟ, ବିଦ୍ୟା ଆଦି ସମ୍ପଦଠାରୁ

ଅଧିକତର ମୂଲ୍ୟବାନ ଥିଲା, ତାହା ସେ ସୀତାଙ୍କ ଆଗରେ (୨।୩୦।୩୫-୩୬) ସ୍ପଷ୍ଟ ଭାବରେ ସ୍ୱୀକାର କରିଛନ୍ତି । ସେ ଆହୁରି ମଧ କହିଛନ୍ତି ଯେ ପିତୃବଚନ ପାଳିବା ହେଉଛି ସନାତନ ଧର୍ମ । ତାଙ୍କ ଭାଷାରେ

ସ ମା ପିତା ଯାଥା ଶାସ୍ତି ସତ୍ୟଧର୍ମପଥେ ସ୍ଥିତଃ ।

ତଥା ବର୍ତ୍ତିତୁମିଚ୍ଛାମି ସ ହି ଧର୍ମଃ ସନାତନଃ ।

ଅର୍ଥାତ୍ ସତ୍ୟ ଓ ଧର୍ମମାର୍ଗରେ ଚାଲୁଥିବା ମୋ' ପିତା ମତେ ଯାହା କରିବା ପାଇଁ କହିବେ, ମୁଁ ତାହା ନିଶ୍ଚିତ ଭାବରେ ପାଳିବି । ତାହା ହିଁ ହେଉଛି ସନାତନ ଧର୍ମ । ପିତା ଉପରେ ଧର୍ମପଥରୁ ବିଚ୍ୟୁତ ନହୁଅନ୍ତୁ, ସେ ସତ୍ୟଭଙ୍ଗ କରିଛନ୍ତି ବୋଲି ଇତିହାସ ଉପରେ ତାଙ୍କ ନାମରେ କଳଙ୍କ ନରଟୁ, ଏହି କଥା ବିଚାରକୁ ନେଇ ରାମ ସ୍ୱୀୟ ସୁଖସ୍ୱାଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ଚଉଦ ବର୍ଷ କାଳ ବନବାସ କରିବା ପାଇଁ ଆଗେଇ ଆସିଥିଲେ । ପିତା ଯେ ପୁତ୍ର ନିକଟରେ ଦେବତା ସମାନ ପୂଜ୍ୟ, ଏ କଥା ରାମ ସ୍ୱୀୟ ପିତାଙ୍କୁ ବୁଝାଇ କହିଥିଲେ ଏବଂ ରାମ-ବନବାସ ଲାଗି ସେ ଦୁଃଖରେ ମୂହ୍ୟମାନ ଥିବା ସମୟରେ ତାଙ୍କୁ ସାନ୍ତ୍ୱନା ଦେଇଥିଲେ । ବାଲ୍ମୀକି ରାମଙ୍କ କଣ୍ଠରେ (୨।୩୪।୫୨) ନିମ୍ନମତେ କୁହାଇଛନ୍ତି ।

ପିତା ହି ଦୈବତଂ ତାତ ଦେବତାନାମପି ସ୍ମୃତମ୍ ।

ତସ୍ମାତ୍, ଦୈବତମିତ୍ୟେବ କରିଷ୍ୟାମି ପିତୁର୍ବଚଃ ॥

ଅର୍ଥାତ୍ ହେ ତାତ ପିତା ହେଉଛନ୍ତି ଦେବତାମାନଙ୍କର ଦେବତା ସଦୃଶ । ମୁଁ ତେଣୁ ପିତୃବାଣୀକୁ ଦୈବ ବାଣୀ ମନେକରି ପାଳନ କରିବି ।

ପିତାମାତାଙ୍କର ମଧ ପୁତ୍ର ପ୍ରତି ସମଧିକ ବାତ୍ସଲ୍ୟ ସ୍ନେହଭରପୂର ରହିଥିଲା । 'ପୁତ୍' ନାମକ ନରକରୁ ତ୍ରାଣ କରେ ବୋଲି ଏହାର ନାମ ହୋଇଛି ପୁତ୍ର । ଏହି ପାରଲୌକିକ ସୁଖସମୃଦ୍ଧି ଲାଗି ସକଳ ପିତାମାତା ଆଗ୍ରହୀ ଥିବା ସ୍ୱାଭାବିକ । ଏହି ସୁଖର ଦାତା ହିସାବରେ ସେମାନେ ତେଣୁ ପୁତ୍ରକୁ ଅତି ମାତ୍ରାରେ ସ୍ନେହ କରୁଥିଲେ । ଅତଏବ, ପୁତ୍ର କେବଳ ବଂଶ-ବର୍ଦ୍ଧନର ସହାୟକ ନଥିଲା; ସେ ମଧ ଥିଲା ପିତାମାତାଙ୍କ ପାରଲୌକିକ ସୁଖର ଗୋଟିଏ କାରଣ ସ୍ୱରୂପ । ରାମାୟଣବର୍ଣ୍ଣିତ ନିମ୍ନଲିଖିତ ଘଟଣାମାନ ପିତାମାତାଙ୍କର ଅନାବିଳ ଓ ଅତ୍ୟଧିକ ପୁତ୍ର-ବାତ୍ସଲ୍ୟର ପରିଚୟ ଦେଇଥାଏ

(କ) ପୁତ୍ରହୀନତାର କଳଙ୍କରୁ ମୁକ୍ତ ହେବା ଲାଗି ଦଶରଥ ଖୁବ୍ ନିଷ୍ଠାର ସହିତ ପୁତ୍ରେଷ୍ଟି-ଯଜ୍ଞର ଆୟୋଜନ କରିଥିଲେ । ତାଙ୍କ ରାଣୀମାନେ

ମଧ୍ୟ ସମଧିକ ନିଷ୍ଠା ଦର୍ଶାଇ ତାଙ୍କୁ ଏହି ଧର୍ମକାର୍ଯ୍ୟରେ ସହାୟତା କରିଥିଲେ ।

(ଖ) ଯେତେବେଳେ ଋଷି ବିଶ୍ୱାମିତ୍ର ଅସୁରମାନଙ୍କୁ ଦମନ କରିବା ଲାଗି ଦଶରଥଙ୍କ ପାଖକୁ ଆସି ରାମ ଓ ଲକ୍ଷ୍ମଣଙ୍କ ସହାୟତା ମାଗିଲେ, ସେତେବେଳେ ପୁତ୍ରସ୍ନେହରେ ଅନ୍ଧ ହୋଇ ସେ ପ୍ରଥମେ ତାଙ୍କ ଦୁଇ ପୁତ୍ରଙ୍କୁ ଏଭଳି ବିପଦପୂର୍ଣ୍ଣ କାର୍ଯ୍ୟସମ୍ପାଦନ ଲାଗି ପଠାଇବେ ନାହିଁ ବୋଲି କହିଲେ । ଏପରିକି ବିଶ୍ୱାମିତ୍ର ରାଗିକରି ତାଙ୍କୁ ଅଭିଶାପ ଦେବା ଉପରେ ଥିଲେ; ତଥାପି ସେ ଟଳେ ମାତ୍ର ବିଚଳିତ ହୋଇ-ନଥିଲେ । ରାଜପୁରୋହିତ ବଶିଷ୍ଠ ତାଙ୍କୁ ବୁଝାଇବା ପରେ ଯାଇ ସେ ଦୁଇ ପୁତ୍ରଙ୍କୁ ବିଶ୍ୱାମିତ୍ରଙ୍କ ସାଥିରେ ଛାଡ଼ିବା ପାଇଁ ରାଜି ହୋଇଥିଲେ ।

(ଗ) ଦଶରଥ ପୁତ୍ର ଓ ପୁତ୍ରବଧୂମାନଙ୍କ ସହିତ ଜନକ-ଭବନରୁ ଫେରୁଥିବା ସମୟରେ ବାଟରେ ପରଶୁରାମଙ୍କ ସହିତ ସାକ୍ଷାତ ହେଲା । ପରଶୁରାମ ରାମଙ୍କ କ୍ଷତ୍ରିୟତ୍ୱ ତଥା ବୀରତ୍ୱକୁ ସହିପାରି ନଥିଲେ । ଦଶରଥ କିନ୍ତୁ ପରଶୁରାମଙ୍କୁ ସ୍ପଷ୍ଟ ଭାବରେ କହିଥିଲେ ଯେ ଯଦି ସେ ରାମଙ୍କୁ ବଧ କରିବେ, ତେବେ ସେ (ଦଶରଥ) ଆଉ ଜୀବନ ଧରି ରହିପାରିବେ ନାହିଁ ।

(ଘ) ରାମଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କରିବା ଲାଗି ଦଶରଥ ଖୁବ୍ ଆନନ୍ଦ ମନରେ ଅଭିଷେକୋତ୍ସବର ଆୟୋଜନରେ ଲାଗିପଡ଼ିଲେ ।

(ଙ) କୈକେୟୀ ସକଳ ପ୍ରକାର ସମାଲୋଚନାକୁ ଭ୍ରୂକ୍ଷେପ ନକରି ଏବଂ ରାମଙ୍କ ବିରହରେ ନିଜ ପତିଙ୍କ ଦେହ ତ୍ୟାଗର ସମ୍ଭାବନା କଥା ଜାଣି ମଧ୍ୟ ପୁତ୍ରବାତ୍ସଲ୍ୟରେ ଅନ୍ଧୁଣୀ ହୋଇ ନିଜ ପୁତ୍ର ଭରତଙ୍କୁ ଯୁବରାଜ କରିବା ପାଇଁ ଦଶରଥଙ୍କୁ ପ୍ରଥମ ବର ଏବଂ ରାମ ଚଉଦ ବର୍ଷ ଲାଗି ବନବାସ କରିବେ ବୋଲି ଦ୍ୱିତୀୟ ବର ମାଗିଥିଲେ ।

(ଚ) କୈକେୟୀ ଥିଲେ ଦଶରଥଙ୍କର ସବୁଠାରୁ ବଳି ପ୍ରିୟତମା ରାଣୀ । ସେ କୈକେୟୀଙ୍କ ପ୍ରତି କଦାପି କର୍କଶ ବ୍ୟବହାର କରିନଥିଲେ । କିନ୍ତୁ ତାଙ୍କଠାରୁ ନିଷ୍ଠୁର ବର ଦୁଇଟି ଲାଗି ପ୍ରାର୍ଥନା ଶୁଣିବା ପରେ ସେ ତାଙ୍କୁ ଖୁବ୍ କର୍କଶ କଥା କହିଥିଲେ । ସନ୍ତାନ-ବାତ୍ସଲ୍ୟ ପତ୍ନୀ-ପ୍ରେମଠାରୁ ତାଙ୍କ ପାଖରେ ଥିଲା ଅଧିକତର ଶ୍ଳାଘ୍ୟ ।

(ଛ) ରାଜାଙ୍କର ସକଳ ମର୍ଯ୍ୟାଦା ଭୁଲିଯାଇ ସେ ବରଦ୍ୱୟ ଫେରାଇ ନେବା ଲାଗି କୈକେୟୀଙ୍କୁ ବହୁ ଅନୁନୟ-ବିନୟ କରିଥିଲେ ଏବଂ ରାମଙ୍କ

ବିରହରେ ଯେ ତାଙ୍କ ମୃତ୍ୟୁ ଅବଶ୍ୟମ୍ଭାବୀ, ସେ ବିଷୟ ସୂଚାଇ ଦେଇଥିଲେ ।

(ଜ) ପରିଶେଷରେ ସେ ରାମଙ୍କ ବନବାସରେ ବ୍ୟଥିତ ହୋଇ 'ହା ରାମ ! ହା ରାମ !' କହି କହି ଶେଷରେ ପ୍ରାଣତ୍ୟାଗ କରିଥିଲେ ।

(ଝ) ପୁତ୍ରବାତ୍ସଲ୍ୟର ଆଉ ଦୁଇ ନିଦର୍ଶନ ହେଉଛନ୍ତି ଅନ୍ଧ ମୁନି ଓ ତାଙ୍କ ପତ୍ନୀ ଯେଉଁମାନେ କି ଦଶରଥଙ୍କ ଦ୍ୱାରା ସେମାନଙ୍କ ପୁତ୍ର ଭ୍ରମବଶତଃ ନିହତ ହେବାର ଜାଣିପାରି ପୁତ୍ରଶୋକରେ ମୂହ୍ୟମାନ ହୋଇଉଠିଥିଲେ ଏବଂ ପୁତ୍ରର ଚିତାଗ୍ନିରେ ଝାସ ଦେଇ ପ୍ରାଣତ୍ୟାଗ କରିଥିଲେ । ଚିତାଗ୍ନିରେ ଝାସ ଦେବାର ଅବ୍ୟବହିତ ପୂର୍ବରୁ ଅନ୍ଧ ମୁନି ଦଶରଥଙ୍କୁ ଯେଉଁ ଅଭିଶାପ ଦେଇଥିଲେ, ତହିଁରେ କେତେ ଦୂର ବୈକ୍ଳବ୍ୟ ଓ କୋଧ ମିଶ୍ରିତ ହୋଇ ରହିଥିଲା, ତାହା ନିମ୍ନୋକ୍ତ ପଙ୍‌କ୍ତିରୁ ଜଣାପଡ଼ିବ

ପୁତ୍ରବ୍ୟସନଜଂ ଦୁଃଖଂ ଯଦେତନ୍ମମ ସାଂପ୍ରତମ୍ ।
ଏବଂ ତ୍ୱଂ ପୁତ୍ରଶୋକେନ ରାଜନ୍ କାଲଂ କରିଷ୍ୟସି ।। (୬୭)

ଅର୍ଥାତ୍ ହେ ରାଜନ୍ ! ଏବେ ପୁତ୍ରକୁ ହରାଇ ମୋ' ମନରେ ଯେଉଁଭଳି କଷ୍ଟ ହେଉଛି, ତୁମକୁ ଠିକ୍ ଏମିତ କଷ୍ଟ ମିଳିବ । ତୁମେ ବି ଠିକ୍ ସେମିତି ପୁତ୍ରଶୋକରେ କାଳ କାଟିବ ।

ଏତଦ୍‌ବ୍ୟତୀତ ସନ୍ତାନ-ବାତ୍ସଲ୍ୟର ନିଦର୍ଶନ ରାମାୟଣର ଛନ୍ଦେ ଛନ୍ଦେ ଆହୁରି ଅନେକନେକ ବିଦ୍ୟମାନ ।

ରାମାୟଣୀୟ ପରିବାର ଯୌଥ ଅବିଭକ୍ତ ପରିବାର ଥିଲା ବୋଲି ପୂର୍ବରୁ କୁହାଯାଇଛି । ଆଉ ମଧ୍ୟ କୁହାଯାଇଛି ଯେ ଏଥିରେ ପିତା, ମାତା, ପୁତ୍ର, ପୁତ୍ରବଧୂ, ଅବିବାହିତା କନ୍ୟା, ପୌତ୍ର, ପୌତ୍ରୀ ଆଦି ସମସ୍ତେ ଏକାଠି ରହୁଥିଲେ । ଯୌଥ ପରିବାରର ପରମ ଶକ୍ତି ହେଲା ତାହାର ସଭ୍ୟମାନଙ୍କ ମଧ୍ୟରେ ଥିବା ପାରସ୍ପରିକ ଭଲ ବୁଝାମଣା ଓ ଏକତା । ଏହି ବୁଝାମଣାରେ ଯଦି କିଛି ତ୍ରୁଟି ରହିଗଲା, ତେବେ ପରିବାରର ଏକତା କ୍ଷୁଣ୍ଣ ହେବ ଏବଂ ତାହାର ସଂହତି ନଷ୍ଟ ହେବ । ଫଳରେ, ତାହା ଭାଙ୍ଗି ପଡ଼ିବ । ଭାଇମାନେ ଗୋଟିଏ ମାଆ ପେଟରୁ ଜନ୍ମ ହୋଇଛନ୍ତି; ପିଲାଦିନୁଁ ଗୋଟିଏ ଜାଗାରେ ଚଳି ଆସିଛନ୍ତି ଏବଂ ଏକାଠି ସୁଖଦୁଃଖର ଭାଗୀ ହୋଇଛନ୍ତି । ତେଣୁ ସେମାନଙ୍କ ମଧ୍ୟରେ ଭଲ ବୁଝାମଣା ଓ ଏକତା ରହିବା ସ୍ୱାଭାବିକ । କିନ୍ତୁ ଭିନ୍ନ ଭିନ୍ନ କୁଳରୁ ଏବଂ ଭିନ୍ନ ଭିନ୍ନ

ପରିବେଶରୁ ଆସିଥିବା ସେମାନଙ୍କ ସ୍ତ୍ରୀମାନଙ୍କ ପକ୍ଷରେ ଏକାଠି ଚଳିବା ସ୍ୱାଭାବିକ ଭାବରେ କଷ୍ଟକର ହୋଇପଡ଼େ । ସେମାନେ ନିଜ ନିଜ ସ୍ୱାମୀମାନଙ୍କୁ ପରିବାରର ବିଭାଜନ ଲାଗି ପ୍ରବର୍ତ୍ତାନ୍ତି । ସ୍ୱାମୀମାନେ ହୁଏତ କିଛି ଦିନ ପାଇଁ ପରିବାରରେ ବିଭାଜନକୁ ଏଡ଼େଇ ଦେଇପାରନ୍ତି । କିନ୍ତୁ ଏହାର ଶେଷ ପରିଣତି ଶୀଘ୍ର ହେଉ ଅଥବା ବିଳମ୍ବରେ ହେଉ ନିଶ୍ଚୟ ଆସେ ଏବଂ ଏହି ପରିଣତିଟି ହେଉଛି ପରିବାରର ବିଭାଜନ । ଆଜିକାଲି ଅଧିକାଂଶ ଭାରତୀୟ ପରିବାରର ବିଭାଜନ ପ୍ରାୟ ଏହିଭଳି ପ୍ରକ୍ରିୟା ମାଧ୍ୟମରେ ଘଟୁଛି । ରାମାୟଣ-ଯୁଗରେ ମଧ୍ୟ ଠିକ୍ ତାହା ହିଁ ଘଟୁଥିଲା । ବାଲ୍ମୀକି ଆର୍ଯ୍ୟ-ପରିବାରରେ ଏହି ଦୁର୍ବଳତା ବିଷୟରେ ସଂପୂର୍ଣ୍ଣ ଭାବରେ ଅବହିତ ଥିଲେ । ତେଣୁ ସେ ଦଶରଥଙ୍କ ଆଦର୍ଶ ପରିବାରର ଚିତ୍ର ସମସ୍ତଙ୍କ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି । ଏହି ପରିବାରରେ ଯେ ଦ୍ୱନ୍ଦ୍ୱ ନଥିଲା, ତାହା ନୁହେଁ । ବାସ୍ତବିକ ଏହି ପାରିବାରିକ ଦ୍ୱନ୍ଦ୍ୱ ହେତୁରୁ ହିଁ ରାମଙ୍କୁ ବନବାସ କରିବାକୁ ପଡ଼ିଥିଲା, ଦଶରଥଙ୍କୁ ମୃତ୍ୟୁ ମୁଖରେ ପଡ଼ିବାକୁ ହୋଇଥିଲା ଏବଂ ତାଙ୍କ ବିଧବା ରାଣୀମାନଙ୍କୁ ଦୁଃଖରେ କାଳାତିପାତ କରିବାକୁ ପଡ଼ିଥିଲା । କିନ୍ତୁ ଏହିସବୁ ସାମୟିକ ଦ୍ୱନ୍ଦ୍ୱ ସତ୍ତ୍ୱେ ପରିବାରର ଏକତା କ୍ଷୁଣ୍ଣ ହୋଇନଥିଲା; କେତେକ ବ୍ୟକ୍ତିବିଶେଷଙ୍କ ଭୁଲ ବୁଝାମଣା ସତ୍ତ୍ୱେ ପାରିବାରିକ ସଂହତି ତୁଟିଯାଇ ନଥିଲା । ସେମାନେ ପରିଶେଷରେ ନିଜ ନିଜର ଭୁଲକୁ ବୁଝି ପାରିଥିଲେ । ଏହି ପାରିବାରିକ ଏକତା ଓ ସଂହତିକୁ ସଂରକ୍ଷଣ କରିବା ଲାଗି ଦଶରଥ-ପରିବାରର ବିଭିନ୍ନ ସଭ୍ୟମାନେ କିପରି କାର୍ଯ୍ୟ କରି ଚାଲିଥିଲେ, ସେ ବିଷୟ ବାଲ୍ମୀକି ଅତି ରୋଚକ ଭାବରେ ବର୍ଣ୍ଣନା କରିଛନ୍ତି । ତତ୍ ସଙ୍ଗେ ସଙ୍ଗେ ପାରିବାରିକ ବିଭେଦକ ଶକ୍ତି ସଂପର୍କରେ ସଦା ସାବଧାନ ରହିବା ପାଇଁ ସେ ସୂଚାଇ ଦେଇଛନ୍ତି । ସେ ତେଣୁ ପରିଷ୍କାର ଭାବରେ କହିଛନ୍ତି, 'ଭ୍ରାତୃବିଭେଦକାରକାଃ ସ୍ତ୍ରିୟଃ ।' ଅର୍ଥାତ୍ ସ୍ତ୍ରୀଲୋକମାନେ ଭାଇ-ଭାଇ ଭିତରେ ବିଭେଦ କରାନ୍ତି । ଏତଦ୍ଦ୍ୱାରା ସେ ଭାଇମାନଙ୍କୁ ନିଜ ନିଜର ସ୍ତ୍ରୀମାନଙ୍କ ସଂପର୍କରେ ସର୍ବଦା ସାବଧାନ ରହିବା ପାଇଁ ପରାମର୍ଶ ଦେଇଛନ୍ତି । ବାଲ୍ମୀକି କବି ହିସାବରେ ତାଙ୍କର ସମାଜ ପ୍ରତି ଥିବା ପ୍ରତିବଦ୍ଧତା ବିଷୟରେ ସର୍ବଦା ସଚେତନ ଥିଲେ । ସେ ସଂପୂର୍ଣ୍ଣ ଭାବରେ ଅବହିତ ଥିଲେ ଯେ ସମାଜର ଅଭିବୃଦ୍ଧି ଘଟିବ ପରିବାରର ଅଭିବୃଦ୍ଧି ଘଟିଲେ ଏବଂ ପରିବାରର ଅଭିବୃଦ୍ଧି ଘଟିବ ଏହାର ଏକତା ସଂରକ୍ଷିତ ହେଲେ । ସେଥିପାଇଁ ପରିବାରର ଏକତା ସଂରକ୍ଷଣ ଲାଗି ସେ ସନିଷ୍ଠ ପରାମର୍ଶ ଦେଇଛନ୍ତି ।

ସେତେବେଳେ ସମାଜରେ ବହୁପତ୍ନୀଗ୍ରହଣ ପ୍ରଥା ଚଳୁଥିଲା । ବିଶେଷ କରି ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ମଧ୍ୟରେ ଏହା ଖୁବ୍ ଲୋକପ୍ରିୟତା ଅର୍ଜନ

କରିଥିଲା । ସପତ୍ନୀମାନଙ୍କର ପରସ୍ପର ପ୍ରତି ଥିବା ଈର୍ଷ୍ୟାପରାୟଣତା ଅନେକ ସମୟରେ ପାରିବାରିକ ଅଶାନ୍ତିର ସୂତ୍ରପାତ କରୁଥିଲା । କୈକେୟୀଙ୍କର ସପତ୍ନୀ ହିସାବରେ ନିଶ୍ଚିତ ଭାବରେ କୌଶଲ୍ୟାଙ୍କ ପ୍ରତି ସହଜାତ ଈର୍ଷ୍ୟାଭାବ ଥିବ । ତାହା ନହୋଇଥିଲେ ସେ ଦାସୀ ମନ୍ଥରା କଥାରେ ଭଳି ଯାଇ ଏଭଳି ଭୟଙ୍କର ବର ଦୁଇଟି ଦଶରଥଙ୍କୁ ମାଗିଥାନ୍ତେ ବା କାହିଁକି ? ଏହି ବର ମାଗିବା ପଛରେ ତାଙ୍କର ନିମ୍ନଲିଖିତ ଲକ୍ଷ୍ୟ ଥିଲା ।

(କ) ତାଙ୍କ ସପତ୍ନୀଙ୍କ ପୁତ୍ର ରାଜା ନହୋଇ ତାଙ୍କ ନିଜ ପୁତ୍ର ରାଜା ହେବେ ।

(ଖ) ତାଙ୍କ ସପତ୍ନୀଙ୍କ ପୁତ୍ର ଦୀର୍ଘଦିନ ବନବାସ କରିବା ଫଳରେ ସେଠାରେ ହିଂସ୍ର ଜନ୍ତୁ କିମ୍ବା ରାକ୍ଷସମାନଙ୍କ ମୁଖରେ ପଡ଼ିବେ । ଏହା ଫଳରେ ତାଙ୍କ ପୁତ୍ର ସକୁଦିନ ପାଇଁ ନିଷ୍କଣ୍ଟକ ରାଜ୍ୟଭୋଗ କରିବେ ।

(ଗ) ଯଦିବା ବନବାସ ପରେ ସେ ଜୀବନ ଧରି ଅଯୋଧ୍ୟାକୁ ଫେରି ଆସନ୍ତି, ସେତେବେଳକୁ ତାଙ୍କ ପୁତ୍ର ଅଯୋଧ୍ୟା-ସିଂହାସନରେ ପ୍ରତିଷ୍ଠିତ ହୋଇ ସାରିଥିବାରୁ ତାଙ୍କୁ ତହିଁରୁ ହଟାଇବା ସହଜ ହେବନାହିଁ ।

(ଘ) ସେ (କୈକେୟୀ) ଏକେ ରାଜମାତା ହେବେ ଏବଂ ତାଙ୍କ ସପତ୍ନୀ ଏହି ଗୌରବରୁ ବଞ୍ଚିତା ହେବେ ।

ଏହି ବହୁପତ୍ନୀଗ୍ରହଣ ପ୍ରଥା ଫଳରେ କେତେବେଳେ କେଉଁ ପତ୍ନୀ ତାଙ୍କ ପତିଙ୍କ ପ୍ରିୟଭାଜନୀ ହେବା ସୁଖରୁ ବଞ୍ଚିତା ହେବେ, ତାହାର କିଛି ସ୍ଥିରତା ନଥିଲା । କାରଣ ପ୍ରତି ନୂଆ କରି ଜଣେ ରୂପସୀ ତରୁଣୀଙ୍କୁ ପତ୍ନୀ ବୋଲି ଗ୍ରହଣ କଲେ ତାଙ୍କ ପତି ବିଶେଷ ଭାବରେ ଅନୁରକ୍ତ ଥାଇ ପୁରାତନ ପତ୍ନୀମାନଙ୍କୁ ଅବହେଳା ପ୍ରଦର୍ଶନ କରିବାର ଆଶଙ୍କା ଥିଲା । ରାବଣର ପଟ୍ଟମହିଷୀ ମନ୍ଦୋଦରୀ ଥିଲେ ମଧ୍ୟ ସେ ସୀତାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଯାଇଥିଲା ଏବଂ ତା'କୁ ପତି ରୂପରେ ବରଣ କଲେ ସେ ପଟ୍ଟମହିଷୀ ହେବାର ଗୌରବ ଅର୍ଜନ କରିବେ ବୋଲି ତାଙ୍କୁ (ସୀତାଙ୍କୁ) କହିଥିଲେ । ରାବଣର ଭାଷାରେ :

ଭବ ମୈଥିଲି ଭାର୍ଯ୍ୟା ମେ ମୋହମେନଂ ବିସର୍ଜୟ ।
ବହ୍ୱୀନାମୁତ୍ତମସ୍ତ୍ରୀଣାଂ ମମାଗ୍ରମହିଷୀ ଭବ । (୫୭)

ଅର୍ଥାତ୍ ଆଗୋ ମିଥିଳାନନ୍ଦିନି ! ତୁମେ ମୋର ସ୍ତ୍ରୀ ହୁଅ । ଏ ମୋହକୁ (ରାମଙ୍କ ପ୍ରତି ଥିବା ଅନୁରକ୍ତି) ଛାଡ଼ । ମୋ'ର ଅନେକ ସ୍ତ୍ରୀ ଅଛନ୍ତି । ସେମାନଙ୍କ ଭିତରେ ତୁମେ ପଟ୍ଟମହିଷୀ ହୁଅ । ଏଥିରୁ ମନ୍ଦୋଦରୀଙ୍କର ପଟ୍ଟମହିଷୀ ହୋଇ ରହିବାର ସ୍ଥିତି କେତେ ଦୁର୍ବଳ ଥିଲା, ତାହା ସହଜରେ ଅନୁମେୟ । ପତିଙ୍କ କଥା

ପତିଙ୍କଠାରେ ପତ୍ନୀଙ୍କ ପଟ୍ଟମହିଷୀତ୍ୱ ଉଭେଇ ଯିବାର ଆଶଙ୍କା ସର୍ବଦା ଥିଲା । ମନ୍ଦୋଦରୀଙ୍କ ଭଳି ସୁନ୍ଦରୀ ସ୍ତ୍ରୀଙ୍କର ଅବସ୍ଥା ଯଦି ଏପରି, ତେବେ ଅନ୍ୟ ସାଧାରଣ ସ୍ତ୍ରୀଙ୍କ ଅବସ୍ଥା କିପରି ନହୋଇଥିବ ?

ସପତ୍ନୀମାନଙ୍କର ଆଉ କେତେକ କାର୍ଯ୍ୟକଳାପର କିମ୍ବା ସମ୍ଭାବ୍ୟ କାର୍ଯ୍ୟ-କଳାପର ସୂଚନା ଆମେ ରାମାୟଣରେ ଦେଖିବାକୁ ପାଇଥାଉଁ । ଉଦାହରଣ-ସ୍ୱରୂପ ହନୁମାନ୍ ସୀତାଙ୍କୁ ଠାବ କରିବା ପାଇଁ ଲଙ୍କାର ରାଜମହଲ ଭିତରେ ଖୋଜୁଥିବା ସମୟରେ ତାଙ୍କୁ ପାଇନପାରି ମନେ ମନେ ଭାବିଲେ ଯେ ବୋଧହୁଏ ରାବଣ ସୀତାଙ୍କୁ ଭାର୍ଯ୍ୟା ରୂପରେ ଆଣିବା ପରେ ତାଙ୍କ ସୌନ୍ଦର୍ଯ୍ୟ ପ୍ରତି ଈର୍ଷ୍ୟାନ୍ୱିତା ହୋଇ ତା'ର (ରାବଣର) ଅନ୍ୟ ସ୍ତ୍ରୀମାନେ ସପତ୍ନୀସୁଲଭ କ୍ରୋଧବଶତଃ ତାଙ୍କୁ ଖାଇ ଯାଇଛନ୍ତି । ରାମଙ୍କର ମଧ୍ୟ ବେଳେ ବେଳେ ବିମାତା କୈକେୟୀଙ୍କ ଆଚରଣ ଉପରେ ସନ୍ଦେହ ଆସିଛି । ସେ ଅନେକ ସମୟରେ ଭାବିଛନ୍ତି ଯେ କୈକେୟୀ ତାଙ୍କ ସପତ୍ନୀ କୌଶଲ୍ୟା, ଓ ସୁମିତ୍ରାଙ୍କୁ ତଥା ପତି ଦଶରଥଙ୍କୁ ବିଷ ଦେଇ ମାରିଦେବେ । ବାଲ୍ମୀକି ତାଙ୍କ ରାମାୟଣରେ (୧ । ୪୬) କଶ୍ୟପଙ୍କ ଦୁଇ ପତ୍ନୀ ଦିତି ଓ ଅଦିତିଙ୍କ ମଧ୍ୟରେ ଥିବା ବିବାଦ କିପରି ସେମାନଙ୍କ ପରବର୍ତ୍ତୀ ପୁରୁଷମାନଙ୍କୁ ସଂକ୍ରମିତ କରିଥିଲା, ସେ ବିଷୟରେ ଏକ ରୋଚକ କାହାଣୀର ଅବତାରଣା କରିଛନ୍ତି । ଦିତିଙ୍କ ପୁତ୍ରମାନେ ହେଲେ ଦୈତ୍ୟଗଣ ବା ଅସୁରଗଣ । ଅଦିତିଙ୍କର ପୁତ୍ରମାନେ ହେଲେ ଦେବଗଣ । ଏମାନଙ୍କ ମଧ୍ୟରେ ଥିବା ପାରସ୍ପରିକ ବିବାଦର ଫଳଶ୍ରୁତି ଘଟିଥିଲା ଦେବାସୁର ଯୁଦ୍ଧରେ, ଯେଉଁଥିରେ କି ଶେଷରେ ଅସୁରମାନେ ନିହତ ହୋଇଥିଲେ । ବାଲ୍ମୀକି ଏହି କିମ୍ବଦନ୍ତୀର କଥାକୁ ଅବତାରଣା କରିବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା, ସପତ୍ନୀ-ସୁଲଭ ଈର୍ଷ୍ୟାଭାବ ଯେ କି କୁପରିଣତି ଘଟିପାରେ ତାହା ସମସ୍ତଙ୍କୁ ଦର୍ଶାଇ ଦେବା । ଅତଏବ, ତାଙ୍କ କହିବାର ତାତ୍ପର୍ଯ୍ୟ ହେଲା ପୁରୁଷର ବହୁପତ୍ନୀଗ୍ରହଣ ଅନେକ ସମୟରେ ପାରିବାରିକ ଅଶାନ୍ତି ଆଣିଥାଏ ଏବଂ ତେଣୁ ଏହା ତ୍ୟାଜ୍ୟ । ଏକପତ୍ନୀବ୍ରତ ଗ୍ରହଣ କରିଥିବା ରାମଙ୍କୁ ସେ ତେଣୁ ଏକ ଆଦର୍ଶ ପରିବାରର ସ୍ରଷ୍ଟା ଭାବରେ ଗ୍ରହଣ କରିଛନ୍ତି । ବହୁପତ୍ନୀକ ପରିବାର ଅପେକ୍ଷା ଏକପତ୍ନୀକ ପରିବାରରେ ସୁଖ ଓ ଶାନ୍ତି ମିଳିବାର ସମ୍ଭାବନା ଅଧିକ । ଆମେ ତେଣୁ ଆଜି ଏକପତ୍ନୀବ୍ରତ ଗ୍ରହଣ କରିଥିବା ରାମଙ୍କୁ ଜଣେ ଆଦର୍ଶ ପତି ଭାବରେ ମାନ୍ୟତା ଦେଇଥାଉଁ ।

## ସାମାଜିକ ଶିଷ୍ଟାଚାର

ପ୍ରତ୍ୟେକ ଜାତି ବା ଗୋଷ୍ଠୀର ସ୍ୱତନ୍ତ୍ର ସାମାଜିକ ଶିଷ୍ଟାଚାର ରହିଅଛି । ଏହି ଶିଷ୍ଟାଚାରସମୂହକୁ ଅନୁଧ୍ୟାନ କରି ଆମେ ଜାଣିପାରିବା, ସେହି ସେହି ଜାତି

ବା ଗୋଷ୍ଠୀ କେତେଦୂର ସଭ୍ୟ ବା ସଂସ୍କୃତ । ମନୁଷ୍ୟମାନେ ଗୋଷ୍ଠୀନିଷ୍ଠ ପ୍ରାଣୀ । ସେମାନେ ଗୋଷ୍ଠୀଗତ ଜୀବନଯାପନ କଲାବେଳେ ପରସ୍ପର ପ୍ରତି ଯେଉଁ ବ୍ୟବହାର ଦେଖାଇଥାନ୍ତି, ତାହା ହେଲା ସେମାନଙ୍କ ଆଚାର । ବୈଦିକ ଆର୍ଯ୍ୟମାନେ ନିଜକୁ ସଭ୍ୟ ଓ ସୁସଂସ୍କୃତ ବୋଲି ଦାବି କରୁଥିଲେ ଏବଂ ସେମାନଙ୍କ ସଂସ୍କୃତିକୁ ସାରା ବିଶ୍ୱରେ ବିସ୍ତାରିତ କରିବାପାଇଁ ଉଦ୍ୟମଶୀଳ ଥିଲେ । 'ସାରା ବିଶ୍ୱକୁ ଆମେ ଆର୍ଯ୍ୟୀକୃତ କରିଦେବୁ' (କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟଂ) ବୋଲି ସେମାନଙ୍କର ଯେଉଁ ସ୍ଲୋଗାନ୍ ଥିଲା, ତାହାକୁ ଅନୁଧ୍ୟାନ କଲେ ଆମେ ବୁଝି ପାରିବା, ସେମାନେ କିପରି ନିଜ ସଭ୍ୟତା ଓ ସଂସ୍କୃତିର ଉତ୍କର୍ଷ ବିଷୟରେ ସମ୍ପୂର୍ଣ୍ଣ ସଚେତନ ଥିଲେ ଏବଂ ତେଣୁ ସାରା ବିଶ୍ୱ ଏଦ୍ୱାରା ଶ୍ରାଦ୍ଧ ଗୁଣୀ ବୋଲି ସତତ ଉଦ୍ୟମଶୀଳ ଥିଲେ । ରାମାୟଣ-ଯୁଗ ଆସିଲା ବୈଦିକ ଯୁଗର ପରେ ପରେ । ସେତେବେଳକୁ ସାମାଜିକ ଶିଷ୍ଟାଚାରସମୂହର ଏକ ସୁଦୃଢ଼ ଭିତ୍ତିଭୂମି ପଡ଼ି ସାରିଥିଲା ଏବଂ ସମସ୍ତେ ସେଗୁଡ଼ିକୁ ମାନି ଚଳୁଥିଲେ । ଯେଉଁ ବ୍ୟକ୍ତି ସେଗୁଡ଼ିକୁ ମାନୁ ଥିଲା, ସେ ଅଶିଷ୍ଟ ଓ ଅସଂସ୍କୃତ ବୋଲି ଗଣ୍ୟ ହେଉଥିଲା । ରାମାୟଣ-ଯୁଗରେ କିପରି ଏହି ସାମାଜିକ ଶିଷ୍ଟାଚାର ସୁପ୍ରତିଷ୍ଠିତ ହୋଇ ସାରିଥିଲା, ତଦ୍‌ବିଷୟରେ ମତ ଦେବାକୁ ଯାଇ ଶର୍ମା ମହୋଦୟରେ କୁହନ୍ତି

> By the time of Valmiki the unwritten code in this behalf had become fairly elaborate and at the same time extremely popular so that the characters in the epic are found paying due regard to these rules in their mutual behaviour. Regard for the senior, sincere cordiality to the equal and affection for the junior was the guiding spirit of all good behaviour in Valmiki's age, (୫୮)

ବଡ଼ଙ୍କ ପ୍ରତି, ସାନଙ୍କ ପ୍ରତି ଓ ସମାନ ଲୋକଙ୍କ ପ୍ରତି ଉପରୋକ୍ତ ମତେ ଦେଖା ଯାଉଥିବା ବ୍ୟବହାର ଖାଲି ତ ପରିବାର ମଧ୍ୟରେ ସୀମାବଦ୍ଧ ନଥିଲା । ଏହା ବିଭିନ୍ନ ସାମାଜିକ ଅନୁଷ୍ଠାନ, ଶିକ୍ଷାଶ୍ରମ, ରାଜଦରବାର ଆଦି ପ୍ରତିଟି କ୍ଷେତ୍ର ପ୍ରତି ମଧ୍ୟ ଲାଗୁ କରାଯାଉଥିଲା । ଏପରିକି ଚାରି ବର୍ଣ୍ଣଙ୍କ ପ୍ରାଥମିକତା କ୍ରମରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହିଭଳି ରଖାଯାଇଥିଲା ଏବଂ ଉଚ୍ଚ ବର୍ଣ୍ଣର ଲୋକମାନଙ୍କୁ ନିମ୍ନତର ବର୍ଣ୍ଣର ଲୋକମାନେ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ଉଦାହରଣସ୍ୱରୂପ, ବ୍ରାହ୍ମଣ-ବର୍ଣ୍ଣର ବ୍ୟକ୍ତି କମ୍ ବୟସର ହେଲେ ମଧ୍ୟ ସେ ଅଧିକ ବୟସ୍କ ରାଜାଙ୍କ ଦ୍ୱାରା ସର୍ବଥା ସମ୍ମାନିତ ହେଉଥିଲେ । ବରିଷ୍ଠଙ୍କୁ କନିଷ୍ଠ ସମ୍ମାନ ପ୍ରଦର୍ଶନ କରିବା ଦ୍ୱାରା ଯେଉଁ ନମ୍ରତା ପ୍ରକାଶ ପାଏ, ତାହା ଦୁର୍ବଳତା ଆଣି ଦିଏନାହିଁ । ଅନ୍ୟ ପକ୍ଷରେ ତାହା ଶକ୍ତି ଆଣିଦିଏ । ବୁଦ୍ଧ (ଖ୍ରୀ:ପୂ: ୬ଷ୍ଠ ଶତାବ୍ଦୀ) ଏ ସମ୍ପର୍କରେ ଅଜାତଶତ୍ରୁଙ୍କୁ ଯାହା କହିଥିଲେ ତାହା ଏଠାରେ ପ୍ରଣିଧାନଯୋଗ୍ୟ । ସର୍ବଥା ଅଜାତଶତ୍ରୁ କ'ଣ କଲେ ଲିଚ୍ଛବିମାନଙ୍କୁ ପରାସ୍ତ କରିପାରିବେ ବୋଲି ବୁଦ୍ଧଙ୍କ ପରାମର୍ଶ ଲୋଡ଼ିଥିଲେ । ବୁଦ୍ଧ ଅନ୍ୟାନ୍ୟ କଥା ମଧ୍ୟରେ କହିଥିଲେ, ଯେ ପର୍ଯ୍ୟନ୍ତ ଲିଚ୍ଛବିମାନେ ଜ୍ୟେଷ୍ଠମାନଙ୍କୁ ମାନୁଛନ୍ତି, ସେତେ ଦିନ ପର୍ଯ୍ୟନ୍ତ ସେମାନେ ଅପରାଜେୟ ହୋଇ ରହିଥିବେ ।

ବରିଷ୍ଠ ବ୍ୟକ୍ତିଙ୍କୁ କନିଷ୍ଠ ବ୍ୟକ୍ତି କିପରି ସମ୍ମାନ ଦେଖାନ୍ତି ତାହାର ଏକ ନିଦର୍ଶନ ଆମେ ରାମାୟଣରେ ବାଲକାଣ୍ଡସ୍ଥ ଦ୍ୱିତୀୟ ସର୍ଗରେ ପାଇଥାଉଁ । ବ୍ରହ୍ମା ବାଲ୍ମୀକିଙ୍କ ଆଶ୍ରମକୁ ଆସିଛନ୍ତି । ବାଲ୍ମୀକି ତାଙ୍କୁ ଦେଖିଦେବା ମାତ୍ରେ ନିଜ ଆସନରୁ ଉଠିପଡ଼ିଛନ୍ତି ଏବଂ ଯୋଡ଼ ହାତରେ (ପ୍ରାଞ୍ଜଳିଃ) ତାଙ୍କୁ ନମସ୍କାର କରି ତାଙ୍କ ବସିବା ପାଇଁ ଆସନ ଦେଖାଇ ଦେଇଛନ୍ତି । ବ୍ରହ୍ମା ନବସିବା ପର୍ଯ୍ୟନ୍ତ ସେ ସେମିତି ଠିଆ ହୋଇ ରହିଛନ୍ତି । ବରିଷ୍ଠ ବ୍ୟକ୍ତି କନିଷ୍ଠ ବ୍ୟକ୍ତିଙ୍କ ପାଖକୁ ଆସିଲେ ତାଙ୍କୁ ଏପରି ସମ୍ମାନ ଦର୍ଶାଯାଉଥିଲା । କନିଷ୍ଠ ବ୍ୟକ୍ତି ବରିଷ୍ଠ ବ୍ୟକ୍ତିଙ୍କ ପାଖକୁ ଗଲେ ପୃଥକ୍ ଭାବରେ ସମ୍ମାନ ଦର୍ଶାଯାଉଥିଲା । କେତେବେଳେ କନିଷ୍ଠ ବ୍ୟକ୍ତି ହାତ ଯୋଡ଼ି ନମସ୍କାର କରୁଥିଲେ ଏବଂ ଏହି ଯୁକ୍ତ ହସ୍ତକୁ ସମ୍ମାନସୂଚକ ଭାବରେ ନିଜ କପାଳରେ ଲଗ୍ନ କରୁଥିଲେ । ଆଉ କେତେବେଳେ ସେ ଯୋଡ଼ ହସ୍ତରେ ଆଗକୁ ଟିକିଏ ନଇଁ ପଡ଼ୁଥିଲେ । ପୁଣି କେତେବେଳେ ସେ ନଇଁ ପଡ଼ି ବରିଷ୍ଠ ବ୍ୟକ୍ତିଙ୍କ ପାଦ ସ୍ପର୍ଶ କରୁଥିଲେ । ଆଉ କେତେବେଳେ ସେ ବରିଷ୍ଠ ବ୍ୟକ୍ତିଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ କରୁଥିଲେ କିମ୍ବା ତାଙ୍କ ଚାରିପଟେ ପରିକ୍ରମା କରି ଆସୁଥିଲେ । ନିଜର ନାମ ଓ ଅନ୍ୟାନ୍ୟ ପରିଚୟ ଦେଇ ସେ ବରିଷ୍ଠ ବ୍ୟକ୍ତିଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ବରିଷ୍ଠ ବ୍ୟକ୍ତି ତାଙ୍କୁ ହାତ ଟେକି ଆଶୀର୍ବାଦ କରୁଥିଲେ । ରାମଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କରାଇବା ପାଇଁ ନିଷ୍ପତ୍ତି ନେଇ ସାରିବା ପରେ ଦଶରଥ ତାଙ୍କୁ ନିଜ ଭବନକୁ ଡ଼କାଇ-ଥିଲେ । ରାମ ତାଙ୍କ ପାଖକୁ ଆସି ତାଙ୍କଠାରୁ ଉପଦେଶ ଗ୍ରହଣ କରିଥିଲେ । ସେ କିପରି ଭାବରେ ପିତାଙ୍କୁ ସମ୍ମାନପ୍ରଦର୍ଶନ କରିଥିଲେ ଏବଂ ପିତା କିପରି ତାଙ୍କୁ ଗ୍ରୀବାରେ ଜାକି ଧରିଥିଲେ ତାହା ବାଲ୍ମୀକିଙ୍କ ଦ୍ୱାରା ନିମ୍ନମତେ ବର୍ଣ୍ଣିତ

ପ୍ରବିଶନ୍ନେବ ଚ ଶ୍ରୀମାନ୍ ରାଘବୋ ଭବନଂ ପିତୁଃ ।
ଦଦର୍ଶ ପିତରଂ ଦୂରାତ୍ ପ୍ରଣିପତ୍ୟ କୃତାଞ୍ଜଳିଃ ।।
ପ୍ରଣମନ୍ତଂ ତମୁତ୍ଥାପ୍ୟ ସପରିଷ୍ୱଜ୍ୟ ଭୂମିପଃ ।
ପ୍ରଦିଶ୍ୟ ଗୃସନଂ ଗୃସ୍ମୈ ରାମଂ ଚ ପୁନରବ୍ରବୀତ୍ ।। (୫୯)

ଅର୍ଥାତ୍ ଶ୍ରୀମାନ ରାମ ପିତାଙ୍କ ଭବନରେ ପ୍ରବେଶ ପୂର୍ବକ ତାଙ୍କୁ ଦୂରରୁ ଦେଖି ହାତଯୋଡ଼ି ପ୍ରଣାମ କଲେ । ପ୍ରଣାମ କରୁଥିବା ଶ୍ରୀରାମଙ୍କୁ ଉଠାଇ ନେଇ ରାଜା ଗାଢରେ ଖୁବ ଜୋରରେ ଜାକ ଧରିଲେ ଏବଂ ବସିବା ପାଇଁ ଆସନ ଦେଖାଇ ଦେଇ ପୁଣି କହିଲେ । ଦଶରଥ ରାମଙ୍କୁ ପ୍ରଣତ ଅବସ୍ଥାରୁ ଉଠାଇ ନେଲେ ବୋଲି ଏଠାରେ କୁହାଯିବାର ତାତ୍ପର୍ଯ୍ୟ ହେଲା, ରାମ ହାତ ଯୋଡ଼ି ଭୂମିଷ୍ଠ ପ୍ରଣାମ କରୁଥିଲେ । ପିତାମାତା ଓ ଗୁରୁଜନମାନଙ୍କୁ ସମ୍ମାନ ଦେଖାଇବାର ଏଇଟି ପ୍ରାୟ ସାଧାରଣ ବିଧି ଥିଲା । ପିତାମାତା ତଥା ଗୁରୁଜନମାନେ ପୁତ୍ରକନ୍ୟା ତଥା କନିଷ୍ଠମାନଙ୍କୁ ସ୍ନେହାଶୀର୍ବାଦ ଦେବା ପ୍ରସଙ୍ଗରେ ଆଶୀର୍ବଚନ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଆଲିଙ୍ଗନ କରିବା ବ୍ୟତୀତ ସେମାନଙ୍କ ଶିରଶ୍ଚୁମ୍ବନ କରୁଥିଲେ କିମ୍ବା ଶିର-ଆଘ୍ରାଣ କରୁଥିଲେ । ବେଳେ ବେଳେ ଆଲିଙ୍ଗନ ସହିତ ମଧ୍ୟ ଶିରଶ୍ଚୁମ୍ବନ କିମ୍ବା ଶିର-ଆଘ୍ରାଣ କରାଯାଉଥିଲା । ଭରତ ମାତୁଳାଳୟରୁ ଫେରି ମାତା କୈକେୟୀଙ୍କ ଭବନକୁ ଯାଇ ତାଙ୍କୁ ପ୍ରଣାମ କରନ୍ତେ, କିପରି ଭାବରେ ସେ ପୁତ୍ରଙ୍କ ପ୍ରତି ସ୍ନେହାଶିଷ ଜ୍ଞାପନ କରିଥିଲେ ତତ୍‌ସମ୍ପର୍କରେ ବାଲ୍ମୀକି କହନ୍ତି

ତଂ ମୂର୍ଦ୍ଧ୍ନି ସମୁପାଘ୍ରାୟ ପରିଷ୍ୱଜ୍ୟ ଯଶସ୍ୱିନମ୍ ।
ଅଙ୍କେ ଭରତମାରୋପ୍ୟ ପ୍ରଷ୍ଟୁଂ ସମୁପଚକ୍ରମେ ।। (୬୦)

ଅର୍ଥାତ୍ ଯଶସ୍ୱୀ ପୁତ୍ର ଭରତଙ୍କୁ ଗାଢରେ ଜାକ ଧରି କୈକେୟୀ ତାଙ୍କର ଶିର ଆଘ୍ରାଣ କଲେ ଏବଂ ତାଙ୍କୁ କୋଳରେ ବସାଇ ପ୍ରଶ୍ନ ପଚାରିବାକୁ ଆରମ୍ଭ କଲେ ।

ଅନେକ ଲୋକଙ୍କର ଧାରଣା ଯେ କରମର୍ଦ୍ଦନ କରିବା ପ୍ରଥାଟି ଆମେ ପାଶ୍ଚାତ୍ୟ ସଂସ୍କୃତିରୁ ଗ୍ରହଣ କରିଛୁଁ । କିନ୍ତୁ ତାହା ଠିକ୍ ନୁହେଁ । ରାମାୟଣ-ଯୁଗରେ ମଧ୍ୟ କରମର୍ଦ୍ଦନ ପ୍ରଥା ଚଳୁଥିଲା । ଏହା କେବଳ ବନ୍ଧୁ ଓ ସମାନ ସ୍ତରର ବ୍ୟକ୍ତିମାନଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ସେମାନେ ପରସ୍ପରକୁ ଆଲିଙ୍ଗନ କରି କିମ୍ବା ପରସ୍ପରର କର-ମର୍ଦ୍ଦନ କରି ଅଭିବାଦନ ଜ୍ଞାପନ କରୁଥିଲେ । ବନ୍ଧୁତାର ନିଦର୍ଶନସ୍ୱରୂପ ପ୍ରଥମ ସାକ୍ଷାତରେ ସୁଗ୍ରୀବ ରାମଙ୍କୁ କହିଛନ୍ତି (୪।୫।୧୨), 'ଗୃହ୍ୟତାଂ ପାଣିନା ପାଣିଃ' ।

ଅର୍ଥାତ୍ ମୋ' ସହିତ କରମର୍ଦ୍ଦନ କରନ୍ତୁ । ରାମ ଏହାର କାଉଣ୍ଟ ପ୍ରତିକ୍ରିୟା ପ୍ରକାଶ କଲେ ତାହା ବର୍ଣ୍ଣନା କରିବାକୁ ଯାଇ (୪।୫।୧୨) ବାଲ୍ମୀକି କହୁଛନ୍ତି

ସଂପ୍ରହୃଷ୍ଟମନା ହସ୍ତଂ ପୀଡ଼ୟାମାସ ପାଣିନା ।

ଅର୍ଥାତ୍ (ରାମ) ଖୁବ୍ ଖୁସି ହୋଇ (ସୁଗ୍ରୀବଙ୍କର) କରମର୍ଦ୍ଦନ କଲେ । ଅତଏବ, କରମର୍ଦ୍ଦନ ପ୍ରଥାଟି ପାଶ୍ଚାତ୍ୟ ଦେଶରୁ ତ ଭାରତକୁ ଆସିନାହିଁ; ଏହା ବରଂ ଭାରତରୁ ପାଶ୍ଚାତ୍ୟ ଦେଶମାନଙ୍କୁ ଯାଇଥିବାର ସମ୍ଭାବନା ଅଧିକ ।

ପ୍ରଥମ ସାକ୍ଷାତ୍‌ରେ ଅନ୍ୟ କୌଣସି ବିଷୟରେ କଥାବାର୍ତ୍ତା ହେବା ପୂର୍ବରୁ ପାରସ୍ପରିକ କୁଶଳ ଜିଜ୍ଞାସା କରିବା ସେତେବେଳେ ଥିଲା ଏକ ସୁଷ୍ଠ ସାମାଜିକ ବିଧି । ଏବେ ମଧ୍ୟ ସଭ୍ୟ ଲୋକମାନେ ଅନୁରୂପ ଭାବରେ କୁଶଳ-ପ୍ରଶ୍ନ କରିଥାନ୍ତି । ଏହି କୁଶଳ-ପ୍ରଶ୍ନ କେବଳ ବ୍ୟକ୍ତିବିଶେଷଙ୍କ ମଧ୍ୟରେ ସୀମାବଦ୍ଧ ରହୁ ନଥିଲା । ଏହା ତାଙ୍କର ପରିବାର, ସମାଜ ଓ ପରିବେଶ ପ୍ରତି ମଧ୍ୟ ଥିଲା ସମ୍ପ୍ରସାରିତ । ଉଦାହରଣ ସ୍ୱରୂପ ରାଜାଙ୍କୁ କୁଶଳ-ପ୍ରଶ୍ନ କଲେ ସେ ନିଜେ ଭଲ ଅଛନ୍ତି କି ନାହିଁ, ତାଙ୍କ ରାଣୀମାନେ ତଥା ରାଜପୁତ୍ରମାନେ ଭଲ ଅଛନ୍ତି କି ନାହିଁ, ଭଲ ବର୍ଷା ହେଉଛି କି ନାହିଁ, ଭଲ ଫସଲ ହେଉଛି କି ନାହିଁ, ପ୍ରଜାମାନେ ସୁଖ ଓ ଶାନ୍ତିରେ କାଳ କାଟୁଛନ୍ତି କି ନାହିଁ ଇତ୍ୟାଦି ପ୍ରଶ୍ନମାନ ପଚରା ଯାଉଥିଲା । ବଶିଷ୍ଠଙ୍କ ସହିତ ଭରତ ଆସି ଭରଦ୍ୱାଜଙ୍କୁ ତାଙ୍କ ଆଶ୍ରମରେ ସାକ୍ଷାତ୍ କଲାବେଳେ ସେ ସେଦୁହିଁଙ୍କୁ କୁଶଳ-ପ୍ରଶ୍ନ ପଚାରିଥିଲେ । ତାହାର ପ୍ରତ୍ୟୁତ୍ତରରେ ମଧ୍ୟ ସେ ଦୁହେଁ ଭରଦ୍ୱାଜଙ୍କୁ କୁଶଳ-ପ୍ରଶ୍ନ ପଚାରିଥିଲେ । ଏ ପ୍ରଶ୍ନ ଥିଲା ଭରଦ୍ୱାଜଙ୍କ ନିଜର ତଥା ତାଙ୍କ ସାମଗ୍ରିକ ପରିବେଶର କୁଶଳ ସମ୍ପର୍କରେ । ତାହା ରାମାୟଣରେ ନିମ୍ନମତେ ବର୍ଣ୍ଣିତ

ବଶିଷ୍ଠ-ଭରତୌ ଚୈନଂ ପ୍ରପଚ୍ଛତୁରନାମୟମ୍ ।
ଶରୀରେଽଗ୍ନିହୋତ୍ରେ ଚ ଶିଷ୍ୟେଷୁ ମୃଗପକ୍ଷିଷୁ । (୭୧)

ଅର୍ଥାତ୍ ବଶିଷ୍ଠ ଓ ଭରତ ଯ୍ୟାଙ୍କୁ (ଭରଦ୍ୱାଜଙ୍କୁ) ଶରୀର, ଅଗ୍ନିହୋତ୍ର, ଶିଷ୍ୟଗଣ ତଥା ପଶୁପକ୍ଷିଗଣଙ୍କ ସମ୍ପର୍କରେ କୁଶଳ-ପ୍ରଶ୍ନ ପଚାରିଥିଲେ । ବାସ୍ତବିକ, ବ୍ୟକ୍ତିଗତ କୁଶଳର କିଛି ହିଁ ମୂଲ୍ୟ ନାହିଁ, ଯଦି ସମଗ୍ର ପରିବେଶର କୁଶଳ ନାହିଁ । ମନୁଷ୍ୟର ସାର୍ବିକ କୁଶଳ ଥିଲା ସେତେବେଳର ସମାଜର କାମ୍ୟ । ଏପରିକି ବୃକ୍ଷଲତା, ପଶୁପକ୍ଷୀ ଆଦି ପରିବେଶର ମଧ୍ୟ କୁଶଳ କାମନା କରାଯାଉଥିଲା । ଆଜିକାଲି ମାନବଜୀବନର ଦୁଃଖର ପ୍ରଧାନ କାରଣ ହେଉଛି

ତାହାର ନିଜର କୁଶଳ ସହିତ ସମାଜର ତଥା ପରିବେଶର କୁଶଳର ଷାରସାମ୍ୟ ନିର୍ଭର କରିବା । ଏହି ଷାରସାମ୍ୟ ସ୍ଥିର ରହିବା ନିତାନ୍ତ ଆବଶ୍ୟକ ସେ କଥା ବହୁ ପଣ୍ଡିତ ବାରମ୍ବାର କହି ଆସୁଛନ୍ତି । ରାମାୟଣୀୟ ସମାଜ ଯେ ଏଥିପ୍ରତି ସମ୍ୟକ୍ ଅବହିତ ଥିଲା, ତାହା ନିଶ୍ଚିତ ଭାବରେ ପ୍ରଶଂସନୀୟ ।

ଅବଶ୍ୟ ପରବର୍ତ୍ତୀ କାଳରେ ମନୁଙ୍କ ସମୟରେ ଯେତେବେଳେ ବର୍ଣ୍ଣ-ବିଭାଗ ଅପେକ୍ଷାକୃତ ଦୃଢ଼ତର ଭିତ୍ତି ଉପରେ ସ୍ଥାପିତ ହେଲା, ସେତେବେଳେ ଏହି ଅଭିବାଦନ ପଦ୍ଧତି ବର୍ଣ୍ଣକୁ ଅନୁସରଣ କରି ବଦଳି ଯିବାକୁ ଲାଗିଲା । ମନୁ ଏ ସମ୍ପର୍କରେ କହିଲେ

ବ୍ରାହ୍ମଣଂ କୁଶଳଂ ପୃଚ୍ଛେତ୍ କ୍ଷତ୍ରବନ୍ଧୁମନାମୟମ୍ ।
ବୈଶ୍ୟଂ କ୍ଷେମଂ ସମାଗମ୍ୟ ଶୂଦ୍ରମାରୋଗ୍ୟମେବ ଚ ।। (୬୨)

ଅର୍ଥାତ୍ ବ୍ରାହ୍ମଣଙ୍କୁ କୁଶଳ ପ୍ରଶ୍ନ ପଚାରିବାକୁ ହେବ, କ୍ଷତ୍ରିୟ ବନ୍ଧୁଙ୍କୁ ଅନାମୟ ପ୍ରଶ୍ନ ପଚାରିବାକୁ ହେବ, ବୈଶ୍ୟଙ୍କୁ ସମ୍ପତ୍ତି ରକ୍ଷା ବିଷୟରେ ପଚାରିବାକୁ ହେବ ଏବଂ ଶୂଦ୍ରଙ୍କୁ ନିରୋଗ ଥିବା ପ୍ରଶ୍ନ ପଚାରିବାକୁ ହେବ । ଭରତ ଋଷି ଭରଦ୍ୱାଜଙ୍କୁ ଅନାମୟ-ପ୍ରଶ୍ନ ପଚାରିଥିବାରୁ ଜଣାପଡ଼ୁଛି ଯେ ରାମାୟଣକାଳୀନ ସମାଜରେ ବର୍ଣ୍ଣବୈଭିନ୍ନ ହେତୁ ଅଭିବାଦନ-ପଦ୍ଧତିରେ ତାରତମ୍ୟ ନଥିଲା । ପ୍ରଥମ ସାକ୍ଷାତ୍‌ରେ ପରସ୍ପରର କୁଶଳ ପ୍ରଶ୍ନ କରିବା ନିଶ୍ଚିତ ଭାବରେ ଏକ ସୁସଂସ୍କୃତ ଶିଷ୍ଟାଚାରର ଅନୁବର୍ତ୍ତୀ ଏବଂ ରାମାୟଣକାଳୀନ ସମାଜରେ ସମସ୍ତେ ଏହାକୁ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ଏହି କୁଶଳ ପ୍ରଶ୍ନ ଜିଜ୍ଞାସା କରିବାର ପଦ୍ଧତି ବର୍ଣ୍ଣଗତ ବୈଭିନ୍ନ୍ୟ ହେତୁ ବଦଳି ଯାଇନଥିଲା । ଶର୍ମା ମଧ୍ୟ ଏଥି ସହିତ ଏକମତ । ତାଙ୍କ ଭାଷାରେ

To wish one another and make mutual enquiries of welfare are marks of good manners and both the practices were fairly popular in the society of Valmiki. (୬୩)

ଉପକାରୀ ବ୍ୟକ୍ତିଙ୍କର ଉପକାର ସ୍ମରିବା ଏକ ଉତ୍ତମ ଗୁଣ ତଥା ଆର୍ଯ୍ୟତ୍ୱର ପରିଚାୟକ ରୂପେ ଗଣ୍ୟ ହେଉଥିଲା । କୃତଘ୍ନ ବ୍ୟକ୍ତିକୁ ଅନାର୍ଯ୍ୟ ବୋଲି କୁହାଯାଉଥିଲା । ସୁଗ୍ରୀବ ରାମଙ୍କୁ ଦେଇଥିବା ପ୍ରତିଶ୍ରୁତି ଅନୁସାରେ ସୀତାଙ୍କୁ ଠାବ କରିବା ପାଇଁ ବାନରଦଳମାନଙ୍କୁ ପଠାଇବାରେ ଲକ୍ଷ୍ମଣ କ୍ରୁଦ୍ଧ ହୋଇ ତାଙ୍କୁ ରାମାୟଣରେ ଠାଏ (୪।୩୧।୧୩) ଅନାର୍ଯ୍ୟ ବୋଲି କହିଛନ୍ତି; କାରଣ ସେ ରାମଙ୍କ ପ୍ରତି ବିଶ୍ୱାସଘାତକତା ଦେଖାଇଛନ୍ତି । କୃତଘ୍ନ ବ୍ୟକ୍ତିକୁ ହତ୍ୟା

କଲେ ମଧ୍ଯ କିଛି ପାପ ନାହିଁ ବୋଲି ସେତେବେଳେ ଧରାଯାଉଥିଲା । ଲକ୍ଷ୍ମଣ ସୁଗ୍ରୀବଙ୍କୁ ଏ ବିଷୟରେ ମଧ୍ଯ ସତର୍କ କରାଇ ଦେଇଛନ୍ତି । ପ୍ରକାରାନ୍ତରେ ସେ ତାଙ୍କୁ ସାବଧାନ କରାଇ ଦେଇଛନ୍ତି ଯେ ରାମଙ୍କ ପ୍ରତି କୃତଘ୍ନତା ପ୍ରଦର୍ଶନ କରିଥିବାରୁ ସେ (ସୁଗ୍ରୀବ) ବଧ୍ୟ । ଏତଦ୍ଦ୍ୱାରା ସୁଗ୍ରୀବଙ୍କୁ ସେ ଜୀବନ ନେବା ପାଇଁ ଖାଲି ଭୟ ଦେଖାଇ ନାହାନ୍ତି; ବରଂ ସେ ନିଜ କର୍ତ୍ତବ୍ୟ-ପାଳନରେ ତ୍ରୁଟି କରିଛନ୍ତି ବୋଲି ତାଙ୍କୁ ସାବଧାନ କରିଦେଇଛନ୍ତି । ତାଙ୍କ ଭାଷାରେ

> ପୂର୍ବଂ କୃତାର୍ଥୋ ମିତ୍ରାଣାଂ ନ ତତ୍ ପ୍ରତିକରୋତି ଯଃ
> କୃତଘ୍ନଃ ସର୍ବଭୂତାନାଂ ସ ବଧ୍ୟଃ ପ୍ଲବଗେଶ୍ୱର ।। (୭୪)

ହେ ବାନରରାଜ ! ଯେ ପ୍ରଥମେ ମିତ୍ରଙ୍କ ଦ୍ୱାରା ନିଜ କାର୍ଯ୍ୟଟି ସିଦ୍ଧ କରାଇ ନେଇ ପରେ ପ୍ରତ୍ୟୁପକାର କରେ ନାହିଁ, ସେ କୃତଘ୍ନ ଏବଂ ସକଳ ପ୍ରାଣୀଙ୍କ ନିକଟରେ ସେ ବଧ୍ୟ । ରାମ ମଧ୍ୟ ହନୁମାନଙ୍କ କାର୍ଯ୍ୟକଳାପକୁ ଆଦୌ ଭୁଲିନଥିଲେ ଏବଂ ତାଙ୍କର ପ୍ରତିଟି କାର୍ଯ୍ୟ ପାଇଁ ସେ ଋଣ-ଭାରରେ ଅବନତ ବୋଲି ତାଙ୍କର ରାଜ୍ୟାଭିଷେକ ସମୟରେ ସମସ୍ତଙ୍କ ଆଗରେ ହନୁମାନଙ୍କୁ କହିଥିଲେ । ସେ ସ୍ପଷ୍ଟ ଭାବରେ କହିଥିଲେ ଯେ ତାଙ୍କର ପ୍ରତ୍ୟେକଟି କର୍ମକୁ ପରିଶୋଧ କରିବାକୁ ଯାଇ ସେ (ରାମ) ଯଦି ଜୀବନ ଦେଇଦିଅନ୍ତି, ତା' ହେଲେ ମଧ୍ୟ ସେହି ଋଣ ଶୁଝି ହେବ ନାହିଁ । ଶର୍ମାଙ୍କ ନିମ୍ନୋକ୍ତ ମନ୍ତବ୍ୟ ଏ ସମ୍ପର୍କରେ ପ୍ରଣିଧାନ-ଯୋଗ୍ୟ

> He said that he would sacrifice his life for the sake of the kapi in consideration of each one of the acts of favour done to him and yet he would not be completely absolved of the debt. However, he wished that this debt should ever remain on him, for its retribution would require that the Vanara should be visited by calamities. (୭୫)

ଏହିସବୁ ଅଲୋଚନାରୁ ଜଣାପଡ଼ିବ ରାମାୟଣକାଳୀନ ସମାଜରେ କପଟ କୃତଘ୍ନତା ଥିଲା ନିନ୍ଦନୀୟ ଏବଂ କୃତଜ୍ଞତା ଥିଲା ଶ୍ଳାଘ୍ୟ ।

ଲୋକମାନଙ୍କ ବାହାର ବ୍ୟବହାର ଯେପରି ରୁଚିପୂର୍ଣ୍ଣ ଥିଲା, ସେମାନଙ୍କ ମଧ୍ୟରେ ପାରସ୍ପରିକ ବାକ୍ୟାଳାପ ମଧ୍ଯ ଥିଲା ସମଧିକ ସ୍ନେହପୂର୍ଣ୍ଣ ଓ ଭଦ୍ରଜନୋଚିତ ।

ସମ୍ବୋଧନ କଦାପି କର୍କଶ ଭାଷାରେ କରାଯାଉନଥିଲା । କନିଷ୍ଠ ବ୍ୟକ୍ତି ବରିଷ୍ଠ ବ୍ୟକ୍ତିଙ୍କୁ 'ଭବାନ୍' କିମ୍ବା 'ଭଗବାନ୍' କିମ୍ବା 'ଆର୍ଯ୍ୟ' ବୋଲି ସମ୍ବୋଧନ କରୁଥିଲେ । ସ୍ତ୍ରୀଙ୍କର ସ୍ୱାମୀଙ୍କ ପ୍ରତି ସମ୍ବୋଧନ ଥିଲା 'ଆର୍ଯ୍ୟପୁତ୍ର' । ସେହିପରି ସ୍ୱାମୀ ସ୍ତ୍ରୀଙ୍କୁ 'କଲ୍ୟାଣୀ', 'ଭାମିନୀ', 'ମନସ୍ୱିନୀ' ଆଦି ନାମରେ ସମ୍ବୋଧନ କରୁଥିଲେ । ବେଳେ ବେଳେ ସ୍ୱାମୀ ସ୍ତ୍ରୀଙ୍କୁ ସ୍ନେହାର୍ଦ୍ର କଣ୍ଠରେ 'ପ୍ରିୟେ' ଅଥବା 'ପ୍ରିୟତମେ' ବୋଲି ସମ୍ବୋଧନ କରୁଥିଲେ । କିନ୍ତୁ ଏଠାରେ ଲକ୍ଷ୍ୟ କରିବାର କଥା ଯେ ସ୍ତ୍ରୀ ସ୍ୱାମୀଙ୍କୁ କେବେହେଲେ 'ପ୍ରିୟ' କିମ୍ବା 'ପ୍ରିୟତମ' ବୋଲି ସମ୍ବୋଧନ କରିଥିବାର ନିଦର୍ଶନ ଆମେ ରାମାୟଣରେ ପାଉନାହିଁ । ସ୍ତ୍ରୀଙ୍କ ନିକଟରେ ସ୍ୱାମୀ ଥିଲେ ସର୍ବଥା ସମ୍ମାନନୀୟ ଓ ପୂଜାର୍ହ । ତେଣୁ ସ୍ୱାମୀଙ୍କ ପ୍ରତି ତାଙ୍କର ସକଳ ସମ୍ବୋଧନରେ ସେହି ଭାବ ହିଁ ପ୍ରକଟିତ ହେଉଥିଲା । ବାସ୍ତବିକ, ସ୍ତ୍ରୀଙ୍କର ସ୍ୱାମୀଙ୍କ ପ୍ରତି ଥିବା ପ୍ରେମ ସର୍ବଦା ଥିଲା ଭକ୍ତି-ଭାବ ଦ୍ୱାରା ପରିଶୀଳିତ । ପିତାମାତା କିମ୍ବା ଗୁରୁଜନମାନେ ପୁତ୍ର କିମ୍ବା କନିଷ୍ଠମାନଙ୍କୁ 'ତାତ', 'ବତ୍ସ' ଓ 'ସୌମ୍ୟ' ଆଦି କହି ସମ୍ବୋଧନ କରୁଥିଲେ । ବ୍ୟକ୍ତିଙ୍କୁ ଅମୁକଙ୍କ ପୁତ୍ର, ଅମୁକଙ୍କ ପୌତ୍ର, ଅମୁକ ବଂଶସମ୍ଭବ ଆଦି ବୋଲି ଡାକିବା ମଧ୍ୟ ସେତେବେଳେ ଏକ ଅତି ସାଧାରଣ ଚଳଣି ଥିଲା । ଉଦାହରଣ ସ୍ୱରୂପ ରାମଙ୍କୁ କେତେବେଳେ କୁହାଯାଇଛି ଦାଶରଥି, ପୁଣି କେତେବେଳେ କୁହାଯାଇଛି କୌଶଲ୍ୟାନନ୍ଦନ, ପୁଣି ଆଉ କେତେବେଳେ କୁହାଯାଇଛି ରାଘବ ଇତ୍ୟାଦି । ବେଳେବେଳେ ବ୍ୟକ୍ତିଙ୍କର ଜନ୍ମସ୍ଥାନକୁ ମଧ୍ୟ ତାଙ୍କ ନାମ ସହିତ ସମ୍ପୃକ୍ତ କରାଯାଉଥିଲା । ସୀତା ଥିଲେ ମିଥିଳା ରାଜ୍ୟର କନ୍ୟା । ତେଣୁ ତାଙ୍କୁ ମୈଥିଳୀ ବୋଲି ସମ୍ବୋଧନ କରାଯାଉଥିଲା । ବୁଦ୍ଧଙ୍କ ସମୟରେ ମଧ୍ୟ (ଖ୍ରୀ:ପୂ: ୬ଷ୍ଠ ଶତାବ୍ଦୀ) ଏହିପରି ଭାବରେ ପିତାମାତାଙ୍କ ନାମ ସହିତ ସମ୍ପର୍କିତ ନାମମାନ ଚଳୁଥିବାର ପ୍ରମାଣ ଆମକୁ ମିଳେ । ଉଦାହରଣ ସ୍ୱରୂପ ଧର୍ମ-ଗୁରୁ ସଞ୍ଜୟ ବେଲଥୀପୁତ୍ରଙ୍କ ମାତାଙ୍କ ନାମ ଥିଲା ବେଲଥୀ । ସେହିପରି ବୁଦ୍ଧଙ୍କ ପରମ ଶିଷ୍ୟ ସାରିପୁତ୍ରଙ୍କ ମାତାଙ୍କ ନାମ ଥିଲା ସାରି । କୌଣସି ଅଜଣା-ଅଶୁଣା ବ୍ୟକ୍ତିଙ୍କ ସହିତ ଦେଖା ହେଲେ ତାଙ୍କୁ 'ସୌମ୍ୟ' ବୋଲି ଭଦ୍ର ଭାବରେ ସମ୍ବୋଧନ କରାଯାଉଥିଲା । ସ୍ତ୍ରୀମାନଙ୍କ ପ୍ରତି ହେଉଥିବା ସମ୍ବୋଧନରେ ଏକ ବୈଶିଷ୍ଟ୍ୟ ଲକ୍ଷ୍ୟ କରାଯାଏ । ଅଜଣା ଅଶୁଣା ବ୍ୟକ୍ତିମାନଙ୍କ ଦ୍ୱାରା ସେମାନେ 'ସୁନ୍ଦରୀ', 'ସୁରୁହାସିନୀ', 'ସିଂହକଟୀ' ଆଦି ନାମରେ ସମ୍ବୋଧିତ ହେଉଥିଲେ । ଏ ସମସ୍ତ ସମ୍ବୋଧନ ସେମାନଙ୍କର ବ୍ୟକ୍ତିଗତ ସୌନ୍ଦର୍ଯ୍ୟ ବର୍ଣ୍ଣନା ସହିତ ସମ୍ପର୍କିତ ଥିଲେ ହେଁ ସେମାନେ ଏହାକୁ ଅଶିଷ୍ଟ ଆଚରଣ ବୋଲି ଭାବୁ ନଥିଲେ । ଅବଶ୍ୟ ଆଜିକାଲି ଏଭଳି ସମ୍ବୋଧନକୁ ସ୍ତ୍ରୀମାନେ ଅଶିଷ୍ଟ ଓ ଅସୌଜନ୍ୟମୂଳକ

ବୋଲି ଧରିବେ । ରାବଣ ପରିବ୍ରାଜକ ବେଶରେ ସୀତାଙ୍କ କୁଟୀରକୁ ଆସି ତାଙ୍କଠାରୁ ଭିକ୍ଷା ମାଗିବା ଅବସରରେ ତାଙ୍କୁ 'ରୌପ୍ୟକାଞ୍ଚନବର୍ଣ୍ଣାଭେ', 'ପୀତକୌଶେୟବାସିନି', 'ସ୍ମିତରୁଚିତେ', 'ସୁଚାରୁନେତ୍ରେ', 'ସୁକେଶେ', 'ହଂସଗମନେ' ଇତ୍ୟାଦି ନାମରେ ସମ୍ବୋଧନ କରିଛି । (୭୭) କିନ୍ତୁ ସୀତା ଏହାକୁ ଖରାପ ଭାବରେ ଗ୍ରହଣ କରିନାହାନ୍ତି । ଜଣେ ପରିବ୍ରାଜକ ଯଦି ଏଭଳି କହିପାରୁଥିଲେ, ତେବେ ସାଧାରଣ ବ୍ୟକ୍ତିଙ୍କ ପକ୍ଷରେ ଏଭଳି କହିବା ଦୂଷଣୀୟ ହେବାର ପ୍ରଶ୍ନ ହିଁ ନଥିଲା । ସ୍ତ୍ରୀମାନଙ୍କ ପ୍ରତି ଦେଖାଯାଉଥିବା ଭଦ୍ରଜନୋଚିତ ବ୍ୟବହାରର ଏହା ଏକ ନିଦର୍ଶନ ଛଡ଼ା ଆଉ କିଛି ନୁହେଁ ।

ରାମାୟଣକାଳୀନ ଶିଷ୍ଟାଚାରର ଆଉ ଏକ ଉତ୍କୃଷ୍ଟ ଉଦାହରଣ ଆମେ ପାଇବା ରାମ-ସୀତାଙ୍କ ବିବାହର ଅବ୍ୟବହିତ ପୂର୍ବରୁ ଜନକ ଓ ଦଶରଥଙ୍କ ମଧ୍ୟରେ ହୋଇଥିବା କଥୋପକଥନ ମଧ୍ୟରୁ, ଯାହା କି ବାଲକାଣ୍ଡର ଏକୋନସପ୍ତତିତମ ସର୍ଗରେ ବର୍ଣ୍ଣିତ । ଉଭୟ ରାଜା ଥିଲେ ମହାଜ୍ଞାନୀ ଓ ପ୍ରବଳ ପରାକ୍ରମୀ । କିନ୍ତୁ କଥାବାର୍ତ୍ତା କଲାବେଳେ ସେମାନେ ଖୁବ୍ ନମ୍ରତା ପ୍ରଦର୍ଶନ କରିଥିଲେ । ଦଶରଥଙ୍କ ସହିତ ବନ୍ଧୁତାସ୍ଥାପନ କରିବା ଦ୍ୱାରା ତାଙ୍କ କୁଳ ଉଦ୍ଧାର ହୋଇଗଲା ବୋଲି ଜନକ କହିଥିଲେ । ଜନକଙ୍କ ଭାଷାରେ

ଦିଷ୍ଟ୍ୟା ମେ ନିର୍ଜିତା ବିଘ୍ନା ଦିଷ୍ଟ୍ୟା ମେ ପୂଜିତଂ କୁଳମ୍ ।
ରାଘବୈଃ ସହ ସମ୍ବନ୍ଧାଦ୍‌ବୀର୍ଯ୍ୟଶ୍ରେଷ୍ଠୈର୍ମହାବଲୈଃ ।।

ଅର୍ଥାତ୍ ରଘୁକୁଳର ଲୋକମାନେ ଖୁବ୍ ବୀର୍ଯ୍ୟବାନ୍ ଓ ବଳୀୟାନ୍ । ମୋ'ର ଆଜି ସେହି କୁଳ ସହିତ ସମ୍ବନ୍ଧ ହେବାକୁ ଯାଉଛି । ତେଣୁ ମୋ'ର ସକଳ ବିଘ୍ନ କଟିଗଲା; ମୋ'ର କୁଳ ପୂଜ୍ୟ ହୋଇଉଠିଲା । ଏହା କହି ସେ ଦଶରଥଙ୍କୁ ସ୍ୱାଗତ କଲେ । ରାଜା ଦଶରଥ ବରପକ୍ଷର ପିତା ହୋଇ ଆସିଥିଲେ । ଆମେ ସାଧାରଣ ଭାବରେ ଭାବିବା ଯେ ତାଙ୍କଠାରେ ଅଭିମାନ ଥିବ । କିନ୍ତୁ ପ୍ରକୃତରେ ତାଙ୍କଠାରେ କିଛି ହିଁ ଗର୍ବ, ଅଭିମାନ ନଥିଲା । ଜନକ କନ୍ୟାଦାନ କରୁଛନ୍ତି ଏବଂ ତାଙ୍କ ପୁତ୍ର କନ୍ୟା-ଗ୍ରହଣ କରୁଛନ୍ତି । ସେ ତେଣୁ ଥିଲେ ଗ୍ରହୀତା-ପକ୍ଷର ପିତା । ଅତଏବ, ଦାତା ଯାହା କରିବେ ତାଙ୍କୁ ସେହିଭଳି ହିଁ କରିବାକୁ ହେବ । ଠିକ୍ ଜଣେ ଗ୍ରହୀତାଙ୍କ ଯୋଗ୍ୟ ବିନୟଭାବ ଦର୍ଶାଇ ସେ ଜନକଙ୍କୁ କହିଥିଲେ

ପ୍ରତିଗ୍ରହୋ ଦାତୃବଶଃ ଶ୍ରୁତମେତନ୍ମୟା ପୁରା ।
ଯଥା ବକ୍ଷ୍ୟସି ଧର୍ମଜ୍ଞ ତତ୍ କରିଷ୍ୟାମହେ ବୟମ୍ ।।

ଅର୍ଥାତ୍ ହେ ଧର୍ମଜ୍ଞ ଆମେ ପୂର୍ବରୁ ଶୁଣିଛୁ ଯେ ଦାନ-ପ୍ରତିଗ୍ରହଣ କରିବା ଦାତାଙ୍କର ଅଧୀନ । ତେଣୁ ଆପଣ ଯେମିତି କହିବେ, ଆମେ ସେମିତି କରିବୁ । ଏହିପରି ଭାବରେ ଦୁଇ ଭାବୀ ସମ୍ବନ୍ଧୀଙ୍କ ମଧ୍ୟରେ ବହୁତ କଥାବାର୍ତ୍ତା ହୋଇଥିଲା ଯାହା କି ଆର୍ଯ୍ୟ ଶିଷ୍ଟାଚାରର ଗୋଟିଏ ଗୋଟିଏ ଜ୍ୱଳନ୍ତ ଉଦାହରଣ । ଏହି ଶିଷ୍ଟାଚାର କେତେ ଦୂର ତୁଙ୍ଗ ଶିଖରରେ ଅଧିରୂଢ଼ ଥିଲା, ସେ ସଂପର୍କରେ ମନ୍ତବ୍ୟ ଦେବାକୁ ଯାଇ ଡ. ସୀତାରାମିଆ କୁହନ୍ତି

> Courtesies between Janaka and Dasaratha in connection with the marriage are picturesque and full of dignity a full picture is in expression there. It is altogether a full picture of family life, relationship, of conduct and a pattern of living given to us about an Aryan household at its best in its capital city. (୬୭)

ବାସ୍ତବିକ ଯେଉଁ ପରିବାରମାନଙ୍କର ପ୍ରତିନିଧିତ୍ୱ ଏହି ରାଜାମାନେ କରୁଥିଲେ, ସେମାନେ ଥିଲେ ଆଦର୍ଶସ୍ଥାନୀୟ । ଏହି ରାଜାମାନଙ୍କ ଶାସନରେ ପ୍ରଜାମାନେ ଥିଲେ ସୁରକ୍ଷିତ; ମୁନିଋଷିଙ୍କ ଆଶ୍ରମ ଥିଲା ସୁରକ୍ଷିତ; ଏବଂ ବିଦ୍ୟାଚର୍ଚ୍ଚା ମଧ୍ୟ ଥିଲା ସୁରକ୍ଷିତ । ଏମାନଙ୍କ ଅଧୀନରେ ପ୍ରଜାମାନେ ଖୁବ୍ ସୁଖ-ଶାନ୍ତିରେ ରହୁଥିଲେ ।

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ଭାବରେ ଜଣାପଡ଼ିବ ଯେ ରାମାୟଣ-କାଳୀନ ସମାଜରେ ଲୋକମାନଙ୍କ ଆଚାର, ବ୍ୟବହାର, ଚାଲିଚଳଣି, କଥାବାର୍ତ୍ତା ଆଦି ଥିଲା ଖୁବ୍ ଶିଷ୍ଟାଚାରସଂପନ୍ନ ଏବଂ ସେଗୁଡ଼ିକରେ ସେମାନଙ୍କର ଆର୍ଯ୍ୟତ୍ୱ ବା ସଂସ୍କୃତିସଂପନ୍ନ-ଭାବ ପୂର୍ଣ୍ଣ ମାତ୍ରାରେ ପ୍ରକଟିତ ହେଉଥିଲା । ଏଭଳି ସଂସ୍କୃତି-ସଂପନ୍ନ ଗୋଷ୍ଠୀର ଲୋକେ ଜୀବନକୁ ସୁଖମୟ ତଥା ଆନନ୍ଦମୟ କରିବା ପାଇଁ ସମୁଚିତ ବ୍ୟବସ୍ଥାମାନ ଗ୍ରହଣ କରିଥିବା ସ୍ୱାଭାବିକ । କ୍ରୀଡ଼ା, ଉତ୍ସବ-ନୃତ୍ୟଗୀତ ତଥା ଅନ୍ୟାନ୍ୟ ଆମୋଦପ୍ରମୋଦ ମାଧ୍ୟମରେ ସେମାନେ କିଭଳି ଜୀବନକୁ ଉପଭୋଗ କରୁଥିଲେ ତଦ୍‌ବିଷୟରେ କିଞ୍ଚିତ୍ ଆଲୋକପାତ ବର୍ତ୍ତମାନ କରାଯାଉଛି ।

**କ୍ରୀଡ଼ା ଓ ଆମୋଦପ୍ରମୋଦ**

ବୈଦିକ କାଳରୁ ହିଁ ଆର୍ଯ୍ୟମାନେ ଜୀବନକୁ ଉପଭୋଗ କରିବା ପାଇଁ କ୍ରୀଡ଼ା ଓ ଆମୋଦ ପ୍ରମୋଦର ନାନା ପ୍ରକାର ବ୍ୟବସ୍ଥା କରିଥିଲେ ।

ସେତେବେଳେ ଶିକାର, ରଥଦଉଡ଼ ଓ ପଶାଖେଳ ଆଦି ପ୍ରମୁଖ ସ୍ଥାନ ଅଧିକାର କରିଥିଲେ । ଋଗ୍‌ବେଦରେ ଠା୪ (୧୦।୧୦୨) ଆମେ ଗୋଟିଏ ରଥ-ଦଉଡ଼ ପ୍ରତି-ଯୋଗିତାର ଉଲ୍ଲେଖ ଦେଖିଥାଉଁ । ଏଥିରେ ଅନ୍ୟମାନଙ୍କ ମଧ୍ୟରେ ମୁଦ୍‌ଗଲ ନାମକ ଜଣେ ବ୍ୟକ୍ତି ଯୋଗ ଦେଇଥିଲେ । ତାଙ୍କ ପତ୍ନୀ ମୁଦ୍‌ଗଲାନୀ ରଥଟିକୁ ଖୁବ୍ କ୍ଷିପ୍ର ଗତିରେ ଚଳାଇବାକୁ ସାହାଯ୍ୟ କରିଥିଲେ, ଯାହା ଫଳରେ କି ମୁଦ୍‌ଗଲ ପ୍ରତିଯୋଗିତାରେ ଜିଣିପାଇଥିଲେ । ବୈଦିକ କାଳରେ ଆଉ ଗୋଟିଏ ପ୍ରଧାନ ଉତ୍ସବର ନାମ ଆମେ ଦେଖିବାକୁ ପାଉଁ, ଯାହାର ନାମ ହେଉଛି 'ସମନ' । ଏଥିରେ ସ୍ତ୍ରୀପୁରୁଷମାନଙ୍କ ମଧ୍ୟରେ ଅବାଧ ମିଳାମିଶା ହେଉଥିଲା । ସେମାନେ ଉତ୍ସବ-କ୍ଷେତ୍ରରେ ରାତ୍ରିଟି କଟାଇ ଦେଉଥିଲେ । ଯୁବକ-ଯୁବତୀମାନଙ୍କ ପାଇଁ ଏହି ଉତ୍ସବଟି ଥିଲା ଖୁବ୍ ସ୍ୱାଦ୍ୟ । ସ୍ତ୍ରୀମାନେ ଏଥିରେ ସେମାନଙ୍କ ପତିଚୟନ କରୁଥିଲେ । ଏ ସମ୍ପର୍କରେ ଉପେନ୍ଦ୍ର ଶରଣ ଉପାଧ୍ୟାୟ ତାଙ୍କର ସହମତ ପ୍ରକାଶ କରି କୁହନ୍ତି

> A noted fair was the 'samana' where maidens flocked to make merry and find a husband. They even spent their nights there. (୭୮)

ମ୍ୟାକ୍‌ଡୋନେଲ ଓ କଥ୍‌ଙ୍କ ମତରେ ସ୍ତ୍ରୀମାନେ ମନୋରଞ୍ଜନ ପାଇଁକି, କବିମାନେ ପ୍ରତିଦ୍ୱନ୍ଦ୍ୱିତା ପାଇଁକି, ଧନୁର୍ଦ୍ଧରମାନେ ଧନୁର୍ବିଦ୍ୟାରେ ପୁରସ୍କାର ଲଭ ପାଇଁକି ଏବଂ ରଥୀମାନେ ରଥଦୌଡ଼ ପ୍ରତିଯୋଗିତା ପାଇଁକି ଏହି ଉତ୍ସବରେ ଯୋଗ ଦେଉଥିଲେ । ଏହି ଉତ୍ସବ ସକାଳ ହେବା ପର୍ଯ୍ୟନ୍ତ ଚାଲୁଥିଲା (୭୯) କେଗି (Kaegi) ଏହି ଉତ୍ସବ ସମ୍ପର୍କରେ ଏକ ଖୁବ ରୋଚକ ବର୍ଣ୍ଣନା ଦେଇଛନ୍ତି । ତାଙ୍କ ଭାଷାରେ

> Wives and maidens attire themselves in gay robes and set forth to the joyous feast; youths and girls hasten to the meadow when forest and field are clothed in fresh verdure, to take part in the dance. Cymbals sound, and seizing each other, lads and damsels whirl about until the ground vibrates and clouds of dust envelop the gaily moving throng. (୭୯-କ)

ଏଭଳି ଏକ ଉତ୍ସବ ରାମାୟଣ-ଯୁଗରେ ଥିଲି କି ନାହିଁ କହିହେବ ନାହିଁ; କାରଣ ତହିଁରେ 'ସମନ' ନାମର ଉଲ୍ଲେଖ ହିଁ ନାହିଁ । କିନ୍ତୁ ତହିଁରେ 'ସମାଜ' ଓ 'ଉତ୍ସବ' ଶବ୍ଦଗୁଡ଼ିକର ଉଲ୍ଲେଖ ଅଛି । ଉଦାହରଣ ସ୍ୱରୂପ ଦଶରଥଙ୍କ ମୃତ୍ୟୁ ପରେ ମାର୍କଣ୍ଡେୟ ଆଦି ଋଷିଗଣ ଆସି ବଶିଷ୍ଠଙ୍କୁ ସାକ୍ଷାତ୍ କରିଛନ୍ତି ଏବଂ ପୁରୋହିତ୍ କାହାଙ୍କୁ ଜଣଙ୍କୁ ଅଯୋଧ୍ୟାର ରାଜପଦରେ ଅଭିଷିକ୍ତ କରାଇବା ପାଇଁ ଅନୁରୋଧ କରିଛନ୍ତି । ଅରାଜକ ରାଜ୍ୟର କ'ଣ କ'ଣ ଦୋଷ ସେ ସମ୍ପର୍କରେ ଉଲ୍ଲେଖ କରିବାକୁ ଯାଇ ସେମାନେ କହିଛନ୍ତି

> ନାରାଜକେ ଜନପଦେ ପ୍ରହୃଷ୍ଟନଟନର୍ତ୍ତକାଃ ।
> ଉତ୍ସବାଶ୍ଚ ସମାଜାଶ୍ଚ ବର୍ଦ୍ଧନ୍ତେ ରାଷ୍ଟ୍ରବର୍ଦ୍ଧନାଃ ॥ (୬୦)

ଅର୍ଥାତ୍ ରାଜ୍ୟ ଅରାଜକ ହେଲେ ନାଟୁଆମାନେ ହୃଷ୍ଟମନା ହୁଅନ୍ତି ନାହିଁ ଏବଂ ରାଷ୍ଟ୍ରର ଅଭିବୃଦ୍ଧିରେ ସହାୟକ ଉତ୍ସବ ଓ ସମାଜସମୂହ ଅନୁଷ୍ଠିତ ହୁଏନାହିଁ । ଉକ୍ତ ଗ୍ରନ୍ଥର ଆଉ ଠାଏ (୨।୪୭।୧୩) ଅଯୋଧ୍ୟାର ଅଧିବାସୀମାନେ ଆଉ ଏଣିକି ବିବାହ, ଦାନ, ଯଜ୍ଞ, ସମାଜ ଆଦିରେ ରାମଙ୍କୁ ଦେଖିବାକୁ ପାଇବେ ନାହିଁ ବୋଲି ହୃଦୟର ଦୁଃଖ ପ୍ରକାଶପୂର୍ବକ ବିଳାପ କରୁଥିବାର ବର୍ଣ୍ଣନା ଅଛି । ପୁଣି ଆଉ ଠାଏ (୧।୫।୧୨) ଅଯୋଧ୍ୟାପୁରୀର ବର୍ଣ୍ଣନା ପ୍ରସଙ୍ଗରେ କୁହାଯାଇଛି, ସାରା ନଗରୀ 'ବଧୂନାଟକସଂଘ' ଦ୍ୱାରା ଭରପୂର ହୋଇ ରହିଥିଲା । ଏହାର ତାତ୍ପର୍ଯ୍ୟ ହେଲା, ସେଠାରେ ଅନେକ ନାଟ୍ୟମଣ୍ଡଳୀ ଥିଲେ ଯେଉଁମାନଙ୍କରେ କି କେବଳ ସ୍ତ୍ରୀମାନେ ସଭ୍ୟା ଥିଲେ ଏବଂ ସେମାନେ ନୃତ୍ୟ, ଗୀତ, ଅଭିନୟ ଆଦି ପ୍ରଦର୍ଶନ କରୁଥିଲେ ।

'ସମାଜ'ର ଅର୍ଥ ପାଣିନି ସ୍ପଷ୍ଟ କରିଦେଇ କହିଛନ୍ତି ଯେ ଏହା ହେଉଛି ଏକ ବଡ଼ ଜନସମାଗମ । (୬୧) ଏହାର ପାଲି ପ୍ରତିରୂପ ହେଉଛି 'ସମଜ୍ଜ' । ପାଲି ବୌଦ୍ଧ ଜାତକ ଲେଖମାନଙ୍କରେ ଏହି 'ସମଜ୍ଜସମୂହ' ଅନୁଷ୍ଠିତ ହେଉଥିବାର ଭୂରି ଭୂରି ପ୍ରମାଣ ଆମେ ପାଉଥାଉଁ । ଏବେ ମଧ୍ୟ ଆମେ ପାଲି ଦ୍ୱାରା ବହୁପ୍ରଭାବିତ ଓଡ଼ିଆ ଭାଷାରେ ଯାତ୍ରାଦଳର ନାଟକକୁ 'ସମାଜ' ବୋଲି କହୁଥାଉଁ । ରାମାୟଣରେ 'ସମାଜ' ଓ 'ଉତ୍ସବ'କୁ ରାଷ୍ଟ୍ରର ଅଭିବୃଦ୍ଧିରେ ସହାୟକ ବୋଲି କହିବା ଦ୍ୱାରା ଏହି ଅନୁଷ୍ଠାନଗୁଡ଼ିକର ଗୁରୁତ୍ୱ ପ୍ରତିପାଦିତ ହେଉଛି । ଏ ପ୍ରକାର ଗୁରୁତ୍ୱ ଶତାବ୍ଦୀ ଶତାବ୍ଦୀ ଧରି ଭାରତରେ ଦିଆହୋଇ ଆସିଛି । ରାଜାମହାରାଜାମାନେ ସେମାନଙ୍କ ଯୋଜନାଗୁଡ଼ିକ ମଧ୍ୟରେ 'ସମାଜ' ଓ 'ଉତ୍ସବ'ର ପରିପ୍ରଚାର, ପରିପ୍ରସାର ଓ ସଂରକ୍ଷଣକୁ ସ୍ଥାନ ଦେଇ ଆସିଛନ୍ତି । ସେଥିପାଇଁ ତ ଖାରବେଳଙ୍କ (ଖ୍ରୀ: ପୂ: ୨ୟ ଶତାବ୍ଦୀ) ହାତୀଗୁମ୍ଫା ଶିଳାଲେଖରେ 'ଉସବ' (ଉତ୍ସବ) ଉପରେ ଗୁରୁତ୍ୱ

ଦିଆ ଯାଇଛି । ତତ୍ପୂର୍ବରୁ ଖୋଦିତ ଅଶୋକଙ୍କ ପ୍ରଥମ ଶିଳାଲେଖରେ ମଧ୍ୟ ଯଜ୍ଞ ଓ ଧର୍ମୀୟ ଅନୁଷ୍ଠାନମାନଙ୍କ ଉପରେ ଗୁରୁତ୍ୱ ଦିଆ ହୋଇ ଆସିଛି । ଅତଏବ, ଏହି ପରମ୍ପରା ରାମାୟଣକାଳୀନ ସମାଜରେ ରକ୍ଷା କରାଯାଇଥିଲା ବୋଲି ଆମକୁ ମାନିନେବାକୁ ପଡ଼ିବ । ଅଶ୍ୱମେଧ ଯଜ୍ଞରେ ଯେ 'ନଟ' ଓ 'ନର୍ତ୍ତକ'ମାନେ ନିଯୋଜିତ ହେଉଥିଲେ ତାହାର ନିଦର୍ଶନ ମଧ୍ୟ ଆମେ ରାମାୟଣରେ (୧ । ୧୩ । ୭) ପାଇଥାଉଁ । ରାମାୟଣରେ ନଟ ନାମ ସହିତ ସର୍ବଦା ନର୍ତ୍ତକ ନାମକୁ ଯୋଡ଼ା ଯାଇଛି । ଏଥିରୁ ଜଣାପଡ଼ୁଛି ଯେ ଅଭିନୟ ସହିତ ନୃତ୍ୟ ସର୍ବଦା ସମ୍ପୃକ୍ତ ଥିଲା । ବ୍ରକିଙ୍ଗ୍‌ଟନ୍ ମଧ୍ୟ ଏହି ମତର ପୌଷ୍ଟିକତା ସାଧନ କରିଥାନ୍ତି । ତାଙ୍କ ଭାଷାରେ

> The close links between acting and dancing are illustrated by the fact that the standard terms for actors and dancers are related and are also often compounded in such descriptions (nata, actor, nartaka, dancer). (୭୨)

ଯେଉଁ କେତେକ ପଣ୍ଡିତ କୁହନ୍ତି ଯେ ନାଟ୍ୟକଳା ଭାରତରେ ନଥିଲା ଏବଂ ଗ୍ରୀକ୍‌ମାନେ ତାହା ଏଠାକୁ ଆଣିଛନ୍ତି, ସେମାନଙ୍କ ଯୁକ୍ତି ରାମାୟଣସ୍ଥ ଉପରୋକ୍ତ ବର୍ଣ୍ଣନା ଦ୍ୱାରା ନିଶ୍ଚିତ ଭାବରେ ଖଣ୍ଡିତ ହେଉଛି । ପ୍ରକୃତ କଥା ହେଲା, ନାଟ୍ୟକଳା ଭାରତରେ ଥିଲା ଏବଂ ପରବର୍ତ୍ତୀ କାଳରେ ଗ୍ରୀକ୍ ନାଟ୍ୟକଳାର ପ୍ରଭାବ ଏହା ଉପରେ ପଡ଼ିଅଛି । 'ଯବନିକା' ଶବ୍ଦର ଉଦ୍ଭବ ଏହାର ଏକ ନିଦର୍ଶନ ।

ବୈଦିକ ଯୁଗରୁ ପ୍ରସିଦ୍ଧି ଲାଭ କରି ଆସିଥିବା ଦ୍ୟୂତ-କ୍ରୀଡ଼ା ରାମାୟଣ-କାଳୀନ ସମାଜରେ ମଧ୍ୟ ଅନୁରୂପ ଲୋକପ୍ରିୟତା ଅର୍ଜନ କରିଥିଲା । ଋଗ୍-ବେଦରେ (୫।୩) ଦ୍ୟୂତ-କ୍ରୀଡ଼ାରେ ସକଳ ସମ୍ପତ୍ତି ହାରି ଯାଇଥିବା ବ୍ୟକ୍ତିଟି କପରି ବିକଳ ଭାବରେ କ୍ରନ୍ଦନ କରୁଛି, ତାହାର ବର୍ଣ୍ଣନା ଆମେ ଦେଖିବାକୁ ପାଇଥାଉଁ । ସେଥିପାଇଁ ତହିଁରେ ଏହି କ୍ରୀଡ଼ାକୁ ବାରମ୍ବାର ନିନ୍ଦା କରା ଯାଇଥିଲା । ତାହା ସତ୍ତ୍ୱେ ଲୋକମାନଙ୍କଠାରୁ ଏହି କ୍ରୀଡ଼ାର ନିଶା ଛୁଟିଲା ନାହିଁ । ବରଂ ଏହା କ୍ରମେ କ୍ରମେ ବଢିବାକୁ ଲାଗିଲା । ଏହା ସର୍ବଦା ପଣ ରଖାଯାଇ ଖେଳା ଯାଉଥିବାରୁ ଏତଦ୍ଦ୍ୱାରା ଖେଳାଳୀମାନେ ଅନେକ ସମୟରେ ସର୍ବସ୍ୱାନ୍ତ ହୋଇ ଯାଉଥିଲେ । ମହାଭାରତ-ଯୁଗରେ ନିଜର ରାଜ୍ୟ ଓ ସକଳ ଧନସମ୍ପତ୍ତି ଦ୍ୟୂତ-କ୍ରୀଡ଼ାରେ ଲଗାଇ ହାରିବା ପରେ ରାଜା ଯୁଧିଷ୍ଠିର ତାଙ୍କ ଚାରି ଭାଇଙ୍କୁ ଏବଂ ସ୍ତ୍ରୀଙ୍କୁ ପଣ ସ୍ୱରୂପ ରଖିଥିଲେ ଏବଂ ଶେଷରେ ସେମାନଙ୍କୁ ମଧ୍ୟ ହରାଇଥିଲେ

ତାହା ସମସ୍ତଙ୍କୁ ଜଣା । ବାସ୍ତବିକ ଏହି ଦ୍ୟୁତକ୍ରୀଡ଼ା ହିଁ ଅଶେଷ ଧ୍ୱଂସ-ସାଧନକାରୀ ମହାଭାରତ ଯୁଦ୍ଧର ବୀଜବପନ କରିଥିଲା । ଏହି କ୍ରୀଡ଼ା ରାମାୟଣୀୟ ସମାଜରେ ମଧ୍ୟ ପ୍ରସିଦ୍ଧି ଲାଭ କରିଥିବା କଥା ଏହାର ନାମ ରାମାୟଣରେ ଏକାଧିକ ବାର ଉଲ୍ଲେଖରୁ ଜଣାପଡେ ।

ରାମାୟଣରେ (୧ । ୫ । ୧୩) 'ଅଷ୍ଟାପଦ' କ୍ରୀଡ଼ା ସମ୍ପର୍କରେ ଉଲ୍ଲେଖ ଅଛି । ଏହା ହେଉଛି ଚେସ୍ (chess) ଖେଳର ପୂର୍ବଜ । ଏହି ଖେଳ ଭାରତରୁ ଆରବ ଦେଶକୁ ଯାଇଥିଲା ଏବଂ ସେଠାରୁ ସ୍ପେନ୍ ବାଟେ ଇଉରୋପର ଅନ୍ୟାନ୍ୟ ଦେଶମାନଙ୍କୁ ଯାଇଥିଲା । ଇଂଲଣ୍ଡରୁ ତାହା ଚେସ୍ ରୂପରେ ପୁଣି ଭାରତକୁ ଫେରି ଆସିଛି । ଡି. ଆର୍. ଆର୍. ଦୀକ୍ଷିତାର୍ ମଧ୍ୟ ଏହି ମତର ପରିପୋଷଣ କରିଥାନ୍ତି । (୭୩)

ରାମାୟଣରେ (୨।୬୫।୨୪) 'ମଲ୍ଲକ୍ରୀଡ଼ା' ସମ୍ପର୍କରେ ମଧ୍ୟ ଉଲ୍ଲେଖ ଅଛି । ଏହି କ୍ରୀଡ଼ା ଏକ ସାଧାରଣ ଓ ଅତି ଲୋକପ୍ରିୟ କ୍ରୀଡ଼ା ଥିବାର ଅନୁମାନ କରାଯାଏ । ଏହା କେବଳ ମଲ୍ଲ ବୀରମାନଙ୍କ ମଧ୍ୟରେ ସୀମାବଦ୍ଧ ନଥିଲା, ସାଧାରଣ ଲୋକେ ମଧ୍ୟ ସ୍ୱାସ୍ଥ୍ୟର ଉନ୍ନତି ଲାଗି ଏହି କ୍ରୀଡ଼ାରେ ନିୟୋଜିତ ରହିଥିଲେ । ଅଯୋଧ୍ୟାବାସୀମାନଙ୍କୁ ବାଲ୍ମୀକି 'ହୃଷ୍ଟପୁଷ୍ଟ' ବୋଲି ରାମାୟଣରେ (୧ । ୬ । ୬) ଯେଉଁ ବର୍ଣ୍ଣନା କରିଛନ୍ତି, ତାହା ନିଶ୍ଚିତ ଭାବରେ ତାତ୍ପର୍ଯ୍ୟପୂର୍ଣ୍ଣ । ନିୟମିତ ଭାବରେ ମଲ୍ଲକ୍ରୀଡ଼ା ଓ ବ୍ୟାୟାମ କରିବା ଫଳରେ ଅଯୋଧ୍ୟାବାସୀମାନେ ଖୁବ୍ ହୃଷ୍ଟପୁଷ୍ଟ ଥିଲେ । ଶିକାର କରିବା ମଧ୍ୟ ଆମୋଦ-ପ୍ରମୋଦର ଆଉ ଏକ ମାଧ୍ୟମ ଥିଲା । ଏ ସଂପର୍କରେ ଶର୍ମାଙ୍କର ନିମ୍ନୋକ୍ତ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ

> Hunting, fowling and fishing appear to have been fairly popular even though addiction to them was censured. The fish was either hooked or killed with arrows. In hunting beaters and hounds were also employed. (୭୪)

ରାମାୟଣକାଳୀନ ସମାଜରେ ଲୋକେ ବହୁ ସଂଖ୍ୟାରେ ପଶୁପକ୍ଷୀମାନଙ୍କୁ ପାଳୁଥିଲେ ଏବଂ ସେଥିରୁ ଆନନ୍ଦ ପାଉଥିଲେ । ବିଶେଷ କରି ରାଜପ୍ରାସାଦ-ମାନଙ୍କରେ ଏମାନଙ୍କର ସଂଖ୍ୟା ଥିଲା ଖୁବ୍ ଅଧିକ । ଅଯୋଧ୍ୟା ଓ ଲଙ୍କାରେ ବହୁ ସଂଖ୍ୟକ ପୋଷା ହରିଣ ଓ ପୋଷା ଚଢ଼େଇ ଥିବା କଥା ରାମାୟଣରେ ବର୍ଣ୍ଣିତ । ଆଉ ମଧ୍ୟ କେକୟରାଜଙ୍କ ରାଜପ୍ରାସାଦରେ ବହୁ ସଂଖ୍ୟକ ଜାତିଆ କୁକୁର ପୋଷା ହୋଇଥିବା କଥା ତହିଁରେ ବର୍ଣ୍ଣିତ । (୭୫)

ରାଜାଙ୍କ ଓ ଯୁବରାଜଙ୍କ ଅଭିଷେକ କାଳରେ ଖୁବ୍ ଆଡ଼ମ୍ବର ସହକାରେ ଉତ୍ସବମାନ ପାଳିତ ହେଉଥିଲା । ଅଶ୍ୱମେଧ, ରାଜସୂୟ ଆଦି ବିରାଟ୍ ଯଜ୍ଞାନୁଷ୍ଠାନ-ମାନଙ୍କରେ ମଧ୍ୟ ଅନୁରୂପ ଭାବରେ ବିରାଟ୍ ଉତ୍ସବମାନଙ୍କର ଆୟୋଜନ କରାଯାଉଥିଲା । ଦଶରଥଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥିବା ଅଶ୍ୱମେଧ ଯଜ୍ଞରେ କିପରି ରାଜ୍ୟର ସକଳ ସମ୍ପ୍ରଦାୟର ପ୍ରତିନିଧିତ୍ୱ କରୁଥିବା ଲୋକମାନେ ଆସି ଯୋଗ ଦେଇଥିଲେ, ତାହା ରାମାୟଣରେ (୧ । ୧୪) ଅତି ରୋଚକ ଭାବରେ ବର୍ଣ୍ଣିତ ।

ଆଉ ଗୋଟିଏ ପ୍ରଧାନ ଉତ୍ସବ ସେତେବେଳେ ଅନୁଷ୍ଠିତ ହେଉଥିଲା ଯାହାର ନାମ ହେଉଛି 'ଇନ୍ଦ୍ରଧ୍ୱଜ' । ଏଥିରେ ବୃଷ୍ଟିର ଦେବତା ଇନ୍ଦ୍ରଙ୍କୁ ପୂଜା କରାଯାଉଥିଲା । ସେତେବେଳକୁ ବୈଦିକ ଦେବତା ଇନ୍ଦ୍ର ତାଙ୍କ ସାର୍ବଭୌମ ଆସନରୁ ତଳକୁ ଖସି ଆସିଲେଣି ଏବଂ ବୃଷ୍ଟିର ଦେବତା ଭାବରେ ପୂଜା ପାଇଲେଣି । ଭାଦ୍ରବ ପୂର୍ଣ୍ଣିମା ଦିନ ଏହି ଉତ୍ସବ ଅନୁଷ୍ଠିତ ହେଉଥିଲା । ସାତ ଦିନ ପୂର୍ବରୁ ଗୋଟିଏ କାଠ କମ୍ବା ବାଉଁଶର ଖୁମ୍ବକୁ ଭୂମି ଉପରେ ଠିଆ କରାଇ ତାହାକୁ ସଜାଇ ରଖାଯାଉଥିଲା ତାହା ଯେପରି ମଣ୍ଡନଶିବ ସେଥିପାଇଁ ତାହାର ଚାରିପଟେ ଦଉଡ଼ି ବନ୍ଧା ଯାଉଥିଲା ଏବଂ ଏହି ଦଉଡ଼ିଗୁଡ଼ିକୁ ମଧ୍ୟ ସଜା ଯାଉଥିଲା । ଖୁମ୍ବଟିକୁ ମାଟିରେ ନପୋତି ଦଉଡ଼ିଗୁଡ଼ିକ ସାହାଯ୍ୟରେ ତାହାକୁ ସିଧାକରି ଭୂମି ଉପରେ ରଖା ଯାଉଥିଲା । ଉତ୍ସବ ଦିନ ପୂଜା ଶେଷରେ ଦଉଡ଼ି-ଗୁଡ଼ିକ କାଟି ଦିଆଯାଉଥିଲା ଯାହା ଫଳରେ କି ଖୁମ୍ବଟି ଖୁବ୍ ଜୋରରେ ଭୂମି ଉପରେ ପଡ଼ୁଥିଲା । ଖୁବ୍ ବଡ଼ ଶବ୍ଦ କରି ଏହା ଯେତେବେଳେ ଭୂମିରେ ପଡ଼ୁଥିଲା, ସେତେବେଳେ ଦର୍ଶକମାନେ ତହିଁରୁ ଆନନ୍ଦ ପାଉଥିଲେ । ଇନ୍ଦ୍ରଙ୍କ ଦେଇଥିବା ବର୍ଷା ଫଳରେ ଭଲ ଫସଲ ହୋଇଥିବାରୁ ଫସଲ କାଟିବା ସମୟରେ ତାଙ୍କୁ କୃତଜ୍ଞତା ଜଣାଇବା ଲାଗି ଏଭଳି ପୂଜାବିଧିର ବ୍ୟବସ୍ଥା କରା ଯାଇଥିଲା । (୭୬) ଏହି ଉତ୍ସବଟି ଲୋକମାନଙ୍କୁ ଖୁବ୍ ଆନନ୍ଦ ଦେଉଥିବା ଭଳି ମନେହୁଏ । ରାମାୟଣରେ ଠାଏ ରାମଙ୍କୁ 'ମହେନ୍ଦ୍ରଧ୍ୱଜସଂକାଶଃ' ବା 'ବଡ଼ ଇନ୍ଦ୍ରଧ୍ୱଜ ଉତ୍ସବ ଭଳି ଆନନ୍ଦମୟ' ବୋଲି କୁହାଯାଇଛି । (୭୬-କ) ଏଥିରୁ ଅନୁମିତ ହେବ ଉତ୍ସବମାନଙ୍କ ମଧ୍ୟରେ 'ଇନ୍ଦ୍ରଧ୍ୱଜ' ଉତ୍ସବର ପ୍ରାଧାନ୍ୟ ଓ ପ୍ରାଥମିକତା କିପରି ରହିଥିଲା । ଏହାରି ଅନୁକରଣରେ ଓଡ଼ିଶାରେ ଏବେ 'ଇନ୍ଦ୍ର ଉତ୍ସବ' ପାଳିତ ହେଉଛି ।

ରାମାୟଣକାଳୀନ ସମାଜରେ ପ୍ରଚଳିତ ସଂଗୀତ, ବାଦ୍ୟ ଓ ଅନ୍ୟାନ୍ୟ ସୂକ୍ଷ୍ମକଳା ସଂପର୍କରେ ଶର୍ମା ନିମ୍ନମତେ ମନ୍ତବ୍ୟ ଦେଇଥାନ୍ତି

As stated above fine arts were popular among the people. There are copious references to architecture, painting, dance, music and poetry. Of these the popularity of architecture is evidenced from graphic descriptions of splendid constructions and that of music from specific references to music, both vocal and instrumental, which are the most numerous, (୨୨)

କବିତା କହିଲେ ଶ୍ଳୋକକୁ ବୁଝାଉଥିଲା, ଯାହା ଥିଲା ଛନ୍ଦୋବଦ୍ଧ ଏବଂ ଯାହାକୁ ବାଦ୍ୟଯନ୍ତ୍ରର ତାଳରେ ମିଶାଇ ବୋଲି ହେଉଥିଲା । ବାସ୍ତବିକ ସ୍ୱୟଂ ବାଲ୍ମୀକି ତାଙ୍କ ରଚିତ ଶ୍ଳୋକକୁ ବୀଣାତନ୍ତ୍ରୀର ତାଳରେ ମିଶାଇ ବୋଲିହେବ ବୋଲି କହିଛନ୍ତି । ତାଙ୍କ ନିଜ ଭାଷାରେ

ପାଦବଦ୍ଧୋଽକ୍ଷରସମସ୍ତନ୍ତ୍ରୀଲୟସମନ୍ୱିତଃ ।
ଶୋକାର୍ତ୍ତସ୍ୟ ପ୍ରବୃତ୍ତୋ ମେ ଶ୍ଳୋକୋ ଭବତୁ ନାନ୍ୟ ଥା । (୨୮)

ଅର୍ଥାତ୍ ମୁଁ ଶ୍ଳୋକବିହ୍ୱଳ ହୋଇ ସମାନ ଅକ୍ଷରବିଶିଷ୍ଟ ଯେଉଁ ପାଦବଦ୍ଧ ଶ୍ଳୋକ ସୃଷ୍ଟି କଲି, ତାହା ବୀଣାର ତନ୍ତ୍ରୀରେ ବୋଲି ହେବ । ତାହା ଅନ୍ୟଥା ନହେଉ । ବାସ୍ତବିକ ଲବ ଓ କୁଶ ରାମଙ୍କ ସମ୍ମୁଖରେ ରାମାୟଣକୁ ବୀଣା-ତନ୍ତ୍ରୀର ଝଙ୍କାରର ତାଳେ ତାଳେ ବୋଲି ସମସ୍ତଙ୍କୁ ମୁଗ୍ଧ କରି ଦେଇଥିଲେ । ବୀଣାର ବ୍ୟବହାର ସେତେବେଳେ ଖୁବ୍ ଲୋକପ୍ରିୟ ଥିବାର ଜଣାପଡ଼େ । ଏହାଛଡ଼ା ନିମ୍ନଲିଖିତ ବାଦ୍ୟମାନଙ୍କ ବ୍ୟବହାରର ନିଦର୍ଶନ ମଧ୍ୟ ରାମାୟଣରୁ ମିଳିଥାଏ ।

କ) ଭେରୀ ... ରା, ୬ । ୩୮ । ୪୬ ।
ଖ) ଡିଣ୍ଡିମ ରା, ୫ । ୫ । ୧୩୪ ।
ଗ) ଦୁନ୍ଦୁଭି ... ରା, ୧ । ୯ । ୩୨ ।
ଘ) କୁମ୍ଭ ରା, ୬ । ୩୮ । ୫ ।
ଙ) ମୁରଜ ରା, ୨ । ୪୨ । ୪୧ ।
ଚ) ମୃଦଙ୍ଗ ରା, ୧ । ୫ । ୧୫ ।
ଛ) ପଣବ ... ରା, ୫ । ୫ । ୧୩୩ ।
ଜ) ପଟହ ରା, ୫ । ୫ । ୧୨୮ ।
ଝ) ଶଙ୍ଖ ... ରା, ୧ । ୯ । ୩୨ ।

ଖ) ଦକ୍ଷିଣ ସୁ, ୫ । ୧୨ । ୭୩ ।
ଚ) ଦେଶ ସୁ, ୫ । ୫ । ୧୫ ।
ଠ) କୋଣ ... ସୁ, ୭ । ୩୮ । ୪୭ ।

ହନୁମାନ ଯେତେବେଳେ ସୀତାଙ୍କୁ ଠାବ କରିବା ପାଇଁ ଲଙ୍କାର ରାଣୀମହଲ ମଧ୍ୟରେ ପ୍ରବେଶ କଲେ, ସେତେବେଳେ ସେ ସେଠାକାର ସ୍ତ୍ରୀମାନଙ୍କୁ ନୃତ୍ୟ, ଗୀତ ଓ ସୁରାପାନରେ ମଜ୍ଜିରହି ଅତି ନିଶ୍ଚେଷ୍ଟ ଭାବରେ ପଡ଼ିଥିବାର ଦେଖିଲେ । ବ୍ରକିଙ୍ଗ୍‌ଟନ୍ ଏହାକୁ ନିମ୍ନମତେ ବ୍ୟକ୍ତ କରନ୍ତି

Ravana's women, when Hanuman sees them in their inner apartments, are worn out by sporting, singing, dancing and drinking, (୭୯)

ଏହିସବୁ ଆଲୋଚନାରୁ ରାମାୟଣକାଳୀନ ସମାଜରେ ଲୋକେ କିପରି ବିଭିନ୍ନ ଆମୋଦପ୍ରମୋଦ ତଥା ଉତ୍ସବରେ ମାତିଥିଲେ ତଦ୍‌ବିଷୟରେ ସମ୍ୟକ୍ ଧାରଣା କରିହେବ । ବିବାହ ଥିଲା ଆଉ ଏକ ଉତ୍ସବ । ତାହାପାଇଁ ଅଧିକତର ବିଶଦ ଭାବରେ ଆଲୋଚନା କରିବାର ଆବଶ୍ୟକତା ଥିବାରୁ ଏହି ଆଲୋଚନା ପରବର୍ତ୍ତୀ ଏକ ସ୍ୱତନ୍ତ୍ର ପରିଚ୍ଛେଦରେ କରାଯାଉଛି ।

## ବସନ-ଭୂଷଣ

ବର୍ତ୍ତମାନ ରାମାୟଣକାଳୀନ ବସନଭୂଷଣ କଥା ବିଚାର୍ଯ୍ୟ । ବସନଭୂଷଣ ହେଉଛି ସଭ୍ୟତାର ନିଦର୍ଶନ । ଏହା ଦ୍ୱାରା ଦେହକୁ ସଜାଇବାରେ ମଣିଷ ସୁନ୍ଦର ଦିଶେ । ଦ୍ୱିତୀୟତଃ ଏହା ଖରା, ବର୍ଷା, ଶୀତ ଆଦିରୁ ତା'କୁ ରକ୍ଷା କରିଥାଏ । ଜଳବାୟୁର ବିଭିନ୍ନତା ନେଇ ପୋଷାକପତ୍ର ବଦଳିଥାଏ । ଅତି ଥଣ୍ଡା ଜାଗାରେ ଲୋକେ ପଶମ ଅଥବା ଲୋମଶ ଚମଡ଼ାର ପୋଷାକ ପିନ୍ଧିଥିବା ସ୍ଥଳେ ଗରମ ଜାଗାରେ ଲୋକେ ଅପେକ୍ଷାକୃତ ହାଲୁକା ପୋଷାକ ପିନ୍ଧିଥାନ୍ତି । ପୁଣି ଥଣ୍ଡା ଜାଗାରେ ଦେହକୁ ବହୁଳ ଭାବରେ ଆବୃତ କରି ରଖିବାକୁ ହୋଇଥାଏ ଏବଂ ଗରମ ଜାଗାରେ ଦେହକୁ ଆଂଶିକ ଭାବରେ ଆବୃତ କରି ରଖିବାକୁ ହୋଇଥାଏ । ଭାରତୀୟ ପୋଷାକପତ୍ରର ବିକାଶ ଓ ବିବର୍ତ୍ତନ ଠିକ୍ ଅନୁରୂପ ଆବଶ୍ୟକତାକୁ ଆଖି ଆଗରେ ରଖି ହୋଇଅଛି । ବୈଦିକ ଆର୍ଯ୍ୟମାନେ ସପ୍ତସିନ୍ଧୁ ଅଞ୍ଚଳରେ ଥିଲାବେଳେ ତତ୍ରତ୍ୟ ଅପେକ୍ଷାକୃତ ଶୀତଳ ଜଳବାୟୁ ସହିତ ସମତା ରକ୍ଷା କରିବାକୁ ଯାଇ ସେମାନଙ୍କର ପୋଷାକପତ୍ରକୁ ସାଧାରଣତଃ ପଶମ (ଊର୍ଣ୍ଣା)ରେ ତିଆରି କରୁଥିଲେ ଏବଂ କ୍ୱଚିତ୍ କାର୍ପାସ ଓ ରେଶମ ବସ୍ତ୍ର ପରିଧାନ କରୁଥିଲେ । ମୁଖ୍ୟତଃ ଖରାଦିନେ ସେମାନେ ଏଭଳି ହାଲୁକା ବସ୍ତ୍ର

ପରିଧାନ କରୁଥିଲେ । କିନ୍ତୁ କାଳକ୍ରମେ ସେମାନଙ୍କର ଗତି ପୂର୍ବ ଓ ଦକ୍ଷିଣକୁ ହେବା ଦ୍ୱାରା ସେମାନେ ଅପେକ୍ଷାକୃତ ଉଷ୍ଣତର ଜଳବାୟୁର ସଂସ୍ପର୍ଶରେ ଆସିଲେ । ତଦନୁଯାୟୀ ସେମାନଙ୍କ ପୋଷାକପତ୍ରରେ ପରିବର୍ତ୍ତନ ଦେଖାଯିବାକୁ ଲାଗିଲା । ସେମାନେ ଅଧିକରୁ ଅଧିକ କାର୍ପାସ ଓ ରେଶମ ବସ୍ତ୍ର ପରିଧାନ କରିବାକୁ ଲାଗିଲେ । କେବଳ ଅରଣ୍ୟବାସୀ ମୁନି-ଋଷିମାନେ ଅରଣ୍ୟର ଅପେକ୍ଷାକୃତ ଶୀତଳ ପରିବେଶ ସହିତ ସମତା ରକ୍ଷା କରିବାକୁ ଯାଇ ପୂର୍ବଭଳି ବଲ୍‌କଳ-ବସ୍ତ୍ର ଅଥବା ଅଜିନ-ବସ୍ତ୍ର (ମୃଗଚ୍ଛାଲ) ପରିଧାନ କରିବାକୁ ଲାଗିଲେ । ରାମାୟଣର ସୃଷ୍ଟି ବେଳକୁ ଆର୍ଯ୍ୟମାନେ ଅପେକ୍ଷାକୃତ ଉଷ୍ଣତର ପରିବେଶକୁ ଆସି ସାରିଲେଣି । ଆର୍ଯ୍ୟାବର୍ତ୍ତର ଦକ୍ଷିଣରେ ଥିବା ବାନର-ଦେଶ ଓ ରାକ୍ଷସ-ଦେଶରେ ମଧ୍ୟ ସେହି ପରିସ୍ଥିତି । ତେଣୁ ସେତେବେଳର ପୋଷାକପତ୍ର ଅପେକ୍ଷାକୃତ ହାଲୁକା ହେବା ସ୍ୱାଭାବିକ । ରାମାୟଣଯୁଗର ଠିକ୍ ଅବ୍ୟବହିତ ପୂର୍ବରୁ ବୈଦିକ ଆର୍ଯ୍ୟମାନଙ୍କର ପୋଷାକପତ୍ର ଯେମିତି ଥିଲା, ରାମାୟଣଯୁଗରେ ମଧ୍ୟ ପ୍ରାୟ ସେମିତି ଥିଲା । ତାହା ଠିକ୍ ସେମିତି ଥିଲା ସରଳ ଓ ହାଲୁକା । ଏ.ଏଲ୍ ବାସମ୍‌ଙ୍କ ଭାଷାରେ

> The garments worn from Vedic times onwards did not fundamentally differ from those worn by the Hindus in later times. Like most ancient peoples living in hot climates Indians usually wore lengths of cloth, draped around the body and over the shoulders, and fastened with a belt and pins. (୮୦)

ବୈଦିକ କାଳରେ ଆର୍ଯ୍ୟ ନର-ନାରୀ ଉଭୟଙ୍କର ଦୁଇଟି ଲେଖାଏଁ ବସ୍ତ୍ର ଥିଲା । ଗୋଟିଏ ହେଉଛି 'ଅଧୋବସ୍ତ୍ର' ଯାହାକୁ ଅଣ୍ଟାରୁ ତଳକୁ ପିନ୍ଧା ଯାଉଥିଲା । ତାହା ଆଧୁନିକ ଯୁଗର ଧୋତି । ଅପରଟି ହେଉଛି 'ଉତ୍ତରୀୟ' ଯାହା ଅଣ୍ଟା ଉପରକୁ ଯାଇ କାନ୍ଧରୁ ଝୁଲୁଥିଲା । ତାହା ଆଧୁନିକ ଯୁଗର ପୁରୁଷଙ୍କ ପାଇଁ ଓଢ଼ଣା ଏବଂ ସ୍ତ୍ରୀଙ୍କ ପାଇଁ ଦୁପଟ୍ଟା । ଏହା ବ୍ୟତୀତ ଆଉ ଗୋଟିଏ ତୃତୀୟ ବସ୍ତ୍ର ସେମାନେ ପିନ୍ଧୁଥିଲେ, ଯାହାର ନାଁ ହେଉଛି 'ପ୍ରାବାର' । ଏହା ଦେହକୁ ଭଲ ଭାବରେ ଆବୃତ କରି ରଖିଥାଏ ବୋଲି ଏହାର ନାଁ ଥିଲା 'ପ୍ରାବାର' । ଓଡ଼ିଆରେ 'ଘୋଡ଼ିହେଲା' ନାଁ ଟିର ଉଦ୍ଭବ ସମ୍ଭବତଃ ହୋଇଛି ଏଇଥିରୁ । ଏହା ଆଧୁନିକ ଯୁଗର ମୋଟା ଚଦର । ରାମାୟଣ ଯୁଗରେ ମୋଟାମୋଟି ଭାବରେ ଏହି ତିନି ପ୍ରକାର ବସ୍ତ୍ର ହିଁ ଉଭୟ ସ୍ତ୍ରୀ ଓ ପୁରୁଷମାନଙ୍କ ପାଇଁ ପ୍ରଚଳିତ ଥିଲା । ରାବଣ ସୀତାଙ୍କୁ ନେଇ

ଲଙ୍କାକୁ ନେଇ ଯାଉଥିବା ସମୟରେ ସେ (ସୀତା) କାନ୍ଦୁଥିବା ଅବସ୍ଥାରେ ଋଷ୍ୟମୂକ ପର୍ବତରେ ସୁଗ୍ରୀବ, ହନୁମାନ୍ ଆଦି ବାନରମାନଙ୍କୁ ଦେଖିବାକୁ ପାଇଥିଲେ । ସେମାନେ ହୁଏତ ତାଙ୍କର ସନ୍ଦେଶ ରାମଙ୍କୁ ଦେଇପାରିବେ, ଏହା ଭାବି ସେ ନିଜର କେତେକ ଅଳଙ୍କାର 'ଉତ୍ତରୀୟ'ରେ ବାନ୍ଧି ସେମାନଙ୍କ ପାଖରୁ ଆକାଶମାର୍ଗରୁ ତଳକୁ ଫିଙ୍ଗି ଦେଲେ । ଏ କଥା ରାମାୟଣରେ (୩।୫୪।୨) ବର୍ଣ୍ଣିତ । ଏଠାରେ ସ୍ପଷ୍ଟ ଭାବରେ 'ଉତ୍ତରୀୟ' ଶବ୍ଦଟି ଉଲ୍ଲିଖିତ । 'ଅଧୋବସ୍ତ୍ର'ର ନାମ ପୁରୁଷ କିମ୍ବା ନାରୀ କାହାରି କ୍ଷେତ୍ରରେ ଉଲ୍ଲିଖିତ ନାହିଁ । ତାହା ନହୋଇଥିଲେ ମଧ୍ୟ ଉଭୟଙ୍କ କ୍ଷେତ୍ରରେ ଦୁଇଟି ବସ୍ତ୍ର ପିନ୍ଧା ଯାଉଥିବା କଥାର ଉଲ୍ଲେଖ ଅଛି । ଉଦାହରଣ ସ୍ୱରୂପ ସୀତା ରାମଙ୍କ ସହିତ ବନବାସ କରିବାପାଇଁ ପ୍ରସ୍ତୁତ ହେଉଥିବା ସମୟରେ କୈକେୟୀ ତାଙ୍କ ପାଇଁ କୁଶରେ ତିଆରି ଦୁଇଟି ଅଙ୍ଗବସ୍ତ୍ର (କୁଶଚୀରେ) ଆଣି ଦେଇଥିବା କଥାର ଉଲ୍ଲେଖ ରାମାୟଣରେ (୨।୩୭।୧୦) ଅଛି । ଏଥିରୁ ଜଣାପଡ଼ୁଛି ଯେ ପୁରୁଷ ଓ ସ୍ତ୍ରୀ ଉଭୟ ବୈଦିକ କାଳ ଭଳି 'ଅଧୋବସ୍ତ୍ର' ଓ 'ଉତ୍ତରୀୟ' ଧାରଣ କରୁଥିଲେ ।

ଯଦିଓ ଦରଜିମାନଙ୍କ ବିଷୟ ରାମାୟଣରେ ଉଲ୍ଲିଖିତ, ସେମାନଙ୍କ ଦ୍ୱାରା ତିଆରି ହେଉଥିବା ପୋଷାକପତ୍ର (ଟ୍ରାଉଜର ଆଦି) ପିନ୍ଧା ଯାଉଥିବା କଥାର ଉଲ୍ଲେଖ କୌଣସି ସ୍ଥଳରେ ନାହିଁ । ଏ ପ୍ରକାର ସିଲାଇ-ପୋଷାକ ଥିଲା ବିଦେଶାଗତ । ଶକ, କୁଷାଣମାନେ ଏହାକୁ ଭାରତକୁ ଆଣିଥିଲେ । ସେମାନଙ୍କୁ ଅନୁସରଣ କରି କ୍ଷତ୍ରିୟମାନେ ତାହା ପିନ୍ଧିବାକୁ ଆରମ୍ଭ କରିଥିଲେ । ବାସମ୍‌ଙ୍କ ଭାଷାରେ

> Though all these garmants were unstitched, the art of stitching was not unknown, and women are often depicted wearing jactets or bodies (cnolaka, kanchuka). With the invasions of the Sakas and Kushans from central Asia trousers were introduced, and were in vogue among the ruling classes at least until Gupta times, for the Gupta kings are often shown on their coins as wearing them. (୮୯)

ଭରତ ଯେତେବେଳେ ରାମଙ୍କୁ ବନବାସରୁ ଫେରାଇ ଆଣିବା ଉଦ୍ଦେଶ୍ୟରେ ବନଭୂମି ଦିଗରେ ଅଗ୍ରସର ହୋଇଥିଲେ, ସେତେବେଳେ ସେ ସାଥିରେ ଚତୁରଙ୍ଗ

ସେନାବାହିନୀ ଧରି ଯାଇଥିଲେ । ସେହି ସେନାବାହିନୀ ସାଥିରେ ଅନ୍ୟାନ୍ୟ ଲୋକମାନଙ୍କ ସମେତ 'ସୂଚୀକର୍ମବିଶେଷଜ୍ଞମାନେ' (ସୂଚୀକର୍ମ-ବିଶେଷଜ୍ଞାଃ) ଓ 'କମ୍ବଳ ତିଆରି କରୁଥିବା ଲୋକମାନେ' (କମ୍ବଳକାରକାଃ) ଯାଇଥିବା କଥା ରାମାୟଣରେ (୨।୮୩ ୧୨-୧୩) ବର୍ଣ୍ଣିତ । ଏହି ସୂଚୀକର୍ମବିଶେଷଜ୍ଞମାନେ ସମ୍ଭବତଃ ଦରଜି ହୋଇପାରନ୍ତି । ଏମାନେ କେଉଁ କେଉଁ ପୋଷାକ କରିବା ପାଇଁ ଉଦ୍ଦିଷ୍ଟ ଥିଲେ ତାହା ସ୍ପଷ୍ଟ ଭାବରେ କୁହାଯାଇନାହିଁ । ଭରତଙ୍କ ସାଥିରେ ଦଶରଥଙ୍କ ରାଣୀମାନେ ଯାଇଥିଲେ । ଏହା ଛଡ଼ା ସୈନ୍ୟମାନଙ୍କ ମନୋରଞ୍ଜନ କରିବା ନିମିତ୍ତ ଅନେକ 'ରୂପାଜୀବା' (ବେଶ୍ୟା) ମଧ୍ୟ ଯାଇଥିଲେ । ସେମାନଙ୍କୁ କଞ୍ଚୁକ ବା ଚୋଳକ ଯୋଗାଇବା ଉଦ୍ଦେଶ୍ୟରେ ହୁଏତ ଏହି ଦରଜିମାନେ ଯାଇଥାଇ ପାରନ୍ତି ।

ରାମାୟଣୀୟ ନାରୀମାନଙ୍କ 'ଅଧୋବାସ' କିନ୍ତୁ ବୈଦିକ ନାରୀମାନଙ୍କ ଅଧୋବାସଠାରୁ ଥିଲା ଭିନ୍ନ । ବୈଦିକ ନାରୀମାନଙ୍କ ଅଧୋବାସ ସଂପର୍କରେ ଅବିନାଶଚନ୍ଦ୍ର ଦାସ କୁହନ୍ତି

> The common female dress, therefore, consisted of a garment worn in the shape of a skirt over the underwear called 'nivi' (୮୨)

ଏ ପୋଷାକଟି ହେଉଛି ଆଧୁନିକ ଘାଗରା ଭଳି ଯାହା କି ଉତ୍ତର-ଭାରତୀୟ ସ୍ତ୍ରୀମାନଙ୍କଦ୍ୱାରା ବହୁଳ ଭାବରେ ବ୍ୟବହୃତ । କିନ୍ତୁ ରାମାୟଣୀୟ ସ୍ତ୍ରୀମାନଙ୍କ ଅଧୋବାସ ଆଧୁନିକ ଶାଢ଼ୀ ସହିତ ତୁଳନୀୟ । ସୀତା ତାଙ୍କ ଉତ୍ତରୀୟଟିରେ ଅଳଙ୍କାର ବାନ୍ଧି ବାନରମାନଙ୍କୁ ଲକ୍ଷ୍ୟ କରି ଫିଙ୍ଗି ଦେଇଥିବା କଥା ପୂର୍ବରୁ କୁହାଯାଇଛି । ସେ ତେଣୁ ଲଙ୍କାସ୍ଥ ଅଶୋକବନରେ ରହିଲା ବେଳକୁ ଥିଲେ ଉତ୍ତରୀୟହୀନା । ତେଣୁ ସେ ଲଜ୍ଜା ଓ ନମ୍ରତାକୁ ରକ୍ଷା କରିବା ପାଇଁ ତାଙ୍କ ଦେହର ଉପରିଭାଗଟିକୁ ଭଲ ଭାବରେ ଆବୃତ କରି ରଖିବା ପାଇଁ ଅସମର୍ଥା ହୋଇ ଉଠିଥିଲେ । ସେତେବେଳେ ସେ ତାଙ୍କ ଅଧୋବାସର ଗୋଟିଏ ଅଂଶ ଦ୍ୱାରା ତାଙ୍କ ଶରୀରର ଉପରିଭାଗକୁ ଆବୃତ କରି ରଖିଥିବା କଥା ରାମାୟଣରେ ବର୍ଣ୍ଣିତ । ରାବଣର ଦୃଷ୍ଟିରୁ ରକ୍ଷା ପାଇବା ପାଇଁ ସେ ତାଙ୍କର ହରିଦ୍ରା ରଙ୍ଗର ଅଧୋବାସର ଗୋଟିଏ ଅଂଶରେ (ପୀତସ୍ୟାନ୍ତେନ ବାସସଃ) ସ୍ତନଯୁଗଳକୁ ଆବୃତ କରି ରଖିଥିଲେ । ଏଥିରୁ ଜଣା ପଡ଼ୁଛି, ଏହି ଅଧୋବାସଟି ଶାଢ଼ୀର ଆକାରବିଶିଷ୍ଟ ହୋଇଥିବ ଯାହା ଫଳରେ କି ଏହାକୁ ଅଣ୍ଟାରୁ ତଳକୁ ପିନ୍ଧି ହେଉଥିବ ଏବଂ ବକ୍ଷୋଦେଶକୁ ମଧ୍ୟ ଆବୃତ କରି ହେଉଥିବ ।

ବୈଦିକ କାଳ ଭଳି 'ନୀବି'ର ବ୍ୟବହାର ସମ୍ପର୍କରେ ରାମାୟଣରେ କୌଣସି ସ୍ଥାନରେ ଉଲ୍ଲେଖ ନାହିଁ । ବର୍ତ୍ତମାନ ପ୍ରଶ୍ନ ହୋଇପାରେ, ସୀତା ସେତେବେଳେ କଞ୍ଚୁକ ବା ଚୋଳକ ପିନ୍ଧୁନଥିଲେ କି ? ବୋଧହୁଏ ନୁହେଁ । କାରଣ କଞ୍ଚୁକ ଥିଲା ଏକ ସମ୍ଭ୍ରାନ୍ତ ନାରୀସୁଲଭ ପରିଚ୍ଛଦ ଏବଂ ସୀତା ସନ୍ନ୍ୟାସିନୀ-ଜୀବନ ଯାପନ କରୁଥିବାରୁ ସରଳ ପରିଚ୍ଛଦ ଧାରଣ କରିଥିଲେ । ବାସ୍ତବିକ, ଏବେ ମଧ୍ୟ ଆମ ଗାଁ ଗହଳରେ ନାରୀମାନେ ବହୁଳ ଭାବରେ କଞ୍ଚୁକ ବ୍ୟବହାର କରିନଥାନ୍ତି । ସୀତା ଯେଉଁ ଅଶୋକବନରେ ଥିଲା ବେଳେ ଥିଲେ ଏକବସ୍ତ୍ରା ଏବଂ ଏହି ବସ୍ତ୍ରଟି ଥିଲା ଗୋଟିଏ ହରିଦ୍ରା ରଙ୍ଗର ଶାଢ଼ୀ ଯାହା କି ଅତ୍ରି-ପତ୍ନୀ ଅନସୂୟା ତାଙ୍କୁ ବନବାସ ସମୟରେ ଦେଇଥିଲେ । ସୀତାଙ୍କର ଲଜ୍ଜାନିବାରଣର ଦାୟିତ୍ୱନିଷ୍ଠ ପ୍ରଚେଷ୍ଟାର ଆଉ ଏକ ଚିତ୍ର ଆମେ ରାମାୟଣରେ ଦେଖିବାକୁ ପାଇଥାଉଁ ଯେଉଁଠି ବାଲ୍ମୀକି କହିଛନ୍ତି

> ଊରୁଭ୍ୟାଂ ଉଦରଂ ଛାଦ୍ୟ ବାହୁଭ୍ୟାଂ ଚ ପୟୋଧରୌ ।
> ଉପାବିଷ୍ଟା ବିଶାଳାକ୍ଷୀ ରୁଦତୀ ବରବର୍ଣ୍ଣିନୀ ।। (୮୭)

ଅର୍ଥାତ୍ ସୁନ୍ଦର କାନ୍ତିଧାରିଣୀ ସୀତାଙ୍କର ଆଖି ଦୁଇଟି ଥିଲା ବଡ଼ ବଡ଼ । ସେ ନିଜ ଜଂଘ ଦୁଇଟି ଦ୍ୱାରା ପେଟକୁ ଏବଂ ବାହୁ ଦୁଇଟି ଦ୍ୱାରା ସ୍ତନଯୁଗଳକୁ ଘୋଡ଼େଇ ରଖି କାନ୍ଦି ଉଠୁଥିଲେ । 'ଉତ୍ତରୀୟ'ର ଆଉ ଗୋଟିଏ ସ୍ଥାନରେ (୨।୮୮।୧୫) ମଧ୍ୟ ଉଲ୍ଲେଖ ଆମେ ଦେଖିବାକୁ ପାଇଥାଉଁ । ରାମ ଓ ସୀତା ଯେଉଁ ସ୍ଥାନରେ ବନବାସର ପ୍ରଥମ ରାତ୍ରିଟି ବିତାଇଥିଲେ ଭରତ ତାଙ୍କ ମାତାମାନଙ୍କ ସହିତ ସେଠାକୁ ଯାଇଥିଲେ ଏବଂ ମାତାମାନଙ୍କୁ କହିଥିଲେ

> ଉତ୍ତରୀୟମିହାସକ୍ତଂ ସୁବ୍ୟକ୍ତଂ ସୀତୟା ତଦା ।
> ତଥା ହ୍ୟେତେ ପ୍ରକାଶନ୍ତେ ସକ୍ତାଃ କୌଶେୟତନ୍ତବଃ ।।

ଅର୍ଥାତ୍ ଏଠାରେ ସେତେବେଳେ ସୀତାଙ୍କ ଓଢ଼ଣିଟି ଲାଗି ଯାଇଥିଲା । ତାହା ପରିଷ୍କାର ଭାବରେ ଜଣାପଡ଼ୁଛି । ଏଠାରେ ଲାଗି ରହିଥିବା ରେଶମ-ସୂତାଗୁଡ଼ିକ ଚମକି ଉଠୁଛି । ସ୍ତ୍ରୀମାନେ ଉତ୍ତରୀୟକୁ ବେଳେ ବେଳେ ମୁଣ୍ଡର ଓଢ଼ଣି ଭାବରେ ବ୍ୟବହାର କରୁଥିଲେ ଏବଂ ଆଉ ବେଳେ ବେଳେ ବକ୍ଷୋବାସ ଭାବରେ ବ୍ୟବହାର କରୁଥିଲେ । ପୁରୁଷମାନଙ୍କ ପକ୍ଷରେ ଉତ୍ତରୀୟ ଦୁଇ କାନ୍ଧରେ ପଡ଼ି ତଳକୁ ଝୁଲୁଥିଲା । ଯଥାକ୍ରମେ ଦୁପଟ୍ଟା ଓ ଓଢ଼ଣାର ବ୍ୟବହାର ଭାରତରେ ଏବେ ମଧ୍ୟ ଅନୁରୂପ ଭାବରେ କରାଯାଉଛି ।

ପୂର୍ବରୁ ବୈଦିକ ପୋଷାକ 'ପ୍ରାବାର' କଥା କୁହାଯାଇଛି, ଯାହା କି ଘୋଡ଼ିହେବା ପାଇଁ ବ୍ୟବହୃତ ହେଉଥିଲା । ଏହାର ବ୍ୟବହାର ପୁରୁଷ ଓ ସ୍ତ୍ରୀ

ବ୍ୟବହାର କରୁଥିଲେ । ରାମାୟଣରେ 'ପ୍ରାବାର'ର ନାମୋଲ୍ଲେଖ ନାହିଁ । ଏହା ସ୍ଥାନରେ 'ପ୍ରାବରଣ'ର ନାମୋଲ୍ଲେଖ ଅଛି । ପ୍ରାବରଣ 'ପ୍ରାବାର'ର କାର୍ଯ୍ୟ କରୁଥିଲା । ରାମାୟଣରେ ଠାଏ (୩।୬।୬୯) ଚନ୍ଦ୍ର ଶୁଭ୍ରମାର ସୁନ୍ଦର ଘୋଡ଼ ହୋଇଥିବା କଥା (ଜ୍ୟୋତ୍ସ୍ନାପ୍ରାବରଣଶ୍ଚନ୍ଦ୍ରଃ) ବର୍ଣ୍ଣିତ । ପୁରୁଷ କିମ୍ବା ସ୍ତ୍ରୀ 'ପ୍ରାବରଣ' ଘୋଡ଼' ହୋଇଥିବା କଥାର ଅବଶ୍ୟ କେଉଁଠି ହେଲେ ଅବତାରଣା କରାଯାଇନାହିଁ । ତେବେ ଚନ୍ଦ୍ର 'ପ୍ରାବରଣ' ଦ୍ୱାରା ଆବୃତ ହୋଇଥିବାର ବର୍ଣ୍ଣନା ନିଶ୍ଚିତ ଭାବରେ ନର-ନାରୀଙ୍କ 'ପ୍ରାବରଣ'ର ବ୍ୟବହାରକୁ ଦେଖିବା ଉପରେ ଆଧାରିତ ହୋଇଥିବ । ଅତଏବ, ନର-ନାରୀ ଉଭୟ 'ପ୍ରାବରଣ'କୁ ବ୍ୟବହାର କରୁଥିଲେ ବୋଲି ଆମକୁ ଗ୍ରହଣ କରିବାକୁ ହେବ ।

ସ୍ତ୍ରୀମାନଙ୍କ ଭଳି ପୁରୁଷମାନେ ମଧ୍ୟ 'କଞ୍ଚୁକ' ପିନ୍ଧୁଥିଲେ । ସ୍ତ୍ରୀମାନଙ୍କର କଞ୍ଚୁକ ମୁଖ୍ୟତଃ ସ୍ତନବନ୍ଧନର କାର୍ଯ୍ୟ କରୁଥିଲା । ଅନ୍ୟ ପକ୍ଷରେ, ପୁରୁଷମାନଙ୍କର କଞ୍ଚୁକ ଥିଲା ଆଧୁନିକ ଜ୍ୟାକେଟ୍ ସହିତ ତୁଳନୀୟ । ଏହା ସିଲାଇ କରି ତିଆରି ହେଉଥିଲା । ଶର୍ମାଙ୍କ ଭାଷାରେ

Kanchuka is the only stitched garment mentioned in the epic. (୮୪)

ରାମାୟଣରେ ଠାଏ (୬।୧୫।୪୬) ବୀରମାନେ କଞ୍ଚୁକ ଓ ଉଷ୍ଣୀଷ (ଶିରୋଭୂଷଣ) ପିନ୍ଧିଥିବା'ର ଉଲ୍ଲେଖ ଅଛି । କେବଳ ବୀରମାନେ ନୁହନ୍ତି, ଅବଶ୍ୟକତା ଅନୁଯାୟୀ ଅନ୍ୟ ପୁରୁଷମାନେ ମଧ୍ୟ ଏହା ପିନ୍ଧୁଥିଲେ ।

କୈକେୟୀ କପଟ ସୀତାଙ୍କ ବନବାସୋପଯୋଗୀ ବସ୍ତ୍ର ଲାଗି ଦୁଇଟି 'କୁଶ-ଚୀର' ବା କୁଶରେ ତିଆରି ବସ୍ତ୍ର ମଗାଇଥିଲେ, ତାହା ପୂର୍ବରୁ ଆଲୋଚିତ । ଏଥିରୁ ଜଣାପଡ଼ୁଛି ଯେ ବନବାସୀ ମୁନିଋଷିମାନେ 'କୁଶ-ଚୀର' ପରିଧାନ କରୁଥିଲେ । ଏତଦ୍‌ବ୍ୟତୀତ ସେମାନେ 'ମୃଗାଜିନ' ମଧ୍ୟ ପରିଧାନ କରୁଥିଲେ । ବିଶ୍ୱାମିତ୍ର କଣାୟବସନ ପିନ୍ଧିଥିବା କଥା ରାମାୟଣରେ ଉଲ୍ଲିଖିତ । ମୁନି-ଋଷିମାନେ ଧଳା ରଙ୍ଗର ଲୁଗାକୁ କଣାରଙ୍ଗରେ ରଙ୍ଗେଇ ପିନ୍ଧୁଥିଲେ । ରାମାୟଣର ବର୍ଣ୍ଣନା (୩।୫।୧) ଅନୁଯାୟୀ କେତେକ ରାକ୍ଷସ ମଧ୍ୟ ମୃଗଚର୍ମ ପିନ୍ଧୁଥିଲେ । ସୁନ୍ଦରକାଣ୍ଡରେ ଠାଏ (୫।୬।୧୯) ଉଲ୍ଲେଖ ଅଛି ଯେ କୁମ୍ଭକର୍ଣ୍ଣମାନେ ଗାଈର ଚମଡ଼ାକୁ ଉତ୍ତରୀୟ ଭାବରେ ବ୍ୟବହାର କରୁଥିଲେ । ଅତଏବ ପଶୁଚର୍ମର ବସ୍ତ୍ର ଭାବରେ ବ୍ୟବହାର ଉଭୟ ଆର୍ଯ୍ୟ ଓ ଆର୍ଯ୍ୟେତର ଗୋଷ୍ଠୀ ମଧ୍ୟରେ ପ୍ରଚଳିତ ଥିଲା ।

ଲୋକେ ପାଦରେ ପିନ୍ଧିବା ପାଇଁ କଠଉ ଓ ଯୋତାକୁ ବ୍ୟବହାର କରୁଥିଲେ । ରାମାୟଣର ଗୋଟିଏ ପଙ୍କ୍ତିରେ (୨।୧୦୪।୭୫) କଠଉ ଓ ଯୋତା ଉଭୟର ଉଲ୍ଲେଖ (ପାଦୁକୋପାନଦ୍ଧର୍ଣ୍ଣୈବ) ଆମେ ଦେଖିଥାଉଁ । କଠଉ କାଠରେ ତିଆରି ହେଉଥିବା ବେଳେ ଯୋତା ଚମଡ଼ାରେ ତିଆରି ହେଉଥିଲା । ସମ୍ଭବତଃ ଋଷି–ବ୍ରାହ୍ମଣମାନେ ଏବଂ ସମାଜର ଅପେକ୍ଷାକୃତ ଦରିଦ୍ର ଶ୍ରେଣୀର ଲୋକେ କଠଉ ବ୍ୟବହାର କରୁଥିଲେ ଏବଂ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଯୋତା ବ୍ୟବହାର କରୁଥିଲେ । ରାଜପୁରୁଷମାନେ ଓ ନାଗରମାନେ ଯୋତା ବ୍ୟବହାର କରୁଥିଲେ । ରାମ ବନବାସ ସମୟରେ ଯେଉଁ ପାଦୁକାଯୁଗଳ ବ୍ୟବହାର କରୁଥିଲେ ଭରତ ତାହାକୁ ଆଣି ଅଯୋଧ୍ୟାର ରାଜସିଂହାସନରେ ରଖି ପୂଜା କରୁଥିବା କଥା ଏବଂ ତାହାର ସୂକ୍ଷ୍ମ ନିର୍ଦ୍ଦେଶରେ ରାଜ୍ୟଶାସନ କରୁଥିବା କଥା ସର୍ବଜନବିଦିତ ।

ବର୍ତ୍ତମାନ ବସ୍ତ୍ର କେଉଁଥିରେ ତିଆରି ହେଉଥିଲା ତାହା ବର୍ଣ୍ଣନା । ସାଧାରଣତଃ ଏହା ଆଜିକାଲି ଭଳି କାର୍ପାସ–ସୂତାରେ ତିଆରି ହେଉଥିଲା । ବସ୍ତ୍ର ଥିଲା ଅତି ସରଳ, କିନ୍ତୁ ତାହା ଥିଲା ସୂକ୍ଷ୍ମ ଓ କାନ୍ତିମୟ । ଲୋକେ ମଇଳା ଓ ମୋଟାସୋଟା ଲୁଗା ପିନ୍ଧିବାକୁ ଜମା ପସନ୍ଦ କରୁନଥିଲେ । ସେଥିପାଇଁ ଆମେ ରାମାୟଣରେ ଲୁଗା ସମ୍ପର୍କରେ ମହାର୍ହ ବସ୍ତ୍ର, ମହାର୍ହ ବସନ, ମହାର୍ହ ବାସସ୍, ଉତ୍ତମ ବସ୍ତ୍ର, ଦିବ୍ୟ ବସ୍ତ୍ର, ଦିବ୍ୟାମ୍ବର, ବରାମ୍ବର, ରୁଚିରାମ୍ବର, ପରମାମ୍ବର, ସୂକ୍ଷ୍ମ ବାସସ୍ ଆଦି ଶବ୍ଦଗୁଡ଼ିକର ଉଲ୍ଲେଖ ଦେଖିଥାଉଁ । ରାମାୟଣରେ ଠାଏ (୫।୫।୫୭) କୁହାଯାଇଛି ଯେ ରାବଣର ସ୍ତ୍ରୀମାନଙ୍କ ଲୁଗା ଏତେ ସରୁ ଥିଲା ଯେ ଶୋଇବା ସମୟରେ ସେମାନଙ୍କ ନିଃଶ୍ୱାସ–ପବନରେ ତାହା କମ୍ପିତ ହୋଇ ଉଡ଼ୁଥିଲା । ଧନୀ ଲୋକମାନଙ୍କ ଲୁଗାରେ ସୁନା ଓ ରୂପାର ଜରିକାମ କରାଯାଉଥିଲା । ରାମାୟଣର ବର୍ଣ୍ଣନା ଅନୁଯାୟୀ (୫।୫।୧୦୦) ରାବଣର ରାତିବାସରେ ସୁନାର ଜରିକାମ (ମହାରଜତବାସସମ୍) କରାଯାଇଥିଲା । ବ୍ୟାସଙ୍କ ମତରେ ସୁନା ଓ ରୂପାର ଜରିକାମ କରାଯାଇଥିବା ବସ୍ତ୍ରର ନାମ ଥିଲା 'ସମ୍ବିତବସ୍ତ୍ର' (୮୫) ରାବଣର ରକ୍ତବସ୍ତ୍ର ପ୍ରତି ଖାସ ମୋହ ଥିବା ପରି ମନେହୁଏ । ଅନ୍ୟ ରାକ୍ଷସମାନେ ମଧ୍ୟ ରକ୍ତବସ୍ତ୍ର ପିନ୍ଧୁଥିଲେ । ଏହାର ସୂଚନା ଆମେ ରାମାୟଣରେ ଅନେକ ସ୍ଥାନରେ (୩।୫୪।୯; ୫।୪୦।୨; ୬।୮୨।୨୨) ପାଇଥାଉଁ । ସୀତାଙ୍କର ହଳଦିଆ ରଙ୍ଗର ବସ୍ତ୍ର ପ୍ରତି ଅଧିକ ଆକର୍ଷଣ ଓ ମୋହ ଥିବାର ଜଣାପଡ଼େ । ରାମାୟଣର ଅନେକ ପଙ୍କ୍ତିରେ (୨।୧୦।୨୨; ୫।୨୧।୧୨) ଆମେ ଦେଖିବାକୁ ପାଇଥାଉଁ ଯେ ଆର୍ଯ୍ୟମାନଙ୍କ ପାଇଁ ଧଳା ରଙ୍ଗର ଲୁଗା ଥିଲା ଶୁଭକାରକ ଏବଂ କଳା

ରଙ୍ଗର ଲୁଗା ଥିଲା ଅଶୁଭକାରକ । ଅନୁରୂପ ଭାବରେ ଆଉ ଗୋଟିଏ ପଙ୍‌କ୍ତିରେ (୫।୨୫।୨୦) ରାକ୍ଷସମାନେ ହଳଦିଆ ରଙ୍ଗର ଲୁଗାକୁ ଅଶୁଭସୂଚକ ବୋଲି ଚିନ୍ତା କରୁଥିବାର ଉଲ୍ଲେଖ ଅଛି ।

ମୁନି-ଋଷିମାନେ କୃଶରେ ତିଆରି ଲୁଗା ବ୍ୟବହାର କରୁଥିଲେ ବୋଲି ପୂର୍ବରୁ କୁହାଯାଇଛି । ସେମାନଙ୍କ ଆଶ୍ରମରେ ଅଧ୍ୟୟନରତ ବ୍ରହ୍ମଚାରୀମାନେ ମଧ୍ୟ ସେହି ଲୁଗା ବ୍ୟବହାର କରୁଥିଲେ । ତାହା ବ୍ୟତୀତ ଅରଣ୍ୟରେ ଥିବା ଆର୍ଯ୍ୟେତର ବ୍ୟକ୍ତିମାନଙ୍କ ପାଇଁ ମଧ୍ୟ ଏହା ଥିଲା ଏକ ସାଧାରଣ ପରିଚ୍ଛଦ । ମୁନି-ଋଷିସମେତ ଅରଣ୍ୟବାସୀ ଆର୍ଯ୍ୟେତର ବ୍ୟକ୍ତିମାନଙ୍କର ଆଉ ଏକ ସାଧାରଣ ବ୍ୟବହାରୋପଯୋଗୀ ପରିଚ୍ଛଦ ଥିଲା ବଲ୍‌କଲ ବସ୍ତ୍ର । ପ୍ରାଚୀନ ଭାରତରେ କୃଶଚୀରର ପ୍ରଚଳନ ବିଷୟରେ ହେରୋଡୋଟସ୍ ମଧ୍ୟ ସ୍ୱମତ ପ୍ରକାଶ କରନ୍ତି । ତାଙ୍କ ଭାଷାରେ

> These Indians wear a garment made of rushes which when they have cut the reed from the river and beaten it, they afterwards plait like a mat and wear it like a coat (୮୫-କ)

ବ୍ୟକ୍ତିର ସମାଜରେ ସ୍ଥିତି ଓ ମର୍ଯ୍ୟାଦାକୁ ନେଇ ପୋଷାକପତ୍ରର ପରିବର୍ତ୍ତନ ହେଉଥିଲା । ବିଶେଷତଃ ଋଷି, ବ୍ରାହ୍ମଣ, ରାଜା, ମହାରାଜାମାନେ ପୃଥକ୍ ପୃଥକ୍ ପୋଷାକ ପିନ୍ଧୁଥିଲେ । ବ୍ୟାସ ଏ ସମ୍ପର୍କରେ ଯାହା କୁହନ୍ତି, ତାହା ଏଠାରେ ଉଲ୍ଲେଖନୀୟ

> There was some difference in the dress of various castes, especially the Brahmanas, so that it was possible to make out the caste of an individual on the basis of his habiliment. (୮୬)

ରାକ୍ଷସ ଇଲ୍ୱଲ ବ୍ରାହ୍ମଣ ବେଶ ଧରି ଅଗସ୍ତ୍ୟଙ୍କ ପାଖକୁ ଆସିଥିଲେ । ତେଣୁ ତା'ର ପ୍ରକୃତ ସ୍ୱରୂପ ଜଣାପଡ଼ୁ ନଥିଲା ଏବଂ ସେ ଜଣେ ବ୍ରାହ୍ମଣ ବୋଲି ଅଗସ୍ତ୍ୟଙ୍କର ବିଶ୍ୱାସ ଆସି ଯାଇଥିଲା । ଶଂସିତ ପଙ୍‌କ୍ତିଟି (୩।୧୧।୫୬) ହେଲା

"ଧାରୟନ୍ ବ୍ରାହ୍ମଣରୂପଂ ଇଲ୍ୱଲଃ ସଂସ୍କୃତଂ ବଦନ୍ ।"

ଅର୍ଥାତ୍ ଇଲ୍ୱଲ ବ୍ରାହ୍ମଣ ରୂପ ଧରି ସଂସ୍କୃତ ଭାଷାରେ କଥାବାର୍ତ୍ତା କରି କରି ଆସିଥିଲା । ରାମ-ଲକ୍ଷ୍ମଣ ସୀତାଙ୍କୁ ଖୋଜୁଥିବା ସମୟରେ ପମ୍ପା-ସରୋବର

ନିକଟରେ ହନୁମାନ୍ ବ୍ରାହ୍ମଣରୂପ ଧରି ସେ ବୃଦ୍ଧଙ୍କ ଆଗରେ ଆସି ଉପସ୍ଥିତ ହୋଇଥିଲେ । ରାବଣ ପରିବ୍ରାଜକ-ବେଶ ଧରି ସୀତାଙ୍କ କୁଟୀର-ଦ୍ୱାରରେ ଭିକ୍ଷା ଲାଗି ଠିଆ ହୋଇଥିଲା । ଏଥିରୁ ଜଣାଯାଉଛି ଯେ ବର୍ଣ୍ଣ-ଭେଦରେ ଓ ସାମାଜିକ ସ୍ଥିତିର ଭେଦରେ ବ୍ୟକ୍ତିର ପୋଷାକପତ୍ରରେ ଭିନ୍ନତା ଆସୁଥିଲା ଏବଂ ସେହି ଭିନ୍ନତାର ଭିତ୍ତିରେ ସେମାନଙ୍କୁ ଚିହ୍ନ ହେଉଥିଲା ।

ଭାରତୀୟମାନଙ୍କର ଅଳଙ୍କାର ପ୍ରତି ଥିବା ଆକର୍ଷଣ ହେଉଛି ପ୍ରବାଦାତ୍ମକ । ସେମାନଙ୍କ ଆଦି ଗ୍ରନ୍ଥ ବେଦରେ ବହୁ ପ୍ରକାର ଅଳଙ୍କାରର ନାମୋଲ୍ଲେଖ ଦେଖାଯାଏ । ପ୍ରତ୍ନତାତ୍ତ୍ୱିକ ଖୋଦନ ଫଳରେ ସିନ୍ଧୁ ସଭ୍ୟତାର ଯେଉଁ ଅବଶେଷମାନ ବାହାରିଛି ତନ୍ମଧ୍ୟରେ ବିଭିନ୍ନ ପ୍ରକାର ଅଳଙ୍କାରର ପ୍ରାଚୁର୍ଯ୍ୟ ଦେଖିବାକୁ ମିଳିଥାଏ । ରାମାୟଣ-ଯୁଗରେ ମଧ୍ୟ ସ୍ଥିତି ଥିଲା ଅନୁରୂପ । ଉଭୟ ପୁରୁଷ ଓ ସ୍ତ୍ରୀ ସେମାନଙ୍କ ଶରୀରକୁ ବିଭିନ୍ନ ଅଳଙ୍କାରରେ ସଜାଉଥିଲେ । ଉତ୍ସବାନୁଷ୍ଠାନ କିମ୍ବା ଯୁଦ୍ଧଯାତ୍ରାରେ ଯୋଦ୍ଧାମାନେ ସେମାନଙ୍କ ପଶୁମାନଙ୍କୁ, ରଥଗୁଡ଼ିକୁ ଏବଂ ଆବଶ୍ୟକତା ଅନୁଯାୟୀ ଅସ୍ତ୍ରଗୁଡ଼ିକୁ ମଧ୍ୟ ବିଭିନ୍ନ ଅଳଙ୍କାରରେ ସଜାଉଥିଲେ । ବୈଦ୍ୟ ଏହି ମତର ପୌଷ୍ଟିକତା ସାଧନ କରିଥାନ୍ତି । ତାଙ୍କ ବକ୍ତବ୍ୟ ହେଲା

> In the Ramayana period both males and females delighted in wearing ornaments and richness of India in precious stones and metals, and in pearls enabled them, perhaps engendered in them the desire to wear ornaments in profusion. (୮୭)

ପ୍ରବାଳ, ବୈଦୁର୍ଯ୍ୟ, ଇନ୍ଦ୍ରନୀଳ, ବଜ୍ର (ହୀରା), ସ୍ଫଟିକ, ମୁକ୍ତା, ଦନ୍ତ (ହାତୀଦାନ୍ତ) ଆଦି ରତ୍ନଗୁଡ଼ିକର ଉଲ୍ଲେଖ ରାମାୟଣରେ ଦେଖିବାକୁ ମିଳିଥାଏ । ଏଗୁଡ଼ିକ ଦ୍ୱାରା ନର-ନାରୀ ସେମାନଙ୍କ ଶରୀରକୁ ଅଳଙ୍କୃତ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଘରଦ୍ୱାର ଓ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥଗୁଡ଼ିକୁ ମଧ୍ୟ ଅଳଙ୍କୃତ କରୁଥିଲେ । ଲଙ୍କା ଓ ଅଯୋଧ୍ୟା ସହରର ଯେଭଳି ବର୍ଣ୍ଣନା ଆମେ ଦେଖୁ, ତହିଁରୁ ଅନୁମିତ ହୁଏ ଯେ ତତ୍କାଳୀନ ଶିଳ୍ପୀ ଓ କଳାକାରମାନଙ୍କୁ ଅଳଙ୍କରଣର କଳାକୌଶଳ ଭଲ ଜଣାଥିଲା । ବିଶେଷ କରି ଅଳଙ୍କୃତ ଲଙ୍କାର ବର୍ଣ୍ଣନା ଅତୀବ ଚମତ୍କାର । ଏହା ନଗରର ସ୍ୱର୍ଣ୍ଣପୁରୀ ନାମର ଯଥାର୍ଥତା ପ୍ରତିପାଦନ କରୁଛି । ଖାଲି ସ୍ୱର୍ଣ୍ଣ ନୁହେଁ ଅନ୍ୟାନ୍ୟ ବହୁମୂଲ୍ୟ ରତ୍ନ ଦ୍ୱାରା ମଧ୍ୟ ଏହା

ଥିଲା ଭରପୂର । ଉଦାହରଣସ୍ୱରୂପ ରାବଣର ପୁଷ୍ପକ ବିମାନ ସଂପର୍କୀୟ ଏକ ବର୍ଣ୍ଣନା ଏଠାରେ ଉଲ୍ଲେଖଯୋଗ୍ୟ । ବାଲ୍ମୀକି କହୁଛନ୍ତି

ନ ତତ୍ର କିଞ୍ଚିନ୍ନ କୃତଂ ପ୍ରଯତ୍ନତୋ
ନ ତତ୍ର କିଞ୍ଚିନ୍ନ ମହାର୍ଘରତ୍ନବତ୍ ।
ନ ତେ ବିଶେଷା ନିୟତାଃ ସୁରେଷ୍ୱପି
ନ ତତ୍ର କିଞ୍ଚିନ୍ନ ମହାବିଶେଷବତ୍ ।। (୮୮)

ଅର୍ଥାତ୍ ଅତି ଯତ୍ନର ସହିତ ତିଆରି ହୋଇନଥିବା ଏପରି କୌଣସି ଜିନିଷ ତହିଁରେ ନଥିଲା । ବିମାନଟିର ଏଭଳି କୌଣସି ଅଙ୍ଗ ନଥିଲା ଯାହାକି ବହୁମୂଲ୍ୟ ରତ୍ନସମୂହ ଦ୍ୱାରା ଜଡ଼ିତ ହୋଇନଥିଲା । ତହିଁରେ ଯେଉଁ ବିଶେଷତାଗୁଡ଼ିକ ଥିଲା, ସେଗୁଡ଼ିକ ଦେବତାମାନଙ୍କ ବିମାନସମୂହରେ ମଧ୍ୟ ନଥିଲା । ଅତି ବିଶେଷତାରେ ଯୁକ୍ତ ହୋଇନଥିବା ଏଭଳି କୌଣସି ଜିନିଷ ସେଥିରେ ନଥିଲା । ଏହିପରି ଭାବରେ ରାବଣର ଲଙ୍କାପୁରୀର ଯେଉଁଠି ଯାହା ବର୍ଣ୍ଣନା କରାଯାଇଛି, ସବୁଠାରେ ପୁରବାସୀମାନଙ୍କର ସୌନ୍ଦର୍ଯ୍ୟ-ବୋଧ ତଥା ଅଳଙ୍କରଣ ପ୍ରତି ମୋହର ପରାକାଷ୍ଠା ପ୍ରଦର୍ଶନ କରାଯାଇଛି । ଏହା ତତ୍କାଳୀନ ସମାଜର ଅଳଙ୍କାର ପ୍ରତି ଥିବା ଗଭୀର ଆକର୍ଷଣର ପରିଚାୟକ ।

ବର୍ତ୍ତମାନ ଶରୀରର ସୌନ୍ଦର୍ଯ୍ୟବର୍ଦ୍ଧନ ଲାଗି ବ୍ୟବହୃତ ହେଉଥିବା ବିଭିନ୍ନ ଅଳଙ୍କାର କଥା ବିଚାର୍ଯ୍ୟ । ଉଭୟ ପୁରୁଷ ଓ ନାରୀ ଅଳଙ୍କାର ପରିଧାନ କରୁଥିଲେ । କିନ୍ତୁ ନାରୀମାନେ ପୁରୁଷମାନଙ୍କଠାରୁ ବେଶି ଅଳଙ୍କାର ପିନ୍ଧୁଥିଲେ । ଆଳଙ୍କାର ଥିଲା ସୌନ୍ଦର୍ଯ୍ୟ-ବର୍ଦ୍ଧନର ଏକ ବଳିଷ୍ଠ ସାଧନ । ତେଣୁ ନିଜକୁ ପୁରୁଷ ନିକଟରେ ଅଧିକତର ଆକର୍ଷଣୀୟା କରାଇବା ଲାଗି ନାରୀକୁ ଅଧିକତର ଭାବରେ ଅଳଙ୍କୃତା ହେବାକୁ ପଡ଼ୁଥିଲା । ଏ ସଂପର୍କରେ ଗୋଟିଏ ବିଷୟ ଲକ୍ଷ୍ୟ କରିବାର କଥା ଯେ ନାସାରେ ବ୍ୟବହୃତ ହେଲା ଭଳି କୌଣସି ଅଳଙ୍କାରର ଉଲ୍ଲେଖ ରାମାୟଣରେ ନାହିଁ । ଏହି ନାସାଳଙ୍କାର ହେଉଛି ବିଶେଷ ଭାବରେ ନାରୀମାନଙ୍କ ଲାଗି ଉଦ୍ଦିଷ୍ଟ ଯାହା କି ସମ୍ଭବତଃ ରୀତିଯୁଗରେ ଭାରତରେ ପ୍ରଚଳିତ ହୋଇଥିଲା । ରାମାୟଣରେ ନାସାଳଙ୍କାରର ଅନୁଲ୍ଲେଖ ସଂପର୍କରେ ଶର୍ମାଙ୍କ ମତ ମଧ୍ୟ ଏହି ମତର ପୁଷ୍ଟିସାଧନ କରିଥାଏ । ସେ କୁହନ୍ତି

Valmiki does not mention any ornament of the nose. Perhaps piercing of the nose and wearing an ornament into it had not yet started (୮୯)

ପୁରୁଷମାନେ ମୁଣ୍ଡରେ ଯେଉଁ ଅଳଙ୍କାର ପିନ୍ଧୁଥିଲେ ତାହାର ନାମ ଥିଲା ମୁକୁଟ ବା କରୀଟ । ରାମାୟଣରେ (୬ । ୪୫ । ୨) ରାବଣର ସୁନାରେ ତିଆରି କରୀଟରେ ମୁକ୍ତା ଖଞ୍ଜା ହୋଇଥିବାର ବର୍ଣ୍ଣନା ଦେଖିବାକୁ ମିଳିଥାଏ । ସ୍ତ୍ରୀମାନଙ୍କ ଶିରୋଭୂଷଣର ନାମ ଥିଲା ଚୂଡ଼ାମଣି । ସୀତା ତାଙ୍କର ଚୂଡ଼ାମଣିଟିକୁ ହନୁମାନଙ୍କ ହସ୍ତରେ ରାମଙ୍କ ପାଖକୁ ଅଭିଜ୍ଞାନ ସ୍ୱରୂପ ପଠାଇଥିଲେ । କର୍ଣ୍ଣର ଅଳଙ୍କାରକୁ କୁହାଯାଉଥିଲା 'ଅବତଂସ' । ରାମାୟଣରେ କେବଳ 'କୁଣ୍ଡଳ' ନାମଧେୟ ଅବତଂସର ଉଲ୍ଲେଖ ରହିଅଛି । ରାମାୟଣର ବକ୍ତବ୍ୟ ଅନୁସାରେ (୫।୧୭।୩୨) ରାବଣ କୁଣ୍ଡଳ ଦ୍ୱାରା ବିଭୂଷିତ ହୋଇଥିଲା । ପୁଣି ଆଉ ଠାଏ (୫।୫।୬୧) ସ୍ତ୍ରୀମାନେ କୁଣ୍ଡଳ ପିନ୍ଧିଥିବାର ମଧ୍ୟ ଉଲ୍ଲେଖ ଅଛି । ସ୍ତ୍ରୀ ଓ ପୁରୁଷ ଉଭୟ ଯେ କୁଣ୍ଡଳ ପିନ୍ଧୁଥିଲେ ଏହି ସୂଚନା ଏଥିରୁ ମିଳୁଛି ।

ଗ୍ରୀବାଦେଶରେ ପିନ୍ଧୁଥିବା ଅଳଙ୍କାରର ନାମ ଥିଲା 'ଗ୍ରୈବେୟ' । ଏହା ଆଧୁନିକ ହାର ସହିତ ତୁଳନୀୟ । ଏହା ପ୍ରତି ମୋହ ଏ ପର୍ଯ୍ୟନ୍ତ ଭାରତୀୟ ପୁରୁଷ ଓ ନାରୀ ଉଭୟଙ୍କର ରହିଅଛି । ରାମାୟଣରେ (୩।୬୨।୨୭) 'ଗ୍ରୈବେୟ ଦ୍ୱାରା ମଣ୍ଡିତ ଗ୍ରୀବା' (ଗ୍ରୀବା ଗ୍ରୈବେୟଭୂଷିତା)ର ଉଲ୍ଲେଖ ଆମେ ପାଇଥାଉଁ । ଗ୍ରୀବାଦେଶରେ ପ୍ରଲମ୍ବିତ ହାରକୁ 'ଗ୍ରୈବେୟ' ବୋଲି ସାଧାରଣ ଭାବରେ କୁହାଯାଉଥିଲା । ଆଜିକାଲି ହାର ଯେମିତି ବିଭିନ୍ନ ପ୍ରକାରର ଅଛି, ସେତେବେଳେ 'ଗ୍ରୈବେୟ' ମଧ୍ୟ ଥିଲା ଠିକ୍ ସେମିତି ବିଭିନ୍ନ ପ୍ରକାରର । ହାର, ସ୍ରକ୍, ମାଳା ବା ମାଲ୍ୟମ୍, ହେମସୂତ୍ର, ଓ ନିଷ୍କ ଆଦି ଥିଲା ତାହାର ଅନ୍ତର୍ଭୁକ୍ତ । ସ୍ରକ୍‌ର ବର୍ଣ୍ଣନା ଆମେ ରାମାୟଣରେ ଅନେକଥର ଦେଖିବାକୁ ପାଇଥାଉଁ । ଯୁଦ୍ଧକାଣ୍ଡରେ ଏହାର ନିମ୍ନୋକ୍ତ ମତେ ବର୍ଣ୍ଣନା ଅଛି । ଏହି ବର୍ଣ୍ଣନା ହେଉଛି ରାବଣର କୁମ୍ଭକର୍ଣ୍ଣକୁ ଯୁଦ୍ଧଭୂମିକୁ ପଠାଇବା ଲାଗି ବେଶଭୂଷା କରାଇବା ସନ୍ଦର୍ଭରେ । ସେଠାରେ କୁହାଯାଇଛି

ଅଥାସନାତ୍ ସମୁତ୍ପତ୍ୟ ସ୍ରଜଂ ମଣିକୃତାନ୍ତରମ୍ ।
ଆବବନ୍ଧ ମହାତେଜା କୁମ୍ଭକର୍ଣ୍ଣସ୍ୟ ରାବଣଃ ॥ (୧୦)

ଅର୍ଥାତ୍ ଏହାପରେ ମହାତେଜସ୍ୱୀ ରାବଣ ନିଜ ଆସନରୁ ଉଠିଲା ଏବଂ ମଝି-ମଝିରେ ମଣି ଖଞ୍ଜା ହୋଇଥିବା ସୁନାର ମାଳାଟିଏ ନେଇ କୁମ୍ଭକର୍ଣ୍ଣର ଗଳାରେ ପିନ୍ଧାଇଦେଲା । ଏହି ବର୍ଣ୍ଣନାରୁ ସୂଚିତ ହେଉଛି ଯେ ସୁନା ହାର ମଧ୍ୟରେ ମଣି ଖଞ୍ଜା ଯାଉଥିଲେ ତାହାକୁ କୁହାଯାଉଥିଲା ସ୍ରକ୍ । ହାରର ବର୍ଣ୍ଣନା ମଧ୍ୟ ତା'ର ପରବର୍ତ୍ତୀ ଶ୍ଳୋକଟିରେ ଆମେ ଦେଖିବାକୁ ପାଇଥାଉଁ । ଏହାକୁ ଚନ୍ଦ୍ରଙ୍କ ଭଳି

ଝଟକୁଥିବା ମାଳା (ହାରଂ ଚ ଶଶିସଂକାଶମ୍) ବୋଲି କୁହାଯାଇଛି । ହୁଏତ ଏହା ରୂପାର ହାର ହୋଇପାରେ ଅଥବା ହୀରାର ହାର ହୋଇପାରେ କିମ୍ବା ହୀରା ଖଞ୍ଜା ହୋଇଥିବା ସୁନାର ହାର ହୋଇପାରେ । କିଷ୍କିନ୍ଧାକାଣ୍ଡରେ ଆମେ ମାଳାର ଉଲ୍ଲେଖ ଦେଖିଥାଉଁ । ବାଲୀଙ୍କର ଏହି ମାଳାଟିକୁ ଇନ୍ଦ୍ର ତାଙ୍କୁ ଦେଇଥିଲେ । ଏହା ଥିଲା ହୀରାଦାନ୍ତ ମଝିରେ ମଝିରେ ଖଞ୍ଜା ହୋଇଥିବା ଗୋଟିଏ ସୁନାର ହାର । ଦକ୍ଷିଣ-ଭାରତରେ ହାତୀଦାନ୍ତର ପ୍ରାଚୁର୍ଯ୍ୟ ଥିଲା । ତେଣୁ ସେଠାରେ ଏହି ମାଳା ବହୁଳ ଭାବରେ ବ୍ୟବହୃତ ହେଉଥିଲା । ହେମସୂତ୍ର ହେଉଛି ସୁନାର ଗୋଟିଏ ସରୁ ସୂତା ଆକାରର ହାର ଯାହାକି ବେକରେ ଝୁଲୁଥିଲା । ନିଷ୍କ ହେଉଛି ତତ୍କାଳୀନ ପ୍ରଚଳିତ ଏକ ମୁଦ୍ରାର ନାମ । ଏହା ଥିଲା ଗୋଟିଏ ସୁନାମୋହର । ଏହାକୁ ଗୁନ୍ଥି କରି ହାର ଆକାରରେ ପିନ୍ଧା ଯାଉଥିଲା । ଏହି ହାରକୁ ମଧ୍ୟ କୁହାଯାଉଥିଲା ନିଷ୍କ । ହାର ସାଧାରଣତଃ ଥିଲା ଦୀର୍ଘ ଓ ପ୍ରଲମ୍ବିତ । ପୁରୁଷକ୍ଷେତ୍ରରେ ଏହା ବକ୍ଷୋଦେଶକୁ ସ୍ପର୍ଶ କରୁଥିଲା ଏବଂ ନାରୀ କ୍ଷେତ୍ରରେ ଏହା ସ୍ତନଦ୍ୱୟରେ ନିହିତ ରହୁଥିଲା । ଯାହାର ମନୋହରଣ କରିବାର କ୍ଷମତା ଅଛି, ତାହାର ନାମ ହେଉଛି ହାର । ପୁରୁଷର ହାର ନାରୀର ମନୋହରଣ କରୁଥିଲା ଏବଂ ନାରୀର ହାର ପୁରୁଷର ମନୋହରଣ କରୁଥିଲା ।

ହସ୍ତରେ ଯେଉଁ ଅଳଙ୍କାରଗୁଡ଼ିକ ପିନ୍ଧା ଯାଉଥିଲା, ସେଗୁଡ଼ିକୁ ସାଧାରଣ ଭାବରେ କୁହାଯାଉଥିଲା 'ହସ୍ତାଭରଣମ୍' । ଅଯୋଧ୍ୟାରେ ହସ୍ତାଭରଣହୀନ (ଅହସ୍ତାଭରଣଃ) କେହି ବ୍ୟକ୍ତି ନଥିଲେ ବୋଲି ରାମାୟଣରେ (୧।୬।୧୧) ବର୍ଣ୍ଣିତ । ଆଙ୍ଗୁଠିରେ ପିନ୍ଧା ହେବା ଅଳଙ୍କାରକୁ କୁହାଯାଉଥିଲା 'ଅଙ୍ଗୁଳୀୟ' ବା 'ଅଙ୍ଗୁରୀୟ' । ଏଥିରେ ସାଧାରଣତଃ ସମ୍ପୃକ୍ତ ବ୍ୟକ୍ତିଙ୍କର ନାମ ଉତ୍କୀର୍ଣ୍ଣ ହେଉଥିଲା । ରାମଙ୍କ ନାମ ଉତ୍କୀର୍ଣ୍ଣ ହୋଇଥିବା ମୁଦ୍ରିକାଟି ନେଇ ହନୁମାନ୍ ଅଭିଜ୍ଞାନ ସ୍ୱରୂପ ସୀତାଙ୍କୁ ଅଶୋକବନରେ ଦେଇଥିବା କଥା ସର୍ବଜନବିଦିତ । ଏହା ଛଡ଼ା ହାତରେ 'ବଳୟ' (ବଳା) ଓ 'ପାରିହାର୍ଯ୍ୟ' (ବାଜୁବନ୍ଧ) ପିନ୍ଧା ଯାଉଥିବା କଥା ମଧ୍ୟ ରାମାୟଣରେ (୫।୫।୧୪୧; ୫।୫।୮୬) ବର୍ଣ୍ଣିତ । 'କେୟୂର' ଓ 'ଅଙ୍ଗଦ'କୁ ବାହୁରେ ପିନ୍ଧାଯାଉଥିଲା । ବିଭୀଷଣ ଯୁଦ୍ଧ ଯାତ୍ରା କରିବାର ଅବ୍ୟବହିତ ପୂର୍ବରୁ ଏହି ଅଳଙ୍କାରମାନ ପିନ୍ଧି ସେଥିପାଇଁ ପ୍ରସ୍ତୁତ ହେଉଥିବାର ବର୍ଣ୍ଣନା ଆମେ ରାମାୟଣରେ (୬।୭୫।୨୭) ଦେଖିବାକୁ ପାଇଥାଉଁ । ସୀତା ଆକାଶମାର୍ଗରେ ରାବଣ ଦ୍ୱାରା ଅପହୃତା ହୋଇ ଯାଉଥିବା ସମୟରେ ଋଷ୍ୟମୂକ ପର୍ବତସ୍ଥ ପଞ୍ଚବାନରଙ୍କୁ ଲକ୍ଷ୍ୟ କରି ଯେଉଁ ଅଳଙ୍କାରମାନ

ପିନ୍ଧୁଥିଲେ, ତନ୍ମଧ୍ୟରେ କେୟୂର ଅନ୍ତର୍ଭୁକ୍ତ ଥିଲା । ଏହି ସକଳ ହସ୍ତାଭରଣ ମଧ୍ୟ ଉଭୟ ସ୍ତ୍ରୀ ଓ ପୁରୁଷ ସମାନ ଆଗ୍ରହର ସହିତ ପରିଧାନ କରୁଥିଲେ ।

କଟି-ଦେଶରେ ଯେଉଁ ଅଳଙ୍କାର ପିନ୍ଧା ଯାଉଥିଲା, ତାହାର ନାଁ ଥିଲା 'ରଶନା' ବା 'ରଶନା-ଦାମ' । ଏହା ଦଉଡ଼ି ଭଳି ଜଂଘକୁ ଚାପି ରଖୁଥିଲା ବୋଲି ଏହାର ନାଁ ଥିଲା 'ରଶନା-ଦାମ' । ମନ୍ଥରାକୁ ପ୍ରଶଂସା କରିବାକୁ ଯାଇ କୈକେୟୀ ତା'ର ବିଭିନ୍ନ ରୂପ-ଗୁଣ ବିଷୟ ବଖାଣିଛନ୍ତି । ସେ ତା'ର ଜଙ୍ଘକୁ 'ରଶନା-ଦାମ' ଦ୍ୱାରା ଅଳଂକୃତ ବୋଲି (ରଶନା-ଦାମଭୂଷିତମ୍) କହିଛନ୍ତି । (୯୧) ଏହାର ଅନ୍ୟ ନାମ ହେଉଛି 'ଶ୍ରୋଣୀସୂତ୍ର' । କୁମ୍ଭକର୍ଣ୍ଣ ଏହିଭଳି ଏକ 'ଶ୍ରୋଣୀସୂତ୍ର' ଅଣ୍ଟାରେ ପିନ୍ଧି ଯୁଦ୍ଧକୁ ବାହାରିଥିବା କଥା ରାମାୟଣରେ (୬।୬୫। ୨୯) ବର୍ଣ୍ଣିତ । ରାବଣ ମଧ୍ୟ ସୁନାର 'ଶ୍ରୋଣୀସୂତ୍ର' ପିନ୍ଧିଥିବା କଥା ଉକ୍ତ ଗ୍ରନ୍ଥରେ (୬।୪୪।୨୩) ଆଉ ଠାଏ ଉଲ୍ଲିଖିତ । ଉପରୋକ୍ତ ନାମଗୁଡ଼ିକ ବ୍ୟତୀତ ଏହି ଅଣ୍ଟାସୂତାର ଆହୁରି ଅନେକ ନାମ ମଧ୍ୟ ଥିଲା । ସେଗୁଡ଼ିକ ହେଲା ମେଖଳା, ମେଖଳା-ଦାମ ଓ କାଞ୍ଚି । ଏହାକୁ ମଧ୍ୟ ପୁରୁଷ ଓ ସ୍ତ୍ରୀ ଉଭୟ ପରିଧାନ କରୁଥିଲେ ।

ପାଦରେ ବ୍ୟବହୃତ ହେଉଥିବା ଅଳଙ୍କାର ଏକାଧିକ ଥିଲା କି ନାହିଁ ତାହା କହିହେବ ନାହିଁ । କାରଣ ରାମାୟଣରେ କେବଳ ଏକମାତ୍ର ନୂପୁରର ନାମୋଲ୍ଲେଖ ଦେଖା ଯାଇଥାଏ । ଏହା କେବଳ ସ୍ତ୍ରୀମାନେ ପିନ୍ଧୁଥିଲେ । ସମ୍ଭ୍ରାନ୍ତ ବଂଶର ସ୍ତ୍ରୀମାନେ ସୁନାର ନୂପୁର ପିନ୍ଧୁଥିଲେ । ଅବଶ୍ୟ ଶୈଶବାବସ୍ଥାରେ ପୁଅ-ଝିଅ ଉଭୟ ଏହା ପିନ୍ଧୁଥିଲେ । ରାମ ଲକ୍ଷ୍ମଣଙ୍କ ସହିତ ସୀତାଙ୍କୁ ଖୋଜୁଥିବା ସମୟରେ ତାଙ୍କ ସୁନାର ନୂପୁରର ଘୁଙ୍ଗୁରଗୁଡ଼ିକ ଏଣେତେଣେ ବିଚ୍ଛୁଡ଼ି ହୋଇ ପଡ଼ିଥିବାର (କୀର୍ଣ୍ଣା କନକବିନ୍ଦବଃ) ଦେଖିବାକୁ ପାଇଥିବା କଥା ଅତି ରୋଚକ ଭାବରେ ରାମାୟଣରେ (୫।୬୪।୩୯) ବର୍ଣ୍ଣିତ ।

ଅରଣ୍ୟବାସୀମାନେ ଫୁଲର ବିଭିନ୍ନ ଆଭୂଷଣ ଧାରଣ କରୁଥିଲେ । କାରଣ ସେମାନଙ୍କ ପକ୍ଷରେ ବିଭିନ୍ନ ରତ୍ନାଭରଣ ଧାରଣ କରିବା ଆର୍ଥିକ ଦୃଷ୍ଟି-କୋଣରୁ ସମ୍ଭବପର ନଥିଲା । ଅପ୍ସରାମାନଙ୍କଠାରେ ଧନ-ରତ୍ନର କିଛି ଅଭାବ ନଥିଲେ ମଧ୍ୟ ସେମାନେ ନିଜ ନିଜର ରୂପକୁ ଅଧିକତର ସୌଷ୍ଠବାନ୍ୱିତ କରିବା ପାଇଁ ପୁଷ୍ପାଭରଣ ଧାରଣ କରୁଥିଲେ । ରମ୍ଭା ନିଜର ପ୍ରିୟତମଙ୍କ ପାଖକୁ ଅଭିସାରିକା ରୂପରେ ଆସୁଥିବା ସମୟରେ ଦିବ୍ୟ ପୁଷ୍ପାଭରଣରେ ସଜ୍ଜିତା ହୋଇଥିବା କଥା (ଦିବ୍ୟପୁଷ୍ପବିଭୂଷିତା) ରାମାୟଣରେ ଠାଏ (୬।୨୬।୧୫)

ବର୍ଣ୍ଣିତ । ଅରଣ୍ୟବାସ ସମୟରେ ରାମ ଓ ଲକ୍ଷ୍ମଣ ବନମାଳା ପିନ୍ଧି ଭ୍ରମଣ କରୁଥିବା ବିଷୟ ମଧ୍ୟ ରାମାୟଣରେ ଅନେକତ୍ର ବର୍ଣ୍ଣିତ । ଚିତ୍ରକୂଟରେ ଅବସ୍ଥାନ ସମୟରେ ରାମ ସୀତାଙ୍କ କେଶ-ଗୁଚ୍ଛକୁ ନାଗେଶ୍ୱର ଫୁଲରେ (କେସର) ସଜାଇଥିଲେ ।

ରାମାୟଣକାଳୀନ ସ୍ତ୍ରୀ-ପୁରୁଷ ଉଭୟ ନିଜ ଦେହକୁ ସୁବାସିତ କରି ରଖିବା ପାଇଁ ଗଛିରେ ଚନ୍ଦନ, କସ୍ତୁରି ଆଦି ବିଭିନ୍ନ ସୁଗନ୍ଧର ଅନୁଲେପନ କରୁଥିଲେ । ରାବଣ କୁମ୍ଭକର୍ଣ୍ଣ ଦେହରେ ତା'ର ଯୁଦ୍ଧଯାତ୍ରା ପୂର୍ବରୁ ବିଭିନ୍ନ ଦ୍ରବ୍ୟ ସୁଗନ୍ଧର ଅନୁଲେପନ କରିବା ପାଇଁ (ଦ୍ରବ୍ୟାନି ଚ ସୁଗନ୍ଧୀନି) ବ୍ୟବସ୍ଥା କରିଥିବା କଥା ରାମାୟଣରେ ଠାଏ (୬।୬୫।୬୭) ଉଲ୍ଲିଖିତ । ବାସନା ଜିନିଷମାନ ଲଗାଇ ଦେବା ସେତେବେଳେ ଗୋଟିଏ କଳା ଥିଲା ଏବଂ ଏହି କର୍ମ କରି କେତେକ ଲୋକ ଜୀବିକା-ନିର୍ବାହ କରୁଥିଲେ । ଏହି ଲୋକଙ୍କୁ କୁହାଯାଉଥିଲା 'ଅନୁଲେପକାଃ' । ଠିକ୍ ସେହିପରି ଭଲ ଭାବରେ ଗାଧୋଇ ଦେବା ଲୋକଙ୍କୁ କୁହାଯାଉଥିଲା 'ସ୍ନାପକାଃ' । ରାମାୟଣରେ (୨।୮୩।୧୨) ଏହି ଦୁଇ ପ୍ରକାର ଲୋକଙ୍କର ନାମୋଲ୍ଲେଖ ରହିଅଛି । ଅଞ୍ଜନା ରକ୍ତଚନ୍ଦନରେ ନିଜ ଦେହକୁ ଅନୁଲେପିତ କରାଇଥିଲେ ଏବଂ ତାଙ୍କର ସେହି ରୂପ-ବୈଭବ ଦେଖି ବାୟୁ-ଦେବତା ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ଉଭୟଙ୍କ ସଙ୍ଗମର ଫଳଶ୍ରୁତି ହେଉଛନ୍ତି ବୀର ହନୁମାନ୍ । ସ୍ତ୍ରୀଲୋକମାନେ ଅଲକ୍ତକ (ଅଳତା), ଲାକ୍ଷା ଓ ଚନ୍ଦନ ଲଗାଉଥିଲେ । ସେମାନେ ବକ୍ଷୋଦେଶରେ କସ୍ତୁରି ଦ୍ୱାରା ଚିତ୍ରାଙ୍କିତ କରୁଥିଲେ । ବିଭିନ୍ନ ପୁଷ୍ପ-ରେଣୁର ମିଶ୍ରଣରେ ଗୋଟିଏ ଅନୁଲେପନ ତିଆରି କରାଯାଉଥିଲା, ଯାହାର ନାମ ଥିଲା 'ଭକ୍ତି' । ଏହା ଥିଲା ଖୁବ୍ ସୁବାସିତ । ଏହାକୁ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଅନୁଲେପନ ଭାବରେ ବ୍ୟବହାର କରିପାରୁଥିଲେ । ରାବଣ ଏଭଳି 'ଭକ୍ତି' ଦ୍ୱାରା ଅନୁଲେପିତ ହୋଇ ରାଜସିଂହାସନରେ ବସିଥିବା କଥା ରାମାୟଣରେ (୫।୪୯।୪) ବର୍ଣ୍ଣିତ । ଏ ସମ୍ପର୍କରେ 'ବିବିଧାଭିଷ୍ଟ ଭକ୍ତିଭିଃ' ପଙ୍କ୍ତିଟି ଦ୍ରଷ୍ଟବ୍ୟ । ରାମାୟଣରେ ମଧ୍ୟ ପ୍ରସାଧନର କେତେକ ସାମଗ୍ରୀ, ଯଥା, ଦର୍ପଣ, କଙ୍କତ (ପାନିଆ), କୁର୍ଚ୍ଚ (ଦାନ୍ତକାଠି), ବାସ-ଚୂର୍ଣ୍ଣ (ସ୍ନାନ ଲାଗି ଆବଶ୍ୟକ ଚୂର୍ଣ୍ଣ), ଚନ୍ଦନ କଲ୍କ (ଚନ୍ଦନ), ଅଞ୍ଜନ ଆଦିର ଉଲ୍ଲେଖ ଅଛି ।

କେଶ-ସଜ୍ଜା ପାଇଁ ବିଶେଷ ଦୃଷ୍ଟି ଦିଆଯାଉଥିଲା । ସ୍ତ୍ରୀମାନଙ୍କର ଜଘନସ୍ପର୍ଶୀ କେଶକୁ ସୌନ୍ଦର୍ଯ୍ୟର ଏକ ଚିହ୍ନ ବୋଲି ଧରାଯାଉଥିଲା । ସେମାନେ ସେଥିରେ ଏକାଧିକ ବେଣୀ ବାନ୍ଧୁଥିଲେ । ଏ ସମ୍ପର୍କରେ ରାମାୟଣରେ (୫।୧୦।୨୬) ସ୍ପଷ୍ଟ ଭାବରେ ଉଲ୍ଲେଖ ଅଛି । କିନ୍ତୁ ନାରୀ ବିରହ-ଦୁଃଖରେ ଥିଲେ

ଗୋଟିଏ ମାତ୍ର ବେଣୀ ବାନ୍ଧୁଥିଲେ । ବିରହିଣୀ ସୀତା ଅଶୋକ-ବନରେ ଥିବା-ବେଳେ ଗୋଟିଏ ମାତ୍ର ବେଣୀ ବାନ୍ଧିଥିଲେ ବୋଲି ରାମାୟଣରେ (୫।୧୫।୧୯) ଉଲ୍ଲିଖିତ ।

ପୁରୁଷମାନେ ଦାଢ଼ି ରଖୁଥିଲେ କି ନାହିଁ ସେ ବିଷୟରେ ବିବାଦ ରହିଅଛି । ସେମାନେ କିନ୍ତୁ ଦାଢ଼ି ରଖୁଥିବାର ସମ୍ଭାବନା ଅଧିକ । ରାମାୟଣରେ ଠାଏ (୬।୫୬।୩୫) 'କ୍ଷୌର' ଶବ୍ଦର ନାମୋଲ୍ଲେଖ ଅଛି ଏବଂ ଆଉ ଠାଏ 'ଦାଢ଼ି ସଜାଇବା ଲୋକମାନେ' (ଶ୍ମଶ୍ରୁବର୍ଦ୍ଧକାଃ) ବୋଲି ଉଲ୍ଲେଖ ଅଛି । 'ଶ୍ମଶ୍ରୁବର୍ଦ୍ଧକ'ର ଅର୍ଥ କେହି କେହି ଦାଢ଼ି ଖିଅର କରିବା ଲୋକ ବୋଲି କହନ୍ତି । କିନ୍ତୁ ଏହାର ପ୍ରକୃତ ଅର୍ଥ ହେଉଛି ଦାଢ଼ି ଓ ଦାଢ଼ିକୁ ସାମାନ୍ୟ କାଟି ସଜାଇବା ଲୋକ । ଦଶରଥ ପୁତ୍ରେଷ୍ଟି-ଯଜ୍ଞ କରୁଥିବା ବେଳେ ଯେଉଁ ଯଜ୍ଞପୁରୁଷଙ୍କର ଆବିର୍ଭାବ ହୋଇଥିଲା, ତାଙ୍କର ଦାଢ଼ି-ଦାଢ଼ି ଓ ଚିକ୍କଣ ବାଳ ଥିବା କଥା ରାମାୟଣରେ (୧।୧୬।୧୦) ବର୍ଣ୍ଣିତ । ବ୍ରକିଙ୍ଗ୍‌ଟନ୍ ମଧ୍ୟ କହନ୍ତି ଯେ

> The wearing of beards, though mentioned extremely rarely in the text, or even in later additions, was probably normal. (୯୧-କ)

ଅତଏବ, ରାମାୟଣ ଯୁଗରେ ପୁରୁଷମାନେ ଦାଢ଼ି-ଦାଢ଼ି ରଖୁଥିଲେ ବୋଲି ଆମକୁ ବିଶ୍ୱାସ କରିବାକୁ ହେବ । ଶିଶୁମାନଙ୍କର କେଶ-ସଜ୍ଜା ଏକ ଅଦ୍ଭୁତ ଭାବରେ କରାଯାଉଥିଲା । ଶିଶୁର ବାଳକୁ ମୁଣ୍ଡର ଦୁଇ ପାଖରେ ଏଭଳି ଭାବରେ ଜୁଡ଼ା ଆକାରରେ ବାନ୍ଧି ଦିଆଯାଉଥିଲା ଯେ ତାହା କୁଆର ଦୁଇଟି ଡେଣା ଭଳି ଦିଶୁଥିଲା । ଶୈଶବାବସ୍ଥାରେ ରାମ ଓ ଲକ୍ଷ୍ମଣଙ୍କ ଏଭଳି ରୂପକୁ 'କାକପକ୍ଷଧର' ବୋଲି ରାମାୟଣରେ ବର୍ଣ୍ଣନା କରାଯାଇଛି ।

ଉପରୋକ୍ତ ଆଲୋଚନାରୁ ଆମେ ଏହି ନିର୍ଣ୍ଣୟରେ ପହଞ୍ଚିବା ଯେ ରାମାୟଣ-କାଳୀନ ସମାଜରେ ପୋଷାକ-ପରିଚ୍ଛଦ ଖୁବ୍ ସରଳ ଥିଲେ ହେଁ ତାହା ଥିଲା ସୂକ୍ଷ୍ମ ଓ ପରିଷ୍କାର-ପରିଚ୍ଛନ୍ନ । ସମ୍ଭ୍ରାନ୍ତ ବଂଶର ବ୍ୟକ୍ତିମାନେ ରେଶମ-ନିର୍ମିତ ବହୁମୂଲ୍ୟ ପୋଷାକ ପିନ୍ଧୁଥିଲେ ଏବଂ ସୁନା-ରୁପାର କାରିକାମ ହେବା ଫଳରେ ତାହା ଝଟକୁଥିଲା । ବର୍ଣ୍ଣର ଭିନ୍ନତା ତଥା କର୍ମର ଭିନ୍ନତା ନେଇ ପୋଷାକ-ପତ୍ରରେ ଭିନ୍ନତା ପରିଲକ୍ଷିତ ହେଉଥିଲା । ଉଭୟ ପୁରୁଷ ଓ ସ୍ତ୍ରୀ ନାନାପ୍ରକାର ଅଳଙ୍କାରରେ ନିଜକୁ ମଣ୍ଡିତ କରୁଥିଲେ ଏବଂ ବିଭିନ୍ନ ଅଙ୍ଗରାଗର ଅନୁଲେପନ ଦ୍ୱାରା ଶରୀରକୁ ଅଧିକ ସୌନ୍ଦର୍ଯ୍ୟାନ୍ୱିତ କରୁଥିଲେ ।

## ଖାଦ୍ୟ ଓ ପାନୀୟ

ଭାରତୀୟ ସଂସ୍କୃତିରେ ଅନ୍ନ ବା ଖାଦ୍ୟର ମହିମା ଯୁଗ ଯୁଗ ଧରି ପ୍ରକୀର୍ତ୍ତିତ । ଋଗ୍‌ବେଦର ଗୋଟିଏ ମନ୍ତ୍ରରେ ଅନ୍ନକୁ ମାନ୍ୟତା ଦେବାକୁ ଯାଇ କୁହାଯାଇଛି

ତ୍ୱେ ପିତୋ ମହାନାଂ ଦେବାନାଂ ମନୋ ହିତମ୍ ।
ଅକାରି ଚାରୁକେତୁନା ତବାହିମବସାଽବଧୀତ୍ (୯୨)

ଅର୍ଥାତ୍ ହେ ଅନ୍ନ ! ତୁମଠାରେ ବଡ଼ ବଡ଼ ଦେବତାମାନଙ୍କର ମନ ନିହିତ । ତୁମରି ପତାକା ତଳେ ସୁନ୍ଦର ସୁନ୍ଦର କାମମାନ କରାଯାଇଥାଏ । ତୁମରି ସାହାଯ୍ୟରେ ସେ (ଇନ୍ଦ୍ର) ସାପକୁ (ସାପ ରୂପ ଧରିଥିବା ବୃତ୍ରାସୁରକୁ) ମାରିଥିଲେ । ଅନ୍ନ ମନୁଷ୍ୟ, ଅନ୍ୟାନ୍ୟ ପ୍ରାଣୀ ଓ ଦେବତା ସମସ୍ତଙ୍କ ପାଇଁ ବଳଦାତା । ତେଣୁ ଭାରତୀୟ ଗୃହସ୍ଥ ଦେବତାଙ୍କ ଉଦ୍ଦେଶ୍ୟରେ ତଥା ଅନ୍ୟ ପ୍ରାଣୀଙ୍କ ଉଦ୍ଦେଶ୍ୟରେ ଦୈନିକ ପଞ୍ଚ ଯଜ୍ଞ କର୍ମ-ବିଧାନରେ ଅନ୍ନ ଅର୍ପଣ କରିଥାଏ । ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପିତ ଅନ୍ନ ହେଉଛି ହବି ଏବଂ ଅନ୍ୟ ପ୍ରାଣୀମାନଙ୍କ ଉଦ୍ଦେଶ୍ୟରେ ଅର୍ପିତ ଅନ୍ନ ହେଉଛି ବଳି । ଗୀତାରେ ମଧ୍ୟ (୩।୧୪) ଅନ୍ନର ଗୁରୁତ୍ୱ ପ୍ରତିପାଦିତ କରିବାକୁ ଯାଇ କୁହାଯାଇଛି ଯେ 'ଅନ୍ନାଦ୍‌ଭବନ୍ତି ଭୂତାନି' । ଅର୍ଥାତ୍ ଅନ୍ନରୁ ଜୀବମାନଙ୍କର ସୃଷ୍ଟି ହୋଇଥାଏ । ଭାରତୀୟମାନଙ୍କ ଚରୁମନ୍ତ୍ରରେ ଖାଦ୍ୟକୁ ଅମୃତର ଏକ ଆସ୍ତରଣ ହେବା ପାଇଁ (ଅମୃତୋପସ୍ତରଣମସି ସ୍ୱାହା) ଏବଂ ଅମୃତର ଏକ ଢାଙ୍କୁଣି ହେବା ପାଇଁ (ଅମୃତପିଧାନମସି ସ୍ୱାହା) ବୋଲି କୁହାଯାଇଛି । ଏହାର ତାତ୍ପର୍ଯ୍ୟ ହେଲା ଖାଦ୍ୟକୁ ଅମୃତମୟ ବିଚାରି ଖାଇଲେ ତାହା ଶରୀର ପ୍ରତି ହିତକାରକ ହୋଇଥାଏ । ରାମାୟଣ-ଯୁଗରେ ମଧ୍ୟ ଠିକ୍ ଏହିଭଳି ସ୍ଥିତି ଥିଲା ଏବଂ ଖାଦ୍ୟକୁ ଏହିଭଳି ମାନ୍ୟତା ଦିଆ ଯାଉଥିଲା । ସୁଖାଦ୍ୟ ଯେପରି ପ୍ରଶଂସନୀୟ ଥିଲା, ଅଖାଦ୍ୟ ବା କୁଖାଦ୍ୟ ଠିକ୍ ସେହିପରି ନିନ୍ଦନୀୟ ଥିଲା । ରାମାୟଣରେ ସେଥିପାଇଁ ନାନା ପ୍ରକାର ଖାଦ୍ୟ ଓ ପାନୀୟର ଉଲ୍ଲେଖ ଦେଖା ଯାଇଥାଏ ।

ଭରତ ରାମଙ୍କୁ ବନବାସରୁ ଫେରାଇ ଆଣିବା ଉଦ୍ଦେଶ୍ୟରେ ସସୈନ୍ୟ ବନଭୂମିକୁ ଯାତ୍ରା କରିଥିଲେ ଏବଂ ଯିବା ବାଟରେ ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ଆତିଥ୍ୟ ଗ୍ରହଣ କରିଥିଲେ । ଭରଦ୍ୱାଜ ତାଙ୍କୁ ଯେଉଁ ଖାଦ୍ୟ ଦେଇଥିଲେ ତାହା ଥିଲା ଚାରି ପ୍ରକାର । ସେହି ଖାଦ୍ୟ ଥିଲା :

ଭକ୍ଷ୍ୟଂ ଭୋଜ୍ୟଂ ଚ ଚୋଷ୍ୟଂ ଚ ଲେହ୍ୟଂ ଚ ବିବିଧଂ ବହୁ । (୯୩)

ଅର୍ଥାତ୍ ଅନେକ ପ୍ରକାର ଭକ୍ଷ୍ୟ, ଭୋଜ୍ୟ, ଚୋଷ୍ୟ ଓ ଲେହ୍ୟ । ବାଲ୍ମୀକିଙ୍କ ମତରେ ଡେଣୁ ଖାଦ୍ୟ ଚାରି ପ୍ରକାର ବିଭକ୍ତ, ଯଥା, ଭକ୍ଷ୍ୟ, ଭୋଜ୍ୟ, ଚୋଷ୍ୟ ଓ ଲେହ୍ୟ । ଯାହାକୁ ରାନ୍ଧିକରି ଖିଆ ଯାଉଥିଲା, ତାହାକୁ କୁହାଯାଉଥିଲା ଭକ୍ଷ୍ୟ । ଅରନ୍ଧା ଖାଦ୍ୟକୁ କୁହାଯାଉଥିଲା ଭୋଜ୍ୟ । କଦଳୀ, ମୂଳା ଆଦି ଏହାର ଅନ୍ତର୍ଗତ । ଅରନ୍ଧା ପନପରିବା, ଚାଉଳ, ମୁଗ ଆଦି ମଧ୍ୟ ଭୋଜ୍ୟର ଅନ୍ତର୍ଗତ । ଶ୍ରାଦ୍ଧାଦିରେ ବ୍ରାହ୍ମଣଙ୍କ ହସ୍ତରେ 'ଭୋଜ୍ୟ' ଟେକି ଦେବାର ତାତ୍ପର୍ଯ୍ୟ ଅଛି ଏଇଠି । ଚୋଷି କରି ଯେଉଁ ଖାଦ୍ୟକୁ ଖିଆ ଯାଉଥିଲା ତାହାର ନାମ ଥିଲା ଚୋଷ୍ୟ ଏବଂ ଚାଟିକରି ଯେଉଁ ଖାଦ୍ୟ ଖିଆ ଯାଉଥିଲା, ତାହାର ନାମ ଥିଲା ଲେହ୍ୟ । ଏତଦ୍‌ବ୍ୟତୀତ ଆଉ ଏକ ପଞ୍ଚମ ପ୍ରକାର ଖାଦ୍ୟ ଥିଲା, ଯାହାକୁ କି ପିଆ ଯାଉଥିଲା । ତାହାର ନାମ ଥିଲା ପେୟ । ଏହା ପାନୀୟର ଅନ୍ତର୍ଭୁକ୍ତ । ଭରଦ୍ୱାଜ ମଧ୍ୟ ଭରତଙ୍କୁ ବିଭିନ୍ନ ପେୟ ଦ୍ୱାରା ଆପ୍ୟାୟିତ କରିଥିଲେ । ତାହାର ବର୍ଣ୍ଣନା ଆମେ ରାମାୟଣର ନିମ୍ନୋକ୍ତ ପଙ୍‌କ୍ତିରୁ ପାଇଥାଉଁ

ସୁରାପାନ ଚ ପେୟାନ ମାଂସାନ ବିବିଧାନ ଚ । (୧୪)

ଅର୍ଥାତ୍ ସୁରା ଆଦି ପେୟ ଓ ନାନା ପ୍ରକାର ମାଂସ (ସେ ଭରତଙ୍କୁ ଦେଇଥିଲେ) ।

ନିରାମିଷ ଖାଦ୍ୟରେ ଯେଉଁ ଉପାଦାନଗୁଡ଼ିକ ବ୍ୟବହୃତ ହେଉଥିଲା, ସେଗୁଡ଼ିକ ହେଲା ଚାଉଳ (ତଣ୍ଡୁଳ କମ୍ବା ଶାଳି), ଗହମ (ଗୋଧୂମ), ଜଅ (ଜବ), ବିରି, ଶିମ ଇତ୍ୟାଦି, (ମାଷ), ଚଣା (ଚଣକ), ମୁଗ (ମୁଦ୍‌ଗ) କୋଳଥ (କୁଲତ୍ଥ), ସୁଆଁ (ଶ୍ୟାମାକ), ବନ୍ୟ ଚାଉଳ (ନୀବାର) ଇତ୍ୟାଦି । (୧୫) ଏଥି ମଧ୍ୟରୁ ଶ୍ୟାମାକ ଓ ନୀବାର ସାଧାରଣତଃ ଅରଣ୍ୟବାସୀମାନଙ୍କର ଖାଦ୍ୟ ଥିଲା । ମୁନି-ଋଷିମାନେ ଫଳମୂଳସମେତ ଏହାକୁ ଖାଉଥିଲେ । ସବୁ ପ୍ରକାର ଖାଦ୍ୟକୁ କୁହାଯାଉଥିଲା 'ଅନ୍ନ' । ଆଜିକାଲି ଅବଶ୍ୟ ଆମେ ଭାତକୁ ଅନ୍ନ ବୋଲି କହୁଥାଉଁ । ରାମାୟଣକାଳୀନ ଖାଦ୍ୟ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଏସ୍. ଏନ୍. ବ୍ୟାସ ବି ଭାତକୁ 'ଅନ୍ନ' ବୋଲି କହିଛନ୍ତି । (୧୬) କିନ୍ତୁ ଏହା ଭ୍ରମାତ୍ମକ । ରାମାୟଣ କାଳରେ ଭାତକୁ କୁହାଯାଉଥିଲା ଭକ୍ତ । ବୌଦ୍ଧ-ଯୁଗରେ ମଧ୍ୟ ଠିକ୍ ଅନୁରୂପ ଥିଲା ଏବଂ ଏହାର ପାଲି ପ୍ରତିରୂପ ଥିଲା 'ଭତ୍ତ' । ଗୀତାରେ (୩।୧୪) ଅନ୍ନରୁ ଜୀବମାନଙ୍କର ସମ୍ଭବ ହୋଇଥାଏ ବୋଲି ଯାହା କୁହାଯାଇଛି, ତାହା କେବଳ ଭାତକୁ ଲକ୍ଷ୍ୟ କରି କୁହାଯାଇ ନାହିଁ । ଅନ୍ୟ ପକ୍ଷରେ ତାହା ସମସ୍ତ ପ୍ରକାର ଖାଦ୍ୟକୁ ଲକ୍ଷ୍ୟ କରି କୁହାଯାଇଛି ।

ବୌଦ୍ଧଯୁଗ ଭଳି ରାମାୟଣ ଯୁଗରେ ମଧ୍ୟ ମାଂସ ଏକ ସାଧାରଣ ଖାଦ୍ୟ ଥିଲା । ସବୁ ପ୍ରକାର ଖାଦ୍ୟରେ ପ୍ରାୟ ମାଂସ ମିଶିକରି ରହୁଥିଲା ।

ତେଣୁ ଭକ୍ଷାନ୍ନରେ ନିର୍ଭର କରୁଥିବା ଲୋକେ ମାଂସାହାରୀ ନହେବା ଛଡ଼ା ଆଉ ଗତି ନଥିଲା । କିନ୍ତୁ ଅରଣ୍ୟରେ ରହୁଥିବା ମୁନି-ଋଷିମାନେ ସାଧାରଣତଃ ଥିଲେ ନିରାମିଷାଶୀ । ଫଳମୂଳ, ଶ୍ୟାମାକ ଅଥବା ନୀବାରରୁ ତିଆରି ଭାତ ଥିଲା ସେମାନଙ୍କର ଦୈନନ୍ଦିନ ଆହାର । ବ୍ରକିଙ୍ଗ୍ଟନ୍ ଏହି ମତର ପୁଷ୍ଟିସାଧନ କରିଥାନ୍ତି । ତାଙ୍କ ମତରେ

> Vegetarianism as such is ascribed only to the ascetics in the forest. (୯୭)

ରାମ ବନବାସର ଅବ୍ୟବହିତ ପୂର୍ବରୁ ମାତା କୌଶଲ୍ୟାଙ୍କର ଅନୁମତି ନେବାପାଇଁ ଆସିଥିଲେ । ସେତେବେଳେ ସେ ମାତାଙ୍କୁ କହିଥିଲେ

> ଚତୁର୍ଦ୍ଦଶ ହି ବର୍ଷାଣି ବତ୍ସ୍ୟାମି ବିଜନେ ବନେ ।
> କନ୍ଦମୂଳଫଳୈର୍ଜୀବନ୍ ହିତ୍ୱା ମୁନିବଦାମିଷମ୍ । (୯୮)

ଅର୍ଥାତ୍ ମୁଁ ଚଉଦ ବର୍ଷ ପାଇଁ ନିର୍ଜ୍ଜନ ବଣରେ ରହିବି ଏବଂ ମୁନି-ଋଷିଙ୍କ ଭଳି ଆମିଷଖିଆ ଛାଡ଼ି କନ୍ଦମୂଳ-ଫଳ ଆଦି ଖାଇ ବଞ୍ଚିବି । ଏଥିରୁ ଜଣାପଡ଼ୁଛି ଯେ ମୁନି-ଋଷିମାନେ ଜମା ମାଛ-ମାଂସ, ଖାଉନଥିଲେ । ତେଣୁ ରାମ ନିଜ ମାଆଙ୍କୁ ଏପରି କଥା କହିଥିଲେ । ହନୁମାନ୍ ମଧ୍ୟ ସୀତାଙ୍କୁ ଅଶୋକବନରେ ରାମଙ୍କ ବନବାସ-ଜୀବନ ସମ୍ପର୍କରେ ବୁଝାଇ କହୁଛନ୍ତି ଯେ (୫।୩୬।୩୯) ସେ (ରାମ) ମାଂସ ଖାଉନାହାନ୍ତି କିମ୍ବା ମଧୁ ବା ମଦ୍ୟ ପିଉନାହାନ୍ତି । ଅଥଚ ସୁବର୍ଣ୍ଣମୃଗରୂପୀ ମାରୀଚକୁ ମାରି ସାରିବା ପରେ ରାମ ଆଉ ଗୋଟିଏ ମୃଗକୁ ମାରି ତା'ର ମାଂସ ସଂଗ୍ରହ କରିଥିବା କଥାର ଉଲ୍ଲେଖ ଆମେ ରାମାୟଣରେ ଅନ୍ୟତ୍ର (୩।୪୪।୨୭) ଦେଖିଥାଉଁ । ରାମ ତା'ହେଲେ କ'ଣ ଅରଣ୍ୟବାସ ସମୟରେ ମାଂସ ଖାଉଥିଲେ ? ଏହା କଦାପି ସମ୍ଭବ ହୋଇ ନପାରେ । ଏହି ଶ୍ଳୋକଟି ପ୍ରକ୍ଷିପ୍ତ ଆକାରରେ ପରେ କେବେ ରାମାୟଣରେ ଅନୁପ୍ରବେଶ କରିଛି ବୋଲି ମନେହୁଏ । ମାରୀଚକୁ ମାରି ସାରିବା ପରେ ତା'ର ରାକ୍ଷସ-ରୂପ ଦେଖି ଏବଂ ତା'ର 'ହା ସୀତେ ! ହା ଲକ୍ଷ୍ମଣ !' ବୋଲି ଚିତ୍କାର ଶୁଣି ରାମ ମନେ ମନେ ସୀତାଙ୍କ ସୁରକ୍ଷା ନେଇ ଆତଙ୍କିତ ହୋଇ ଉଠିଥିଲେ । ସେ ତେଣୁ ଶୀଘ୍ର ଶୀଘ୍ର ଆଶ୍ରମକୁ ଫେରି ଆସୁଥିଲେ । ଏଭଳି ମାନସିକ ସ୍ଥିତିରେ ସେ ଆଉ ଗୋଟିଏ ମୃଗ ମାରି ତାହାର ମାଂସ ସଂଗ୍ରହ କରି ସମୟର ଅପଚୟ କରିବାକୁ କଦାପି ଚାହିଁ ନଥିବେ । ତାହା ଛଡ଼ା ରାମଙ୍କ ଆଶ୍ରମ-ବାସ ସମୟରେ ଲକ୍ଷ୍ମଣ ଖାଦ୍ୟ ସଂଗ୍ରହ କରିବା ପାଇଁ ଯାଇ କେବଳ ଫଳ-ମୂଳ ସଂଗ୍ରହ କରି ଆଣନ୍ତି ବୋଲି ରାମାୟଣରେ ବର୍ଣ୍ଣିତ । କୌଣସି ସ୍ଥାନରେ ସେ ମାଛ-ମାଂସ ସଂଗ୍ରହ

କରିଥିବା କଥାର ଉଲ୍ଲେଖ ନାହିଁ । ଏହି ଦୃଷ୍ଟିରୁ ବିଚାର କଲେ ଆଶ୍ରମ-ଜୀବନରେ ରାମ ମାଛ-ମାଂସ ଖାଉଥିବା କଥା କଦାପି ବିଶ୍ୱାସଯୋଗ୍ୟ ହୋଇ ନପାରେ । ବାଲଗଙ୍ଗାଧର ଶାସ୍ତ୍ରୀ ମଧ୍ୟ ଏହି ମତର ପୃଷ୍ଠପୋଷକ । (୧୧) ଅତଏବ, ଆମକୁ ନିର୍ବିବାଦରେ ସ୍ୱୀକାର କରିବାକୁ ପଡ଼ିବ ଯେ ମୁନି-ଋଷିମାନେ ଥିଲେ ନିରାମିଷାଶୀ । କିନ୍ତୁ ଅତିଥି-ଚର୍ଚ୍ଚା ପାଇଁ ସେମାନେ ମାଂସ-ମଦ୍ୟ ଆଦିର ଆୟୋଜନ କରୁଥିଲେ । ଭରତ ଥିଲେ କ୍ଷତ୍ରିୟ ପୁରୁଷ । ମାଂସ-ମଦ୍ୟ ତାଙ୍କର ଥିଲା ସାଧାରଣ ଖାଦ୍ୟ । ତେଣୁ ତାଙ୍କୁ ଓ ତାଙ୍କ ସେନାବାହିନୀକୁ ଆପ୍ୟାୟିତ କରିବା ଲାଗି ଭରଦ୍ୱାଜ ମାଂସ ଓ ମଦ୍ୟର ବ୍ୟବସ୍ଥା କରିଥିଲେ । ଭରତଙ୍କୁ ସମ୍ମାନ ପ୍ରଦର୍ଶନ କରିବାକୁ ଯାଇ ନିଷାଦରାଜ ଗୁହ ମଧ୍ୟ ତାଙ୍କୁ ମାଛ, ମାଂସ ଓ ମଧୁ ବା ମଦ୍ୟ ଅର୍ପଣ କରିଥିବା କଥା ରାମାୟଣରେ (୨।୮୮।୧) ଅନ୍ୟତ୍ର ବର୍ଣ୍ଣିତ ।

ଋଷି-ବ୍ରାହ୍ମଣମାନେ ଯେ ଜମା ମାଂସାହାର କରୁନଥିଲେ ତାହା ଠିକ୍ ନୁହେଁ । ଋଷିମାନେ ମାଂସାହାର କରୁନଥିଲେ ରାକ୍ଷସ ଇଲ୍ୱଳ ବାତାପିକୁ ମେଣ୍ଢା କରାଇ ତା'ର ମାଂସକୁ ରାନ୍ଧି ଅଗସ୍ତ୍ୟ ଋଷିଙ୍କର ଅତିଥି-ସତ୍କାର କରିଥାନ୍ତା ବା କେମିତି ? ତା' ଛଡ଼ା ପୂର୍ବକଥିତ ମତେ ଭକ୍ଷାନ୍ନରେ ନିର୍ଭରଶୀଳ ବ୍ରାହ୍ମଣମାନେ ମାଂସ ଖାଇବାକୁ ବାଧ୍ୟ ହେଉଥିଲେ; କାରଣ ସେତେବେଳର ଭକ୍ଷାନ୍ନ ଥିଲା ମାଂସମିଶ୍ରିତ ଅନ୍ନ । ଅଶ୍ୱମେଧ ଯଜ୍ଞରେ ବହୁ ସଂଖ୍ୟକ ପଶୁ-ବଳି ଦିଆ ଯାଉଥିଲା ଏବଂ ସେହି ମାଂସକୁ ଅଗ୍ନି-ଦେବତାଙ୍କୁ ହବି ସ୍ୱରୂପ ଅର୍ପଣ କରା-ଯାଉଥିଲା । ସେହି ଯଜ୍ଞାବଶିଷ୍ଟ ମାଂସକୁ ପୂତ-ପବିତ୍ର ମନେକରି କ୍ଷତ୍ରିୟ, ଋଷି, ବ୍ରାହ୍ମଣ ଆଦି ସମସ୍ତେ ଖାଉଥିଲେ ।

ରାମାୟଣରେ ଠାଏ (୨।୧୪।୨୦) ଅଯୋଧ୍ୟା ନଗରରେ ମାଂସ ବିକି କରି ଜୀବନଧାରଣ କରୁଥିବା ଲୋକମାନଙ୍କ କଥା (ମାଂସୋପଜୀବିନଃ) ଉଲ୍ଲିଖିତ । ଏମାନେ ସେଠାରେ ବହୁ ସଂଖ୍ୟାରେ ଥିଲେ । ଭରତଙ୍କ ସେନାବାହିନୀ ସାଥିରେ ମଧ୍ୟ ଅନେକ ମାଂସୋପଜୀବୀ ଯାଇଥିଲେ । ଏଥିରୁ ଜଣାଯାଏ ଯେ ଲୋକମାନଙ୍କର ମାଂସ-ଭକ୍ଷଣ ଥିଲା ଏକ ସାଧାରଣ ଘଟଣା । ରାକ୍ଷସମାନେ ତ ମାଂସ ଖାଉଥିଲେ ଏବଂ ଅନେକ ସମୟରେ କଞ୍ଚା ମାଂସ ବି ଖାଉଥିଲେ । କିରାତମାନେ ମଧ୍ୟ କଞ୍ଚା ମାଂସ ଖାଉଥିବା କଥା ରାମାୟଣରେ (୪।୩୨।୨୮) ବର୍ଣ୍ଣିତ । ଆର୍ଯ୍ୟମାନେ ମାଂସ-ଭେଦରେ ତାହାକୁ ମେଧ୍ୟ ଓ ଅମେଧ୍ୟ ବୋଲି କହୁଥିଲେ । ଉଦାହରଣସ୍ୱରୂପ, ମର୍କଟ ମାଂସ ଅମେଧ୍ୟ ଥିଲା ବେଳେ ମୃଗ-ମାଂସ ବିଶେଷକରି କୃଷ୍ଣସାର ମୃଗ-ମାଂସ ଓ ମେଷ-ମାଂସ ଥିଲା ମେଧ୍ୟ । କ୍ଷତ୍ରିୟ ଓ ବ୍ରାହ୍ମଣ ଉଭୟଙ୍କ

ପାଇଁ ଠେକୁଆ, କୁଚ୍ଚୁଆ, ଝିଙ୍କ, କଇଁଛ ଆଦିର ମାଂସ ଥିଲା ଭକ୍ଷଣୀୟ (୧୯-କ) ନିମ୍ନଶ୍ରେଣୀର ଲୋକମାନଙ୍କର ମାଂସଭୋଜନ ଖୁବ ପ୍ରିୟ ଥିଲା । ସେଥିପାଇଁ ନିଷାଦରାଜ ଗୁହଙ୍କ ଲୋକମାନଙ୍କୁ ରାମାୟଣରେ (୨।୮୮।୬) ମାଂସାଶୀ ଓ ଫଳମୂଳାଶୀ (ମାଂସମୂଳଫଳାଶନଃ) ବୋଲି ବର୍ଣ୍ଣନା କରାଯାଇଛି । ସାଧାରଣତଃ ନିରାମିଷାଶୀ ଥିବା ବାନରମାନେ ମଧ୍ୟ ବେଳେ ବେଳେ ମାଂସ ଖାଉଥିଲେ । ରାମାୟଣରେ ଠାଏ (୪।୧୭।୩୩-୩୫) ବାଳୀ ମାଂସହାରର ଯୁକ୍ତଯୁକ୍ତତା ପ୍ରତିପାଦିତ କରିଛନ୍ତି ଏବଂ କହିଛନ୍ତି ପାଞ୍ଚ ନଖ ଥିବା କେଉଁ କେଉଁ ପାଞ୍ଚ ପ୍ରକାର ପ୍ରାଣୀଙ୍କ ମାଂସ ଭକ୍ଷଣୀୟ ।

ରାମାୟଣରେ ମତ୍ସ୍ୟ-ଭକ୍ଷଣ ବିଷୟରେ ଖୁବ୍ କମ୍ ଉଲ୍ଲେଖ ଅଛି । ବୋଧହୁଏ, ମାଂସ ଭଳି ମାଛ ସେତେଟା ଲୋକପ୍ରିୟ ନଥିଲା । ମାଂସର ପ୍ରାଚୁର୍ଯ୍ୟ ହୁଏତ ଏହାର କାରଣ ହୋଇଥାଇପାରେ । ବ୍ରକିଙ୍ଗ୍ଟନ୍ ମଧ୍ୟ ଠିକ୍ ଅନୁରୂପ ମତ ପୋଷଣ କରନ୍ତି । ତାଙ୍କ ଭାଷାରେ

> Fish was not such a regular article of diet but there does not seem initially to have been any prejudice against it, as Kabandha's remark already cited indicates, with the declaration that there are plenty of edible fish in the river Pampa. There is also at one point a simile of a fish caught in a baited hook. (୧୦୦)

ମରଣଶଯ୍ୟାରେ ଥିବା ଅବସ୍ଥାରେ କବନ୍ଧ ରାକ୍ଷସ ରାମଙ୍କୁ କହୁଛି (୩।୭୩।୮) ଯେ ସୁଗ୍ରୀବଙ୍କୁ ଖୋଜିଯିବା ବାଟରେ ତାଙ୍କୁ ଖାଦ୍ୟ ଲାଗି ବହୁ ସଂଖ୍ୟକ ପକ୍ଷୀ ଓ ମତ୍ସ୍ୟ ମାରିବାର ସୁଯୋଗ ମିଳିବ । ଭରତ ରାମଙ୍କୁ ବନବାସରୁ ଫେରାଇ ଆଣିବା ପାଇଁ ଯିବା ବାଟରେ ନିଷାଦରାଜ ଗୁହଙ୍କୁ ଭେଟିଥିଲେ ଏବଂ ସେତେବେଳେ ଗୁହ ତାଙ୍କୁ ମାଛ, ମାଂସ ଓ ମଧୁ ଭେଟିଥିଲେ (ମତ୍ସ୍ୟମାଂସ-ମଧୂନି) ବୋଲି ରାମାୟଣରେ (୨।୮୮।୧) ବର୍ଣ୍ଣିତ । ଏହିସବୁ ପ୍ରମାଣ ମତ୍ସ୍ୟାହାର ସେତେବେଳେ ପ୍ରଚଳିତ ଥିବା କଥା ଦର୍ଶାଇଥାଏ ।

ବର୍ତ୍ତମାନ ଗୋମାଂସ-ଭକ୍ଷଣ କଥା ବିଚାର୍ଯ୍ୟ । ଭବଭୂତି ତାଙ୍କର ଉତ୍ତର ରାମଚରିତରେ ବାଲ୍ମୀକିଙ୍କ ଆଶ୍ରମକୁ ବଶିଷ୍ଠ ଆସିଥିବା ସମୟରେ ତାଙ୍କ ପାଇଁ ଗୋଟିଏ କଅଁଳା ବାଛୁରି ମରା ଯାଇଥିବା କଥାର ଉଲ୍ଲେଖ କରିଛନ୍ତି ।

ଆଉ ମଧ୍ୟ ବଶିଷ୍ଠ ସେହ୍ୱ ଅସ୍ଥି ମିଶ୍ରିତ ମାଂସକୁ ବଡ଼ ଆଗ୍ରହରେ ସହୃତ ଖାଇ-ଯାଉଥିବା କଥା ବର୍ଣ୍ଣିତ । ଭବଭୂତ ତ ବାଲ୍ମୀକଙ୍କର ବହୁ ଶତ ବର୍ଷ ପରର କବ । ସେ ଏହ୍ୱ ଘଟଣାଟିର ସୂତ୍ର କେଉଁଠୁ ପାଇଲେ ତାହା ଜଣା ପଡ଼ୁନାହିଁ; କାରଣ ବାଲ୍ମୀକି-ରାମାୟଣରେ ସେଭଳି କୌଣସି ଘଟଣାର ବର୍ଣ୍ଣନା ନାହିଁ । ଏହ୍ୱ ଯୁକ୍ତକୁ ଆଧାର କର କେହ୍ୱ କେହ୍ୱ କୁହନ୍ତ ଯେ ରାମାୟଣ-ଯୁଗରେ ଗୋମାଂସ-ଭକ୍ଷଣ ନଷିଦ୍ଧ ଥିଲ ଏବଂ ଭବଭୂତଙ୍କର ଉପରୋକ୍ତ ବର୍ଣ୍ଣନା କଳ୍ପନା-ପ୍ରସୂତ । ତାହା କନ୍ତୁ ଠିକ୍ ନୁହେଁ । ଭବଭୂତଙ୍କ ଉପରୋକ୍ତ ବର୍ଣ୍ଣନା ସମ୍ପୂର୍ଣ୍ଣ କଳ୍ପନା-ପ୍ରସୂତ ହୋଇଥିଲେ ମଧ୍ୟ ତଦ୍ଦ୍ୱାର ଗୋମାଂସ-ଭକ୍ଷଣର ଯେଉଁ ସଙ୍କେତ ଦଆଯାଇଛୁ, ତାହାର ମୌଳିକ ସତ୍ୟତା ଅଛୁ । ମଧୁପର୍କ ନାମକ ଗୋଟିଏ ଖାଦ୍ୟ ଅଛୁ ଯାହାର ବେଶି ଭାଗ ହେଉଛୁ ମଧୁ । ଗୋମାଂସର ମିଶ୍ରଣରେ ଏହାକୁ ତଆର କରାଯାଇଥାଏ । ବୈଦିକ କାଳରୁ ଏହାର ଚଳଣି ରହ୍ୱ ଆସିଥିଲ । ଦେବତାମାନଙ୍କୁ କମ୍ବା ଅତଥି ହୋଇଥିବା ବ୍ରାହ୍ମଣ ଓ ରାଜାମାନଙ୍କୁ ଏହା ବଶେଷ ସମ୍ମାନସୂଚକ ଭାବରେ ଅର୍ପିତ ହେଉଥିଲ । ରାମାୟଣ-ଯୁଗରେ ଏହ୍ୱ ଚଳଣି ମଧ୍ୟ ଥିଲ । ଶର୍ମା ମଧ୍ୟ ଏହ୍ୱ ମତର ପରି-ପୋଷଣ କରଥାନ୍ତ । ସେ ସ୍ପଷ୍ଟ ଭାବରେ କୁହନ୍ତ

> A cow, as a rule formed part of the madhuparka offered to a distinguished guest. (୧୦୧)

ତାଙ୍କର ଏହ୍ୱ ଉକ୍ତରେ ସାମାନ୍ୟ ଟିକଏ ଭୁଲ ଅଛୁ । ଗାଈର ମାଂସ ମଧୁପର୍କ ଲାଗି ବ୍ୟବହୃତ ହେଉନଥିଲ । ବୈଦିକ କାଳରେ ମଧ୍ୟ ଏହା ବ୍ୟବହୃତ ହେଉନଥିଲ । ବୈଦିକ କାଳରୁ ହିଁ ଗାଈକୁ 'ଅଘ୍ନ୍ୟା' (ହନନର ଅଯୋଗ୍ୟା) ବୋଲି ଧରାଯାଉଥିଲ । ଏଥିପାଇଁ ବଳଦ କମ୍ବା ଅଣ୍ଡିରା ବାଛୁରୀ ମରା-ଯାଉଥିଲ । ରାମାୟଣ-ଯୁଗରେ ଠିକ୍ ଏହ୍ୱ ସ୍ଥିତ ହିଁ ବଳବତ୍ତର ଥିଲ । ଯଦ ଆର୍ଯ୍ୟମାନଙ୍କ ପାଇଁ ଗୋମାଂସ-ଭକ୍ଷଣ ସମ୍ପୂର୍ଣ୍ଣ ରୂପେ ନଷିଦ୍ଧ ଥାଆନ୍ତା, ତା'ହେଲେ ମର୍କଟ-ମାଂସ ଭଳି ଏହାକୁ ମଧ୍ୟ ଅମେଧ୍ୟର ଅନ୍ତର୍ଗତ କରାଯାଇଥାନ୍ତା । କନ୍ତୁ ରାମାୟଣରେ କୁତ୍ରାପି ଗୋମାଂସକୁ ଅମେଧ୍ୟ ବୋଲି କୁହା ଯାଇନାହିଁ । ଏ ତ ଥିଲ ଆର୍ଯ୍ୟମାନଙ୍କ କଥା । ଆର୍ଯ୍ୟେତର ରାକ୍ଷସମାନେ ଅନ୍ୟ ମାଂସ ଭଳି ଗୋମାଂସ-ଭକ୍ଷଣ କରୁଥିଲେ । ବାନରମାନେ ଗୋମାଂସ-ଭକ୍ଷଣ କରୁଥିଲେ କ ନାହିଁ ସେ ବଷୟରେ ରାମାୟଣ ନୀରବ । ଅତଏବ, ସେମାନେ ଗୋମାଂସ-ଭକ୍ଷଣ କରୁନଥିଲେ ବୋଲି ଆମକୁ ଧରନେବାକୁ ହେବ ।

ଆଜ୍ୟ ବା ଘିଅ, ଲହୁଣୀ, ଦୁଧ, ଦହି ଛେନା ଇତ୍ୟାଦି ଦୁଗ୍ଧଜାତ ସାମଗ୍ରୀମାନ ଖୁବ୍ ଲୋକପ୍ରିୟ ଥିଲା । ଘିଅ, ସୋରିଷ ତେଲ ଓ ରାଶି ତେଲ ପାକ-କର୍ମରେ ବ୍ୟବହୃତ ହେଉଥିଲା । ବାଲକାଣ୍ଡରେ ଠାଏ (୧।୬୮।୨୩) ବାଲ୍ମୀକି ପାକର ସ୍ୱାଦୁତାକୁ ନେଇ 'ରସ' ଶବ୍ଦର ପ୍ରୟୋଗ କରିଛନ୍ତି । ପାକ ଭଲ ହେଲେ ତାହାକୁ ସରସ ବା ରସଯୁକ୍ତ ବୋଲି କୁହାଯାଉଥିଲା । ଏହି ରସ ଥିଲା ଛଅ ପ୍ରକାର, ଯଥା, ମଧୁର, ଅମ୍ଳ, ଲବଣ, କଟୁକ, ତିକ୍ତ ଓ କଷାୟ । ଗୁଡ଼ କିମ୍ବା ଶର୍କରା (ଚିନି) ଦେଇ ଖାଦ୍ୟରେ ମଧୁରତା ଅଣାଯାଉଥିଲା । ଲୁଣ ଥିଲା ଦୁଇ ପ୍ରକାର, ଯଥା, ଲବଣ ଓ ସୌବର୍ଚ୍ଚଳ । କରେଇରେ ସମୁଦ୍ର ପାଣିକୁ ଗରମ କରି ତିଆରି କରାଯାଉଥିବା ଲୁଣର ନାଁ ଥିଲା ଲବଣ । ସୂର୍ଯ୍ୟ କିରଣରେ ସମୁଦ୍ର ପାଣିକୁ ଶୁଖାଇ ତିଆରି କରୁଥିବା ଲୁଣର ନାଁ ଥିଲା ସୌବର୍ଚ୍ଚଳ । କାଳକ୍ରମେ ସବୁ ପ୍ରକାର ଲୁଣକୁ ଭାରତରେ ଲବଣ ବୋଲି କୁହାଯିବାକୁ ଲାଗିଲା ଏବଂ ସୌବର୍ଚ୍ଚଳ ନାମଟି ଲୋପ ପାଇଗଲା ।

ଫଳ ଓ ପନିପରିବା ରାମାୟଣକାଳୀନ ଖାଦ୍ୟର ଏକ ବିଶେଷ ଅଂଶ ରୂପେ ଗଣ୍ୟ ହେଉଥିଲା । ବିଶେଷ କରି ଅରଣ୍ୟବାସୀ ନିରାମିଷାଶୀ ମୁନି-ଋଷିମାନଙ୍କ କ୍ଷେତ୍ରରେ ଏଗୁଡ଼ିକର ପ୍ରାଧାନ୍ୟ ଖୁବ୍ ବେଶି ଥିଲା । ଶର୍ମାଙ୍କ ଭାଷାରେ

> Fruits and vegetables also formed important items of food of the people of those times, Specially the diet of the hermit consisted primarily of fruits, esculent roots and tubers that could be easily procured from the forest. (୧୦୨)

ଆମ୍ବ, କଦଳୀ, ଡ଼ାଳିମ୍ବ, ବରକୋଳି, ବେଲ, ଜାମୁ, ନଡ଼ିଆ, ଖଜୁରି, ପଣସ, ଅଁଳା, ତାଳ, କେନ୍ଦୁ, ଗୁଚକୋଳି, ଓଉ, ହରିଡ଼ା, ବାହାଡ଼ା, କଇଥ, ଲେମ୍ବୁ, କମଳା, ଟଭା ଆଦି ଫଳଗୁଡ଼ିକ ସେ ଯୁଗରେ ଖାଦ୍ୟର ଅନ୍ତର୍ଭୁକ୍ତ ଥିଲା । ଏଗୁଡ଼ିକରୁ କେତେକ ଫଳ ପାନୀୟ ପ୍ରସ୍ତୁତିରେ ମଧ୍ୟ ବ୍ୟବହୃତ ହେଉଥିଲା ।

ବର୍ତ୍ତମାନ ପାନୀୟ କଥା ଆଲୋଚନୀୟ । ସବୁ ଯୁଗ ଭଳି ରାମାୟଣ ଯୁଗରେ ମଧ୍ୟ ଜଳ ଥିଲା ସର୍ବୋତ୍ତମ ପାନୀୟ । କିଛି ଖାଇବାକୁ ନଥିଲେ ପାଣି ପିଇ ମଣିଷ ରାତିରେ ଶୋଇ ପଡ଼ୁଥିଲା । ରାମଙ୍କ ବନବାସର ପ୍ରଥମ ରାତିଟି ଠିକ୍ ଏହିପରି କଟିଥିଲା । ନିଷାଦରାଜ ଗୁହ ତାଙ୍କୁ କିଛି ଖାଦ୍ୟ ଅର୍ପଣ କରିଥିଲେ ମଧ୍ୟ ସେ ଖାଲି ପାଣି ପିଇ ରାତିଟି କଟାଇ ଦେଇଥିଲେ ।

ଲକ୍ଷ୍ମଣ ଓ ସୀତା ମଧ୍ୟ ତାଙ୍କ ପଦାଙ୍କ ଅନୁସରଣ କରିଥିଲେ । ଦେବତାମାନଙ୍କୁ ଓ ପିତୃଗଣଙ୍କୁ ତର୍ପଣ ହିସାବରେ ଏହି ଜଳ ହିଁ ଅର୍ପଣ କରାଯାଉଥିଲା । ରାମ ଜଳ ଦ୍ୱାରା ଏଭଳି ପିତୃତର୍ପଣ କରିଥିବା କଥା ରାମାୟଣରେ ଠାଏ (୨।୫୧।୨୭) ଉଲ୍ଲିଖିତ । ପାନୀୟ ଜଳ ସାଧାରଣତଃ ନଦୀ, ନିର୍ଝରଣୀ, ଜଳପ୍ରପାତ ଆଦି ପ୍ରାକୃତିକ ଆକର-କ୍ଷେତ୍ରମାନଙ୍କରୁ ସଂଗୃହୀତ ହେଉଥିଲା । ଆବଶ୍ୟକ ସ୍ଥଳେ ତାହା କୂଅ, ପୋଖରୀ, ବାପି ଆଦି କୃତ୍ରିମ ଆକର-କ୍ଷେତ୍ରମାନଙ୍କରୁ ମଧ୍ୟ ସଂଗୃହୀତ ହେଉଥିଲା । ପାଣି ଛଡ଼ା ଲୋକେ ଫଳ-ରସ, ଆଖୁ-ରସ ଓ ମହୁକୁ ମଧ୍ୟ ପାନୀୟ ରୂପେ ବ୍ୟବହାର କରୁଥିଲେ । ବାନରମାନଙ୍କ ପାଇଁ ତ ମହୁ ଥିଲା ଏକ ପ୍ରିୟ ପାନୀୟ । ହନୁମାନ ସୀତାଙ୍କ ସନ୍ଦେଶ ଧରି ବାନରଗଣଙ୍କ ସହିତ କିଷ୍କିନ୍ଧାକୁ ଫେରିବା ବାଟରେ ସୁଗ୍ରୀବଙ୍କ ମଧୁବନ ପଡ଼ୁଥିଲା । ସେମାନେ ଏତେ ଆନନ୍ଦ-ବିଭୋର ହୋଇ ଯାଇଥିଲେ ଯେ ସେହି ମଧୁବନରେ ମହୁ ପିଇବାକୁ ଯାଇ ସମଗ୍ର ମଧୁବନଟିକୁ ଉଜାଡ଼ି ଦେଇଥିଲେ । ସେଠି ସେମାନେ ଖାଲି ତ ମହୁ ପିଇ ନଥିଲେ; ମହୁମିଶା ମଦ ବି ପିଉଥିଲେ । ଏହା ଫଳରେ ସେମାନେ ଚେତନାଶୂନ୍ୟ ହୋଇ ମଧୁବନର ରକ୍ଷକ ପ୍ରତି ମାର-ଧର କରିଥିଲେ । ମଧୁ ଶବ୍ଦଟି ରାମାୟଣରେ ଅନେକ ସ୍ଥଳରେ ମଦ ଅର୍ଥରେ ବ୍ୟବହୃତ, ଏହି ମତର ପୃଷ୍ଟପୋଷକତା ବ୍ରକିଙ୍ଗଟନ୍ କରିଥାନ୍ତି । ତାଙ୍କ ଭାଷାରେ

> In fact the distribution pattern of the term Madhu is broadly similar to that for terms for drink, of which the majority are for alcoholic drinks. (୧୦୩)

ଏତଦ୍‌ବ୍ୟତୀତ ମାଦକ ପାନୀୟର ମଧ୍ୟ ଲୋକମାନଙ୍କ ମଧ୍ୟରେ ଖୁବ୍ ଚଳଣି ଥିଲା । ସମ୍ଭ୍ରାନ୍ତ କିମ୍ବା ଅସମ୍ଭ୍ରାନ୍ତ ବ୍ୟକ୍ତି, ପୁରୁଷ କିମ୍ବା ନାରୀ ସମସ୍ତେ ତାହା ପିଉଥିଲେ । ସୀତା ଯେତେବେଳେ ଗର୍ଭବତୀ ଥିଲେ ରାମ ତାଙ୍କର ମନ-ସାଧ ମେଣ୍ଟାଇବା ପାଇଁ ତାଙ୍କ ଲାଗି ମଧୁ (ଏକ ପ୍ରକାର ହାଲୁକା ମଦ) ଓ ମୈରେୟ (ଏକ ପ୍ରକାର କଡ଼ା ମଦ) ଅଣାଇ ଥିବାର ଉଲ୍ଲେଖ ରାମାୟଣରେ (୭।୪୧।୧୩) ଅଛି । ସ୍ତ୍ରୀମାନେ ମଦ ପିଉ ନଥିଲେ ରାମ କଦାପି ତାଙ୍କ ପାଇଁ ତାହା ମଗାଇ ନଥାନ୍ତେ । ଅଯୋଧ୍ୟା ନଗରେ ମଦରେ ଭାସୁଥିବା ପରି ଜଣାପଡ଼େ । ରାମାୟଣର ଗୋଟିଏ ବର୍ଣ୍ଣନା ଅନୁସାରେ (୨।୧୨୭।୯-୨୦) ସାରା ନଗରର ବାୟୁମଣ୍ଡଳରେ ମଦର ବାସନା ଭରି ଉଠୁଥିଲା ଏବଂ ମଦ୍ୟପମାନେ

ବୈଁଲ ବୈଁଳା ରାସ୍ତାମାନଙ୍କରେ ପଡ଼ିଥିବାର ଦେଖା ଯାଉଥିଲା । ଉଭୟ ଅଯୋଧ୍ୟା ଓ ଲଙ୍କାରେ ମଦ ପିଇବାର ସ୍ଥାନ ବିଷୟରେ ସୂଚନା ଦିଆ ଯାଇଛି । ଏହାକୁ କୁହାଯାଉଥିଲା 'ପାନଭୂମି' । ପାନଭୂମିରେ ମଦ ବିକୁଥିବା ଲୋକଙ୍କୁ କୁହାଯାଉଥିଲା ଶୌଣ୍ଡିକ (ଆଧୁନିକ ଶୁଣ୍ଡି) । ମଦର ଲୋକ-ପ୍ରିୟତା ନେଇ ଶର୍ମାଙ୍କ ନିମ୍ନଲିଖିତ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ

> Intoxicating drinks were also very widely popular among the people—both men and women of those times.(୧୦୪)

କିଷ୍କିନ୍ଧାର ରାସ୍ତାମାନଙ୍କରେ ମଦ ଭରପୂର ଥିଲା ବୋଲି ରାମାୟଣରେ ମଧ୍ୟ (୪।୨୬।୮) ବର୍ଣ୍ଣିତ । ଅତଏବ, ଏଥିରୁ ଏହି ସୂଚନା ମିଳୁଛି ଯେ କି ଆର୍ଯ୍ୟ, କି ବାନର, କି ରାକ୍ଷସ, ସେତେବେଳେ ସମସ୍ତେ ମଦ ପିଉଥିଲେ ଏବଂ ନାରୀମାନେ ମଧ୍ୟ ଏଥିରୁ ବାଦ ଯାଉ ନଥିଲେ ।

ମଦ ସାଧାରଣତଃ ଦୁଇ ପ୍ରକାର ଥିଲା । ଗୋଟିଏ ହେଲା ପ୍ରାକୃତିକ ମଦ ଏବଂ ଅପରଟି ହେଲା କୃତ୍ରିମ ମଦ । ପ୍ରାକୃତିକ ମଦକୁ 'ସୁରା' କୁହାଯାଉଥିଲା । କଦମ୍ବରସରେ ତିଆରି 'କାଦମ୍ବରୀ' ଏହାର ଅନ୍ତର୍ଗତ । ସେହିପରି କୃତ୍ରିମ ମଦକୁ 'କୃତସୁରା' ବୋଲି କୁହାଯାଉଥିଲା । ଭାତ, ମହୁଲ ଇତ୍ୟାଦିକୁ ପଚାଇ କରି ଏହି 'କୃତସୁରା' ପ୍ରସ୍ତୁତ ହେଉଥିଲା । ଅତି କଡ଼ା ମଦକୁ କୁହାଯାଉଥିଲା 'ଆସବ' । ରାମାୟଣର ବର୍ଣ୍ଣନା ଅନୁଯାୟୀ (୫।୬।୨୩) ଏହି 'ଆସବ' ଥିଲା ଚାରି ପ୍ରକାର, ଯଥା, 'ପୁଷ୍ପାସବ', 'ଫଳାସବ', 'ମାର୍ଦ୍ଧ୍ୱିକ' ଓ 'ଶର୍କରାସବ' । ଏଗୁଡ଼ିକର ପ୍ରସ୍ତୁତି ଯଥାକ୍ରମେ ଫୁଲରୁ, ଫଳରୁ, ମହୁରୁ ଓ ଆଖୁରସରୁ ହେଉଥିଲା । ରାମାୟଣରେ ବ୍ୟବହୃତ ମଦର ଅନ୍ୟ ନାମଗୁଡ଼ିକ ହେଲା ସୀଧୁ, ମୈରେୟ ଓ ବାରୁଣୀ । ସବୁଠାରୁ ଉତ୍କୃଷ୍ଟ ମଦ ଥିଲା ବାରୁଣୀ । ଆଖୁରସ ଓ ଧାତୁରିର ମିଶ୍ରଣରେ 'ସୀଧୁ' ପ୍ରସ୍ତୁତ ହେଉଥିଲା । ଠିକ୍ ସେହିପରି ଖଜୁରି ଓ ତାଳରସରୁ 'ବାରୁଣୀ' ପ୍ରସ୍ତୁତ ହେଉଥିଲା । (୧୦୫)

ମଦ୍ୟପାନ ଏତେ ଲୋକପ୍ରିୟ ଥିଲେ ମଧ୍ୟ ସମାଜରେ ଏହାକୁ ଏକ ଦୋଷ ବୋଲି ଧରା ଯାଉଥିଲା । ରାଜାଙ୍କୁ ଯେଉଁ ଦଶଟି ପାପ ବିଷୟରେ ସାବଧାନ ହେବାକୁ ପଡ଼ୁଥିଲା, ତନ୍ମଧ୍ୟରୁ ମଦ୍ୟପାନ ଥିଲା ଅନ୍ୟତମ । (୧୦୬) ଏହା ସତ୍ତ୍ୱେ କିନ୍ତୁ ରାଜାମାନେ ମଦ ପିଉଥିଲେ । ମଦ୍ୟର କୁପ୍ରଭାବ ବିଷୟ

ରାମାୟଣର ଅନେକ ସ୍ଥାନରେ ବର୍ଣ୍ଣିତ । ବାଲ୍ମୀକିଙ୍କର ଏ ସମ୍ପର୍କରେ ଯଥେଷ୍ଟ ସାମାଜିକ ସଚେତନତା ଥିବାର ସୂଚନା ଏଥିରୁ ମିଳିଥାଏ ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ ଯେ ରାମାୟଣକାଳୀନ ସମାଜ ଥିଲା ସଭ୍ୟ ଓ ସଂସ୍କୃତ । ଅସଭ୍ୟତା ଓ ଅପସଂସ୍କୃତି ବିରୁଦ୍ଧରେ ଏହା ସତତ ସ୍ୱର ଉତ୍ତୋଳନ କରୁଥିଲା । ଏଭଳି ଏକ ସମାଜ ଗଢ଼ି ଉଠିବା ପାଇଁ ନିଶ୍ଚିତ ଭାବରେ ହଜାର ହଜାର ବର୍ଷର ପରଂପରା ଦାୟୀ । ଆଉ ମଧ୍ୟ ଏହି ପରମ୍ପରାକୁ ଅନୁକରଣ କରୁଥିବା ଶିକ୍ଷାପ୍ରଣାଳୀ ଦାୟୀ । କାରଣ ଉପଯୁକ୍ତ ଶିକ୍ଷା ବିନା ସମାଜରେ ସଂସ୍କୃତି ବଜାୟ ରହିପାରିବ ନାହିଁ । ଏହି ଶିକ୍ଷାର ସ୍ୱରୂପ କ'ଣ ଥିଲା ତଦ୍‌ବିଷୟରେ ଅନ୍ୟତ୍ର ଏକ ସ୍ୱତନ୍ତ୍ର ପରିଚ୍ଛେଦରେ ଆଲୋଚନା କରାଯିବ ।

## ଟିପ୍ପଣୀ

(୧) Rai Promatha Nath Mullick Bahadur, The Mahabharata, Cosmos Publications, New Delhi (1989), p. 6.

(୨) ରାମାୟଣ, ୩।୧୪।୨୯-୩୦ ।

(୩) ତତ୍ରୈବ, ୧।୧।୧୦୦ ।

(୪) ତତ୍ରୈବ, ୨।୮୨।୩୨ ।

(୫) ତତ୍ରୈବ, ୬।୬।୬ ।

(୫-କ) S. Radhakrishnan, Religion and Society, p.132.

(୬) S. Radhakrishnan, op. cit. p. 131.

(୭) Ibid.

(୮) ରାମାୟଣ, ୪।୪।୬ ।

(୯) ତତ୍ରୈବ, ୫।୨୫।୧୧ ।

(୧୦) ତତ୍ରୈବ, ୧।୨୫।୧୮ ।

(୧୧) Balsastri Hardas, Glimpses of the Vedic Nation, p. 429.

(୧୨) A. L. Basham, The Wonder that was India, Rupa & Co (1985 Reprint), p. 139.

(୧୩) ଧମ୍ମପଦ, ବ୍ରାହ୍ମଣବର୍ଗ, ୩୮୮-୪୨୩ ।
(୧୪) A L. Basham, op. cit. p. 140.
(୧୫) ରାମାୟଣ, ୨।୫।୨୩ ।
(୧୫-କ) ତତ୍ରୈବ, ୨।୧୦୦।୯ ।
(୧୬) ତତ୍ରୈବ, ୨।୫୨।୮୯ ।
(୧୭) J. L. Brockington, Righteous Rama—The Evolution of an Epic, Oxford University Press, Delhi (1984), p. 156.
(୧୭-କ) R.Sharma, A. Socio-Political Study of the Valmiki Ramayana, p. 18.
(୧୮) ରାମାୟଣ, ୨।୬୩।୫୦-୫୧ ।
(୧୯) K. V. Rangaswami Ayanger, Some Aspects of the Hindu View of Life, Baroda (1952) p. 159.
(୧୯-କ) R Sharma, op. cit, p. 21.
(୨୦) ରାମାୟଣ, ୬।୧୦୯।୧୭ ।
(୨୧) R. Sharma, op. cit. p. 22.
(୨୨) The Cultural Heritage of India, Vol. II, "The Culture of the Ramayana", Article by Swami Nihshreyasananda, pp. 37-38.
(୨୩) Ibid, p. 32.
(୨୪) R Sharma, op. cit, p. 24.
(୨୫) Ibid, p. 23.
(୨୬) ରାମାୟଣ, ୧।୫୮।୧୧ ।
(୨୭) ତତ୍ରୈବ, ୧।୫୮।୧୦ ।
(୨୮) P.V. Kane, History of Dharmasastras, Vol II, Part I, p. 92.
(୨୯) ବଦ୍ରୁର ପଣ୍ଡିତ ଜାତକ (ସ. ୫୬୫) ।
(୩୦) R. Sharma, op. cit, p. 25.
(୩୧) ରାମାୟଣ, ୨।୨୪।୩ ।

(୩୨) ଆପସ୍ତମ୍ବ ଧର୍ମସୂତ୍ର, ୨।୯।୨୧।୧; ଗୌତମ ଧର୍ମସୂତ୍ର, ୩।୨; ବଶିଷ୍ଠ ଧର୍ମସୂତ୍ର, ୭।୧।୨ ।

(୩୩) R. Sharma, op. cit, p. 27.

(୩୩-କ) ରାମାୟଣ, ୩।୪୬।୩ । ଏଠାରେ ରାବଣଙ୍କୁ 'ପରିବ୍ରାଜକରୂପଧୃକ୍' ବା ପରିବ୍ରାଜକ-ରୂପଧାରୀ ବୋଲି କୁହାଯାଇଛି ।

(୩୩-ଖ) R. Sharma, op. cit. p. 31.

(୩୪) Young, Social Psychology, Vol. II. p. 237.

(୩୫) ରାମାୟଣ, ୧।୬୦।୨୨-୪୫ ।

(୩୬) ତତ୍ରୈବ, ୧।୭୧।୩-୧୩ ।

(୩୭) R. Sharma, op. cit. p. 36.

(୩୮) J. L, Brockington, op. cit, p. 160.

(୩୯) ରାମାୟଣ, ୭।୯୯।୧୫ ।

(୪୦) J. L. Brockington, op. cit, pp. 159-160.

(୪୧) Ibid. p. 160.

(୪୨) Pandharinath Prabhu, Hindu Social Organisation, p. 211.

(୪୨-କ) V. Sitaramiah, Valmiki Ramayana, Sahitya Akademi (1972), p. 39.

(୪୩) ରାମାୟଣ, ୨।୫୮।୩୧ ।

(୪୪) ତତ୍ରୈବ, ୨।୪୦।୯ ।

(୪୫) ରାମାୟଣ, ୭।୪୯।୭ ।

(୪୬) Rai Pramoth Nath Mullick Bahadur, op. cit. pp. 541-542.

(୪୭) J. L. Brockington, op. cit, p. 166.

(୪୮) ରାମାୟଣ, ୨।୨୮।୧ ।

(୪୯) ତତ୍ରୈବ, ୩।୭୪।୭୯ ।

(୫୦) ତତ୍ରୈବ, ୭।୫।୨୦ ।

(୫୧) ଋଗ୍‌ବେଦ, ୭।୫୨।୬-୭ ।

(୫୨) ଋଗ୍‌ବେଦ, ୭।୯୮।୬ ।

(୫୩) J. L. Brockington, op. cit, p. 165.

(୫୩-କ) R. Sharma, op. cit, p. 38.

(୫୪) J.L. Brockington, op. cit, p. 161.

(୫୫) ମନୁସ୍ମୃତି, ୨।୨୨୭ ।

(୫୬) ଋଗ୍‌ବେଦ, ୨।୬୪।୫୪ ।

(୫୭) ଋଗ୍‌ବେଦ, ୫।୨୦।୧୬ ।

(୫୮) R. Sharma, op. cit. p. 256.

(୫୯) ରାମାୟଣ, ୨।୪।୧୦-୧୧ ।

(୬୦) ଋଗ୍‌ବେଦ, ୨।୭୨।୪ ।

(୬୧) ଋଗ୍‌ବେଦ, ୨।୯୦।୮ ।

(୬୨) ମନୁସ୍ମୃତି, ୨।୨୭ ।

(୬୩) R. Sharma, op. cic, p. 257.

(୬୪) ଋଗ୍‌ବେଦ, ୪।୩୪।୧୦ ।

(୬୫) R, Sharma, op. cit, p. 258.

(୬୬) ରାମାୟଣ, ୩।୪୬।୧୬-୨୩ ।

(୬୭) V. Sitaramiah, op. cit, p. 41.

(୬୮) Bhagbat Saran Upadhyaya, Women in Rigveda, p, 216.

(୬୯) ମ୍ୟାକ୍‌ଡୋନେଲ୍‌ ଓ କୀଥ୍‌ : ବୈଦିକ ଇଣ୍ଡେକ୍‌ସ (ହିନ୍ଦୀ ଅନୁବାଦ), ୨ୟ ଭାଗ, ଚୌଖମ୍ବା ବିଦ୍ୟାଭବନ, ବାରାଣସୀ (୧୯୬୨) ପୃ. ୪୦୩ ।

(୬୯-କ) Kaegi, RigVeda, p. 19.

(୭୦) ରାମାୟଣ, ୨।୬୭।୧୫ ।

(୭୧) ପାଣିନି, ଅଷ୍ଟାଧ୍ୟାୟୀ, ୩।୩।୬୯ ।

(୭୨) J.L. Brockington, op. cit, p. 193.

(୭୩) V. R. R. Dkshitar, Ancient India, p. 135.

(୭୪) R. Sharma, op. cit, p. 261.

(୭୫) ରାମାୟଣ ୨।୧୬।୫୩; ୨।୧୬।୫୫; ୨।୭୬।୨୪ ।

(୭୬) ଭି. ଏସ୍. ଅଗ୍ରୱାଲ, ପ୍ରାଚୀନ ଭାରତୀୟ ଲୋକଧର୍ମ (ହିନ୍ଦୀ)—୪ର୍ଥ ଅଧ୍ୟାୟ ।

(୭୬-କ) ରାମାୟଣ, ୨।୬୧।୭ ।

(୭୭) R. Sharma, op. cit, p. 262.

(୭୮) ରାମାୟଣ, ୧।୨।୧୮ ।

(୭୯) J. L. Brockington, op. cit, p. 193.

(୮୦) A. L. Basham, op. cit, p. 212.

(୮୧) Ibid,

(୮୨) A. C. Das, Rigvedic Culture, p. 215.

(୮୩) ରାମାୟଣ, ୬।୧୯।୩ ।

(୮୪) R. Sharma, op. cit., p. 243.

(୮୫) ଏସ୍. ଏନ୍. ବ୍ୟାସ, ରାମାୟଣକାଳୀନ ସଂସ୍କୃତି (ହିନ୍ଦୀ), ପୃ. ୫୦ ।

(୮୫-କ) C. V. Vaidya, Epic India, Herodotus quoted, p. 131.

(୮୬) S N. Vyas, India in the Ramayana Age, p. 212.

(୮୭) C. V. Vaidya, Epic India, p. 133.

(୮୮) ରାମାୟଣ, ୫।୮।୩ ।

(୮୯) R. Sharma, op. cit., p. 250.

(୯୦) ରାମାୟଣ, ୬।୬୫।୨୫ ।

(୯୧) ଋଗ୍ବେଦ, ୨।୯।୪୩ ।

(୯୧-କ) J.L. Brockington, op. cit., p. 80. ଏସ୍. ଏନ୍. ବ୍ୟାସ ମଧ୍ୟ ତାଙ୍କ ପୁସ୍ତକ 'India in the Ramayana Age'ରେ (ପୃ.୨୨୦) ଉଲ୍ଲେଖ କରିଛନ୍ତି ଯେ ରାମାୟଣ-ଯୁଗରେ ପୁରୁଷମାନେ ଦାଢ଼ି ରଖୁଥିଲେ ।

(୯୨) ଋଗ୍‌ବେଦ, ୧।୧୮୭।୨ ।

(୯୩) ରାମାୟଣ, ୨।୯୧।୨୦ ।

(୯୪) ଉତ୍ତରୈବ, ୨।୯୧।୨୧ ।

(୯୫) ରାମାୟଣ, ୧।୫।୬; ୪।୯।୩୯; ୩।୨୧।୧୫; ୩।୯୩।୧୫; ୩।୭୯।୨୨; ୨।୩୧।୧୮ ।

(୯୬) ଏସ୍. ଏନ୍. ବ୍ୟାସ, ରାମାୟଣକାଳୀନ ସଂସ୍କୃତି (ହିନ୍ଦୀ), ପୃ. ୭୪ ।

(୯୭) J. L. Brockington, op. cit., p. 84.

(୯୮) ରାମାୟଣ, ୨।୨୦।୨୯ ।

(୯୯) ବାଲଚନ୍ଦ୍ର ଶାସ୍ତ୍ରୀ, "ଶ୍ରୀରାମାୟଣମେଁ ମାଂସାହାର", କଲ୍ୟାଣ, ୫, ରାମାୟଣାଙ୍କ (ହିନ୍ଦୀ), ପୃ. ୧୩୯ ।

(୯୯-କ) ରାମାୟଣ, ୪।୧୩।୧୮ ।

(୧୦୦) J. L. Brockington, op. cit., p. 82.

(୧୦୧) R. Sharma, op. cit., p. 235.

(୧୦୨) Ibid., p. 237.

(୧୦୩) J. L. Brockington, op. cit., p. 86.

(୧୦୪) R. Sharma, op. cit., p. 238.

(୧୦୫) Om Prakash, Food and Drinks in Ancient India, pp. 113-119.

(୧୦୬) ରାମାୟଣ, ୨।୧୦୦।୬୮।



## ଦ୍ୱିତୀୟ ପରିଚ୍ଛେଦ

# ବିବାହବନ୍ଧନ

ରାମାୟଣର ଆର୍ଯ୍ୟ, ବାନର ଓ ରାକ୍ଷସ ସମ୍ପ୍ରଦାୟ ମଧ୍ୟରେ ଚଳୁଥିବା ବିବାହ-ପ୍ରଥା ସମ୍ପର୍କରେ ଆମେ ବିଭିନ୍ନ ତଥ୍ୟମାନ ପାଉଥାଉଁ । ତାହା ନିମ୍ନରେ ଆଲୋଚନା କରାଯାଉଛି ।

**ଆର୍ଯ୍ୟସଭ୍ୟତାରେ**

ବୈଦିକ କାଳରୁ ଯେଉଁ ଷୋଡ଼ଶଗୋଟି ସଂସ୍କାର ଆର୍ଯ୍ୟମାନଙ୍କ ଜୀବନ-ଧାରାକୁ ପରିଶୀଳିତ କରି ଆସିଥିଲା, ବିବାହ ତନ୍ମଧ୍ୟରୁ ଅନ୍ୟତମ । (୧) ବର୍ତ୍ତମାନ ମଧ୍ୟ ଏହି ସଂସ୍କାରସମୂହ ହିନ୍ଦୁ ସମାଜରେ ପାଳିତ । ଅବଶ୍ୟ କେତେଁଟି ଏଗୁଡ଼ିକର ପାଳନରେ ଶିଥିଳତା କିମ୍ବା ଖର୍ବୀକରଣ ଦେଖା ଦେଇଛି । ଏଣୁ ବୈଦିକ ଯୁଗର ପରେ ପରେ ଆସିଥିବା ରାମାୟଣ-ଯୁଗରେ ଏହି ସଂସ୍କାରସମୂହ ପାଳିତ ହେଉଥିବା ସ୍ୱାଭାବିକ । ବାସ୍ତବିକ, ତାହା ହିଁ ଘଟିଥିଲା । ସେତେବେଳେ ମଧ୍ୟ ବୈଦିକ ଯୁଗ ଭଳି ବିବାହ-ବନ୍ଧନକୁ ଏକ ପବିତ୍ର ବନ୍ଧନ ବୋଲି ଧରା ଯାଉଥିଲା । ଧରଣୀ ଓ ଚନ୍ଦ୍ରବାଳର ସଂପର୍କ ଭଳି ଏହି ସଂପର୍କ ଥିଲା ଚିରନ୍ତନ ।

ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚତୁର୍ବର୍ଗ ଫଳ ପାଇବା ଥିଲା ଆର୍ଯ୍ୟ ଜୀବନର ଲକ୍ଷ୍ୟ । ଏହାକୁ ପାଇବା ପାଇଁ ପୁରୁଷ ଓ ସ୍ତ୍ରୀ ଉଭୟଙ୍କର ଭୂମିକା ଥିଲା ଅପରିହାର୍ଯ୍ୟ । ବିବାହ ଅନୁଷ୍ଠାନଟି ଏହି ଭୂମିକା-ନିର୍ବାହର ଥିଲା ମାଧ୍ୟମ । ରାଧାକୃଷ୍ଣନ୍‌ଙ୍କର ନିମ୍ନଲିଖିତ ମନ୍ତବ୍ୟ ଏହି ମତର ପୌଷ୍ଟିକତା ସାଧନ କରିଥାଏ :

> The Hindu ideal of marriage is essentially a fellowship between a man and a woman who seek to live creatively in a partnership for the pursuit of the four great objects of life dharma, artha, kama and moksha (୧-କ)

ବଂଶରକ୍ଷା ଲାଗି ବିବାହର ଆବଶ୍ୟକତା ଥିଲା ଅବଶ୍ୟମ୍ଭାବୀ । କାରଣ ସେତେବେଳର ବିଶ୍ୱାସ ଥିଲା ଯେ 'ପୁତ୍' ନାମକ ନରକରୁ କେବଳ ପୁତ୍ର ପିତାମାତାଙ୍କୁ ଉଦ୍ଧାର

କରିପାରିବ । ଯଦି ବିବାହର ଫଳଶ୍ରୁତି ସ୍ୱରୂପ କୌଣସି କାରଣରୁ ପୁତ୍ରଜାତ ସମ୍ଭବ ହୋଇ ନପାରିଲା, ତେବେ ପିତାମାତାଙ୍କୁ ପୁତ୍ର ସନ୍ତାନଟିଏ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିବାର ଆବଶ୍ୟକତା ପଡ଼ୁଥିଲା । ଏହି ପ୍ରଥା ଏ ପର୍ଯ୍ୟନ୍ତ ମଧ୍ୟ ହିନ୍ଦୁ ସମାଜରେ ଚଳି ଆସୁଛି । ସେଥିପାଇଁ ଜୀବନରେ ସ୍ତ୍ରୀ ଓ ପୁତ୍ରସନ୍ତାନଙ୍କ ଆବଶ୍ୟକତା ଉପରେ ଗୁରୁତ୍ୱ ଆରୋପ କରିବାକୁ ଯାଇ ମନୁ କହିଛନ୍ତି

> ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା ପୁତ୍ରଃ ପିଣ୍ଡପ୍ରୟୋଜନମ୍ ।

ଅର୍ଥାତ ପୁତ୍ରସନ୍ତାନର ଜନ୍ମ ଲାଗି ମନୁଷ୍ୟ ସ୍ତ୍ରୀ ଗ୍ରହଣ କରିଥାଏ ଏବଂ ପୁତ୍ରଜନ୍ମର ଉଦ୍ଦେଶ୍ୟ ହେଲା ପିତୃମାତୃକୁଳକୁ ପିଣ୍ଡ ଦେବା ଲାଗି । ଆଉ ମଧ୍ୟ ମନୁଙ୍କ ମତରେ (୯।୧୩୯)

> ପୁଂନାମ୍ନୋ ନରକାଦ୍ ଯସ୍ମାତ୍ ତ୍ରାୟତେ ପିତରଂ ସୁତଃ ।
> ତସ୍ମାତ୍ ପୁତ୍ର ଇତି ପ୍ରୋକ୍ତଃ...।

ଅର୍ଥାତ୍ ଯେ 'ପୁତ୍' ନାମକ ନରକରୁ ପିତାଙ୍କୁ (ପିତାମାତା ଉଭୟଙ୍କୁ) ତ୍ରାଣ କରିଥାନ୍ତି ବୋଲି ସେମାନଙ୍କ ନାମ ହେଲା ପୁତ୍ର । ମନୁ ଏହି ଯେଉଁ କଥାଟି କହିଥିଲେ, ତାହା ସମ୍ପୂର୍ଣ୍ଣ ଭାବରେ ପ୍ରାଚୀନ ବୈଦିକ ଚିନ୍ତାଧାରା ଉପରେ ଆଧାରିତ । ବେମାସୁର୍ଣୀୟ ସମାଜରେ ମଧ୍ୟ ପୁତ୍ରପ୍ରାପ୍ତି ଲାଗି ପିତାମାତାଙ୍କର ସମଧିକ ଜୋର ଅଭିପ୍ସା ରହିଥିଲା । ପୁତ୍ରପ୍ରାପ୍ତି ଲାଗି ରାଜା ଦଶରଥଙ୍କ ଦ୍ୱାରା ଅତି ନିଷ୍ଠାର ସହିତ ପୁତ୍ରେଷ୍ଟି-ଯଜ୍ଞର ସମ୍ପାଦନ ଏହାର ନିଦର୍ଶନ । ଏ ସନ୍ତାନର ସ୍ୱରୂପ ପୁଣି କିଭଳି ହେବ ? ଏହାର ଜନ୍ମ କ'ଣ ହେବ କେବଳ ବଂଶରକ୍ଷା ପାଇଁ ନା ଆଉ କିଛି ଅର୍ଥକ ପାଇଁ ? ଏହାର ଯଥୋଚିତ ଉତ୍ତର ଆମେ ବୈଦିକ ସ୍ୱାମୀଙ୍କର ନିମ୍ନଲିଖିତ ଉକ୍ତିଟିରୁ ପାଇପାରିବା । ଅଗ୍ନିଦେବଙ୍କ ପାଖରେ ସନ୍ତାନପ୍ରାପ୍ତି ଲାଗି ତାଙ୍କର ପ୍ରାର୍ଥନା ହେଲା

> ପ୍ରଜାଭିରଗ୍ନେ ଅମୃତତ୍ୱମଶ୍ୟାମ୍ । (୧-ଖ)

ଅର୍ଥାତ୍ ହେ ଅଗ୍ନିଦେବତା ! ଆମକୁ ଏଭଳି ସନ୍ତାନ ମିଳୁ ଯାହା ଫଳରେ କି ଆମେ ଅମୃତତ୍ୱ ଲାଭ କରିପାରିବୁ । ସେମାନେ ଏଭଳି ସନ୍ତାନ ହୁଅନ୍ତୁ ଥିଲେ ଯେଉଁମାନେ କି ବଂଶରକ୍ଷା କରିବା ସଙ୍ଗେ ସଙ୍ଗେ ସେମାନଙ୍କ କୁଳକୁ ମଧ୍ୟ ଅମର କରିଦେଇ ପାରିବେ । ବୈଦିକ ସ୍ୱାମୀ ତାଙ୍କ କୁଳ ପାଇଁ ଏହି ପ୍ରକାର ଅମୃତତ୍ୱ ଆଣିବା ପାଇଁ ଏଠାରେ ଆଶାୟୀ ହୋଇ ଉଠିଛନ୍ତି । ରାମାୟଣକାଳୀନ ସମାଜରେ ମଧ୍ୟ ଅଲବ୍ଧବହୁତ ଏହି ଆଦର୍ଶ ପ୍ରତି ସମ୍ମାନ-ପ୍ରଦର୍ଶନ କରାଯାଉଥିଲା । ଏହିସବୁ କାରଣରୁ ବୃହଦାରଣ୍ୟକ ଉପନିଷଦରେ (୬।୪) ମଧ୍ୟ ପତିପତ୍ନୀ ପୁତ୍ରଟିଏ ପାଇବା ପାଇଁ ଆନ୍ତରିକ କାମନା କରିଛନ୍ତି । ରାଧାକୃଷ୍ଣନ୍‌ଙ୍କ ମତରେ

ପିତାମାତାଙ୍କ ଆଧ୍ୟାତ୍ମିକ ପୁଷ୍ଟିସାଧନ ଲାଗି ସନ୍ତାନର ଆବଶ୍ୟକତା ଥାଏ । ତାଙ୍କ ବକ୍ତବ୍ୟ ହେଲା

Children are a source of spiritual sustenance to the parents. (୧-ଗ)

ପୁରୁଷର ଯଜ୍ଞୀୟ କର୍ମାନୁଷ୍ଠାନ ଲାଗି ସ୍ତ୍ରୀର ଆବଶ୍ୟକତା ପଡ଼ୁଥିଲା । ଅଶ୍ୱମେଧ ଭଳି କେତେକ ଯଜ୍ଞରେ ସ୍ତ୍ରୀର ନିର୍ଦ୍ଦିଷ୍ଟ ଭୂମିକା ଥିଲା । ତେଣୁ ସ୍ତ୍ରୀର ଅବର୍ତ୍ତମାନତାରେ ଏଭଳି ଯଜ୍ଞ କରି ହେଉନଥିଲା । ଅବିବାହିତ କିମ୍ବା ମୃତଦାର ପୁରୁଷ ଏଭଳି ଯଜ୍ଞ କରିବାର ଅଧିକାରରୁ ଥିଲେ ବଞ୍ଚିତ । ତେଣୁ ଶତପଥ ବ୍ରାହ୍ମଣରେ ଯଥାର୍ଥରେ କୁହାଯାଇଛି

ଅଯଜ୍ଞୀୟୋ ବୈ ସ ଯୋଽପତ୍ନୀକଃ । (୨)

ଅର୍ଥାତ୍ ଯାହାଙ୍କର ପତ୍ନୀ ନାହିଁ, ସେ ଯଜ୍ଞ କରି ପାରିବେ ନାହିଁ । ପାଣିନିଙ୍କ କହିବା ଅନୁସାରେ ଏହାଙ୍କର ପତିଙ୍କ ଯଜ୍ଞରେ ଯୋଗ ଦେବାର ଅଧିକାର ଅଛି ବୋଲି ଏହାଙ୍କୁ କୁହାଯାଏ ପତ୍ନୀ । (୩) ସେଥିପାଇଁ ତ ରାମଙ୍କୁ ଅଶ୍ୱମେଧ ଯଜ୍ଞ କରୁଥିବା ସମୟରେ ନିର୍ବାସିତା ସୀତାଙ୍କ ଅନୁପସ୍ଥିତିରେ ଏକ କୁଶର ସୀତାମୂର୍ତ୍ତି ତିଆରି କରାଇ ଯଜ୍ଞ ବେଦୀରେ ସଂସ୍ଥାପିତ କରିବାକୁ ପଡ଼ିଥିଲା ।

ଏ ସଂପର୍କରେ ପ୍ରଶ୍ନ ଉଠିପାରେ, ଆର୍ଯ୍ୟ ବିବାହରେ କେବଳ କ'ଣ ପୁରୁଷକୁ ସାହାଯ୍ୟ କରିବା ପାଇଁ ସ୍ତ୍ରୀ ଉଦ୍ଦିଷ୍ଟ ? କେବଳ କ'ଣ ପୁରୁଷର ପରି-ପୂର୍ଣ୍ଣତା ଆଣିବା ଲାଗି ସେ ଏକ ସାହାଯ୍ୟକାରୀ ମାଧ୍ୟମ ରୂପରେ କାର୍ଯ୍ୟ କରିଥାଏ ? ତା'ର କ'ଣ ନିଜର କିଛି ସିଦ୍ଧି ହାସଲ କରିବାର ନଥାଏ ? ଏହାର ଉତ୍ତର ଆମେ ରାମାୟଣରେ ପାଇବା, ଯେଉଁଠି ଜନକ ତାଙ୍କ କନ୍ୟା ସୀତାଙ୍କୁ ରାମଙ୍କ ହାତରେ ଟେକି ଦେଲାବେଳେ କହୁଛନ୍ତି, ଆଜିଠାରୁ ମୋ କନ୍ୟା ତୁମର ହେବେ 'ସହଧର୍ମଚରୀ' । (୪) ଏହାର ତାତ୍ପର୍ଯ୍ୟ ହେଲା, ଧର୍ମ-ସଂପାଦନରେ ବା ସାଂସାରିକ କର୍ମ-ସମ୍ପାଦନରେ ଉଭୟ ପୁରୁଷ ଓ ସ୍ତ୍ରୀ ସାଥୀ ହୋଇ ଚାଲିବେ; ଉଭୟ ପରସ୍ପରକୁ ସାହାଯ୍ୟ କରିବେ; ଉଭୟ ପରସ୍ପରକୁ ପରିପୁଷ୍ଟି କରିବାରେ ସହାୟକ ହେବେ । ଏଥିରେ ବଡ଼-ସାନର ବାଛବିଚାର ନାହିଁ । ଏଥିରେ ଉଭୟ ସମାନ ସ୍ତରରେ ଅଧିଷ୍ଠିତ । ରବୀନ୍ଦ୍ରନାଥ ଠାକୁର ତାଙ୍କ ଚିତ୍ରାଙ୍ଗଦା ନାଟକରେ ଅର୍ଜୁନଙ୍କ ଆଗରେ ଚିତ୍ରାଙ୍ଗଦାଙ୍କ ଦ୍ୱାରା ତାଙ୍କ ନିଜସ୍ୱ ପରିଚୟ ଠିକ୍ ଏହି ମର୍ମରେ ଦିଆଯାଇଛନ୍ତି । ତାହାର ଓଡ଼ିଆ ଅନୁବାଦ ହେଲା, "ମୁଁ ହେଉଛି ଚିତ୍ରା । ମୁଁ ପୂଜା ପାଇବାର ଦେବୀ ନୁହେଁ ଅଥବା ମୁଁ ଦୟାର ପାତ୍ରୀ ନୁହେଁ ଯାହାକୁ କି ସାଧାରଣ ତୃଣପତ୍ରଟି ଭଳି ଏଡ଼ାଇ ଦେଇହେବ ।

ସକଳ ବିପଦ ଓ ସକଳ ସାହସିକତା ମଧ୍ୟରେ ତୁମେ ମତେ ଯଦି ପାଶରେ ରଖିବ, ତୁମ ଜୀବନର ବିରାଟ କର୍ତ୍ତବ୍ୟମାନ ସମାହିତ କରିବାରେ ମତେ ଯଦି ଅଂଶୀଦାର କରାଇବ, ତେବେ ସେତେବେଳେ ତୁମେ ମୋ'ର ପ୍ରକୃତ ପରିଚୟ ପାଇବ ।"

ଅତଏବ, ଏଥି ହିଁ ହେଉଛି ପତ୍ନୀଙ୍କର ପତିଙ୍କ ନିକଟରେ ପ୍ରକୃତ ପରିଚୟ । ବିବାହ କିପରି ପତି ଓ ପତ୍ନୀ ଉଭୟଙ୍କ ପରିପୂର୍ଣ୍ଣତା ଆଣିବାରେ ସହାୟକ ହୋଇଥାଏ, ସେ ବିଷୟରେ ମତ ଦେବାକୁ ଯାଇ ରାଧାକୃଷ୍ଣନ୍ କହନ୍ତି

Its main aim is the enrichment of the personality of husband and wife, through the fulfilment of their needs for a permanent comradeship, in which each may supplement the life of the other and both may achieve completeness. (୪-କ)

ବିବାହ ଥିଲା ଆଠ ପ୍ରକାର, ଯଥା, ବ୍ରାହ୍ମ ବିବାହ, ଦୈବ ବିବାହ, ଆର୍ଷ ବିବାହ, ଆସୁର ବିବାହ, ପ୍ରାଜାପତ୍ୟ ବିବାହ, ଗାନ୍ଧର୍ବ ବିବାହ, ରାକ୍ଷସ ବିବାହ ଓ ପୈଶାଚ ବିବାହ । ମନୁ ମଧ୍ୟ ଏହି ଆଠ ପ୍ରକାର ବିବାହ କଥା ତାଙ୍କ ସ୍ମୃତି-ଶାସ୍ତ୍ରରେ କହିଛନ୍ତି । (୫) ଏହି ବିବାହ ପଦ୍ଧତି ଯେ ବୈଦିକ କାଳରୁ ଚାଲିଆସୁଥିଲା ତାହା ରାଧାକୃଷ୍ଣନ୍‌ଙ୍କସମେତ ଅନେକ ପଣ୍ଡିତଙ୍କର ମତ । ମହାକାବ୍ୟ-ଯୁଗରେ ଏହାର ପ୍ରଚଳନ ସମ୍ପର୍କରେ ରାଧାକୃଷ୍ଣନ୍ ସ୍ପଷ୍ଟ ଭାବରେ କହନ୍ତି

The Epics, the Smritis and the Dharma Sastras mention eight forms of marriages, which include relics of ealier stages that have survived into the latter. Many of these can be traced to the period of the Rigveda. Four forms are approved, while the other four are disapproved. (୬)

ବ୍ରାହ୍ମ, ଦୈବ, ଆର୍ଷ ଓ ପ୍ରାଜାପତ୍ୟ ବିବାହ ପଦ୍ଧତି ଆର୍ଯ୍ୟମାନଙ୍କ ପାଇଁ ଥିଲା ଗ୍ରହଣୀୟ । ଗାନ୍ଧର୍ବ ବିବାହ କାମଜ ପ୍ରେମ ଉପରେ ନିର୍ଭରଶୀଳ ଥିବାରୁ ତାହା ସମାଜ ଦ୍ୱାରା ପ୍ରଥମେ ଗ୍ରହଣୀୟ ହୋଇନଥିଲା । କିନ୍ତୁ ପରେ ନାନା ପ୍ରକାର ଘୃଣ୍ୟ ପ୍ରଚଳନରେ ସମାଜ ଏହାକୁ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲା । ସେଥିପାଇଁ ଧର୍ମଶାସ୍ତ୍ରରେ ବ୍ୟବସ୍ଥା ଦିଆଯାଇଛି ଯେ ଅନ୍ତତଃ ପକ୍ଷେ ଉଚ୍ଚ ତିନି ବର୍ଣ୍ଣଙ୍କ

କ୍ଷେତ୍ରରେ ଗାନ୍ଧର୍ବ ବିବାହରେ ପୁରୁଷ-ସ୍ତ୍ରୀଙ୍କ ମିଳନ ହେବା ପରେ ଅଗ୍ନି-ଦେବତାଙ୍କୁ ସାକ୍ଷୀ ରଖି ବିବାହମନ୍ତ୍ର ସମୂହର ଉଚ୍ଚାରଣ ମାଧ୍ୟମରେ ଏହି ବିବାହକୁ ଆନୁଷ୍ଠାନିକ ଭାବରେ ସାମାଜିକ ସ୍ୱୀକୃତି ଦିଆ କରାଇବାକୁ ପଡ଼ିବ । ଏ ସମ୍ପର୍କରେ ଜୈଷ୍ଣୁ ଦେବଳଙ୍କ ବକ୍ତବ୍ୟ ହେଲା

ଗାନ୍ଧର୍ବେଷୁ ବିବାହେଷୁ ପୁନର୍ବୈବାହିକୋ ବିଧିଃ
କର୍ତ୍ତବ୍ୟଶ୍ଚ ତ୍ରିଭିର୍ବର୍ଣ୍ଣୈଃ ସମୟେନାଗ୍ନିସାକ୍ଷିକଃ ।। (୭)

ଅର୍ଥାତ୍ ଗାନ୍ଧର୍ବ ବିବାହସମୂହରେ ତିନି ବର୍ଣ୍ଣର ଲୋକମାନଙ୍କ ଦ୍ୱାରା ଅଗ୍ନିଙ୍କୁ ସାକ୍ଷୀ ରଖି ବୈବାହିକ ବିଧି ସମ୍ପାଦନ କରିବା ଆବଶ୍ୟକ । ରାକ୍ଷସ, ଅସୁର ଓ ପୈଶାଚ ପଦ୍ଧତିର ବିବାହକୁ ଆର୍ଯ୍ୟମାନେ ଗ୍ରହଣ କରିବାର ପ୍ରଶ୍ନ ହିଁ ଉଠୁ ନଥିଲା । ଏ ସମ୍ପର୍କରେ ରାଧାକୃଷ୍ଣନ୍‌ଙ୍କ ନିମ୍ନଲିଖିତ ମନ୍ତବ୍ୟ ବିଶେଷ ଭାବରେ ପ୍ରଣିଧାନଯୋଗ୍ୟ

> The Brahma form of marriage is the one approved and popular among all classes, and in it the couple pray that their friendship and love shall be lasting and genuine. The other types of marriages which legalise even abduction (Asura), rape (Rakshasa) and seduction (Gandharva) are distorted forms of civilization, and deprive a woman of equality by reducing her to a sexual unit and emptying her of personality. (୭-କ)

ଅତଏବ, ସ୍ତ୍ରୀ ଉପରେ ବଳ ପ୍ରୟୋଗ କରି ଯେଉଁ ବିବାହ କରାଯାଇଥାଏ, ତାହା ସଭ୍ୟ ସମାଜରେ ତାହା କଦାପି ଉତ୍ତମ ବିବାହ ବୋଲି ଗଣ୍ୟ ହୁଏ ନାହିଁ । ଏହି ପରିପ୍ରେକ୍ଷୀରେ ରାମାୟଣରେ ବିବାହର ଚାରି ପ୍ରକାର ଅଙ୍କିତ କରାଯାଇଛି ତାହା ବର୍ତ୍ତମାନ ବିଚାର୍ଯ୍ୟ ।

ବୈଦିକ କାଳରେ ପତିଙ୍କୁ ବାଛିବା ପାଇଁ ପତ୍ନୀଙ୍କର ପୂର୍ଣ୍ଣ ସ୍ୱାଧୀନତା ଥିଲା । ଅବଶ୍ୟ ଏଥିପାଇଁ ପିତାମାତାଙ୍କ ସ୍ୱୀକୃତି ଅଣାଯାଉଥିଲା; କିନ୍ତୁ ତାହା ଥିଲା ଆନୁଷ୍ଠାନିକ ମାତ୍ର । ସେହି କାଳରେ ଅନୁଷ୍ଠିତ ହେଉଥିବା 'ସମନ' ନାମକ ଉତ୍ସବରେ କିପରି ସ୍ତ୍ରୀମାନେ ସେମାନଙ୍କ ପତିମାନଙ୍କୁ ବାଛୁଥିଲେ ସେ କଥା ପୂର୍ବ ପରିଚ୍ଛେଦରେ ବର୍ଣ୍ଣିତ । ରାମାୟଣ ଯୁଗରେ କିନ୍ତୁ ଏ ସ୍ୱାଧୀନତା ସ୍ତ୍ରୀମାନଙ୍କର ହ୍ରାସ ପାଇଥିଲା । ଅବଶ୍ୟ ସ୍ତ୍ରୀମାନଙ୍କ ପାଇଁ ସ୍ୱୟମ୍ବର-ସଭା ଅନୁଷ୍ଠିତ

ହେଉଥିଲା । କିନ୍ତୁ ସ୍ତ୍ରୀ କାହାଙ୍କୁ ପତିରୂପରେ ବରଣ କରିଦେଲେ ଯେ ସଙ୍ଗେ ସଙ୍ଗେ ତାଙ୍କ ସହିତ ବିବାହ ହୋଇ ଯାଉଥିଲା ତାହା ନୁହେଁ । ସେଥିପାଇଁ ପୁନଃ ପକ୍ଷର ପିତାଙ୍କ ସମ୍ମତି ଅଣାଇବାକୁ ପଡ଼ୁଥିଲା । ସୀତାଙ୍କ ପାଇଁ ଯେଉଁ ସ୍ୱୟମ୍ବର ହୋଇଥିଲା, ସେଥିରେ ନିଜ ପତିଙ୍କୁ ବାଛିବା ପାଇଁ ତାଙ୍କର ସ୍ୱାଧୀନତା ନଥିଲା; କାରଣ ଏହି ସ୍ୱୟମ୍ବର ଥିଲା ସର୍ତ୍ତମୂଳକ ଏବଂ ଏହି ସର୍ତ୍ତ ତାଙ୍କ ପିତା ଜନକ ଅରୋପ କରିଥିଲେ । ଏହି ସର୍ତ୍ତଟି ଥିଲା, ଯେଉଁ ବ୍ୟକ୍ତି ଶିବଧନୁରେ ଗୁଣ ଚଢ଼ାଇ ପାରିବେ, ସୀତା ତାଙ୍କୁ ହିଁ ପତି ରୂପରେ ବରଣ କରିବେ । ରାମ ଧନୁରେ ଗୁଣ ଚଢ଼ାଇବାକୁ ସମର୍ଥ ହୋଇଥିଲେ । ତେଣୁ ସୀତା ତାଙ୍କୁ ପତିରୂପରେ ବରିଲେ । କିନ୍ତୁ ସଙ୍ଗେ ସଙ୍ଗେ ସେମାନଙ୍କ ବିବାହ ହୋଇପାରି ନଥିଲା । ସେଥିପାଇଁ ରାମଙ୍କ ପିତା ଦଶରଥଙ୍କ ଅନୁମତି ଲୋଡ଼ା ଯାଇଥିଲା । ତାଙ୍କ ଅନୁମତି ମିଳିବା ପରେ ଯାଇ ଏହି ବିବାହ ସଂଘଟିତ ହୋଇଥିଲା । ଦଶରଥ ସୀତା ଓ ଊର୍ମିଳାଙ୍କୁ ପୁତ୍ରବଧୂ ରୂପେ ବରଣ କରିବା ପରେ ଯାଇ ଜନକ ସେ ଦୁହିଁଙ୍କୁ ଯଥାକ୍ରମେ ରାମ ଓ ଲକ୍ଷ୍ମଣଙ୍କ ହାତରେ ଟେକି ଦେବା ପାଇଁ ସଂକଳ୍ପବଦ୍ଧ ହୋଇଥିଲେ । (୮) ବେଦବତୀଙ୍କ ପିତା ତାଙ୍କୁ ବିଷ୍ଣୁଙ୍କ ହାତରେ ଟେକି ଦେବା ପାଇଁ ମନସ୍ଥ କରିଥିଲେ । ତାଙ୍କ ଇଚ୍ଛା ପୂରଣ କରିବାକୁ ଯାଇ ସେ (ବେଦବତୀ) ପିତାଙ୍କ ମୃତ୍ୟୁ ପରେ ଅବିବାହିତା ରହିଗଲେ ସିନା, ଅନ୍ୟ କାହାଙ୍କୁ ବିବାହ କଲେ ନାହିଁ । ପରେ ଅବଶ୍ୟ ସେ ରାବଣ ଦ୍ୱାରା ଧର୍ଷିତା ହୋଇ ଶେଷରେ ଅଗ୍ନିରେ ପ୍ରାଣୋତ୍ସର୍ଗ କଲେ । ଅତଏବ ପିତାଙ୍କ ମୃତ୍ୟୁ ପରେ ମଧ୍ୟ ତାଙ୍କ ଇଚ୍ଛାର ପ୍ରଭାବ ସନ୍ତାନମାନଙ୍କ ଉପରେ ପଡ଼ୁଥିଲା । ରାମାୟଣର କହିବା ଅନୁସାରେ ସୀତା ରାମଙ୍କର ଅତି ପ୍ରିୟତମା ଥିବାର କାରଣ ହେଲା ସେ (ସୀତା) ଥିଲେ 'ଦାରା ପିତୃକୃତା ଇତି' ଅର୍ଥାତ୍, 'ପିତା ଠିକ୍ କରିଥିବା ସ୍ତ୍ରୀ' । ରାମାୟଣରେ କେବଳ ଗୋଟିଏ ସ୍ଥାନରେ ପିତାଙ୍କ ବିନାନୁମତିରେ ପୁନଃ ବିବାହ କରିଥିବାର ନିଦର୍ଶନ ମିଳିଥାଏ । ତାହା ହେଉଛି ମୁନି ଋଷ୍ୟଶୃଙ୍ଗଙ୍କ କ୍ଷେତ୍ରରେ । ସେ ରାଜା ଲୋମପାଦଙ୍କ କନ୍ୟା ଶାନ୍ତାଙ୍କୁ ବିବାହ କରିଥିଲେ ପିତା ବିଭାଣ୍ଡକ ମୁନିଙ୍କୁ ନପଚାରି । ବୋଧହୁଏ, ବିଭାଣ୍ଡକ ଏଥିରେ ସମ୍ମତି ଦେବେନାହିଁ ବୋଲି ତାଙ୍କର ଆଶଙ୍କା ଥିଲା । ତେଣୁ ସେ ଏପରି କରିଥିଲେ । ସେ ଚାହିଁଥିଲେ ବିବାହ ପରେ ପୁତ୍ରବଧୂଙ୍କୁ ନେଇ ପିତାଙ୍କ ଆଗରେ ଠିଆ କରାଇଦେବେ, ଯାହା ଫଳରେ କି ସେ (ପିତା) ଆଉ ଆପତ୍ତି କରିବାର ଅବସ୍ଥାରେ ନଥିବେ । ଏହି ଗୋଟିଏ କ୍ଷେତ୍ରକୁ ଛାଡ଼ିଦେଲେ ରାମାୟଣରେ ଅନ୍ୟ କୁତ୍ରାପି ପିତାଙ୍କ ବିନା ଅନୁମତିରେ ସନ୍ତାନମାନଙ୍କର ବିବାହ ଉତ୍ସବ ସମାହିତ ହୋଇଥିବାର ନିଦର୍ଶନ ଆମେ ପାଉନାହିଁ । କନ୍ୟା-ପିତାଙ୍କ ଉପରେ ନିଜ କନ୍ୟାଙ୍କ ଲାଗି ବର ଠିକ୍ କରିବାର ଦାୟିତ୍ୱ କପରି

ଭାବରେ ପୂର୍ବପୁରୁଷ ନ୍ୟସ୍ତ ଥିଲା ତତ୍ସମ୍ପର୍କରେ ମନ୍ତବ୍ୟ ଦେବାକୁ ାଇ ଶର୍ମା କୁହନ୍ତି

In the Ramayana the authority of the father to select a partner for his daughter is unequivocally by the maidens themselves and the Ramayana-fathers have admirably exercised, this authority in the interest of their daughters. (୯)

ବ୍ରକଙ୍ଗଟନ୍ ମଧ୍ୟ ଠିକ୍ ସେହି ମର୍ମରେ ତାଙ୍କର ମନ୍ତବ୍ୟ ଦେଇଛନ୍ତି । ତାଙ୍କ ଭାଷାରେ

Nevertheless, the initiative for arranging the marriage is normally with the fathers. (୯-କ)

ଅତଏବ, ଆମକୁ ସ୍ୱୀକାର କରିବାକୁ ପଡ଼ିବ ଯେ ରାମାୟଣକାଳୀନ ବିବାହ ଥିଲା ପିତାଙ୍କ ଅନୁମତିସାପେକ୍ଷ ।

ଆର୍ଯ୍ୟବିବାହରେ 'ପାଣିଗ୍ରହଣ' ଓ 'ସପ୍ତପଦୀ' ହେଉଛି ଦୁଇଟି ପ୍ରଧାନ ଅନୁଷ୍ଠାନ । 'ପାଣିଗ୍ରହଣ' ଅନୁଷ୍ଠାନରେ ସ୍ୱାମୀ ସ୍ତ୍ରୀର ହାତ ଧରି ଅଗ୍ନି ଥର ଅଗ୍ନି ଗୃହ ଚାରିପଟେ ବୁଲି ଆସି ନିର୍ଦ୍ଦିଷ୍ଟ ମନ୍ତ୍ର ବୋଲିଥାନ୍ତି । ସେତେବେଳେ ଉଭୟ ପରସ୍ପରର ହୃଦୟକୁ ସ୍ପର୍ଶ କରି କୁହନ୍ତି, ଏଣିକି ସେମାନେ ପୃଥକ୍ ଶରୀର ଧାରଣ କରିଥିଲେ ହେଁ ସେମାନଙ୍କର ମନ ହେବ ଏକ । ବର କନ୍ୟାକୁ କୁହନ୍ତି, "ତୁମେ ତୁମ ସ୍ୱାମୀଙ୍କ ଗୃହକୁ ଆସି ସୌଭାଗ୍ୟବତୀ ହୁଅ । ତୁମ ମନରେ ଦୁଃଖ ନଆସୁ ।" 'ସପ୍ତପଦୀ' ଅନୁଷ୍ଠାନରେ ବର ଓ କନ୍ୟା ଉଭୟ ଏକାଠି ସାତ ପାଦ ଚାଲନ୍ତି । ଏହି ଅନୁଷ୍ଠାନଟି ହେଉଛି ସବୁଠାରୁ ବେଶି ତାତ୍ପର୍ଯ୍ୟପୂର୍ଣ୍ଣ । ଏହା ନହେବା ପର୍ଯ୍ୟନ୍ତ ବିବାହ ସମ୍ପୂର୍ଣ୍ଣ ହୁଏ ନାହିଁ । 'ସପ୍ତପଦୀ' ବିନା 'ପାଣିଗ୍ରହଣ'ର କିଛି ହିଁ ଅର୍ଥ ନାହିଁ । ରାଧାକୃଷ୍ଣନ୍‌ଙ୍କ ଭାଷାରେ

At the end of Saptapadi ceremony, the bride passes into the family of the husband. Marriage may be regarded as complete with it. (୧୦)

ତାଙ୍କର ଏହି ମନ୍ତବ୍ୟ ମନୁଙ୍କ ନିର୍ଦ୍ଦେଶ ଉପରେ ଅବଧାରିତ । ମନୁ କୁହନ୍ତି :

ପାଣିଗ୍ରହଣିକା ମନ୍ତ୍ରା ନିୟତଂ ଦାରଲକ୍ଷଣମ୍ ।
ତେଷାଂ ନିଷ୍ଠା ତୁ ବିଜ୍ଞେୟା ବିଦ୍ୱଦ୍‌ଭିଃ ସପ୍ତମେ ପଦେ (୧୧)

ଅର୍ଥାତ୍ ପାଣିଗ୍ରହଣ-ମନ୍ତ୍ରସମୂହର (ଉଚ୍ଚାରଣ) ହେଉଛି ସ୍ତ୍ରୀଗ୍ରହଣର ଲକ୍ଷଣ । ପଣ୍ଡିତମାନେ ଏହି ମନ୍ତ୍ରଗୁଡ଼ିକର ସପ୍ତମ ପଦ ଉପରେ ଖୁବ୍ ଗୁରୁତ୍ୱ ଦେଇଥାନ୍ତି । ସପ୍ତମ ପଦର ଅର୍ଥ ଏଠାରେ ହେଲା ବରକନ୍ୟା ଏକାଠି ଚାଲିବା ପରେ ସପ୍ତମ ପଦ ପକାଇଲା ବେଳେ ଯେଉଁ ପଙ୍କ୍ତି ବୋଲାଯାଏ । ଏହାର ତାତ୍ପର୍ଯ୍ୟ ହେଲା, ବସ୍ତୁତଃ ପାଣିଗ୍ରହଣରେ ସ୍ତ୍ରୀଗ୍ରହଣ ଆରମ୍ଭ ହୁଏ ଏବଂ 'ସପ୍ତପଦୀ' ପରେ ଶେଷ ହୁଏ । ସପ୍ତପଦୀ ସମୟରେ ବରକନ୍ୟା ଦୁହେଁ ମିଶି ଧର୍ମ, ପ୍ରେମ ଓ ସାଂସାରିକ ଅଭ୍ୟୁଦୟ କ୍ଷେତ୍ରରେ ପରସ୍ପରର ଆଶାକୁ କିପରି ରୂପାୟିତ କରାଇବେ, ସେଥିପାଇଁ ଯେଉଁ ଶପଥ ଗ୍ରହଣ କରିଥାନ୍ତି, ତାହା ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ସେହି ମନ୍ତ୍ରଟି ହେଲା

"ସମଞ୍ଜନ୍ତୁ ବିଶ୍ୱେଦେବାଃ ସମାପୋ ହୃଦୟାନି ନୌ ।
ସ ମାତରିଶ୍ୱା ସ ଧାତା ସମୁଦ୍ରେଷ୍ଟ୍ରୀ ଦଧାତୁ ନୌ ।।" (୧୨)

ଅର୍ଥାତ୍ ବିଶ୍ୱେଦେବଗଣ (ବିଶ୍ୱର ଦେବତାମାନେ) ଆମ ଦୁହିଁଙ୍କ ହୃଦୟକୁ ଯୋଡ଼ି ଦିଅନ୍ତୁ; ଜଳରାଶି ଆମ ଦୁହିଁଙ୍କ ହୃଦୟକୁ ଯୋଡ଼ି ଦିଅନ୍ତୁ । ମାତରିଶ୍ୱା, ଧାତା ଓ ଦେଷ୍ଟ୍ରୀ ଆମ ଦୁହିଁଙ୍କୁ ନିବିଡ଼ ଭାବରେ ବାନ୍ଧି ଦିଅନ୍ତୁ । ପତି-ପତ୍ନୀଙ୍କର ପାରସ୍ପରିକ ସ୍ନେହ ଓ ପ୍ରେମ କିପରି ଶିଳା ଭଳି ଦୃଢ଼ ରହିବ ଏବଂ ଧ୍ରୁବତାରା ଭଳି ସ୍ଥିର-ଅଟଳ ରହିବ, ତତ୍ସମ୍ପର୍କରେ ମଧ୍ୟ ନବ ଦମ୍ପତିଙ୍କୁ ଅବହିତ କରାଇ ଦିଆଯାଇ-ଥାଏ । ଏ ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ରାଧାକୃଷ୍ଣନ୍ ଯଥାର୍ଥରେ କହନ୍ତି

> They ascend a stone and offer a prayer that their mutual love be firm and steadfast as the stone they tread on. At night the polar star and Arundhati are shown. The bride-groom is enjoined to be as steady as the polar star, and the bride as faithful as Arundhati. (୧୩)

ଆର୍ଯ୍ୟବିବାହର ଏହି ପରମ୍ପରା ରାମାୟଣ-ଯୁଗରେ ମଧ୍ୟ ଉଜ୍ଜୀବିତ ଥିଲା । ରାମ ଓ ସୀତାଙ୍କ ବିବାହ ଥିଲା ଆଦର୍ଶ ବିବାହ । ରାମାୟଣରେ ଉକ୍ତ ବିବାହ ସମ୍ପର୍କରେ କିଭଳି ବର୍ଣ୍ଣନା କରାଯାଇଛି, ତାହା ଅନୁଧ୍ୟାନ କଲେ ଆମେ ସେତେବେଳେ ଚଳୁଥିବା ବିବାହ-ପଦ୍ଧତି ଉପରେ ଏକ ସ୍ଥୂଳ ଧାରଣା କରିପାରିବା । ନିମ୍ନଲିଖିତ ପଦ୍ଧତି ଅନୁଯାୟୀ ଉକ୍ତ ବିବାହ ସଂଘଟିତ ହୋଇଥିଲା

ଏହି ବିବାହ ରାମଙ୍କ ଶିବଧନୁ ଭଙ୍ଗଠାରୁ ଆରମ୍ଭ କରି କନ୍ୟା ବିଦାୟ ପର୍ଯ୍ୟନ୍ତ ରାମାୟଣର ବାଳକାଣ୍ଡସ୍ଥ ୬୭ତମ ସର୍ଗରୁ ୭୪ତମ ସର୍ଗ ମଧ୍ୟରେ ବର୍ଣ୍ଣିତ ।

ପୂର୍ବରୁ କୁହାଯାଇଛି, ଜନକ ପଣ ରଖିଥିଲେ ଯେ ଯେଉଁ ବ୍ୟକ୍ତି ଶିବଧନୁରେ ଗୁଣ ଚଢ଼ାଇ ପାରିବେ, ସେହି ବ୍ୟକ୍ତିଙ୍କ ହସ୍ତରେ ହିଁ ସେ ସ୍ୱକନ୍ୟା ସୀତାଙ୍କୁ ସମର୍ପଣ କରିବେ । ସେହି କଥା ସେ ବିଶ୍ୱାମିତ୍ର ମୁନିଙ୍କୁ ସ୍ମରଣ କରାଇ ଦେଇ କହିଥିଲେ

"ଯଦ୍ୟସ୍ୟ ଧନୁଷୋ ରାମଃ କୁର୍ଯ୍ୟାଦାରୋପଣଂ ମୁନେ ।
ସୁତାମଯୋନିଜାଂ ସୀତାଂ ଦଦ୍ୟାଂ ଦାଶରଥେରହମ୍ ॥" (୧୪)

ଅର୍ଥାତ୍ ହେ ମୁନେ ! ଯଦି ଏହି ଧନୁରେ ରାମ ଗୁଣ ଚଢ଼ାଇ ଦେବେ, ତା'ହେଲେ ମୁଁ ସେହି ଦଶରଥଙ୍କ ପୁତ୍ରଙ୍କ ହାତରେ ଅଯୋନିସମ୍ଭୂତା ସୀତାଙ୍କୁ ସମର୍ପଣ କରିବି । ତତ୍ପରେ ଜନକ ଶିବଧନୁର କ'ଣ କ'ଣ ବିଶିଷ୍ଟ ଗୁଣ ଅଛି ତାହା ବର୍ଣ୍ଣନା କରିଥିଲେ । ଇତି ପୂର୍ବରୁ ବହୁ ବୀର ଏହି ଧନୁରେ ଗୁଣ ଚଢ଼ାଇ ନପାରି ବ୍ୟର୍ଥ-ମନୋରଥ ହୋଇଥିଲେ । ରାମ ଧନୁରେ ଗୁଣ ଚଢ଼ାଇବାକୁ ଉଠିଲେ ଏବଂ ତାହା କରିବାରେ ସେ ସମର୍ଥ ହେଲେ । ଗୁଣ ଚଢ଼ାଇ ଚଢ଼ାଉ ଧନୁଟି ଭାଙ୍ଗି ଯାଇଥିଲା । ଏହାକୁ ବର୍ଣ୍ଣନା କରିବାକୁ ଯାଇ ବାଲ୍ମୀକି କୁହନ୍ତି

"ଆରୋପୟିତ୍ୱା ମୌର୍ବୀଂ ଚ ପୂରୟାମାସ ତଦ୍ଧନୁଃ ।
ତଦ୍‌ବଭଞ୍ଜ ଧନୁର୍ମଧ୍ୟେ ନରଶ୍ରେଷ୍ଠୋ ମହାଯଶାଃ ॥" (୧୫)

ଅର୍ଥାତ୍ ଗୁଣ ଚଢ଼ାଇକରି ମହାଯଶସ୍ୱୀ ଗୁଣିଶ୍ରେଷ୍ଠ ରାମ ଯେତେବେଳେ ସେହି ଧନୁକୁ କାନଯାଏ ଟାଣିନେଲେ, ସେତେବେଳେ ତାହା ମଝିରୁ ଦୁଇ ଖଣ୍ଡ ହୋଇ ଭାଙ୍ଗିଗଲା । ଏହି କାର୍ଯ୍ୟଟିର ସମାପନାନ୍ତେ ଜନକଙ୍କର ରାମଙ୍କ ଅସୀମ ଶୌର୍ଯ୍ୟବୀର୍ଯ୍ୟ ସମ୍ପର୍କରେ ଆଉ ସନ୍ଦେହ ରହିଲା ନାହିଁ । ସେ ଯେ ହେଉଛନ୍ତି ସୀତାଙ୍କର ଯୋଗ୍ୟ ପତି, ଏହି ବିଶ୍ୱାସ ତାଙ୍କର ଦୃଢ଼ମୂଳ ହୋଇ ଉଠିଲା । ରାମ ତାଙ୍କ ସର୍ତ୍ତ ପୂରଣ କରି ଶିବଧନୁରେ ଗୁଣ ଚଢ଼ାଇଲେ । ଏଣିକି ପିତା ହିସାବରେ ସୀତାଙ୍କୁ ରାମଙ୍କ ହାତରେ ଟେକି ଦେବାର ଦାୟିତ୍ୱ ରହିଲା ତାଙ୍କର । ସେ ଏହି ଦାୟିତ୍ୱପୂର୍ଣ୍ଣ କର୍ମଟି କରିବା ପାଇଁ ଆଗେଇ ଆସିଲେ ।

ଜନକ ବିଶ୍ୱାମିତ୍ରଙ୍କ ସହିତ ଓ ତାଙ୍କ ନିଜ ପୁରୋହିତ ଶତାନନ୍ଦଙ୍କ ସହିତ ପରାମର୍ଶ କରି ରାଜା ଦଶରଥଙ୍କ ପାଖକୁ ଖବର ପଠାଇଲେ ଯେ ତାଙ୍କ ପୁତ୍ର ରାମ ଶିବଧନୁ ଭଙ୍ଗ କରି ସୀତାଙ୍କୁ ବିବାହ କରିବାର ଯୋଗ୍ୟତା ଅର୍ଜନ କରିଛନ୍ତି । ଏହି ବିବାହ ଲାଗି ସେ ଦଶରଥଙ୍କୁ ଅନୁମତି ମାଗିବା ସଙ୍ଗେ ସଙ୍ଗେ ବିବାହୋତ୍ସବରେ ଯୋଗଦାନ କରିବା ପାଇଁ ଅନୁରୋଧ କଲେ । ତାଙ୍କ ଦୂତମାନେ ଅଯୋଧ୍ୟାରେ ପହଞ୍ଚି ଏ ଖବର ଦଶରଥଙ୍କୁ ଜଣାଇଲେ ଏବଂ ଏହି ବିବାହ-ବନ୍ଧନରେ ଯଦି ତାଙ୍କର ସ୍ୱୀକୃତି ଥାଏ, ତେବେ ସେ ଯଥାଶୀଘ୍ର ତାଙ୍କ

ଉପାଧ୍ୟାୟଙ୍କ ସହିତ ମିଥିଳାକୁ ଯାତ୍ରା କରିବା ଲାଗି ପ୍ରସ୍ତାବ ଦେଲେ । ଏ ସଂପର୍କରେ ଜନକଙ୍କ ଦୂତମାନେ ଦଶରଥଙ୍କୁ ଯାହା କହିଥିଲେ, ତାହା ଏଠାରେ ଉଲ୍ଲେଖନୀୟ

ଯଦି ବୋ ରୋଚତେ ବୃତ୍ତଂ ଜନକସ୍ୟ ମହାତ୍ମନଃ ।
ପୁରୀଂ ଗଚ୍ଛାମହେ ଶୀଘ୍ରଂ ମା ଭୂତ୍ କାଳସ୍ୟ ପର୍ଯ୍ୟୟଃ । (୧୬)

ଅର୍ଥାତ୍ ଜନକ ପଠାଇଥିବା ଏଇ ଖବର ଯଦି ମହାତ୍ମାଙ୍କୁ ଭଲ ଲାଗୁଛି, ତେବେ ଆଉ କାଳବିଳମ୍ବ ନକରି ଆପଣ ମିଥିଳାପୁରୀକୁ ଯାଆନ୍ତୁ । ଏଥିରୁ ଜଣାପଡ଼ୁଛି ଯେ ରାମଙ୍କ ବିବାହ ତାଙ୍କ ପିତାଙ୍କ ସ୍ୱୀକୃତି ଉପରେ ହିଁ ଥିଲା ନିର୍ଭରଶୀଳ; କେବଳ ଶିବଧନୁ ଭାଙ୍ଗି ଦେବା ଉପରେ କିନ୍ତୁ ନୁହେଁ । ଦଶରଥ ତାଙ୍କ ପୁରୋହିତ ବଶିଷ୍ଠଙ୍କ ସହିତ ଓ ଅନ୍ୟାନ୍ୟ ବ୍ରାହ୍ମଣ ପରାମର୍ଶଦାତାମାନଙ୍କ ସହିତ ଏ ବିଷୟରେ ପରାମର୍ଶ କଲେ । ସମସ୍ତେ ଏହି ବିବାହ କରଣୀୟ ବୋଲି କହିଲେ । ସେମାନଙ୍କ ପରାମର୍ଶ କ୍ରମେ ସେ ତହିଁ ଆର ଦିନ ମିଥିଳା ଯାତ୍ରା କରିବା ପାଇଁ ମନସ୍ଥ କଲେ । ତତ୍‌ପରେ ସେ ଖଜଣାଖାନାର ଦାୟିତ୍ୱରେ ଥିବା ଅଧିକାରୀମାନଙ୍କୁ ପ୍ରଚୁର ଅର୍ଥ ଓ ଧନରତ୍ନ ଆଦି ଧରି ଆଗରୁ ଗୋଟିଏ ଦଳରେ ଯିବା ପାଇଁ ଆଦେଶ ଦେଲେ । ବଶିଷ୍ଠ ଓ ଅନ୍ୟମାନଙ୍କ ସହିତ ସେ ପଛେ ପଛେ ମିଥିଳାକୁ ଯାତ୍ରା କଲେ ଏବଂ ଚାରି ଦିନ ପରେ ଯାଇ ସେଠାରେ ପହଞ୍ଚିଲେ ।

ମିଥିଳାରେ ବିବାହୋତ୍ସବ ଖୁବ୍ ଧନଦଉଲତ ସହିତ ସମାହିତ ହୋଇଥିଲା । ଏହା ଚାରି ଦିନ ଧରି ଚାଲିଥିଲା । ପ୍ରଥମ ଦିନ ଦଶରଥ ମିଥିଳାରେ ପହଞ୍ଚିବା ପରେ ଜନକ ତାଙ୍କ ପୁରୋହିତ ଶତାନନ୍ଦଙ୍କ ସହିତ ଆସି ତାଙ୍କୁ ଏକ ଭବ୍ୟ ସଂବର୍ଦ୍ଧନା କରିଥିଲେ । ତାଙ୍କ ସହିତ ଆସିଥିବା ବଶିଷ୍ଠ, ବାମଦେବ, ଜାବାଲି ଆଦି ଅନ୍ୟାନ୍ୟ ବ୍ୟକ୍ତିମାନେ ମଧ୍ୟ ଅନୁରୂପ ଭାବରେ ସଂବର୍ଦ୍ଧିତ ହୋଇଥିଲେ । ବରଯାତ୍ରୀମାନଙ୍କ ରହିବା ଲାଗି ସ୍ୱତନ୍ତ୍ର ଆବାସସ୍ଥଳୀର ବ୍ୟବସ୍ଥା କରାଯାଇଥିଲା । ସେମାନେ ଯାଇ ସେଠାରେ ବିଶ୍ରାମ ନେଲେ । ଏହି ଆବାସସ୍ଥଳୀର ନାମ ଥିଲା 'ଜନକାର୍ଯ୍ୟା' । ଏପରିକି କାଳିଦାସଙ୍କ ସମୟ ପର୍ଯ୍ୟନ୍ତ ବି ଏହି 'ଉପକାର୍ଯ୍ୟା' ନାମଟି ବ୍ୟବହୃତ ହେଉଥିବାର ପ୍ରମାଣ ଆମେ ତାଙ୍କ ଲିଖିତ ରଘୁବଂଶରେ (ଷଷ୍ଠଦଶ ସର୍ଗ) ଦେଖିବାକୁ ପାଇଥାଉଁ । ଦଶରଥଙ୍କୁ ସ୍ୱାଗତ-ସଂବର୍ଦ୍ଧନା କଲାବେଳେ ସ୍ପଷ୍ଟ ଭାବରେ ଜନକ କହୁଛନ୍ତି ଯେ ତାଙ୍କ ଆସିବା ଦ୍ୱାରା ସେ ନିଜକୁ ଖୁବ୍ ଭାଗ୍ୟବାନ୍ ମନେ କରୁଛନ୍ତି । ବଶିଷ୍ଠାଦି ଋଷିମାନଙ୍କ ପ୍ରତି ମଧ୍ୟ ସେ ସମଧିକ ବିନମ୍ର ଭାବ ପ୍ରଦର୍ଶନ କରିଛନ୍ତି ଏବଂ ସମସ୍ତଙ୍କୁ ହାର୍ଦ୍ଦିକତାର

ସହିତ ସ୍ୱାଗତ କରିଛନ୍ତି । (୧୭) ଏଥିରୁ ଜଣାପଡ଼ୁଛି ଯେ ସେତେବେଳେ ବରପିତାସମେତ ବରଯାତ୍ରୀମାନଙ୍କୁ ଭବ୍ୟ ସଂବର୍ଦ୍ଧନା ଦିଆଯିବା ଅବସରରେ ଖୁବ୍ ଆଦରସମ୍ମାନ ପ୍ରଦର୍ଶନ କରାଯାଉଥିଲା । ବିବାହୋତ୍ସବରେ ବରକୁ ଯେମିତି ଶ୍ରେଷ୍ଠ ବ୍ୟକ୍ତି ହିସାବରେ ଧରାଯାଉଥିଲା, ବରଯାତ୍ରୀମାନଙ୍କୁ ମଧ୍ୟ ଠିକ୍ ଅନୁରୂପ ଭାବରେ ଶ୍ରେଷ୍ଠଯାତ୍ରୀ ବା ଶ୍ରେଷ୍ଠ ଅତିଥି ହିସାବରେ ପୂଜା କରାଯାଉଥିଲା । ଏହି ପରମ୍ପରା ବର୍ତ୍ତମାନ ମଧ୍ୟ ହିନ୍ଦୁସମାଜରେ ଚାଲି ଆସୁଛି, ଯଦିଓ ପୂର୍ବକାଳର ନିଷ୍ଠା କିଛି ପରିମାଣରେ ହ୍ରାସ ପ୍ରାପ୍ତ ହୋଇଛି । ସେ ଯାହା ହେଉ, ଦଶରଥଙ୍କ ଆଗମନର ସମ୍ବାଦ ପାଇ ରାମ ଓ ଲକ୍ଷ୍ମଣ ବିଶ୍ୱାମିତ୍ର ମୁନିଙ୍କ ପଛେ ପଛେ ଯାଇ ପିତାଙ୍କ ପାଖକୁ ଗଲେ ଏବଂ ତାଙ୍କ ଚରଣ-ସ୍ପର୍ଶ କଲେ । ଦଶରଥ ପୁତ୍ରଦ୍ୱୟଙ୍କୁ ଦେଖି ଭାରି ଖୁସି ହେଲେ ଏବଂ ଖୁବ୍ ଆନନ୍ଦ ମନରେ ରାତିଟି ବିତାଇଲେ । (୧୮)

ଦ୍ୱିତୀୟ ଦିନ କନ୍ୟା ପିତା ବରପିତାଙ୍କୁ ସ୍ୱଗୃହକୁ ଯିବା ପାଇଁ ନିମନ୍ତ୍ରଣ କଲେ । ସେ ଦିନ ବରପିତା ଓ କନ୍ୟାପିତା ନିଜ ନିଜର କୁଳପରିଚୟ ପରସ୍ପର ସମ୍ମୁଖରେ ଦେବାର ବ୍ୟବସ୍ଥା କରିଥିଲେ । ଦଶରଥ ତାଙ୍କ କୁଳପରିଚୟ ଦେବା ଲାଗି ବଶିଷ୍ଠଙ୍କୁ ନିୟୋଜିତ କରିଥିଲେ । ଜନକ ସ୍ୱୀୟ କୁଳପରିଚୟ ନିଜେ ଦେଇଥିଲେ । ଏଭଳି କୁଳପରିଚୟ ସେତେବେଳେ ଥିଲା ଅନିବାର୍ଯ୍ୟ; କାରଣ ଉଭୟ କୁଳପରିଚୟ ପାଇ ସାରିବା ପରେ ହିଁ ବିବାହକାର୍ଯ୍ୟ ସମାହିତ ହେଉଥିଲା । ବିବାହ ଲାଗି କୁଳ, ଗୋତ୍ର ଇତ୍ୟାଦି ବିଷୟରେ ଜ୍ଞାନଲାଭ କରିବା ଆବଶ୍ୟକ ହେଉଥିଲା । ବଶିଷ୍ଠ ଜନକଙ୍କ ସମ୍ମୁଖରେ ଦଶରଥଙ୍କ କୁଳପରିଚୟ ଦେଇ ସାରିବା ପରେ ଦଶରଥ ଜନକଙ୍କୁ ପୁତ୍ର ରାମ ଓ ଲକ୍ଷ୍ମଣଙ୍କ ଲାଗି ଯଥାକ୍ରମେ ତାଙ୍କ (ଜନକଙ୍କ) କନ୍ୟା ସୀତା ଓ ଉର୍ମିଳାଙ୍କୁ ସମର୍ପଣ କରିବା ପାଇଁ ଅନୁରୋଧ କରିଥିଲେ । ଜନକ ମଧ୍ୟ ନିଜ କୁଳପରିଚୟ ଦେଇ ସାରିବା ପରେ ସୀତା ଓ ଉର୍ମିଳାଙ୍କୁ ଯଥାକ୍ରମେ ରାମ ଓ ଲକ୍ଷ୍ମଣଙ୍କ ହସ୍ତରେ ସମର୍ପଣ କରିବା ପାଇଁ ନିଜର ଦୃଢ଼ ସଂକଳ୍ପ ପ୍ରକାଶ କରିଥିଲେ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ବିବାହ ଲାଗି ଆନୁଷ୍ଠାନିକ ପ୍ରସ୍ତାବ ପ୍ରଥମେ ବରପିତାଙ୍କ ଠାରୁ ଆସିଥିଲା ଏବଂ କନ୍ୟାପିତା ସେଥିରେ ରାଜି ହୋଇଥିଲେ । କନ୍ୟାପିତା ହେଉଛନ୍ତି କନ୍ୟାଦାତା । ବରପିତା ସ୍ୱୀୟ ପୁତ୍ରଙ୍କ ପାଇଁ କନ୍ୟା ଗ୍ରହଣ କରନ୍ତି । ତେଣୁ ନିୟମ ଅନୁଯାୟୀ ଗ୍ରହୀତା ପ୍ରଥମେ କନ୍ୟାଦାନ ମାଗିବେ ଏବଂ ଦାତା ଏହି ଦାନ ଦେବା ପାଇଁ ସ୍ୱୀକୃତି ଦେବେ । ଏହି ପାରମ୍ପରିକ ନିୟମଟିକୁ ଦଶରଥ ଓ ଜନକ ଯଥାକ୍ରମେ ବରପିତା ଓ କନ୍ୟାପିତା ହୋଇ ନିଷ୍ଠାର ସହିତ ପାଳନ କରିଥିଲେ । ରାମ ସ୍ୱଭାବ ବର୍ଣ୍ଣନା ଅନୁସାରେ (୧।୭୧।୨୩)

ଜନକଙ୍କ ପରାମର୍ଶ କ୍ରମେ ଦଶରଥ ତାଙ୍କ ଦଳ ସହିତ ନିଜ ଆବାସ-ସ୍ଥଳୀକୁ ଫେରିଆସି ସେଠାରେ ଗୋଦାନ ଓ ଶ୍ରାଦ୍ଧ କରାଇଥିଲେ । ଏହି ଶ୍ରାଦ୍ଧ, ଦାନ ଆଦି ତୃତୀୟ ଦିବସରେ ସମାହିତ ହୋଇଥିଲା ।

ତତ୍‌ପର ଦିନ ବା ଚତୁର୍ଥ ଦିନ ବିବାହର ପ୍ରଧାନ ପ୍ରଧାନ କର୍ମମାନ ସମାହିତ କରାଯାଇଥିଲା । ଏହା ଥିଲା ଫାଲ୍‌ଗୁନ ମାସର ଆରମ୍ଭ ଦିବସ; ଏଣୁ ଅତ୍ୟନ୍ତ ଶୁଭ ଦିବସ । ବର ଖୁବ୍ ଆଡ଼ମ୍ବରପୂର୍ଣ୍ଣ ଶୋଭାଯାତ୍ରାରେ ଜନକଙ୍କ ଭିଆସକୁ ଆସିବା ପରେ ତାଙ୍କୁ ସଙ୍ଗେ ସଙ୍ଗେ ବେଦୀ ଉପରକୁ ନିଆଯାଇଥିଲା । କନ୍ୟାପିତା ତାଙ୍କୁ ବରଣ କରି ତାଙ୍କ ହାତ ଧରି ବେଦୀ ଉପରକୁ ନେଇ ଯାଇଥିଲେ । ଅଗ୍ନିଙ୍କୁ ସାକ୍ଷୀ ରଖି ଅନ୍ୟାନ୍ୟ କର୍ମସମୂହ ମଧ୍ୟରେ ତିନୋଟି ପ୍ରଧାନ କର୍ମ କରାଯାଇଥିଲା। ତାହା ହେଲା, ପାଣିଗ୍ରହଣ, ଅଗ୍ନି-ପରିଣୟନ ଓ ସ୍ପୃଷ୍ଟ୍ୟନ । ପାଣିଗ୍ରହଣ ବେଳେ ଜନକ ସୀତାଙ୍କ ହାତ ନେଇ ରାମଙ୍କୁ ଧରାଇ ଦେଇଥିଲେ ଏବଂ ତାଙ୍କୁ ତାହା ଗ୍ରହଣ କରିବା ପାଇଁ ଅନୁରୋଧ କରିଥିଲେ । ଏହା କହି ସେ ରାମ ଓ ସୀତାଙ୍କ ଯୁଗ୍ମ ହସ୍ତରେ ମନ୍ତ୍ରପୂତ ଜଳ ସିଞ୍ଚିଥିଲେ । ସେତେବେଳେ ସେ ରାମଙ୍କୁ ଯାହା କହିଥିଲେ, ତାହା ଏଠାରେ ଉଲ୍ଲେଖନୀୟ । ବାସ୍ତବିକ, ସେଇ କେତୋଟି ପଙ୍‌କ୍ତିରୁ ରାମାୟଣୀୟ ସମାଜରେ ପତି-ପତ୍ନୀଙ୍କ ସମ୍ପର୍କ କିଭଳି ମହାନ୍ ଥିଲା, ତଦ୍‌ବିଷୟରେ ଅବଧାରଣା କରିହେବ । ସେ କହିଥିଲେ

× × ×

ଇୟଂ ସୀତା ମମ ସୁତା ସହଧର୍ମଚରୀ ତବ ।
ପ୍ରତୀଚ୍ଛ ଚୈନାଂ ଭଦ୍ରଂ ତେ ପାଣିଂ ଗୃହ୍ଣୀଷ୍ୱ ପାଣିନା ।
ପତିବ୍ରତା ମହାଭାଗା ଚ୍ଛାୟେବାନୁଗତା ସଦା । (୧୯)

ଅର୍ଥାତ୍ ହେ ରଘୁନନ୍ଦନ ! ତୁମର ମଙ୍ଗଳ ହେଉ । ଏଇ ମୋ'ର କନ୍ୟା ସୀତା ତୁମର ସହଧର୍ମିଣୀ ଭାବରେ ଉପସ୍ଥିତ । ଏହାକୁ ସ୍ୱୀକାର କର ଏବଂ ଏହାର ହାତ ନିଜ ହାତରେ ନିଅ । ଏହି ପରମ ପତିବ୍ରତା ଓ ସୌଭାଗ୍ୟବତୀ ଥାଇ ଛାୟା ଭଳି ସର୍ବଦା ତୁମ ପଛେ ପଛେ ଚାଲିଥିବ । ରାମଙ୍କୁ ବିବାହ କରିବା ପରେ ପତ୍ନୀ ହିସାବରେ ସୀତାଙ୍କର ଯେଉଁ ରୂପ ହେବ ବୋଲି ଜନକ କହିଥିଲେ ତହିଁରୁ ଆମେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା

କ) ସେତେବେଳେ ସ୍ତ୍ରୀକୁ ସ୍ୱାମୀଙ୍କ ସକଳ ଧର୍ମକାର୍ଯ୍ୟର ସାଥୀ ବୋଲି ଧରାଯାଉଥିଲା ।

ଖ) ସ୍ତ୍ରୀର ପାତିବ୍ରତ୍ୟ ଉପରେ ଖୁବ୍ ଗୁରୁତ୍ୱ ଦିଆଯାଉଥିଲା ।

ଗ) ସ୍ତ୍ରୀକୁ ପରମା ସୌଭାଗ୍ୟବତୀ ବୋଲି ଧରା ଯାଉଥିଲା । ବିବାହ ପରେ ସ୍ୱାମୀଙ୍କ ପାଇଁ ସୌଭାଗ୍ୟ ଆଣି ଦେବାରେ ସ୍ତ୍ରୀ ନିଶ୍ଚିତ ଭାବରେ ଏକ କାରଣ ଥିଲା ।

ଘ) ସ୍ତ୍ରୀ ସର୍ବଦା ସ୍ୱାମୀଙ୍କର ଅନୁଗାମିନୀ ହେଉଥିଲା ।

ଙ) କାୟା ସହିତ ଛାୟା ଲାଗି ରହିଲା ଭଳି ସର୍ବଦା ସ୍ୱାମୀଙ୍କ ଜୀବନରେ ସ୍ତ୍ରୀ ଓତଃପ୍ରୋତଃ ଭାବରେ ଜଡ଼ିତ ହୋଇ ରହୁଥିଲା ।

ପତ୍ନୀ ତାଙ୍କ ପତିଙ୍କର କେତେଦୂର ସହକର୍ମିଣୀ ଓ ସହଧର୍ମିଣୀ ତତ୍‌ସମ୍ପର୍କରେ ରାଧାକୃଷ୍ଣନ୍ ମନ୍ତବ୍ୟ ଦେବାକୁ ଯାଇ କୁହନ୍ତି

> She is the effective partner in life. She should not be discarded in religious duties, business matters and the emotional life. All religious acts should be performed together. (୨୦)

ରାମାୟଣ-ଯୁଗରେ ମଧ୍ୟ ପତ୍ନୀଙ୍କର ଏହିଭଳି ଆସନ ଥିଲା । ଉଦାହରଣ-ସ୍ୱରୂପ ପିତୃସତ୍ୟ ପାଳନ କରିବା ପାଇଁ ରାମ ବନ-ଗମନ କରିଥିଲା ବେଳେ ତାଙ୍କ ପତ୍ନୀ ସୀତା ତାଙ୍କର ସହଗମନ କରିଥିଲେ । ସ୍ତ୍ରୀମାନେ ସ୍ୱାମୀମାନଙ୍କ ସହିତ ସେତେବେଳେ ବହୁ ସାଧାରଣ ଉତ୍ସବାନୁଷ୍ଠାନମାନଙ୍କରେ ଯୋଗଦାନ କରୁଥିଲେ, ଯାହାକୁ କି ଲକ୍ଷ୍ୟ କରି ବ୍ରକିଙ୍ଗ୍‌ଟନ୍ କୁହନ୍ତି

> The presence of wives at some of the great public rituals or other ceremonial occasions is the common feature. (୨୦-କ)

ବର୍ତ୍ତମାନ ଆମେ ବିବାହର କର୍ମକର୍ମାଣି ଆଡ଼କୁ ଫେରିବା । ପାଣିଗ୍ରହଣ ପରେ ଆଉ ଏକ ପ୍ରଧାନ କର୍ମ ହେଲା 'ଅଗ୍ନିପରିକ୍ରମଣ' । ଏହି କର୍ମରେ ପବିତ୍ର ବିବାହ-ବେଦୀ ଉପରେ ସଂସ୍ଥାପିତ ଅଗ୍ନିଦେବତାଙ୍କ ଚାରିପଟେ ବର ଓ କନ୍ୟାଙ୍କୁ ବୁଲି ଆସିବାକୁ ପଡ଼ୁଥିଲା । ବିବାହର ପରିସମାପ୍ତି ପରେ ପିତାମାତା ଓ ଅନ୍ୟାନ୍ୟ ବରିଷ୍ଠ ଗୁରୁଜନ ତଥା ବନ୍ଧୁବାନ୍ଧବମାନେ ବରକନ୍ୟାଙ୍କୁ ଆଶୀର୍ବାଦ କରିଥିଲେ । ଏହି କର୍ମର ନାମ ହେଉଛି 'ସ୍ୱସ୍ତ୍ୟୟନ' ।

ଗୋଟିଏ ଦିନରେ ଜନକଙ୍କ ଦୁଇ ଝିଅ ସୀତା ଓ ଊର୍ମିଳାଙ୍କ ସହିତ ରାମ-ଲକ୍ଷ୍ମଣଙ୍କର ଏବଂ ତାଙ୍କ ଭାଇ ସଙ୍କାଶ୍ୟାର ରାଜା କୁଶଧ୍ୱଜଙ୍କ ଦୁଇ ଝିଅ ମାଣ୍ଡବୀ-ଶ୍ରୁତକୀର୍ତ୍ତିଙ୍କର ଭରତ-ଶତ୍ରୁଘ୍ନଙ୍କ ସହିତ ବିବାହ ଅନୁଷ୍ଠିତ ହୋଇଥିଲା । ଜନକ କୁଶଧ୍ୱଜଙ୍କୁ ଏଥିପାଇଁ ସଙ୍କାଶ୍ୟାରୁ ଡ଼କାଇଥିଲେ । (୨୧) ଏ ସମସ୍ତ ବିବାହ

ଗୋଟିଏ ଘରରେ ହିଁ ସମାହୃତ ହୋଇଥିଲ । କନ୍ୟାମାନଙ୍କୁ ଶ୍ୱଶୁର-ଗୃହକୁ ବିଦାୟ କରିବା ସମୟରେ ବହୁତ ଯୌତୁକ ପଠାଇ ଥିବା କଥା ରାମାୟଣରେ (୧।୭୪।୩-୭) ବର୍ଣ୍ଣିତ । ଏହି ଯୌତୁକର ସାମଗ୍ରୀଗୁଡ଼ିକ ହେଲେ

କ) ପ୍ରଚୁର କନ୍ୟାଧନ;

ଖ) ବହୁ ଲକ୍ଷ ଧେନୁ;

ଗ) କୋଟି କୋଟି ସଂଖ୍ୟାର କମ୍ବଳ ଓ ସରୁ ଲୁଗା;

ଘ) ନାନା ପ୍ରକାର ଅଳଙ୍କାରରେ ସଜା ହୋଇଥିବା ବହୁ ସଂଖ୍ୟକ ହାତୀ, ଘୋଡ଼ା ଓ ରଥ;

ଙ) ଅଳଙ୍କୃତ ହୋଇଥିବା ବହୁ ସଂଖ୍ୟକ ପଦାତିକ ସୈନ୍ୟ;

ଚ) ନିଜ କନ୍ୟାମାନଙ୍କ ଲାଗି ଶହ ଶହ ସଖୀ ଓ ଦାସଦାସୀ; ଏବଂ

ଛ) ବହୁ ସଂଖ୍ୟକ ସ୍ୱର୍ଣ୍ଣମୁଦ୍ରା, ରୌପ୍ୟମୁଦ୍ରା, ମୁକ୍ତା ଓ ବିଦ୍ରୁମ ।

ଏଥିରେ ହୁଏତ କବିସୁଲଭ ଅତିରଞ୍ଜନ କିଛିଟା ଥାଇପାରେ । କିନ୍ତୁ କନ୍ୟାମାନେ ଯେ ଶ୍ୱଶୁରଗୃହକୁ ଆସିଲା ବେଳେ ସାଥିରେ ପ୍ରଚୁର ଯୌତୁକ ଆଣିଥିଲେ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଆଜିକାଲି ଭଳି ଯୌତୁକ ସେତେବେଳେ ଏକ ସାମାଜିକ ବ୍ୟାଧି ନଥିଲା । ବରପକ୍ଷରୁ ଆଦୌ ଯୌତୁକ ଦାବି କରାଯାଉ ନଥିଲା କନ୍ୟାପିତା ତାଙ୍କ ସାମର୍ଥ୍ୟକୁ ଦୃଷ୍ଟିରେ ରଖି ଖୁସିରେ ତାଙ୍କ କନ୍ୟାକୁ ଯାହା-କିଛି ଦେଉଥିଲେ । ଜନକ ଓ ଦଶରଥଙ୍କ ମଧ୍ୟରେ ଅନେକ ବିଷୟରେ କଥା-ବାର୍ତ୍ତା ହୋଇଥିବା କଥା ରାମାୟଣରେ ବର୍ଣ୍ଣିତ । କିନ୍ତୁ ଯୌତୁକ ଦାବି ବିଷୟରେ କୌଣସି କଥାବାର୍ତ୍ତା ହୋଇନାହିଁ । ଏପରି କି ଜନକ ମଧ୍ୟ ନିଜ ତରଫରୁ କନ୍ୟାମାନଙ୍କ ସାଥିରେ କ'ଣ କ'ଣ ଯୌତୁକ ପଠାଇବେ ସେ ବିଷୟ ମଧ୍ୟ କହି ନାହାନ୍ତି । ଯୌତୁକ ସଂପର୍କରେ ଆଲୋଚନା କରିବା ସେତେବେଳେ ଥିଲା ଅପସଂସ୍କୃତ ଆଚରଣର ନିଦର୍ଶନ । ତେଣୁ କୌଣସି ପକ୍ଷରୁ ଏ ବିଷୟ କେହି ଉତ୍ଥାପନ କରୁନଥିଲେ । ରାମାୟଣକାଳୀନ ପ୍ରଚଳିତ ଯୌତୁକ ସଂପର୍କରେ ଶର୍ମା ମନ୍ତବ୍ୟ ଦେବାକୁ ଯାଇ ଯଥାର୍ଥରେ କହନ୍ତି

> Dowry was no doubt, given by the bride's father; but it was a voluntary gift and did not weigh as a consideration for marriage by either party for fixation of marriage. Sometimes immoveable property was also given as a gift to the bride by

her father. This formed the bride's stridhan, her personal property throughout her life. (୨୯-କ)

ସ୍ତ୍ରୀସ୍ୱ ପତ୍ନୀମାନଙ୍କ ସାଥିରେ ଧରି ରାମ ରାଜପୁତ୍ର ଫେରିବା ପରେ ଅଯୋଧ୍ୟାରେ ମଧ୍ୟ ଅନେକ ଉତ୍ସବ ସମାହିତ ହୋଇଥିଲା । ରାମାୟଣର ବର୍ଣ୍ଣନା ଅନୁଯାୟୀ (୧।୭୭।୭-୮) ସାରା ଅଯୋଧ୍ୟା ନଗରୀ ସୁନ୍ଦର ଭାବରେ ସଜା ଯାଇଥିଲା ଏବଂ ପୁରବାସୀମାନେ ବର-କନ୍ୟାମାନଙ୍କର ଶୁଭାଗମନକୁ ଉତ୍କଣ୍ଠାର ସହିତ ଅପେକ୍ଷା ରହିଥିଲେ । ବଧୂମାନଙ୍କୁ ଶ୍ୱଶ୍ରୂମାନେ ବନ୍ଦାପନା କରି ରାଜ-ଭିଆସକୁ ନେଇ ଯାଇଥିଲେ । ଏହି ବନ୍ଦାପନାରେ ଅନ୍ୟାନ୍ୟ ପୁରନାରୀ-ମାନେ ମଧ୍ୟ ଯୋଗ ଦେଇଥିଲେ । ବଧୂମାନଙ୍କୁ ଦେବତାୟତନ ବା ଦେବମନ୍ଦିରଗୁଡ଼ିକୁ ନିଆଯାଇଥିଲା ଏବଂ ସେଠାରେ ସେମାନେ ଦେବତାମାନଙ୍କୁ ପୂଜା କରିଥିଲେ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ବୈଦିକ ଯୁଗରେ ଦେବମନ୍ଦିର ନଥିଲା । ରାମାୟଣ ଯୁଗ ବେଳକୁ ଏହା ଆସି ସାରିଲାଣି । ତତ୍‌ପରେ ସେମାନେ ଶାଶୁ-ଶଶୁର ତଥା ଅନ୍ୟାନ୍ୟ ଗୁରୁଜନମାନଙ୍କୁ ପ୍ରଣାମ କରି ସେମାନଙ୍କଠାରୁ ଆଶୀର୍ବାଦ ଗ୍ରହଣ କରିଥିଲେ ।

ଏଠାରେ ଗୋଟିଏ କଥା ଲକ୍ଷଣୀୟ ଯେ ପାରଂପରିକ ଚତୁର୍ଥୀ ଉତ୍ସବ ଅଯୋଧ୍ୟାରେ ପାଳିତ ହୋଇଥିଲା କି ନାହିଁ ତଦ୍‌ବିଷୟରେ ରାମାୟଣରେ ସ୍ପଷ୍ଟ ଭାବରେ କିଛି ଉଲ୍ଲେଖ ନାହିଁ । କିନ୍ତୁ ଏହା ନିଶ୍ଚିତ ଭାବରେ ପାଳିତ ହୋଇଥିବ; କାରଣ ଏହା ବିବାହର ଗୋଟିଏ ଅପରିହାର୍ଯ୍ୟ ଅଂଶବିଶେଷ ଏବଂ ଏହାକୁ ପାଳନ କରିବାର ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ରହିଛି । ଏକ ଗୃହରେ ପୃଥକ୍ ଶଯ୍ୟାରେ ସ୍ୱାମୀ ଓ ସ୍ତ୍ରୀଙ୍କୁ ତିନି ଦିନ ଲାଗି ଶୋଇବାର ବିଧି ଅଛି । ଏହାର ତାତ୍‌ପର୍ଯ୍ୟ ହେଲା ଯୌନ-ଜୀବନରେ ସଂଯମଭାବ ଆଚରଣ ଲାଗି ଶିକ୍ଷା ଦେବା । ଚତୁର୍ଥ ଦିନ ଯାଇ ସ୍ୱାମୀ-ସ୍ତ୍ରୀଙ୍କର ମିଳନ ଘଟିଥାଏ । ଏହା ଚତୁର୍ଥୀ ଉତ୍ସବ ନାମରେ ଅଭିହିତ । ରାଧାକୃଷ୍ଣନ୍ ଏ ସଂପର୍କରେ ଯୌକ୍ତିକତା ସାଧନପୂର୍ବକ କୁହନ୍ତି :

For three days after the marriage, the two are to sleep in different beds, but in the same room, and practise celibacy. This is to indicate that self-control is essential in married life. The bride and the bridegroom approach their marriage with lives that are chaste. They guard their chastity, and after it as a tribute to the mate at the time

of marriage. No other gift can quite compensate for the loss of this. (୨୨)

ପରାଶର ଗୃହ୍ୟସୂତ୍ର (୧।୮।୧) କହୁଥାଏ, "ସମ୍ବତ୍ସରଂ ନ ମିଥୁନଂ ଉପେୟାତାଂ ଦ୍ୱାଦଶରାତ୍ରଂ ଷଡ୍‌ରାତ୍ରଂ ତ୍ରିରାତ୍ରଂ ଅନ୍ତତଃ" । ଅର୍ଥାତ୍ ବିବାହ ପରେ ଏକ ବର୍ଷ ବା ବାର ରାତି ବା ଛଅ ରାତି ବା ଅନ୍ତତଃ ପକ୍ଷେ ତିନ ରାତି ସ୍ୱାମୀ-ସ୍ତ୍ରୀ ମୈଥୁନରତ ହେବା ଉଚିତ ନୁହେଁ । ଏହି ସୂତ୍ର ଅତି ପ୍ରାଚୀନ କାଳରୁ ଭାରତରେ ଚାଲିଆସୁଥିବା ବିଧିବିଧାନ ଉପରେ ନିର୍ଦ୍ଦିଷ୍ଟ ଭାବରେ ପ୍ରତିଷ୍ଠିତ ହୋଇଥିବ । ତେଣୁ ରାମାୟଣ-ଯୁଗରେ ଏହା ଚାଲୁଥିବ ବୋଲି ଆଶା କରାଯାଏ । ତେବେ ବିବାହର କେତେ ଦିନ ଅନ୍ତରରେ ଏହି ଚତୁର୍ଥୀ ଉତ୍ସବ ପାଳିତ ହୋଇଥିଲା, ତାହା ସଠିକ କହିହେବ ନାହିଁ । ଏଭଳି ଏକ ଉତ୍ସବ ସଂଘଟିତ ହୋଇଥିବାର ସମ୍ଭାବନା ଆମେ ରାମାୟଣର ନିମ୍ନଲିଖିତ ପଙ୍‌କ୍ତିଟିରୁ ଜାଣିପାରୁ ।

"ରେମିରେ ମୁଦିତାଃ ସର୍ବା ଭର୍ତୃଭିର୍ମୁଦିତା ରହଃ" (୨୩)

ଅର୍ଥାତ୍ ନିଜ ନିଜ ସ୍ୱାମୀମାନଙ୍କ ସହିତ ନିର୍ଜନରେ ରମଣ କରି ସେହି କନ୍ୟାମାନେ ଧମସ୍ତେ ଖୁବ୍ ଆନନ୍ଦରେ ସମସ୍ତ କଟାଇବାକୁ ଲାଗିଲେ ।

ଏଠାରେ ଆମେ ଲକ୍ଷ୍ୟ କରୁ ଯେ ପୁରୁଷ-ସ୍ତ୍ରୀଙ୍କ ମିଳନକୁ ବାଲ୍ମୀକି ଅତି ଖୋଲାଖୋଲି ଭାବରେ ବର୍ଣ୍ଣନା କରିଛନ୍ତି । କାମଜନିତ ସୁଖକୁ ସେ ଅଶ୍ଳୀଳ ବୋଲି ଭାବିନାହାନ୍ତି । ବାସ୍ତବିକ କ୍ରୌଞ୍ଚଟିକୁ କାମସୁଖରୁ ବଞ୍ଚିତ କରି ବ୍ୟାଧ କ୍ରୌଞ୍ଚଟିକୁ ଶରବିଦ୍ଧ କରି ମାରିଦେବା ପରେ ବାଲ୍ମୀକିଙ୍କ ମନରେ ଯେଉଁ ଶୋକ ଜାତ ହୋଇଥିଲା, ତାହାରି ଫଳଶ୍ରୁତି ସ୍ୱରୂପ ତାଙ୍କ କଣ୍ଠରୁ କବିତ୍ୱର ଆଦି ଶ୍ଳୋକ ନିର୍ଗତ ହୋଇଥିଲା 'ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ......' ଇତ୍ୟାଦି । ଭାରତୀୟ ଚିନ୍ତାଧାରାରେ ଯୌନ ସୁଖକୁ ଅଶ୍ଳୀଳ ବୋଲି କଦାପି ଧରା ଯାଉନଥିଲା; କାରଣ ଏହା ଥିଲା ପୁରୁଷ-ସ୍ତ୍ରୀଙ୍କର ଏକ ସ୍ୱାଭାବିକ ପ୍ରବୃତ୍ତିର ଅଭିପ୍ରକାଶ । ସେଥିପାଇଁ ତ ବୈଦିକ ବିବାହ-ପଦ୍ଧତିରେ ବର କନ୍ୟାକୁ ସମସ୍ତଙ୍କ ଆଗରେ ବିନା ସଙ୍କୋଚରେ କହିପାରୁଥିଲା

"ତ୍ୱାମହଂ ଶେପଂ ପ୍ରହାରୟାମି ।"

ଅର୍ଥାତ୍ ତୁମ ପ୍ରତି ମୁଁ ଜନନେନ୍ଦ୍ରିୟ-ପ୍ରହାର କରିବି । ଖାଲି ତ ବାଲ୍ମୀକିଙ୍କ ରଚନା ନୁହେଁ, ଆମେ ସଂସ୍କୃତ ଓ ପାଲି-ପାକୃତ ସାହିତ୍ୟରେ ଅନେକ ବିଶିଷ୍ଟ କବିଙ୍କ ରଚନାକୁ ଆଜିକାଲିର ମାପକାଠିରେ ଅଶ୍ଳୀଳ ବୋଲି କହିବା । ଆମ ଉପରେ ପଡ଼ିଥିବା ପାଶ୍ଚାତ୍ୟ ପ୍ରଭାବର ଏହା ଫଳ । ହ୍ୟାଭେଲକ୍ ଏଲିସ୍ (Havelock Ellis) କିନ୍ତୁ ଏହି କଥାଟିର ଠିକଣା ମର୍ମ ବୁଝାଇଥିଲେ । ତାଙ୍କ ଭାଷାରେ

In India sexual life has been sanctified and divinised to a greater extent than in any other part of the world. It seems never to have entered into the heads of the Hindu legislators that anything natural could be offensively obscene, a singularity which pervades all their writings, but is no proof of the depravity of their morals. India, both as regards theory and practice, possesses an importance which it is impossible for us even to conceive. (୨୩–କ)

ଶରୀର ତ ହେଲା ଦେବତାଙ୍କ ମନ୍ଦିର । ନାରୀ ଓ ପୁରୁଷଙ୍କ ଶରୀର ପରସ୍ପର ପ୍ରତି ଆକୃଷ୍ଟ ହେବାଟା ହେଲା ଏକ ସ୍ୱାଭାବିକ ପ୍ରବୃତ୍ତି । ଏହି ପ୍ରବୃତ୍ତିକୁ ପ୍ରେମ ମାଧ୍ୟମରେ ଉଚ୍ଚତର ଓ ଉଚ୍ଚ ସ୍ତରକୁ ଉନ୍ନୀତ କରିହେବ । ଚେତନା-ସ୍ତରରୁ, ହୃଦୟର ଅଭ୍ୟନ୍ତରରୁ ଜାତ ହୋଇଥାଏ ପ୍ରେମ । ବିବାହର ଉଦ୍ଦେଶ୍ୟ ହେଉଛି ଉଭୟଙ୍କ ଠାରେ ଏହି ପ୍ରେମଭାବକୁ ଜାଗ୍ରତ କରାଇବା । ଏହାର ଉଦ୍ଦେଶ୍ୟ କେବଳ ନୁହେଁ କେବଳ ଜାନ୍ତବ ଯୌନ ସମ୍ଭୋଗରେ ମାତି ରହିବା । ବିବାହ ଏହି ପ୍ରେମଭାବ ଅଣାଇବାର ଏକ ମାଧ୍ୟମ ରୂପେ କାର୍ଯ୍ୟ କରିଥାଏ । ଏହା ରାଧାକୃଷ୍ଣନ୍‌ଙ୍କ ଦ୍ୱାରା ମଧ୍ୟ ସମର୍ଥିତ, ଯେତେବେଳେ ସେ କୁହନ୍ତି

Love is neither mystic adoration nor animal indulgence. It is the attraction of one human being to another, under the guidance of the highest sentiments. Marriage, as an institution, is a device for the expression and development of love. (୨୩–ଖ)

ପ୍ରାଚୀନ ଆର୍ଯ୍ୟ ପରମ୍ପରା ପ୍ରେମ ଓ ଯୌନ ଜୀବନକୁ ଏହି ଦୃଷ୍ଟିକୋଣରୁ ଦେଖୁଥିଲା । ବାଲ୍ମୀକିଙ୍କ ରାମାୟଣୀୟ ପରମ୍ପରା ମଧ୍ୟ ଥିଲା ଅନୁରୂପ । ସେଥିପାଇଁ ତାଙ୍କ ରଚନାରେ ମୁକ୍ତ ଯୌନ ଜୀବନର ବର୍ଣ୍ଣନା ଦେଖା ଦେଇଥାଏ । ଏହାକୁ କୌଣସି ମତେ ଅଶ୍ଳୀଳ ବୋଲି କୁହାଯାଇ ପାରିବ ନାହିଁ ।

ଦଶରଥଙ୍କ ଚାରି ପୁତ୍ରଙ୍କ ସହିତ ଜନକଙ୍କର ଦୁଇ କନ୍ୟା ଓ ଦୁଇ ଭ୍ରାତୃଷ୍ପୁତ୍ରୀଙ୍କର ଯେଉଁ ବିବାହ ସଂଘଟିତ ହୋଇଥିଲା ତାହା କେଉଁ ପର୍ଯ୍ୟାୟର

ବିବାହ, ସେ ବିଷୟରେ ନାନା ମତ ଦେଖାଯାଏ । କେହି କେହି କୁହନ୍ତି ରାମ-ସୀତାଙ୍କ ବିବାହ ହେଉଛି ପ୍ରାଜାପତ୍ୟ ବିବାହ ଏବଂ ଅନ୍ୟ ତିନୋଟି ବିବାହ ହେଉଛି ବ୍ରାହ୍ମ ବିବାହ । ଏସ. ଏନ୍. ବ୍ୟାସ ଏହି ପଣ୍ଡିତମାନଙ୍କ ମଧ୍ୟରେ ଅଗ୍ରଣୀ । (୨୪) ମନୁସ୍ମୃତିରେ ବ୍ରାହ୍ମ ବିବାହ ଓ ପ୍ରାଜାପତ୍ୟ ବିବାହ ସମ୍ପର୍କରେ ବିଶଦ ଭାବରେ କୁହାଯାଇଛି । କିନ୍ତୁ ତହିଁରେ ଏହି ବିବାହ-ପଦ୍ଧତି ଦ୍ୱୟର ସଂଜ୍ଞା ସମ୍ପର୍କରେ ଯାହା କୁହାଯାଇଛି, ତହିଁରୁ ଏହି ପଦ୍ଧତିଦ୍ୱୟ ମଧ୍ୟରେ ଥିବା ତାରତମ୍ୟ ବୁଝିପାରୁ ନାହିଁ । ମନୁସ୍ମୃତିରେ ଦିଆଯାଇଥିବା ଏହି ସଂଜ୍ଞାକୁ ବିଶ୍ଳେଷଣ କରି ଆଲ୍‌ଟେକର୍ (Altekar) କୁହନ୍ତି

> In the Brahma marriage, the bride properly bedecked and ornamented, is offered to a bride-groom who is specially invited for the purpose, while in Prajapatya, the bride is offered according to due rites, but with an injunction to the couple that they should be always inseparable companions in the discharge of their religious duties. (୨୫)

ତେବେ ଦୁଇ ବିବାହ ପଦ୍ଧତି ପ୍ରାୟ ସମାନ । କେବଳ ପ୍ରାଜାପତ୍ୟ ବିବାହରେ ସ୍ୱାମୀ-ସ୍ତ୍ରୀ ପରସ୍ପରଠାରୁ କେବେ ହେଲେ ବିଚ୍ଛିନ୍ନ ହେବେ ନାହିଁ ବୋଲି କୁହାଯାଇଥାଏ । ଏଭଳି କହିବାରେ କିଛି ଅର୍ଥ ନାହିଁ । କାରଣ ବ୍ରାହ୍ମ-ବିବାହରେ ମଧ୍ୟ ଯେଉଁ ମନ୍ତ୍ର ବୋଲା ଯାଇଥାଏ, ତହିଁରେ ସ୍ୱାମୀ-ସ୍ତ୍ରୀଙ୍କର ସମ୍ପର୍କ ଧରଣୀ ଓ ଚନ୍ଦ୍ରବାଳର ସମ୍ପର୍କ ଭଳି ଚିରନ୍ତନ ଓ ଅଚ୍ଛେଦ୍ୟ ବୋଲି କୁହା ଯାଇଥାଏ । ସେଥିପାଇଁ ବ୍ରାହ୍ମବିବାହ ଓ ପ୍ରାଜାପତ୍ୟ ବିବାହ ଏକାର୍ଥବୋଧକ କହିଲେ ସତ୍ୟର ଅପଲାପ ହେବ ନାହିଁ । ବାସ୍ତବିକ ପୂର୍ବରୁ ଏହାର ନାମ ବ୍ରାହ୍ମବିବାହ ଥିଲା । ପରେ ଗୌତମ ଓ ବୋଧାୟନ ବିବାହ-ତାଲିକାରେ ପ୍ରାଜାପତ୍ୟ ବିବାହକୁ ଯୋଡ଼ିଛନ୍ତି । ଆଲ୍‌ଟେକର ତେଣୁ ଯଥାର୍ଥରେ କୁହନ୍ତି

> "Brahma and Prajapatya are synonymous words. (୨୬)

ଏହିସବୁ ଆଲୋଚନା ଦୃଷ୍ଟେ ରାମ-ସୀତାଙ୍କ ବିବାହ ଓ ମିଥିଳାରେ ହୋଇଥିବା ଅନ୍ୟ ତିନୋଟି ବିବାହ ମଧ୍ୟରେ କିଛି ପାର୍ଥକ୍ୟ ଆବିଷ୍କାର କରିବା ପାଇଁ ଚେଷ୍ଟା କରିବା ଉଚିତ ନୁହେଁ । ସମସ୍ତ ବିବାହ ଥିଲା ଗୋଟିଏ ପ୍ରକାର ବିବାହ—ବ୍ରାହ୍ମ ବିବାହ, ଯାହାର କି ଅନ୍ୟ ନାମ ପ୍ରାଜାପତ୍ୟ ବିବାହ ।

ଦୈବ ବିବାହ କିମ୍ବା ଆର୍ଷ ବିବାହର କୌଣସି ନିର୍ଦ୍ଦିଷ୍ଟ ବର୍ଣ୍ଣନା ରାମାୟଣରେ ଦିଆ ଯାଇନାହିଁ । ଏହାର ଚରିତ୍ରମାନଙ୍କ ପାଇଁ ସେଭଳି ପରିସ୍ଥିତି ଉପୁଜି ନାହିଁ ବୋଲି ଏ ପ୍ରକାର ବର୍ଣ୍ଣନା ଦିଆ ଯାଇନାହିଁ ।

ପୂର୍ବରୁ କୁହାଯାଇଛି ଗାନ୍ଧର୍ବ ବିବାହ ସମାଜରେ ସାଧାରଣତଃ ଆଦୃତ ହେଉନଥିଲା; କାରଣ ଏହା ଥିଲା କାମଜ । ଆର୍ଯ୍ୟ-ବିବାହର ଆଭିମୁଖ୍ୟ ଥିଲା କାମ ପ୍ରବୃତ୍ତିକୁ ଦମନ କରିବା । କିନ୍ତୁ ଗାନ୍ଧର୍ବ ବିବାହ ଥିଲା ତାହାର ବିପରୀତମୁଖୀ । ଏଣୁ ଆର୍ଯ୍ୟମାନଙ୍କ ପାଖରେ ଏହା ଶ୍ଳାଘ୍ୟ ନଥିଲା । ରାମାୟଣରେ କେବଳ ଗୋଟିଏ ଗାନ୍ଧର୍ବ ବିବାହର ଉଦାହରଣ ଦିଆଯାଇଛି । ତାହା ଉତ୍ତରକାଣ୍ଡର ୮୯ତମ ସର୍ଗରେ ବର୍ଣ୍ଣିତ । ତାହା ହେଉଛି ଇଲା ଓ ବୁଧଙ୍କ ମଧ୍ୟରେ ହୋଇଥିବା ଗାନ୍ଧର୍ବ ବିବାହ । ଇଲା କାମଗ୍ରସିଣୀ ହୋଇ ବୁଧଙ୍କ ପାଖକୁ ଆସିଛନ୍ତି ଏବଂ ବୁଧ ତାଙ୍କୁ ଗ୍ରହଣ କରିଛନ୍ତି । ଇଲାଙ୍କ ସହିତ ପ୍ରୀତିଲଗ୍ନ ଥାଇ ବୁଧଙ୍କର ମାଧବ ମାସ ବା ବୈଶାଖ ମାସଟି କେମିତି ଗୋଟିଏ ମୁହୂର୍ତ୍ତ ଭଳି କଟିଗଲା, ସେ ସମ୍ପର୍କରେ ବାଲ୍ମୀକି କୁହନ୍ତି

> ବୁଧସ୍ୟ ମାଧବୋ ମାସସ୍ତାମିଲାଂ ରୁଚିରାନନାମ୍ ।
> ଗତୋ ରମୟତୋଽତ୍ୟର୍ଥଂ କ୍ଷଣବତ୍ତସ୍ୟ କାମିନଃ ।" (୨୭)

ଅର୍ଥାତ୍ ସୁମୁଖୀ ଇଲାଙ୍କ ସହିତ ଅତିଶୟ ରମଣରତ କାମୁକ ବୁଧଙ୍କ ବୈଶାଖ ମାସଟି ଗୋଟିଏ ମୁହୂର୍ତ୍ତ ଭଳି ବିତିଗଲା । ଏହି ଘଟଣାଟି କିନ୍ତୁ ଘଟିଥିଲା ବହୁ ପୁରାତନ କାଳରେ, ରାମାୟଣ-ଯୁଗରେ କିନ୍ତୁ ନୁହେଁ । ଅବଶ୍ୟ ଶୂର୍ପଣଖା ରାମ ଓ ଲକ୍ଷ୍ମଣଙ୍କୁ ପ୍ରେମ-ନିବେଦନ କରିଥିଲା । ସେଥିରେ ସେ ସଫଳା ହୋଇଥିଲେ ଗାନ୍ଧର୍ବ-ବିବାହ ସଘଟିତ ହୋଇଥାନ୍ତା । କିନ୍ତୁ ଏ ପ୍ରକାର ପ୍ରେମନିବେଦନ କରିଥିଲା ଜଣେ ରାକ୍ଷସୀ, କୌଣସି ଆର୍ଯ୍ୟ-ରମଣୀ କିନ୍ତୁ ନୁହେଁ । ଏଥିରୁ ଅନୁମିତ ହୁଏ ଯେ ରାମାୟଣ-ସମାଜରେ ଆର୍ଯ୍ୟମାନଙ୍କ ମଧ୍ୟରେ ଗାନ୍ଧର୍ବ ବିବାହ ଲୋକପ୍ରିୟତା ଅର୍ଜନ କରି ନଥିଲା ।

ତତ୍ପରେ ଆସୁର ବିବାହ କଥା । ଏହି ବିବାହର ଲକ୍ଷଣ ମନୁଙ୍କ ଦ୍ୱାରା ନିମ୍ନମତେ ବର୍ଣ୍ଣିତ

> ଜ୍ଞାତିଭ୍ୟୋ ଦ୍ରବିଣଂ ଦତ୍ତ୍ୱା କନ୍ୟାୟୈ ଚୈବ ଶକ୍ତିତଃ ।
> କନ୍ୟାପ୍ରଦାନଂ ସ୍ୱାଚ୍ଛନ୍ଦ୍ୟାଦାସୁରଃ ଧର୍ମ ଉଚ୍ୟତେ ॥

ଅର୍ଥାତ୍ ବିବାହ ହେବାକୁ ଚାହୁଁଥିବା ବ୍ୟକ୍ତି ଯଦି ନିଜ ଶକ୍ତି ଅନୁସାରେ କନ୍ୟାକୁ ଏବଂ ତା'ର ଜ୍ଞାତିଙ୍କୁ ବା ବାପା-ମାଆଙ୍କୁ ଧନ ଦେଇ କନ୍ୟା-ଗ୍ରହଣ କରିଥାଏ, ତେବେ ସେ ପ୍ରକାର ବିବାହକୁ ଆସୁର ବିବାହ ବୋଲି କୁହାଯାଏ । ଏହା

ନିର୍ଣ୍ଣିତ ଭାବରେ ଏକ ନିକୃଷ୍ଟ ଧରଣର ବିବାହ । ଏଥିରେ ଧନ ଦେଇ କନ୍ୟାକୁ କିଣା ଯାଇଥାଏ । ଦଶରଥଙ୍କର କୈକେୟୀଙ୍କ ସହିତ ହୋଇଥିବା ବିବାହକୁ ପଣ୍ଡିତମାନେ 'ଆସୁର-ବିବାହ' ବୋଲି ଆଖ୍ୟା ଦେଇଥାନ୍ତି । ଦୈବାସୁର ବିବାଦରେ କେକୟ-ରାଜ୍ୟ (ଅବିଭକ୍ତ ପଞ୍ଜାବର ଶାହପୁର ଜିଲ୍ଲା) ଯେତେବେଳେ ଅସୁରମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ବିପର୍ଯ୍ୟସ୍ତ ଅବସ୍ଥା ପ୍ରାପ୍ତ ହୋଇଥିଲା, ଦଶରଥ ସେତେବେଳେ ନିଜେ ସେନାବାହିନୀ ସହିତ ଯୁଦ୍ଧରେ ଅବତୀର୍ଣ୍ଣ ହୋଇ କେକୟ-ରାଜାଙ୍କୁ ଏହି ବିପଦରୁ ଉଦ୍ଧାର କରିଥିଲେ । କେକୟରାଜ ଖୁସି ହୋଇ କୃତଜ୍ଞତାର ଚିହ୍ନ ସ୍ୱରୂପ ତାଙ୍କ କନ୍ୟା କୈକେୟୀଙ୍କୁ ଦଶରଥଙ୍କ ହସ୍ତରେ ଅର୍ପଣ କରିଥିଲେ ଏବଂ ଦଶରଥଙ୍କଠାରୁ ପ୍ରତିଶ୍ରୁତି ହାସଲ କରିଥିଲେ ଯେ କୈକେୟୀଙ୍କ ଗର୍ଭରୁ ଜାତ ସନ୍ତାନ ଅଯୋଧ୍ୟାର ରାଜା ହେବ । ସେ କୈକେୟୀଙ୍କୁ 'ରାଜ୍ୟ-ଶୁଳ୍କ' ହିସାବରେ ଅର୍ପଣ କରିଥିଲେ ବୋଲି ରାମାୟଣରେ କୁହାଯାଇଛି । ଏହା ଏକ ପ୍ରକାର କନ୍ୟା-ମୂଲ୍ୟ ସହିତ ସମାନ । ଏ ପ୍ରକାର କନ୍ୟା-ମୂଲ୍ୟର ପଛରେ କେକୟରାଜଙ୍କର ଦୁଇଟି ସ୍ୱାର୍ଥ-ସିଦ୍ଧିର ଉଦ୍ଦେଶ୍ୟ ଥିଲା । ପ୍ରଥମତଃ ତାଙ୍କ ରାଜ୍ୟ ସୁରକ୍ଷିତ ହୋଇଥିଲା ଏବଂ ଦ୍ୱିତୀୟତଃ ତାଙ୍କ କନ୍ୟାଙ୍କ ଗର୍ଭଜାତ ସନ୍ତାନ ଅଯୋଧ୍ୟାର ରାଜା ହେବା ପାଇଁ ପ୍ରତିଶ୍ରୁତି ପାଇବା ଦ୍ୱାରା ତାଙ୍କ କନ୍ୟାଙ୍କ ଭାଗ୍ୟ ସୁରକ୍ଷିତ ହୋଇଥିଲା । ଏହି ବିବାହକୁ କନ୍ୟା-ପିତାଙ୍କ ସ୍ୱାର୍ଥସିଦ୍ଧିର ନିମନ୍ତେ କରାଯାଇଥିଲା ବୋଲି କହିଲେ ସତ୍ୟର ଅପଳାପ ହେବ ନାହିଁ । ଏ ପ୍ରକାର କନ୍ୟା-ମୂଲ୍ୟ କେକୟରାଜ ଗ୍ରହଣ କରିଥିବାରୁ ଏହି ବିବାହକୁ ଆସୁର ବିବାହର ଅନ୍ତର୍ଭୁକ୍ତ କରାଯାଇ ପାରିବ । କିନ୍ତୁ ଶର୍ମାଙ୍କ ଭଳି ପଣ୍ଡିତ ଏଥିରେ ଏକମତ ନୁହନ୍ତି । ତାଙ୍କ ମତରେ କେକୟରାଜଙ୍କର ବ୍ୟକ୍ତିଗତ ଭାବରେ ଏଥିରେ କିଛି ଲାଭ ହୋଇନାହିଁ । ତେଣୁ ଏହାକୁ ଆସୁର ବିବାହ କୁହାଯାଇ ନପାରେ । ତାଙ୍କ ଭାଷାରେ

> It may be pointed out that in the Asura form of marriage the bride price is paid to the father or the guardian of the girl for his own use. But the promise which was elicited by Kaikeyi's father from Dasaratha was not in his own interest. The object of the Kekaya Raja in making that condition was only to make Kaikeyi's future secure, rather than benefit himself for his daughter's marriage (୨୮)

ଆମ୍ଭ ମତରେ ଏହା ଯୁକ୍ତିଯୁକ୍ତ ନୁହେ । ସେତେବେଳେ ରାଜାଙ୍କ ବ୍ୟକ୍ତିଗତ ପାଣ୍ଠି ଓ ରାଜ୍ୟର ପାଣ୍ଠି ମଧ୍ୟରେ କିଛି ସୀମାରେଖା ନଥିଲା । ରାଜାଙ୍କର ଯାହାକିଛି ଖର୍ଚ୍ଚ ତାହା ରାଜ୍ୟର ଖଜଣାଗାରରୁ ଭରଣା କରାଯାଉଥିଲା । ଦଶରଥ ଯଦି କିଛି ଅର୍ଥ କେକୟରାଜଙ୍କୁ ଦେଇଥାନ୍ତେ, ତାହା ତାଙ୍କ ଖଜଣାଗାରରେ ରଖାଯାଇଥାନ୍ତା । ଅତଏବ, ତାଙ୍କ ରାଜ୍ୟ ଉପକୃତ ହେବା ଅର୍ଥ ସେ ନିଜେ ମଧ୍ୟ ଉପକୃତ ହୋଇଥାନ୍ତେ । ଦଶରଥଙ୍କ କାର୍ଯ୍ୟାବଳୀ ଦ୍ୱାରା ତାଙ୍କ ରାଜ୍ୟ ସୁରକ୍ଷିତ ହେଲା ଏବଂ ତାଙ୍କ ସିଂହାସନ ପ୍ରତି ଥିବା ବିପଦ ଘୁଞ୍ଚିଲା । ଏତଦ୍ଦ୍ୱାରା ସେ ବ୍ୟକ୍ତିଗତ ଭାବରେ ଉପକୃତ ହେଲେ ନାହିଁ କି ? ତାହା ଛଡ଼ା ତାଙ୍କ କନ୍ୟାଙ୍କ ଭବିଷ୍ୟତ ମଧ୍ୟ ସୁରକ୍ଷିତ ହେଲା । ସେଥିପାଇଁ ତ ରାମାୟଣରେ ରାଜ୍ୟ-ଶୁଳ୍କ ହିସାବରେ କୈକେୟୀଙ୍କୁ ଦଶରଥଙ୍କ ହସ୍ତରେ ସମର୍ପଣ କରାଯାଇଥିବା କଥା କୁହାଯାଇଛି । ଅତଏବ, ଏହି ଆଲୋଚନା ଦୃଷ୍ଟିରେ ଦଶରଥଙ୍କର କୈକେୟୀଙ୍କ ସହିତ ହୋଇଥିବା ବିବାହକୁ ଆସୁର ବିବାହ ପର୍ଯ୍ୟାୟଭୁକ୍ତ କରାଯାଇ ପାରିବ ।

ତତ୍ପରେ ରାକ୍ଷସ ବିବାହ କଥା ବିଚାର୍ଯ୍ୟ । ଏହାର ନାମକରଣରୁ ଜଣାପଡ଼ିବ ଯେ ଏହି ପଦ୍ଧତିଟି ରାକ୍ଷସମାନଙ୍କ ମଧ୍ୟରେ ଚଳୁଥିଲା । ବାସ୍ତବିକ ଏହା ଆର୍ଯ୍ୟମାନଙ୍କ ମଧ୍ୟରେ ଆଦୌ ଚଳୁନଥିଲା । ଅନ୍ୟ ପକ୍ଷରେ ଏହା ଆର୍ଯ୍ୟ-ସମ୍ପ୍ରଦାୟ ମଧ୍ୟରେ ଖୁବ୍ ନିନ୍ଦିତ ହେଉଥିଲା । ମନୁଙ୍କ ମତରେ ନିମ୍ନଲିଖିତ ପଦ୍ଧତିରେ ଏହି ବିବାହ ଅନୁଷ୍ଠିତ ହୋଇଥାଏ

ହତ୍ୱା ଛିତ୍ୱା ଚ ଭିତ୍ତ୍ୱା ଚ କ୍ରୋଶନ୍ତୀଂ ରୁଦନ୍ତୀଂ ଗୃହାତ୍ ।
ପ୍ରସହ୍ୟ କନ୍ୟାହରଣଂ ରାକ୍ଷସୋ ବିଧିରୁଚ୍ୟତେ ।।

ଅର୍ଥାତ୍ ଯଦି କୌଣସି କନ୍ୟାକୁ ବାପାମାଆ ତଥା ଜ୍ଞାତିମାନଙ୍କୁ ହାଣିମାରି ଏବଂ ଘର ଭାଙ୍ଗି ଜୋରଜବରଦସ୍ତି ଭାବରେ କେହି ଉଠାଇ ନେଇଯାଏ, ତେବେ ତାହାକୁ ରାକ୍ଷସ ବିବାହ କୁହାଯାଏ । ଏହି ବିବାହରେ :

(କ) କନ୍ୟାର ପିତାମାତା କିମ୍ବା ଜ୍ଞାତିବନ୍ଧୁମାନଙ୍କର ସ୍ୱୀକୃତି ନଥାଏ;

(ଖ) ବଳ ପ୍ରୟୋଗ କରି ବର ସେମାନଙ୍କୁ ହତ୍ୟା କରି କିମ୍ବା କ୍ଷତ ବିକ୍ଷତ କରି କିମ୍ବା ସେମାନଙ୍କ ଘରଦ୍ୱାର ଭାଙ୍ଗି କନ୍ୟାକୁ ଅପହରଣ କରିନିଏ; ଏବଂ

(ଗ) ଏଥିରେ କନ୍ୟାର ମଧ୍ୟ ସମ୍ମତି ନଥାଏ ଏବଂ ସେ ଅପହୃତା ଅବସ୍ଥାରେ କ୍ରନ୍ଦନ କରୁଥାଏ ।

ରାମାୟଣରେ ରାକ୍ଷସମାନେ ଏଭଳି ବିବାହ ସମାହିତ କରୁଥିବା କଥା ବର୍ଣ୍ଣିତ । ରାକ୍ଷସରାଜ ରାବଣ କେବଳ ତ ଅବିବାହିତା କନ୍ୟାମାନଙ୍କୁ ଅପହରଣ କରିନଥିଲେ;

ସେ ମଧ୍ୟ ପରସ୍ତ୍ରୀମାନଙ୍କୁ ଅପହରଣ କରିଥିଲ । ରାମାୟଣର ଉତ୍ତରକାଣ୍ଡସ୍ଥ ୨୪ଶ ସର୍ଗରେ ତା' ଦ୍ୱାରା ଦେବତାମାନଙ୍କର ସ୍ତ୍ରୀ ଓ କନ୍ୟାମାନେ କପଟ ଭାବରେ ବହୁ ସଂଖ୍ୟାରେ ଅପହୃତା ହୋଇଥିଲେ ତାହା ବର୍ଣ୍ଣିତ । କୁଶଧ୍ୱଜ ମୁନିଙ୍କ କନ୍ୟା ବେଦବତୀ ଥିଲେ ବିଷ୍ଣୁଙ୍କର ବାଗ୍‌ଦତ୍ତା ! ରାବଣ ତାଙ୍କୁ ବଳାତ୍କାରରେ ଅପହରଣ କରିଥିବାରୁ ସେ ଅଗ୍ନିରେ ଆତ୍ମୋତ୍ସର୍ଗ କରିଥିଲେ ଏବଂ ତା'କୁ ଅଭିଶାପ ଦେଇ କହିଥିଲେ ଯେ ତା'ର ମୃତ୍ୟୁର କାରଣ ହୋଇ ପୁନର୍ବାର ସେ ଜନ୍ମଗ୍ରହଣ କରିବେ । ସୀତା ହେଉଛନ୍ତି ପୂର୍ବଜନ୍ମର ସେହି ବେଦବତୀ, ଯେ କି ରାବଣର ମୃତ୍ୟୁର କାରଣ ହୋଇଥିଲେ । ଅଗ୍ନିରେ ପ୍ରବେଶ କରିବାର ଅବ୍ୟବହିତ ପୂର୍ବରୁ ବେଦବତୀ ଯେଉଁ ରୋଷପୂର୍ଣ୍ଣ ବାଣୀ ଉଚ୍ଚାରଣ କରିଥିଲେ ତାହା ଏଠାରେ ପ୍ରଣିଧାନଯୋଗ୍ୟ

ଧର୍ଷିତାୟାସ୍ତ୍ୱୟାନାର୍ଯ୍ୟ ନ ମେ ଜୀବିତମିଷ୍ୟତେ ।
ରକ୍ଷସ୍ତସ୍ମାତ୍ ପ୍ରବେକ୍ଷ୍ୟାମି ପଶ୍ୟତସ୍ତେ ହୁତାଶନମ୍ ।।
ଯସ୍ମାତ୍ତୁ ଧର୍ଷିତା ଚାହଂ ତ୍ୱୟା ପାପାତ୍ମନା ବନେ ।
ତସ୍ମାତ୍ ତବ ବଧାର୍ଥଂ ହି ସମୁତ୍ପତ୍ସ୍ୟେ ହ୍ୟହଂ ପୁନଃ ।। (୨୯)

ଅର୍ଥାତ୍ ଆରେ ଅନାର୍ଯ୍ୟ ! ତୁ ମତେ ଧର୍ଷଣ କଲୁ; ତେଣୁ ମୁଁ ଆଉ ବଞ୍ଚି ରହିବାକୁ ଚାହୁଁ ନାହିଁ । ଆରେ ରାକ୍ଷସ ! ତୁ ଚାହୁଁ ଚାହୁଁ ତୋ'ର ଆଗରେ ମୁଁ ନିଆଁରେ ପଶିବି । ଯେହେତୁ ତୁ ପାପୀ ମତେ ବନରେ ଧର୍ଷଣ କଲୁ, ସେଥିପାଇଁ ତତେ ମାରିବା ପାଇଁ ମୁଁ ନିଶ୍ଚୟ ପୁଣି ଥରେ ଜନ୍ମ ନେବି ।

ଏ ତ ଗଲା ରାକ୍ଷସମାନଙ୍କ ଆଚରଣ କଥା । ଆର୍ଯ୍ୟମାନେ ସାଧାରଣତଃ ଏହି ବିବାହ କରୁନଥିଲେ ବୋଲି ପୂର୍ବରୁ କୁହାଯାଇଛି । ରାମାୟଣରେ କେବଳ ଗୋଟିଏ କ୍ଷେତ୍ରରେ ଏଭଳି ବିବାହ ଜଣେ ଆର୍ଯ୍ୟରାଜାଙ୍କ ଦ୍ୱାରା ସଂଘଟିତ ହୋଇଥିବା କଥାର ଉଲ୍ଲେଖ ଅଛି । ଇକ୍ଷ୍ୱାକୁଙ୍କ ପୁତ୍ର ଦଣ୍ଡ ଥରେ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମକୁ ଯାଇଥିଲେ । ସେତେବେଳେ ଶୁକ୍ରାଚାର୍ଯ୍ୟ ଆଶ୍ରମରେ ନଥିଲେ । ତାଙ୍କ କନ୍ୟା ଅରଜା ଏକାକିନୀ ଆଶ୍ରମରେ ଥିଲେ । ଦଣ୍ଡ ସମସ୍ତ ଆର୍ଯ୍ୟ ଶିଷ୍ଟାଚାର ଭୁଲିଯାଇ ତାଙ୍କ ଉପରେ ବଳାତ୍କାର କରିଥିଲେ । ଅରଜା ତାଙ୍କୁ ଏହି ପାପ-କର୍ମରୁ ନିବୃତ୍ତ ରହିବା ପାଇଁ ଉପଦେଶ ଦେଇ କହିଥିଲେ

ମା ମାଂ ସ୍ପୃଶ ବଲାଦ୍‌ରାଜନ୍ କନ୍ୟା ପିତୃବଶା ହ୍ୟହମ୍ ।
ଗୁରୁଃ ପିତା ମେ ରାଜେନ୍ଦ୍ର ତ୍ୱଂ ଚ ଶିଷ୍ୟୋ ମହାତ୍ମନଃ ।। (୩୦)

ଅର୍ଥାତ୍ ହେ ରାଜନ୍ ! ତୁମେ ମତେ ବଳପୂର୍ବକ ସ୍ପର୍ଶ କର ନାହିଁ । ମୁଁ ପିତାଙ୍କ ଅଧୀନରେ ଥିବା କନ୍ୟା । ହେ ରାଜେନ୍ଦ୍ର ! ମୋ' ପିତା ହେଉଛନ୍ତି

ତୁମର ଗୁରୁ ଏବଂ ତୁମେ ହେଉଛ ସେହି ମହାତ୍ମାଙ୍କର ଶିଷ୍ୟ । କିନ୍ତୁ ରାଜା ଦଣ୍ଡ ଏଥିପ୍ରତି କର୍ଣ୍ଣପାତ ନକରି ତାଙ୍କ ପାପ-କର୍ମ ସମାହିତ କରିଥିଲେ । ଶେଷକୁ ଅରଜା ଏହି ଅପମାନ ସହ୍ୟ କରି ନପାରି ଆତ୍ମହତ୍ୟା କରିଥିଲେ । ଶୁକ୍ରାଚାର୍ଯ୍ୟ ଆଶ୍ରମକୁ ଫେରି ସବୁ କଥା ଜାଣିପାରିବା ପରେ ଦଣ୍ଡଙ୍କୁ ଅଭିଶାପ ଦେଇଥିଲେ, ଯାହା ଫଳରେ କି ସାତ ଦିନ ମଧ୍ୟରେ ସେ ତାଙ୍କର ସମସ୍ତ ସୈନ୍ୟବଳ ସହିତ ନଷ୍ଟ ହୋଇଯାଇଥିଲେ ଏବଂ ତାଙ୍କ ରାଜ୍ୟ ବର୍ଷା ଅଭାବରୁ ଛାରଖାର ହୋଇଯିବା ଫଳରେ ଶେଷକୁ ଜନଶୂନ୍ୟ ହୋଇଯାଇଥିଲା । ଏହି ବିବାହ-ପଦ୍ଧତି ରାମଙ୍କ ସମୟରେ ଆର୍ଯ୍ୟମାନଙ୍କ ମଧ୍ୟରେ ଚଳୁଥିଲା କି ନାହିଁ ତାହା ବର୍ତ୍ତମାନ ବିଚାର୍ଯ୍ୟ । ଏଠାରେ ମନେ ରଖିବାକୁ ହେବ ଯେ ଏହି ଘଟଣାଟି ରାମଙ୍କ ଜନ୍ମର ବହୁ ବର୍ଷ ପୂର୍ବରୁ ଘଟିଥିଲା । ପୂର୍ବର ଏହି ଘଟନାଟିକୁ ଅଗସ୍ତ୍ୟ ରାମଙ୍କ ଆଗରେ କହିଥିଲେ ଏବଂ ଏ ପ୍ରକାର ବିବାହର କୁପରିଣତି ସମ୍ପର୍କରେ ତାଙ୍କୁ ସତର୍କ କରାଇ ଦେଇଥିଲେ । ଅତଏବ, ଏଥିରୁ ଏହି ସତ୍ୟ ନିର୍ଦ୍ଧାରିତ ହେବ ଯେ ରାମାୟଣକାଳୀନ ସମାଜରେ ଆର୍ଯ୍ୟମାନଙ୍କ ମଧ୍ୟ ରାକ୍ଷସ ବିବାହ ସ୍ୱୀକୃତି-ଲାଭ କରିନଥିଲା । ଅନ୍ୟ ପକ୍ଷରେ ଏହା ରାକ୍ଷସମାନଙ୍କ ମଧ୍ୟରେ ଥିଲା ଏକ ସାଧାରଣ ଚଳଣି ।

ତତ୍ପରେ ପୈଶାଚ ବିବାହ କଥା ବିଚାର୍ଯ୍ୟ । ଆଠ ପ୍ରକାର ବିବାହ ମଧ୍ୟରେ ଏହା ହେଉଛି ନିକୃଷ୍ଟତମ । ଏହା ସମ୍ପର୍କରେ ରାଧାକୃଷ୍ଣନ୍ ମନ୍ତବ୍ୟ ଦେବାକୁ ଯାଇ କହନ୍ତି

> The Paishacha form of marriage, in which the bride is overpowered by the husband, is of the very low type. The bride is deceived or loses control over herself by taking drugs or drink, and in such a framed of mind yields to the husband. (୬୧)

ଏହା ମଧ୍ୟ ମନୁଙ୍କ ଦ୍ୱାରା ସମର୍ଥିତ । ତାଙ୍କ ଭାଷାରେ

ସୁପ୍ତାଂ ମତ୍ତାଂ ପ୍ରମତ୍ତାଂ ବା ରହୋ ଯତ୍ରୋପଗଚ୍ଛତି ।
ସ ପାପିଷ୍ଠୋ ବିବାହାନାଂ ପୈଶାଚଶ୍ଚାଷ୍ଟମୋଽଧମଃ ।।

ଅର୍ଥାତ୍ କୌଣସି କନ୍ୟା ଶୋଇଥିବା ବେଳେ ଅଥବା ନିଶାରେ ଉନ୍ମତ୍ତାବସ୍ଥାରେ ଥିଲା ବେଳେ ଏକାନ୍ତରେ ତା' ପାଖକୁ ଯାଇ ଯଦି ତା'ର ସତୀତ୍ୱଭଙ୍ଗ କରାଯାଏ, ତେବେ ଏ ପ୍ରକାର ପାପାଚରଣକୁ ପୈଶାଚ ବିବାହ କୁହାଯାଏ ।

ଏହା ଆଠ ପ୍ରକାର ବିବାହ ମଧ୍ୟରେ ନିକୃଷ୍ଟତମ ! ଏ ପ୍ରକାର ବିବାହ ତ ରାମାୟଣୀୟ ସମାଜରେ ଆର୍ଯ୍ୟମାନଙ୍କ ମଧ୍ୟରେ ସଂଘଟିତ ହେବାର କଳ୍ପନା ହିଁ କରାଯାଇ ପାରେ ନାହିଁ । ବାସ୍ତବିକ, ଏହା ସେମାନଙ୍କ ମଧ୍ୟରେ ନଥିଲା । ଏହା ରାକ୍ଷସମାନଙ୍କ ମଧ୍ୟରେ ଥିବା ସ୍ୱାଭାବିକ । କିନ୍ତୁ ଏହାର ସେପରି କିଛି ନିର୍ଦ୍ଦିଷ୍ଟ ଉଦାହରଣ ଆମେ ରାମାୟଣରେ ଦେଖିବାକୁ ପାଉନାହୁଁ ।

ରାମାୟଣୀୟ ବିବାହରେ ଆମେ ଦେଖିବାକୁ ପାଉ ଯେ ପରିବାର-ଗଠନର ଏହା ଥିଲା ମୂଳଭିତ୍ତି । ଏହା ଥିଲା ଏକ ଧର୍ମୀୟ ଅନୁଷ୍ଠାନ । ଏଥିରେ ଯୌନଭିତ୍ତିକତା ଆଦୌ ନଥିଲା । ସାରା ଜୀବନ ଧରି ସ୍ୱାମୀ ଓ ସ୍ତ୍ରୀକୁ ନିଜ ନିଜର ସାମାଜିକ ଓ ଧର୍ମୀୟ କର୍ତ୍ତବ୍ୟମାନ ସମାହିତ କରିବାରେ ସାହାଯ୍ୟ କରିବା ଲାଗି ଏହି ଅନୁଷ୍ଠାନଟି ଦୁଇ ଜଣ ସହକର୍ମୀ ସୃଷ୍ଟି କରିପାରିଥିଲା । ସେମାନେ ପରସ୍ପରର ଥିଲେ ଜୀବନସାଥୀ । ଏହି ଜୀବନାଦର୍ଶ ସମାଜ ଆଗରେ ଥିବାରୁ ଗାନ୍ଧର୍ବ, ରାକ୍ଷସ ଓ ପୈଶାଚ ପଦ୍ଧତିର ବିବାହ ସାମାଜିକ ଆଦୃତ ଲାଭ କରିପାରି ନଥିଲା ଏବଂ ତରୁଣ-ତରୁଣୀଙ୍କର ନିଜ ଇଚ୍ଛାରେ ଜୀବନ-ସାଥୀ ନିର୍ବାଚନ କରିବାର କ୍ଷମତା ଅନେକାଂଶରେ ଖର୍ବ ହୋଇଥିଲା । କନ୍ୟା ପାଇଁ ବର ବାଛିବା କିମ୍ବା ବର ପାଇଁ କନ୍ୟା ବାଛିବାର ଦାୟିତ୍ୱ ମୁଖ୍ୟତଃ ପିତାଙ୍କ ଉପରେ ନ୍ୟସ୍ତ ଥିଲା । ବହୁ ଦୃଷ୍ଟିରୁ ବିଚାର କରି ପିତାମାନେ ଏହି ଦାୟିତ୍ୱଟିକୁ ସମ୍ପାଦୁଥିଲେ ।

ବର୍ତ୍ତମାନ ରାମାୟଣକାଳୀନ ସମାଜରେ ବାଲ୍ୟବିବାହ ଥିଲା କି ନାହିଁ ତାହା ବିଚାର୍ଯ୍ୟ । ବୈଦିକ କାଳରେ ତ ଏହା ନଥିଲା । ଏହାର ଅବର୍ତ୍ତମାନତା ନିମ୍ନଲିଖିତ ଅଥର୍ବ ବେଦୀୟ ପଙ୍କ୍ତିରୁ ଅବଧାରଣୀୟ

ବ୍ରହ୍ମଚର୍ଯ୍ୟେଣ କନ୍ୟା ଯୁବାନଂ ବିନ୍ଦତେ ପତିମ୍ । (୬୨)

ଅର୍ଥାତ୍ ବ୍ରାହ୍ମଚର୍ଯ୍ୟାଶ୍ରମ ପରେ ବା ପାଠ ପଢ଼ାପଢ଼ି ସରିବା ପରେ କନ୍ୟା ଯୁବକ ପତିଙ୍କୁ ବାଛିଥାଏ । ବ୍ରହ୍ମଚର୍ଯ୍ୟାଶ୍ରମର ସମୟ ହେଲା ବାର ବର୍ଷ । ଅତଏବ, ଏହି ସମୟ ଅତୀତ ହୋଇ ସାରିବା ପରେ ଉଭୟ ବର ଓ କନ୍ୟା ଯୌବନପ୍ରାପ୍ତ ହୋଇଥିବେ । ସ୍ତ୍ରୀମାନଙ୍କ ପାଇଁ ଅପେକ୍ଷାକୃତ ଭାବରେ କଠୋର ନିୟମମାନ ରଖିଥିବା ମନୁସ୍ମୃତି (୯।୯୦) ମଧ୍ୟ କୁହେ ଯେ

ତ୍ରୀଣି ବର୍ଷାଣ୍ୟୁଦୀକ୍ଷେତ କୁମାର୍ଯ୍ୟୃତୁମତୀ ସତୀ ।

ଅର୍ଥାତ୍ କନ୍ୟା ଋତୁମତୀ ହେଲେ ତିନି ବର୍ଷ ପର୍ଯ୍ୟନ୍ତ ତା'ର ପତି ଲାଗି ଅପେକ୍ଷା କରିବା ଉଚିତ । ଆପ୍ଟେ ମଧ୍ୟ ଅନେକ ଆଲୋଚନା ପରେ ନିର୍ଣ୍ଣୟ କରିଛନ୍ତି ଯେ ବୈଦିକ କାଳରେ ବାଲ୍ୟବିବାହ-ପ୍ରଥା ନଥିଲା । ତାଙ୍କ ବକ୍ତବ୍ୟ ହେଲା

All this evidence speaks in favour of the custom of girls normally marrying long after they had reached puberty (୩୩)

ରାଧାକୃଷ୍ଣନ ମଧ୍ୟ ଏହି ମତର ପୁଷ୍ଟିସାଧନ କରନ୍ତି ଏବଂ ସ୍ପଷ୍ଟ ଭାବରେ କୁହନ୍ତି :

The custom of child marriage was unknown in Vedic and Epic periods. (୩୩-କ)

ରାମାୟଣ-ଯୁଗର ପୂର୍ବରୁ ବୈଦିକ ଯୁଗରେ ଏବଂ ପରେ ମନୁସ୍ମୃତିର ରଚନା ବେଳକୁ ମଧ୍ୟ ବାଲ୍ୟବିଧବା-ପ୍ରଥା ଭାରତୀୟ ସମାଜରେ ପ୍ରଚଳିତ ନଥିଲା । ତେଣୁ ରାମାୟଣୀୟ ସମାଜରେ ଏହା ପ୍ରଚଳିତ ନଥିବ ବୋଲି ବିଶ୍ୱାସ କରାଯାଇ ପାରେ । ଏହାକୁ ବିଶ୍ୱାସ ନ କରିବାର ସେପରି କିଛି ଦୃଢ଼ ପ୍ରମାଣ ଆମ ପାଖରେ ନାହିଁ । ବିବାହ ପରେ ପରେ ସୀତା ଆଦି ଦଶରଥଙ୍କ ପୁତ୍ରବଧୂମାନେ ସେମାନଙ୍କ ସ୍ୱାମୀମାନଙ୍କ ସହିତ ଶ୍ୱଶୁରାଳୟକୁ ଯାଇଥିବା କଥା ବର୍ଣ୍ଣିତ । ତାହା ଛଡ଼ା ରାମାୟଣରେ ଠାଏ (୧।୭୭।୧୩) ସ୍ପଷ୍ଟ ଭାବରେ କୁହାଯାଇଛି

ରେମିରେ ମୁଦିତାଃ ସର୍ବା ଭର୍ତ୍ତୃଭିର୍ମୁଦିତା ରହଃ ।

ଅର୍ଥାତ୍ ସେହିସବୁ କନ୍ୟାମାନେ ସେମାନଙ୍କ ସ୍ୱାମୀମାନଙ୍କ ସହିତ ଖୁବ୍ ଆନନ୍ଦରେ ରମଣରତା ରହିଥିଲେ । ଏଥିରୁ ଅନୁମିତ ହୁଏ ଯେ ଉଭୟ ବର, କନ୍ୟା ସେତେବେଳେ ଯୌବନ ପାଇସାରିଥିଲେ । କିନ୍ତୁ ରାମାୟଣରେ ଥିବା ଦୁଇଟି ପଙ୍କ୍ତି ପଣ୍ଡିତମାନଙ୍କ ମୁଣ୍ଡକୁ ଘୂରାଇ ଦେଇଥାଏ । ଏହି ପଙ୍କ୍ତି ଦ୍ୱୟରେ ସୀତା ପରିବ୍ରାଜକବେଶୀ ରାବଣ ନିକଟରେ ନିଜର ପରିଚୟ ଦେଉଛନ୍ତି । ପ୍ରଥମ ପଙ୍କ୍ତିରେ (୩।୭୪।୪) ସେ କହୁଛନ୍ତି ଯେ ବିବାହ ପରେ ସେ ତାଙ୍କ ସ୍ୱାମୀଙ୍କ ସାଥିରେ ବାର ବର୍ଷକାଳ ଅଯୋଧ୍ୟାରେ କାଳ କାଟିଛନ୍ତି । ଦ୍ୱିତୀୟ ପଙ୍କ୍ତିରେ (୩।୭୪।୧୦) ପୁଣି ସେ କହୁଛନ୍ତି ଯେ ତାଙ୍କ ନିଜର ବୟସ ହେଉଛି ୧୮ ବର୍ଷ ଏବଂ ତାଙ୍କ ସ୍ୱାମୀ ରାମଙ୍କ ବୟସ ହେଉଛି ୨୫ ବର୍ଷ । ଏହି ଦୁଇଟି ପଙ୍କ୍ତିକୁ ଏକତ୍ର ଅନୁଧ୍ୟାନ କଲେ ଆମେ ବୁଝିପାରିବା ଯେ ବିବାହ ବେଳେ ସୀତାଙ୍କ ବୟସ ହୋଇଥିଲା ୬ ବର୍ଷ ଏବଂ ରାମଙ୍କ ବୟସ ହୋଇଥିଲା ୧୩ ବର୍ଷ । ତେର ବର୍ଷର ବାଳକ ଓ ଛଅ ବର୍ଷର ବାଳିକା ତ'ଣ ସ୍ୱାମୀ-ସ୍ତ୍ରୀ ଭାବରେ କାଳ କାଟିବା ସମ୍ଭବ ? ବର୍ତ୍ତମାନ ସୀତା ଅତ୍ରିମୁନିଙ୍କ ପତ୍ନୀ ଅନସୂୟାଙ୍କ ନିକଟରେ କିପରି ନିଜର ଜନ୍ମ-ବୃତ୍ତାନ୍ତ ଓ ବିବାହ-ବୃତ୍ତାନ୍ତ ବର୍ଣ୍ଣନା କରିଥିଲେ ତାହା ଦେଖାଯାଉ । ସେ ସ୍ପଷ୍ଟ ଭାବରେ କହିଥିଲେ

ପଞ୍ଚସପ୍ତୋତ୍ତରଂ ବର୍ଷେ ଦୃଷ୍ଟ୍ୱା ତୁ ମେ ପିତା ।
ଚିନ୍ତାମଭ୍ୟଗମତ୍ ଧୀରେ ବିତ୍ତନାଶାଦିବାଧନଃ ।। (୩୪)

ଅର୍ଥାତ୍ ମୋ'ର ଯେତେବେଳେ ବିବାହଯୋଗ୍ୟ ବୟସ ହୋଇଗଲା, ସେତେବେଳେ ମୋ'ର ପିତା ଚିନ୍ତିତ ହୋଇ ଉଠିଲେ । ଯେମିତି ସଞ୍ଚିତ ହୋଇଥିବା ଧନ ନଷ୍ଟ ହୋଇଗଲେ ଧନହୀନ ଲୋକର ଖୁବ୍ ଦୁଃଖ ହୁଏ, ଠିକ୍ ସେମିତି ସେ ମୋ'ର ବିବାହ-ଚିନ୍ତାରେ ଦୁଃଖୀ ହୋଇ ଉଠିଲେ । 'ପଞ୍ଚସପ୍ତୋତ୍ତରଂ' ବୟସ ସୀତା ପାଇସାରିବା ପରେ ଯାଇ ଜନକ ତାଙ୍କ ବିବାହ କଥା ଚିନ୍ତା କରିଥିଲେ ବୋଲି ଏଠାରେ କୁହାଯାଇଛି । ଅତଏବ, ଛଅ ବର୍ଷ ବୟସରେ ସୀତାଙ୍କ ବିବାହ ହୋଇଥିବା ପ୍ରଶ୍ନ ହିଁ ଉଠୁନାହିଁ । ରାବଣ ନିକଟରେ ସୀତାଙ୍କର ଯେଉଁ ପରିଚୟ କଥା ପୂର୍ବରୁ କୁହାଯାଇଛି, ତାହା ନିଶ୍ଚିତ ଭାବରେ ପ୍ରକ୍ଷିପ୍ତ । ହିନ୍ଦୁ-ସମାଜରେ ବାଲ୍ୟବିବାହ-ପ୍ରଥା ପରବର୍ତ୍ତୀ କାଳରେ ପ୍ରଚଳିତ ହେବା ଅବସରରେ ଏହି ପ୍ରକ୍ଷିପ୍ତ ପଙ୍‌କ୍ତିଦ୍ୱୟ ରାମାୟଣରେ ଅନୁପ୍ରବେଶ କରିଛି ବୋଲି ଆମକୁ ବିଶ୍ୱାସ କରିବାକୁ ହେବ । ଏହି ଅନୁପ୍ରବେଶ ବୁଦ୍ଧଙ୍କ ପରେ (ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ) ହୋଇବାର ସମ୍ଭାବନା ଅଧିକ । କାରଣ ବୁଦ୍ଧଙ୍କ ସମୟରେ ମଧ୍ୟ ସମାଜରେ ବାଲ୍ୟ ବିବାହ ପ୍ରଚଳିତ ନଥିଲା । ହର୍ଣ୍ଣରଙ୍କ ନିମ୍ନୋକ୍ତ ମନ୍ତବ୍ୟ ଏ ସମ୍ପର୍କରେ ଦ୍ରଷ୍ଟବ୍ୟ

**Vishaka for example married when she was sixteen, Bhadda Kundalakesha was still unmarried at the age of sixteen.** (୩୦-କ)

ଅତଏବ ଏହିସବୁ ଆଲୋଚନାରୁ ନିଶ୍ଚିତ ଭାବରେ ପ୍ରମାଣିତ ହେବ ଯେ ବୈଦିକ-ଯୁଗ ଭଳି ରାମାୟଣ-ଯୁଗରେ ମଧ୍ୟ ସମାଜରେ ବାଲ୍ୟବିବାହ-ପ୍ରଥା ପ୍ରଚଳିତ ନଥିଲା ।

ବର୍ତ୍ତମାନ ରାମାୟଣୀୟ ସମାଜରେ ବିବାହ-କ୍ଷେତ୍ରରେ ବର୍ଣ୍ଣଧର୍ମ କିପରି କାର୍ଯ୍ୟ କରୁଥିଲା ତାହା ବିଚାର୍ଯ୍ୟ । ବୈଦିକ କାଳରୁ ହିଁ ଏହି ବର୍ଣ୍ଣ-ଧର୍ମ ଚାଲିଆସିଛି । ସାଧାରଣତଃ ଗୋଟିଏ ବର୍ଣ୍ଣର ବର ସେହି ବର୍ଣ୍ଣର କନ୍ୟାକୁ ବିବାହ କରିବା ଥିଲା ବୈଦିକ କାଳର ବିଧି । କିନ୍ତୁ ବେଳେ ବେଳେ ଏହାର ବ୍ୟତିକ୍ରମ ହେଉଥିଲା । ଉଚ୍ଚ ବର୍ଣ୍ଣର ପୁରୁଷ ନୀଚ ବର୍ଣ୍ଣର କନ୍ୟାକୁ ଗ୍ରହଣ କଲେ ଏହାକୁ କୁହାଯାଉଥିଲା ଅନୁଲୋମ ବିବାହ । ନୀଚ ବର୍ଣ୍ଣର ପୁରୁଷ ଉଚ୍ଚ ବର୍ଣ୍ଣର କନ୍ୟାକୁ ଗ୍ରହଣ କଲେ ତାହାକୁ କୁହାଯାଉଥିଲା ପ୍ରତିଲୋମ ବିବାହ । ଅନୁଲୋମ ବିବାହ ଆର୍ଯ୍ୟମାନଙ୍କ ଦ୍ୱାରା ଗ୍ରହଣୀୟ ଥିଲା, ପ୍ରତିଲୋମ ବିବାହ କିନ୍ତୁ

ନୁହେଁ । ଅଗସ୍ତ୍ୟ, ଚ୍ୟବନ ଆଦି ବଡ଼ ବଡ଼ ଋଷିମାନେ ମଧ୍ୟ ଅନୁଲୋମ ବିବାହ କରିଥିବାର ପ୍ରମାଣ ଆମେ ବେଦରେ ପାଉଥାଉଁ । ରାମାୟଣକାଳୀନ ସମାଜରେ ଏହି ସ୍ଥିତି ପ୍ରାପ୍ତ ଥିଲା । ବ୍ରାହ୍ମଣ ଋଷି ଋଷ୍ୟଶୃଙ୍ଗ ଅଙ୍ଗରାଜ ଲୋମପାଦଙ୍କ କନ୍ୟା ଶାନ୍ତାଙ୍କୁ ବିବାହ କରିଥିବା କଥା ରାମାୟଣରେ (୧।୧୦।୩୨–୩୩) ବର୍ଣ୍ଣିତ । ଏପରି କି ବିଶ୍ରବା ଋଷି କୈକସୀ ନାମ୍ନୀ ଜଣେ ରାକ୍ଷସୀକୁ ବିବାହ କରିଥିବା କଥା ମଧ୍ୟ ଉତ୍ତରରେ (୭।୯।୧୯–୨୭) ବର୍ଣ୍ଣିତ । ସମାଜ ମଧ୍ୟ ଏ ପ୍ରକାର ବିବାହକୁ ସ୍ୱୀକାର କରିଥାଇଥିଲା; କିନ୍ତୁ ପ୍ରତିଲୋମ ବିବାହ ଆର୍ଯ୍ୟ-ମାନଙ୍କ ପାଇଁ ସ୍ପୃହଣୀୟ ନଥିଲା । ଅଶୋକବନରେ ବନ୍ଦିନୀ ଥିବା ସମୟରେ ରାକ୍ଷସୀମାନେ ସୀତାଙ୍କୁ ନିଜ ପତିଙ୍କୁ ଭୁଲିଯାଇ ରାବଣର ପାଣିଗ୍ରହଣ କରିବା ପାଇଁ ବହୁତ ବୁଝାଉଥିଲେ । କିନ୍ତୁ ସେହି ସମସ୍ତ ପ୍ରସ୍ତାବକୁ ସେ ଦୃଢ଼ତାର ସହିତ ପ୍ରତ୍ୟାଖ୍ୟାନ କରିଦେଇ କହିଥିଲେ

ନ ମାନୁଷୀ ରାକ୍ଷସସ୍ୟ ଭାର୍ଯ୍ୟା ଭବିତୁମର୍ହତି ।
କାମଂ ଖାଦତ ମାଂ ସର୍ବା ନ କରିଷ୍ୟାମି ବୋ ବଚଃ । (୩୬)

ଅର୍ଥାତ୍ ଜଣେ ମାନବକନ୍ୟା କଦାପି ଜଣେ ରାକ୍ଷସର ଭାର୍ଯ୍ୟା ହୋଇପାରିବ ନାହିଁ । ତୁମ୍ଭମାନଙ୍କର ମନ ଯଦି ହେଉଛି ତେବେ ମତେ ଖାଇଯାଅ ପଛକେ, ମୁଁ ତୁମ୍ଭ-ମାନଙ୍କ କଥା ମାନିବି ନାହିଁ । ଏଥିରୁ ଜଣାପଡ଼ୁଛି, ରାମାୟଣକାଳୀନ ସମାଜରେ ଉଚ୍ଚ କୁଳର କନ୍ୟା ନୀଚ କୁଳରେ ବିବାହ କରିବା ପ୍ରଶ୍ନ ହିଁ ଉଠୁନଥିଲା । ଏହାର ତାତ୍ପର୍ଯ୍ୟ ହେଲା, ଉକ୍ତ ସମାଜରେ ଅନୁଲୋମ ବିବାହ ଚଳୁଥିଲା, ପ୍ରତିଲୋମ ବିବାହ କିନ୍ତୁ ନୁହେଁ । ଏହା ସତ୍ତ୍ୱେ ଆମେ ପ୍ରତିଲୋମ ବିବାହର ଗୋଟିଏ ମାତ୍ର ନିଦର୍ଶନ ରାମାୟଣରେ (୭।୮୮।୯) ପାଇଥାଉଁ । ତାହା ହେଉଛି ଯଯାତି-ଦେବଯାନୀ ବିବାହ । ଯଯାତି ଥିଲେ କ୍ଷତ୍ରିୟ । ଦେବଯାନୀ ଥିଲେ ମୁନି ଶୁକ୍ରାଚାର୍ଯ୍ୟଙ୍କ ପୁତ୍ରୀ, ଜଣେ ବ୍ରାହ୍ମଣକନ୍ୟା । ଏହି ସର୍ଗଟିକୁ ପଣ୍ଡିତମାନେ ପ୍ରକ୍ଷିପ୍ତ ବୋଲି କହିଥାନ୍ତି । ତାହାଛଡ଼ା ଏହି ଘଟଣାଟି ଘଟିଥିଲା ଅତୀତ ଯୁଗରେ, ରାମାୟଣ-ଯୁଗରେ କିନ୍ତୁ ନୁହେଁ । ଏହିସବୁ ବିଷୟକୁ ବିଚାରକୁ ନେଲେ ଆମେ ସ୍ଥିର ସିଦ୍ଧାନ୍ତ କରି ପାରିବା ଯେ ରାମାୟଣକାଳୀନ ସମାଜରେ ଆର୍ଯ୍ୟମାନଙ୍କ ମଧ୍ୟରେ ସାଧାରଣତଃ ସମବର୍ଣ୍ଣ ବିବାହ ଅନୁଷ୍ଠିତ ହେଉଥିଲା ଏବଂ କେତେକ କ୍ଷେତ୍ରରେ ଯଦିଓ ବିଷମବର୍ଣ୍ଣୀ ବିବାହ ଅନୁଷ୍ଠିତ ହେଉଥିଲା, ତାହା କେବଳ ଅନୁଲୋମ ବିବାହ ମଧ୍ୟରେ ସୀମାବଦ୍ଧ ରହୁଥିଲା । ସେ ସମୟରେ ପ୍ରତିଲୋମ ବିବାହ ଆଦୌ ଚଳୁ ନଥିଲା ।

ଆଜିକାଲି ହିନ୍ଦୁମାନଙ୍କ ବିବାହରେ ଯେପରି ଜାତକ-ମେଳ କରାଯାଉଛି, ରାମାୟଣକାଳୀନ ସମାଜରେ ସେପରି କରାଯାଉଥିବାର ପ୍ରମାଣ

ମିଳୁନାହିଁ । ହୁଏତ ସେତେବେଳେ ଜାତକ ତିଆରି ପ୍ରଣାଳୀ ଆର୍ଯ୍ୟମାନଙ୍କୁ ଜଣା ନଥିଲା କିମ୍ବା ଯଦିଓ ଜାତକ ସେତେବେଳେ ତିଆରି ହେଉଥିଲା, ତଥାପି ବିବାହ ଲାଗି ବରକନ୍ୟାଙ୍କ ଜାତକ-ମେଳ କରିବାର ଆବଶ୍ୟକତା ଅନୁଭୂତ ହେଉନଥିଲା । ଜନକ ଦଶରଥଙ୍କୁ ରାମ-ସୀତାଙ୍କ ବିବାହ ବିଷୟରେ କେବଳ ଶୁଭ ଦିନ ଓ ଶୁଭ ବେଳା ନିର୍ଦ୍ଧାରଣ କରି କହିଛନ୍ତି ଏବଂ ଦଶରଥ ତାହାକୁ ଗ୍ରହଣ କରି ତଦନୁଯାୟୀ ବିବାହ-ଲଗ୍ନ ସ୍ଥିର କରିଛନ୍ତି । କୌଣସି ବିବାହରେ ଜାତକ-ମେଳ ସଂପର୍କରେ ଉଲ୍ଲେଖ ନଥିବାରୁ ଆମକୁ ଏହି ନିଷ୍କର୍ଷରେ ଉପନୀତ ହେବାକୁ ପଡ଼ିବ ଯେ ସେତେବେଳେ ଜାତକ-ମେଳ କରିବା ବିବାହ ଲାଗି ଏକ ପୂର୍ବ ସର୍ତ୍ତ ନଥିଲା ।

ବିବାହ ପରେ୍ ଗ୍ଛାଡ଼ପତ୍ର ଦେବାର ପ୍ରଥା ଥିଲା କି ନାହିଁ, ସେ କଥା ଏବେ ବିଗ୍ୟର୍ଯ୍ୟ । ସେତେବେଳେ ସ୍ତ୍ରୀ ସ୍ୱାମୀଙ୍କ ଉପରେ ସାମାଜିକ, ଅର୍ଥନୈତିକ ତଥା ଧାର୍ମିକ କ୍ଷେତ୍ରରେ ଏତେ ଦୂର ନିର୍ଭରଶୀଳା ହୋଇଥିଲା ଯେ ତା' ପକ୍ଷରେ ସ୍ୱାମୀଙ୍କୁ ଛାଡ଼ପତ୍ର ଦେବା ପ୍ରଶ୍ନ ହିଁ ଉଠୁ ନଥିଲା । ପିତୃପ୍ରଧାନ ସମାଜରେ ସ୍ତ୍ରୀର ଏହି ସ୍ୱାଧୀନତା ଖର୍ବ ହୋଇଥିବା ଘଟନା କିଛି ଅସ୍ୱାଭାବିକ ନୁହେଁ । ସ୍ୱାମୀଙ୍କର ସ୍ତ୍ରୀକୁ ଛାଡ଼ପତ୍ର ଦେବାର ସ୍ୱାଧୀନତା ଥିଲା କି ନାହିଁ ସେ କଥା ବିଗ୍ୟର୍ଯ୍ୟ । ଏଭଳି ଛାଡ଼ପତ୍ର ଦେବାର କଥା ରାମାୟଣରେ ଅନେକ ସ୍ଥାନରେ ଉଠିଛି । ସ୍ତ୍ରୀ ଅସତୀ ହେଲେ, କିମ୍ବା ସ୍ୱାମୀଙ୍କ ଜୀବନ ପ୍ରତି ଭୟଙ୍କର କାରଣ ହେଲେ, କିମ୍ବା ସ୍ୱାମୀଙ୍କୁ ସ୍ୱଧର୍ମ ସମାହିତ କରିବାର ବାଧା ଉପୁଜାଇଲେ ଛାଡ଼ପତ୍ରର ଶିରବ୍ୟା ହେଉଥିଲା । ରାମ ରାବଣକୁ ମାରି ସୀତାଙ୍କୁ ଉଦ୍ଧାର କଲା ପରେ ତାଙ୍କୁ ଯେତେବେଳେ ରାମଙ୍କ ପାଖକୁ ନିଆ ଯାଇଥିଲା, ସେତେବେଳେ ତାଙ୍କୁ ରାମ ହଠାତ୍ ଗ୍ରହଣ କରି ନଥିଲେ । ସୀତାଙ୍କ ସତୀତ୍ୱ ଉପରେ ତାଙ୍କର ସନ୍ଦେହ ଆସିଥିଲା । ସେ ସୀତାଙ୍କୁ କହିଥିଲେ

ତଦଦ୍ୟ ବ୍ୟାହୃତଂ ଭଦ୍ରେ ମୟୈତତ୍ କୃତବୁଦ୍ଧିନା ।
ଲକ୍ଷ୍ମଣେ ବାଥ ଭରତେ କୁରୁ ବୁଦ୍ଧିଂ ଯଥାସୁଖମ୍ ।
ଶତ୍ରୁଘ୍ନେ ବାଥ ସୁଗ୍ରୀବେ ରାକ୍ଷସେ ବା ବିଭୀଷଣେ ।
ନିବେଶୟ ମନଃ ସୀତେ ଯଥା ବା ସୁଖମାତ୍ମନା । (୬.୫-ବ)

ଅର୍ଥାତ୍ ଭଦ୍ରେ, ମୋ'ର ଏଇଆ ହେଉଛି ବିଚାର । ସେହି ଅନୁସାରେ ମୁଁ ତୁମ ଆଗରେ କଥା କହୁଛି । ତୁମେ ଯଦି ଚାହୁଁଛ, ତେବେ ଲକ୍ଷ୍ମଣ କିମ୍ବା ଭରତଙ୍କ ଠାରେ ମନ ବଳାଅ । ସୀତେ ! ତୁମର ଯଦି ଇଚ୍ଛା ହେଉଛି, ତେବେ ତୁମେ ଶତ୍ରୁଘ୍ନ ବା ସୁଗ୍ରୀବ ଅଥବା ରାକ୍ଷସ ବିଭୀଷଣଙ୍କ ମଧ୍ୟରୁ କାହାଙ୍କ ଠାରେ ନିଜର ସୁଖପ୍ରାପ୍ତି ଆଶାରେ ମନ ରଖିପାର । ଏଥିରୁ ଏହି ସୂଚନା ମିଳୁଛି

ଯେ ସ୍ତ୍ରୀ ଅସତୀ ହେଲେ ସ୍ୱାମୀଙ୍କ ଦ୍ୱାରା ପରିତ୍ୟକ୍ତା ହେଉଥିଲା ଏବଂ ସେତେବେଳେ ସେ ଅନ୍ୟ ପତି ଗ୍ରହଣ କରି ପାରୁଥିଲା । ଏହି ପ୍ରଥା ପ୍ରଚଳିତ ନଥିଲେ ରାମଙ୍କ ଭଳି ସ୍ୱାମୀ ସୀତାଙ୍କ ଭଳି ସ୍ତ୍ରୀଙ୍କୁ ଏଭଳି କଥା କହି ନଥାନ୍ତେ । ଏହି ମତ ଯେଉଁମାନଙ୍କ ଦ୍ୱାରା ସମର୍ଥିତ, ସେଇଁଠି ସେ କୁହନ୍ତି

Here it is clear that Sita selecting any of her brothers-in-law as her husband was not against dharma (୩୫-୩)

କୈକେୟୀଙ୍କ ମାତାଙ୍କୁ ଆଉ ଗୋଟିଏ ଉଦାହରଣ ସ୍ୱରୂପ ନିଆଯାଉ । ପରେ ତାଙ୍କ ସ୍ୱାମୀ ହସିଥିଲେ । ତାହାର କାରଣ ଥିଲା ଅତି ଗୋପନୀୟ ଏବଂ ସେ ଏହା କାହାକୁ ପ୍ରକାଶ କରିବାକୁ ଚାହିଁ ନଥିଲେ । କିନ୍ତୁ ସ୍ତ୍ରୀ ତାଙ୍କର ଏହି କାରଣ ଜାଣିବାକୁ ଜିଦ୍ ଧରି ବସିଲେ । ଏହି କାରଣ କହି ସାରିବା ପରେ ତାଙ୍କ ସ୍ୱାମୀଙ୍କର ମୃତ୍ୟୁ ହୋଇଯିବ, ସ୍ୱାମୀଙ୍କ ଠାରୁ ଶୁଣି ମଧ୍ୟ ସେ ତାଙ୍କ ଜିଦ୍‌ରୁ ସାମାନ୍ୟ ଟିକିଏ ହେଲେ ଘୁଞ୍ଚିଲେ ନାହିଁ । ଏଠାରେ ସ୍ୱାମୀଙ୍କ ଜୀବନ ପ୍ରତି ସେ ବିପଦ ସ୍ୱରୂପ ଦେଖା ଦେଉଥିବାରୁ ସ୍ୱାମୀ ତାଙ୍କୁ ଛାଡ଼ପତ୍ର ଦେବାକୁ ବାଧ୍ୟ ହୋଇଥିଲେ । କୈକେୟୀ ମଧ୍ୟ ସମଦଶା ଭୋଗିଥିଲେ । ରାମ ବନବାସ କଲେ ତାଙ୍କ ବିରହରେ ତାଙ୍କ ସ୍ୱାମୀ ଦଶରଥ ମରିଯିବେ ବୋଲି ତାଙ୍କୁ ବାରମ୍ବାର କହିବା ସତ୍ତ୍ୱେ ସେ ସେଇ ବରଟି ଲାଗି ଅଟଳ ରହିଥିଲେ । ଦ୍ୱିତୀୟତଃ ସେ ତାଙ୍କ ସ୍ୱାମୀଙ୍କୁ ନିଜ ଧର୍ମଗତ କର୍ତ୍ତବ୍ୟ ପାଳନ କରିବାରେ ପ୍ରତିବନ୍ଧକ ସୃଷ୍ଟି କରିଥିଲେ । ଦଶରଥଙ୍କର ଏହି ଧର୍ମଗତ କର୍ତ୍ତବ୍ୟ ଥିଲା ଜ୍ୟେଷ୍ଠପୁତ୍ର ରାମଙ୍କୁ ସିଂହାସନରେ ବସାଇବା । କୈକେୟୀଙ୍କ ଯୋଗୁରୁ ହିଁ ସେ ଏହି କାର୍ଯ୍ୟଟି କରିପାରି ନଥିଲେ । ତେଣୁ ସେ କୈକେୟୀଙ୍କୁ ଛାଡ଼ପତ୍ର ଦେଇଥିଲେ । 'ଅବଶ୍ୟ କେବଳ ତୁମକୁ ଛାଡ଼ପତ୍ର ଦେଲି', ଏତିକି ମାତ୍ର ସେ କହିଥିଲେ ଏବଂ ପରେ ପରେ ତାଙ୍କର ରାମଙ୍କ ବିରହରେ ମୃତ୍ୟୁ ହୋଇ ଯାଇଥିଲା । ଏହି ଛାଡ଼ପତ୍ର ତେଣୁ କାର୍ଯ୍ୟକାରୀ ହୋଇ ନଥିଲା । ତାଙ୍କ ମୃତ୍ୟୁ ପରେ କୈକେୟୀ ବିଧବା ହୋଇଥିଲେ ଏବଂ ଅଯୋଧ୍ୟା-ରାଜପୁରୀରେ ରହିଥିଲେ । କିନ୍ତୁ ଦଶରଥ ଛାଡ଼ପତ୍ର ଦେବା କଥାଟି କହି ଦେଇଥିବାରୁ ତାହା ତାଙ୍କ ନାମରେ ଚିର କଳଙ୍କ ହୋଇ ରହିଯାଇଥିଲା । ରାମ ତାଙ୍କୁ ଏହି କଳଙ୍କରୁ ଉଦ୍ଧାର କରିଥିଲେ । ରାମାୟଣରେ ବର୍ଣ୍ଣିତ ଅଛି ଯେ ରାମଙ୍କ ବିଜୟ ପରେ ଦଶରଥଙ୍କ ଆତ୍ମା ଯେତେବେଳେ ରାମଙ୍କୁ ଦେଖା ଦେଇଥିଲେ ସେ (ରାମ) ତାଙ୍କୁ ଅନୁରୋଧ କରି କହିଥିଲେ :

ସପୁତ୍ରାଂ ତ୍ୱାଂ ତ୍ୟଜାମୀତି ଯଦୁକ୍ତା କୈକେୟୀ ତ୍ୱୟା ।
ସ ଶାପଃ କୈକେୟୀଂ ଘୋରଃ ସପୁତ୍ରାଂ ନ ସ୍ପୃଶେତ୍ ପ୍ରଭୋ । (୩୬)

ଅର୍ଥାତ୍ ହେ ପ୍ରିୟେ ପୁତ୍ର ଭରତ ସହିତ ତୁମକୁ ମୁଁ ଛାଡ଼ପତ୍ର ଦେଲି ବୋଲି ଆପଣ ଯାହା କୈକେୟୀଙ୍କୁ କହିଥିଲେ, ସେହି ଘୋର ଶାପ ତାଙ୍କୁ ଓ ତାଙ୍କ ପୁତ୍ରଙ୍କୁ ଏବେ ସ୍ପର୍ଶ ନକରୁ । ଦଶରଥ ଏଥିରେ ସନ୍ତୁଷ୍ଟ ହୋଇ ତାଙ୍କ ଅଭିଶାପବାଣୀକୁ ପ୍ରତ୍ୟାହାର କରି ନେଇଥିଲେ ।

ସୀତାଙ୍କ ସତୀତ୍ୱ ଉପରେ ଅଯୋଧ୍ୟାର କେତେକ ପ୍ରଜା ସନ୍ଦେହ ଆରୋପ କରିବାରୁ ପ୍ରଜାନୁରଞ୍ଜକ ରାଜା ରାମ ତାଙ୍କୁ ନିର୍ବାସିତା କରିଥିଲେ । କେହି କେହି ଏହାକୁ ଛାଡ଼ପତ୍ର ବୋଲି ଆଖ୍ୟା ଦେଇଥାନ୍ତି । ଏହା କିନ୍ତୁ ଛାଡ଼ପତ୍ର ନୁହେଁ । ଏହା ହେଉଛି ରାଜା ରାମଙ୍କର କାର୍ଯ୍ୟ, ସ୍ୱାମୀ ରାମଙ୍କର କାର୍ଯ୍ୟ କିନ୍ତୁ ନୁହେଁ । ରାମ ସୀତାଙ୍କୁ ନିର୍ବାସନ-ଦଣ୍ଡ ଦେବା ପରେ ମଧ୍ୟ ତାଙ୍କୁ ନିଜ ସ୍ତ୍ରୀ ଭାବରେ ସ୍ୱୀକାର କରି ଆସିଛନ୍ତି । ଅଶ୍ୱମେଧ ଯଜ୍ଞ କରିବା ସମୟରେ ସେ ଦ୍ୱିତୀୟ ଦାରପରିଗ୍ରହ ପାଇଁ ସ୍ପଷ୍ଟ ଭାବରେ ମନା କରି ଦେଇଛନ୍ତି ଏବଂ ସୀତାଙ୍କର ଗୋଟିଏ ସୁନା ପ୍ରତିମାକୁ ପାଖରେ ବସାଇ ଯଜ୍ଞ-କାର୍ଯ୍ୟ ସମାହିତ କରିଛନ୍ତି । ସୀତା ମଧ୍ୟ ରାମଙ୍କୁ ଭୁଲି ନାହାନ୍ତି; ତାଙ୍କୁ ସର୍ବଦା ନିଜ ସ୍ୱାମୀ ରୂପରେ ସ୍ୱୀକାର କରି ଆସିଛନ୍ତି । ପୁନଶ୍ଚ ସତୀତ୍ୱ ହରାଇବା ଅପରାଧରେ ସୀତା ରାମଙ୍କ ଆଗରେ ଦୁଷ୍ଟା ହୋଇ ନଥିଲେ । କେତେକ ପ୍ରଜା ତାଙ୍କୁ ଅସତୀ ବୋଲି ସନ୍ଦେହ କରୁଥିଲେ । ରାମ କିନ୍ତୁ ତାଙ୍କ ପାଇଁ ଅଗ୍ନି-ପରୀକ୍ଷା କରି ସାରିଥିଲେ ଏବଂ ତାଙ୍କର ସମ୍ପୂର୍ଣ୍ଣ ଧାରଣା ଥିଲା ଯେ ସୀତା ସତୀ ସାଧ୍ୱୀ ନାରୀ । ସ୍ୱାମୀଙ୍କର ସେ ଯେତେବେଳେ ଏଭଳି ବିଶ୍ୱାସଭାଜନ ଥିଲେ, ତାଙ୍କଠାରୁ ଛାଡ଼ପତ୍ର ପାଇବାର ଆଉ ଅବକାଶ ରହିଲା କେଉଁଠି ? ଅତଏବ ସୀତାଙ୍କର ଅଯୋଧ୍ୟା ରାଜପ୍ରାସାଦରୁ ପରିତ୍ୟାଗ-ଘଟଣାଟିକୁ ଛାଡ଼ପତ୍ର ବୋଲି ଗ୍ରହଣ ନକରି ଆମକୁ ରାଜା ରାମ ଦେଇଥିବା ନିର୍ବାସନଦଣ୍ଡ ବୋଲି ଗ୍ରହଣ କରିବାକୁ ହେବ ।

ଏହି ସବୁ ଆଲୋଚନାରୁ ଆମେ ଜାଣିପାରିବା ଯେ ରାମାୟଣକାଳୀନ ସମାଜରେ ସ୍ୱାମୀ ସ୍ତ୍ରୀକୁ ଛାଡ଼ପତ୍ର ଦେଇ ପାରୁଥିଲେ । ନିମ୍ନଲିଖିତ ଯେ କୌଣସି ଗୋଟିଏ ଅପରାଧ ଲାଗି ସ୍ତ୍ରୀ ଛାଡ଼ପତ୍ରର ଶିକାର ହେଉଥିଲା

(କ) ସ୍ୱାମୀଙ୍କ ଜୀବନ ଲାଗି ବିପଦ ସ୍ୱରୂପ ଠିଆ ହେବା;

(ଖ) ସ୍ୱାମୀଙ୍କୁ ଧର୍ମପଥରୁ ବିଚ୍ୟୁତ କରାଇବାର କାରଣ ହେବା; ଏବଂ

(ଗ) ସ୍ୱାମୀଙ୍କ ପ୍ରତି ବିଶ୍ୱାସଘାତକତା କରି ଅସତୀ ହେବା ।

ବର୍ତ୍ତମାନ ବହୁପତ୍ନୀ-ବିବାହ ତଥା ବହୁ ପତି-ବିବାହ କଥା ବିଚାର୍ଯ୍ୟ । ଜାୟା ଓ ପତିଙ୍କୁ ନେଇ ଦମ୍ପତି (ସଂସ୍କୃତରେ ଦମ୍ପତୀ) ଶବ୍ଦର ସୃଷ୍ଟି । ଏଣୁ

ଏଥିରେ ତୃତୀୟ କିମ୍ବା ଚତୁର୍ଥଙ୍କ ପାଇଁ ସ୍ଥାନ ନାହିଁ । ରାଧାକୃଷ୍ଣନ୍ ତେଣୁ ଯଥାର୍ଥରେ କୁହନ୍ତି :

Monogamy is ideal, and there is no double standard of morality. (୩୨)

ତେଣୁ ଆଦର୍ଶ ପରିବାର ହେଲା ଜଣେ ସ୍ୱାମୀଙ୍କର ଜଣେ ସ୍ତ୍ରୀ । ଏହା ଭାରତୀୟ ପରଂପରାରେ ବୈଦିକ କାଳରୁ ହିଁ ସମ୍ମାନିତ ହୋଇ ଆସୁଛି । ବାଲ୍ମୀକି ଏହି ପରଂପରାକୁ ମାନ୍ୟତା ଦେଇଥିଲେ ଏବଂ ତେଣୁ ଆଦର୍ଶ ଦମ୍ପତି ଭାବରେ ରାମ-ସୀତାଙ୍କୁ ଚିତ୍ରିତ କରିଥିଲେ । ରାମ ସାରା ଜୀବନ ଏକପତ୍ନୀ-ବ୍ରତ ଗ୍ରହଣ କରିବେ ବୋଲି ସୀତାଙ୍କ ଆଗରେ ପ୍ରତିଶ୍ରୁତି ଦେଇଥିଲେ ଏବଂ ତାହାକୁ ଅକ୍ଷରେ ଅକ୍ଷରେ ପାଳିଥିଲେ । ସୀତା ମଧ୍ୟ ରାମଙ୍କ ପ୍ରତି ପ୍ରେମରେ ଥିଲେ ଏକନିଷ୍ଠା । ସେ ଲକ୍ଷ୍ମଣଙ୍କୁ କହିଥିଲେ

ରାମଂ ବିନା କ୍ଷଣମପି ନୈବ ଜୀବାମି ଭୂତଳେ । (୩୨-କ)

ଅର୍ଥାତ୍ ରାମଙ୍କୁ ଛାଡ଼ି ମୁଁ ସଂସାରରେ ମୁହୂର୍ତ୍ତେ ମାତ୍ର ବି ବଞ୍ଚିପାରିବି ନାହିଁ । ସୀତାଙ୍କ ଦୃଷ୍ଟିରେ ରାମଙ୍କ ପ୍ରାଣ ସହିତ ତାଙ୍କ ପ୍ରାଣ ମିଶି ଯାଇଥିଲା ଏବଂ ତେଣୁ ରାମଙ୍କ ଅବର୍ତ୍ତମାନତାରେ ତାଙ୍କର ଜୀଇଁବା ସମ୍ଭବ ନଥିଲା । କିନ୍ତୁ ତାହା ସତ୍ତ୍ୱେ ରାମାୟଣୀୟ ସମାଜରେ ଜଣେ ସ୍ୱାମୀ ଏକାଧିକ ସ୍ତ୍ରୀ ଗ୍ରହଣ କରି ପାରୁଥିଲେ । ରାଜା ଦଶରଥଙ୍କ ଜଣାଶୁଣା ତିନି ରାଣୀଙ୍କ ଛଡ଼ା ଆଉ ସାଢ଼େ ତିନି ଶହ ସ୍ତ୍ରୀ ଥିଲେ । (୩୨-ଖ) ଋଷିବ୍ରାହ୍ମଣମାନେ ମଧ୍ୟ ଏକାଧିକ ପତ୍ନୀ ଗ୍ରହଣ କରୁଥିଲେ । ବିଶ୍ରବା ଋଷି ଭରଦ୍ୱାଜଙ୍କ କନ୍ୟାଙ୍କୁ ବିବାହ କରିଥିଲେ ମଧ୍ୟ କୈକସୀ ନାମ୍ନୀ ଜଣେ ରାକ୍ଷସୀକୁ ପୁଣି ପରେ ବିବାହ କରିଥିଲେ । କିନ୍ତୁ ଜଣେ ସ୍ତ୍ରୀ ଏକାଧିକ ସ୍ୱାମୀ ଗ୍ରହଣ କରିଥିବାର ନିଦର୍ଶନ ଆମେ ରାମାୟଣରେ ଆଦୌ ପାଇ ନଥାଉ । ବାସ୍ତବିକ ତୈତ୍ତିରୀୟ ସଂହିତାରେ (୬।୬।୪) ବାରଣ କରି କୁହାଯାଇଛି ଯେ ଜଣେ ସ୍ତ୍ରୀର ଏକାଧିକ ସ୍ୱାମୀ ରଖିବା ଉଚିତ ନୁହେଁ । ଐତରେୟ ବ୍ରାହ୍ମଣ (୩।୧୨) ମଧ୍ୟ ଅନୁରୂପ ବାରଣାତ୍ମକ ବିଧାନ କରିଅଛି । ପୁରୁଷପ୍ରଧାନ ସମାଜରେ ଏହା ହୋଇଥିବା ସ୍ୱାଭାବିକ ।

ରାମାୟଣକାଳୀନ ସମାଜରେ ବିଧବାବିବାହ ଥିଲା କି ନାହିଁ ତାହା ବର୍ତ୍ତମାନ ବିଚାର୍ଯ୍ୟ । ଏ ସମ୍ପର୍କରେ ଏଠାରେ ମନେ ରଖିବାକୁ ହେବ ଯେ ବିଧବାବିବାହ ବୈଦିକ କାଳରୁ ହିଁ ଚାଲି ଆସୁଥିଲା । ପତିଙ୍କ ମୃତ୍ୟୁ ପରେ ପତ୍ନୀ ଦେବରଙ୍କୁ ବିବାହ କରୁଥିଲେ । ବାସ୍ତବିକ ଦେବର ଶବ୍ଦର ବ୍ୟୁତ୍ପତ୍ତି-ଅନୁକ୍ରମରେ କୁହାଯାଇଛି 'ଦେବରଃ ଦ୍ୱିତୀୟୋ ବରଃ' । ଅର୍ଥାତ୍ ଦେବର

ହେଉଛନ୍ତି ଦ୍ୱିତୀୟ ବରସ୍ୱରୂପ । ବଡ଼ ଭାଇ ମରିଗଲେ ସାନ ଭାଇଙ୍କର ଭାଉଜଙ୍କୁ ବିଭା ହେବାର ପ୍ରଥମ ଅଧିକାର ଥିଲା । ଶ୍ମଶାନଭୂମିରୁ ବିଧବା ସ୍ତ୍ରୀମାନଙ୍କର ଗୃହକୁ ପ୍ରତ୍ୟାବର୍ତ୍ତନ ପ୍ରତି ଲକ୍ଷ୍ୟ କରି ଋଗ୍‌ବେଦର ଗୋଟିଏ ମନ୍ତ୍ର ରଚିତ । ତହିଁରେ ଏହି ସ୍ତ୍ରୀମାନଙ୍କୁ 'ଅବିଧବା' ହୋଇ ରହିବା ପାଇଁ କୁହାଯାଇଛି । ଏହି ମନ୍ତ୍ରଟି ହେଲା ;

ଇମା ନାରୀରବିଧବାଃ ସୁପତ୍ନୀରଞ୍ଜନେନ ସର୍ପିଷା ସମ୍ବିଶନ୍ତୁ । (୭୮)

ଅର୍ଥାତ୍ ଏହି ସ୍ତ୍ରୀମାନେ ଲୁହ ନଗଡ଼ାଇ ଅବିଧବା ଅବସ୍ଥାରେ କଜ୍ଜଳ ଲଗାଇ ବେଶଭୂଷା ପିନ୍ଧି (ଶ୍ମଶାନରୁ) ସୁନ୍ଦର ପତିଙ୍କ ସହିତ ସମସ୍ତଙ୍କ ଆଗେ ଆଗେ ଚାଲି ନିଜ ଘରେ ପ୍ରବେଶ କରନ୍ତୁ । ଏହାର ତାତ୍ପର୍ଯ୍ୟ ହେଲା, ସେମାନଙ୍କୁ ପୁନର୍ବାର ପତି ଗ୍ରହଣ କରି ସୁଖରେ ଘରସଂସାର କରିବାକୁ ହେବ– ପୁନର୍ବାର ଭଙ୍ଗା ସଂସାରକୁ ଯୋଡ଼ି ନୂତନ ସଂସାର ଗଢ଼ିବାକୁ ହେବ । ବିଧବା ତା'ର ଦେବର ସହିତ ଶଯ୍ୟାଶାୟିନୀ ହୋଇଥାଏ ବୋଲି ଋଗ୍‌ବେଦର ଆଉ ଗୋଟିଏ ମନ୍ତ୍ରରେ ମଧ୍ୟ ସଂକେତ ଅଛି, ଯେଉଁଠି ଅଶ୍ୱିନୀକୁମାରଦ୍ୱୟଙ୍କ ପ୍ରଣୟିନୀ କିଏ ବୋଲି ଆର୍ଯ୍ୟ ଋଷି ପ୍ରଶ୍ନ କରିଛନ୍ତି । ମନ୍ତ୍ରଟି ହେଲା

କୋ ବଂ ଶୟୁତ୍ରଂ ବିଧବେବ ଦେବରଂ କୃଣୁତେ ।

ଅର୍ଥାତ୍ ବିଧବା ତା'ର ଦେବରକୁ ଶେଯକୁ ନିମନ୍ତ୍ରଣ କଲା ଭଳି ତୁମ ଦୁହିଁକୁ କିଏ ଶେଯକୁ ନିମନ୍ତ୍ରଣ କରେ ? ଏହିସବୁ ସୂଚନାରୁ ଜଣାପଡ଼ୁଛି ଯେ ବିଧବା-ବିବାହ ବୈଦିକ କାଳରେ ସ୍ୱୀକୃତିଲାଭ କରିଥିଲା । କୌଟିଲ୍ୟଙ୍କ (ଖ୍ରୀ: ପୂ:-୪ର୍ଥ ଶତାବ୍ଦୀ) ଅର୍ଥଶାସ୍ତ୍ରରେ (୭୯) ବିଧବା ବିବାହ ପ୍ରସଙ୍ଗରେ ସ୍ପଷ୍ଟ ଉଲ୍ଲେଖ ଅଛି ଏବଂ କୁହାଯାଇଛି ଯେ ଯଦି ବିଧବା ତା'ର ଶ୍ୱଶୁରଙ୍କ ଦ୍ୱାରା ନିର୍ବାଚିତ ବରଙ୍କୁ ଗ୍ରହଣ ନକରେ, ତେବେ ତା'ର ସ୍ୱାମୀ ଓ ଶ୍ୱଶୁର ତା'କୁ ଦେଇଥିବା ସକଳ ସମ୍ପତ୍ତିରୁ ସେ ବଞ୍ଚିତା ହେବ । ଏଭଳି ବରନିର୍ବାଚନରେ ଦେବର ଉପରେ ପ୍ରାଥମିକତା ଆରୋପ କରାଯାଉଥିଲା । ବୁଦ୍ଧଙ୍କ ସମୟରେ ମଧ୍ୟ (ଖ୍ରୀ: ପୂ ୬ଷ୍ଠ-ଶତାବ୍ଦୀ) ବିଧବା-ବିବାହ ପ୍ରଚଳିତ ଥିଲା । ଉଚ୍ଛଙ୍ଗ ଜାତକ, ଅଣ୍ଡଭୂତ ଜାତକ, କୁନାଲ ଜାତକ ଆଦି ଜାତକ ଲେଖମାନଙ୍କରେ ଏହାର ନିଦର୍ଶନ ମିଳିଥାଏ । ମହାଭାରତ-ଯୁଗରେ (ଖ୍ରୀ: ପୂ: ଚତୁର୍ଦ୍ଦଶ ଶତାବ୍ଦୀ) ବିଧବା ବିବାହ ପ୍ରଚଳିତ ଥିବାର ସୂଚନା ଆମକୁ ମିଳିଥାଏ । ସତ୍ୟବତୀଙ୍କ ସ୍ୱାମୀ ମରିଯିବା ପରେ ତାଙ୍କ ପିତା ରାଜା ଉଗ୍ରାୟୁଧ ତାଙ୍କୁ ଦ୍ୱିତୀୟ ଥର ବିବାହ ଦେଇଥିଲେ । ଅର୍ଜ୍ଜୁନ ମଧ୍ୟ ନାଗରାଜ ଐରାବତଙ୍କ ବିଧବା କନ୍ୟାଙ୍କୁ ପତ୍ନୀ ରୂପରେ ଗ୍ରହଣ କରିଥିଲେ ଏବଂ ତାଙ୍କ ଗର୍ଭରୁ ଏକ ପୁତ୍ର ସନ୍ତାନ ଜାତ କରିଥିଲେ ।

ବୈଦିକ କାଳରୁ ଆରମ୍ଭ କରି ଅନ୍ତତଃ ଖ୍ରୀ: ପୂ ୪ର୍ଥ ଶତାବ୍ଦୀ ପର୍ଯ୍ୟନ୍ତ ବିଧବା-ବିବାହ ପ୍ରଚଳିତ ଥିବାର ଉପଯୁକ୍ତ ପ୍ରମାଣମାନ ମିଳୁଥିବାରୁ ରାମାୟଣ-ଯୁଗରେ ଏହା ପ୍ରଚଳିତ ଥିବାର ବିଶ୍ୱାସ କରାଯାଏ ।

କିନ୍ତୁ ଆର୍ଯ୍ୟ-ସମ୍ପ୍ରଦାୟ ମଧ୍ୟରେ ବିଧବା-ବିବାହ ସଂଘଟିତ ହୋଇଥିବାର ପ୍ରତ୍ୟକ୍ଷ ବର୍ଣ୍ଣନା ରାମାୟଣରେ କୌଣସି ଜାଗାରେ କରାଯାଇ ନାହିଁ । କେବଳ ବାନରମାନଙ୍କ କ୍ଷେତ୍ରରେ ଏଭଳି ବିବାହ ସଂଘଟିତ ହୋଇଥିବାର ବର୍ଣ୍ଣନା ଅଛି । ବାଲି ହେଉଛନ୍ତି ସୁଗ୍ରୀବଙ୍କ ବଡ଼ ଭାଇ । ତାଙ୍କ ମୃତ୍ୟୁ ପରେ ତାଙ୍କ ବିଧବା-ପତ୍ନୀ ତାରାଙ୍କୁ ସୁଗ୍ରୀବ ବିବାହ କରିଛନ୍ତି । ଆର୍ଯ୍ୟମାନଙ୍କ ମଧ୍ୟରେ ବିଧବା-ବିବାହ ଚଳୁଥିବାର କେବଳ ଗୋଟିଏ ପରୋକ୍ଷ ପ୍ରମାଣ ଆମେ ରାମାୟଣରେ ଦେଖିବାକୁ ପାଇଥାଉଁ । ସୁନାର ମୃଗରୂପୀ ମାରୀଚ ରାକ୍ଷସକୁ ରାମ ଶରାହତ କରି ବଧ କଲାବେଳେ ସେ ରାମଙ୍କ ସ୍ୱରକୁ ଅନୁକରଣ କରି 'ଲକ୍ଷ୍ମଣ ରକ୍ଷା କର' ବୋଲି ଚିତ୍କାର କରିଥିଲା । ରାମଙ୍କୁ ବିପଦ ପଡ଼ିଛି ବୋଲି ଆଶଙ୍କା କରି ସୀତା ତାଙ୍କ ସାହାଯ୍ୟାର୍ଥେ ଲକ୍ଷ୍ମଣଙ୍କୁ ଯିବା ପାଇଁ ଅନୁରୋଧ କରିଥିଲେ । ଲକ୍ଷ୍ମଣ ସୀତାଙ୍କୁ ଏକାକିନୀ ଛାଡ଼ିଯିବା ପାଇଁ ରାଜି ନଥିଲେ । ତେଣୁ ସେ ସୀତାଙ୍କୁ ସାନ୍ତ୍ୱନା ଦେଇ କହିଥିଲେ ଯେ ରାମ ହେଉଛନ୍ତି ଅପରାଜେୟ ଏବଂ ତାଙ୍କର କ୍ଷତି କଲା ଭଳି ଲୋକ ତ୍ରିଭୁବନରେ କେହି ନାହିଁ । ସୀତା ଏଥିରେ ଲକ୍ଷ୍ମଣଙ୍କ ଉପରେ ଖୁବ୍ ରାଗିଯାଇ କହିଲେ

ଲୋଭାତ୍ତୁ ମତ୍କୃତେ ନୂନଂ ନାନୁଗଚ୍ଛସି ରାଘବମ୍ ।
ବ୍ୟସନଂ ତେ ପ୍ରିୟଂ ମନ୍ୟେ ସ୍ନେହୋ ଭ୍ରାତରି ନାସ୍ତି ତେ ।। (୩୯)

ଅର୍ଥାତ୍ ତୁମେ ମୋ' ଉପରେ ଲୋଭ କରି ରାମଙ୍କ ପଛରେ ଯାଉନାହଁ । ମୁଁ ଭାବୁଛି, ରାମଙ୍କୁ ବିପଦ ପଡ଼ିବାଟା ତୁମକୁ ଭଲ ଲାଗୁଛି । ତୁମ ମନରେ ଭାଇଙ୍କ ପ୍ରତି ସ୍ନେହ ନାହିଁ । ସୀତାଙ୍କର କହିବାର ତାତ୍ପର୍ଯ୍ୟ ହେଲା, ଲକ୍ଷ୍ମଣ ଚାହୁଁଛନ୍ତି ଯେ ରାମ ବିପଦରେ ପଡ଼ି ମୃତ୍ୟୁବରଣ କରନ୍ତୁ । ତା'ହେଲେ ଦେବର ହିସାବରେ ସେ ତାଙ୍କୁ (ସୀତାଙ୍କୁ) ବିବାହ କରି ପାରିବେ । ଯଦି ବିଧବା ଭ୍ରାତୃଜାୟାଙ୍କୁ ଦେବର ବିବାହ କରିବାର ପ୍ରଥା ସେତେବେଳେ ଚଳୁ ନଥାନ୍ତା, ତେବେ ଏଭଳି କଥା ବାଲ୍ମୀକି ସୀତାଙ୍କ ମୁଖରେ କୁହାଇ ଥାଆନ୍ତେ କି ? କଦାପି ନୁହେଁ । ତେଣୁ ସେତେବେଳେ ଆର୍ଯ୍ୟମାନଙ୍କ ମଧ୍ୟରେ ବିଧବା-ବିବାହ ପ୍ରଥା ଚଳୁଥିଲା ବୋଲି ଅନୁମାନ କରାଯାଇ ପାରେ ।

ରାମ-ସୀତାଙ୍କ ବିବାହକୁ ଏକ ଆଦର୍ଶ ବିବାହ ଭାବରେ ଏବଂ ସେ ଦୁହିଁଙ୍କ ଦାମ୍ପତ୍ୟ-ଜୀବନକୁ ଏକ ଆଦର୍ଶ ଦାମ୍ପତ୍ୟ-ଜୀବନ ଭାବରେ ବର୍ଣ୍ଣିତ କରିବା ଲାଗି

ବାଲ୍ମୀକି ଉଦ୍ୟମ କରିଛନ୍ତି । ଏ ବିବାହରେ ଜଣେ ଅନ୍ୟଠାରୁ କ'ଣ ପାଇବେ, ସେଥିପାଇଁ ଲାଳାୟିତ ହୋଇ ନାହାନ୍ତି; ସେ ଅନ୍ୟକୁ କ'ଣ ଦେବେ ସେଥିପାଇଁ ସତତ ଉଦ୍ୟତ ହୋଇଛନ୍ତି । ସକଳ କର୍ମ, ସକଳ ଧର୍ମରେ ଜଣେ ଅପରର ହୋଇଛନ୍ତି ସହଗାମୀ ଅଥବା ସହଗାମିନୀ । ସୀତା ରାମଙ୍କୁ ଦେବତା ବୋଲି ମାନିଛନ୍ତି; ପୁଣି ତାଙ୍କୁ ଆବଶ୍ୟକ ସ୍ଥଳେ ଉପଦେଶ ମଧ୍ୟ ଦେଇଛନ୍ତି ଏବଂ ରାମ ତାହାକୁ ଗ୍ରହଣ କରି ଯାଇଛନ୍ତି । ସେମାନଙ୍କର ଶରୀର ପୃଥକ୍ ଥିଲେ ମଧ୍ୟ ପ୍ରାଣ ହେଉଛି ଏକ—ନାସିକା ପୃଥକ୍ ଥିଲେ ହେଁ ନିଃଶ୍ୱାସ-ପବନ ଏକ । ଜୀବନର ସରୋବରରେ ସେ ଦୁହେଁ ଯେମିତି ଦୁଇଟି ସୌରଭୋଦ୍ଭିଳ କମଳ ! ଦେହର ଦେବାଳୟରେ ସେ ଦୁହେଁ ଯେମିତି ଏକ ଆତ୍ମାର ସନ୍ଧାନ ପାଇଛନ୍ତି ! ସେମାନଙ୍କର ପାରସ୍ପରିକ ପ୍ରେମ ଦୈହିକ ସ୍ତରକୁ ଅତିକ୍ରମ କରିଯାଇଛି । ରାଧାକୃଷ୍ଣନ୍‌ଙ୍କ କହିବା ଅନୁସାରେ

> To regard the body or any part of it as indecent or vile is the sin of impiety. To treat it as cheap and vulgar is equally impious. Physical union withuot love is the essence of prostitution. This is true within as without marriage. (୪୦)

ଏହା ହେଉଛି ଆର୍ଯ୍ୟ ଦାମ୍ପତ୍ୟ-ଜୀବନର ଆଭିମୁଖ୍ୟ । ବୈବାହିକ ଜୀବନରେ ପ୍ରେମହୀନ ଦୈହିକ ମିଳନର କିଛି ହିଁ ମୂଲ୍ୟ ନାହିଁ । ତାହା ବେଶ୍ୟାବୃତ୍ତି ସହିତ ସମାନ । ରାମ-ସୀତାଙ୍କର ମିଳନ ଦେହର ସୀମାକୁ ଅତିକ୍ରାନ୍ତ କରି ଯାଇଥିଲା । ସେ ଦୁହିଁଙ୍କ ଦାମ୍ପତ୍ୟ-ଜୀବନ ପ୍ରେମର ଊର୍ଜସ୍ୱଳ ଧାରାରେ ଥିଲା ପରିପ୍ଲୁତ । ରାମାୟଣୀୟ ସମାଜରେ ଏହା ହିଁ ଥିଲା ଏକ ଆଦର୍ଶ ବିବାହର ପରିଭାଷା ! ବାଲ୍ମୀକିଙ୍କ ଲେଖନୀ ଅବାରିତ ଭାବରେ ତାହାର ଜୟଗାନ କରିଛି ।

ଉପରୋକ୍ତ ଆଲୋଚନା ଦୃଷ୍ଟେ ରାମାୟଣକାଳୀନ ସମାଜରେ ଆର୍ଯ୍ୟସଂପ୍ରଦାୟର ବିବାହ ସଂପର୍କରେ ଆମେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା :

(କ) ବିବାହ-ବନ୍ଧନକୁ ଏକ ପବିତ୍ର ବନ୍ଧନ ବୋଲି ଧରା ଯାଉଥିଲା । ଏହାର ଉଦ୍ଦେଶ୍ୟ ନିର୍ବାଧ ଦୈହିକ-ମିଳନ ଆଦୌ ନଥିଲା । ବରଂ କିପରି ସୁଶୃଙ୍ଖଳ ଯୌନ-ଜୀବନ ଯାପନ କରି ହେବ, ବିବାହ ମାଧ୍ୟମରେ ଦମ୍ପତି ତାହା ଶିକ୍ଷା କରୁଥିଲେ ।

(ଖ) ବିଭିନ୍ନ ପ୍ରକାର ବିବାହ-ପଦ୍ଧତି ପ୍ରଚଳିତ ଥିଲେ ହେଁ ଯେଉଁ ପଦ୍ଧତିସମୂହ

କାମନାଷ୍ଟ, ଯଥା, ଗାନ୍ଧର୍ବ, ରାକ୍ଷସ ଓ ପୈଶାଚ ବିବାହ-ପଦ୍ଧତି, ସେଗୁଡ଼ିକ ସମାଜ ଦ୍ୱାରା ନିନ୍ଦିତ ହେଉଥିଲା ।

(ଗ) କନ୍ୟାଗୃହକୁ ବର ଆସିବାଠାରୁ ଆରମ୍ଭ କରି କନ୍ୟାକୁ ଧରି ବିବାହ ପରେ ବର ନିଜ ଘରକୁ ଫେରିବା, ଚତୁର୍ଥୀ-କର୍ମର ସମାପନ ଆଦି ଅନେକ ଜଟିଳ କର୍ମକର୍ମାଣି ମାଧ୍ୟମରେ ବିବାହ-ଅନୁଷ୍ଠାନ ସମାହିତ ହେଉଥିଲା । ଏ ସମସ୍ତର ଉଦ୍ଦେଶ୍ୟ ଥିଲା କିପରି ସ୍ୱାମୀ-ସ୍ତ୍ରୀ ଦେହ ଓ ମନ ଉଭୟ ସ୍ତରରେ ପରସ୍ପରର ଖୁବ୍ ନିକଟତର ହୋଇ ଉଠିବେ ।

(ଘ) ବିବାହ ମାଧ୍ୟମରେ ଉଭୟ ସ୍ୱାମୀ ଓ ସ୍ତ୍ରୀ ଜୀବନରେ ପରିପୂର୍ଣ୍ଣତା ହାସଲ କରୁଥିଲେ । ଏଥିରେ ଜଣେ ଅପରକୁ ସାହାଯ୍ୟ କରୁଥିଲା ।

(ଙ) ବିବାହରେ ବରପିତା ଓ କନ୍ୟାପିତା ଉଭୟଙ୍କର ସ୍ୱୀକୃତି ଆବଶ୍ୟକ ପଡ଼ୁଥିଲା । ପିତାଙ୍କ ସ୍ୱୀକୃତି ଉପରେ ପ୍ରାଥମିକତା ଦିଆ ଯାଉଥିଲା ଏବଂ ତାହା ବିନା ବିବାହ ସଂଘଟିତ ହେବା ଅସମ୍ଭବ ଥିଲା ।

(ଚ) ସ୍ୱୟମ୍ବର-ସଭାରେ ଆନୁଷ୍ଠାନିକ ଭାବରେ ସ୍ତ୍ରୀ ସ୍ୱାମୀଙ୍କୁ ବରଣ କରୁଥିଲା; କିନ୍ତୁ ସେହି ସ୍ୱାମୀଙ୍କୁ ତା' ପାଇଁ ପିତା ପୂର୍ବରୁ ବାଛି ସାରିଥିଲେ । ତେଣୁ ନିଜ ଇଚ୍ଛାରେ ସ୍ୱାମୀଙ୍କୁ ବରଣ କରିବାର ସ୍ୱାଧୀନତା ସ୍ତ୍ରୀର ନଥିଲା, ଯଦିଓ ସ୍ତ୍ରୀକୁ କୁହାଯାଉଥିଲା 'ସ୍ୱୟମ୍ବରା' ଅର୍ଥାତ୍ ନିଜ ଇଚ୍ଛାରେ ବର ବାଛିବାର ଅଧିକାରୀ ଥିବା ନାରୀ ।

(ଛ) ସ୍ୱାମୀଙ୍କ ସହିତ ମିଶି ସାତ ପାଦ ବିବାହ-ବେଦୀରେ ଗଲିବା ପରେ ବିବାହ ସମ୍ପୂର୍ଣ୍ଣ ହେଉଥିଲା ଏବଂ ସ୍ତ୍ରୀ ସ୍ୱାମୀଙ୍କ କୁଳର ଅନ୍ତର୍ଭୁକ୍ତ ହୋଇ ଯାଉଥିଲା । ଏହାକୁ କୁହାଯାଉଥିଲା ସପ୍ତପଦୀ ।

(ଜ) ସ୍ତ୍ରୀକୁ ସ୍ୱାମୀଙ୍କର ସହଧର୍ମଚାରିଣୀ ଓ ସହକର୍ମଚାରିଣୀ ଭାବରେ ଗଣା ଯାଉଥିଲା । ସ୍ତ୍ରୀର ଅନୁପସ୍ଥିତିରେ କେତେକ ନିର୍ଦ୍ଦିଷ୍ଟ ଯଜ୍ଞ-କାର୍ଯ୍ୟ ସମାହିତ କରି ହେଉନଥିଲା ।

(ଝ) ସ୍ତ୍ରୀ ପାଖରେ ସ୍ୱାମୀ ଥିଲେ ଦେବତାସଦୃଶ । ଏହା ସତ୍ତ୍ୱେ ସ୍ୱାମୀ ଅନେକ ସମୟରେ ସ୍ତ୍ରୀର ସଦୁପଦେଶ ଗ୍ରହଣ କରୁଥିଲେ । ସ୍ତ୍ରୀ ଓ ସ୍ୱାମୀ ପରସ୍ପରର ବାଣୀକୁ ସମ୍ମାନ ଦେଉଥିଲେ ।

(ଞ) ବିବାହ ପାଇଁ ଜାତକ-ମେଳ କରାଯାଉ ନଥିଲା । ଏଥିପାଇଁ କେବଳ ଶୁଭଦିନ ଓ ଶୁଭଲଗ୍ନ ଠିକ୍ କରାଯାଉଥିଲା ।

(ଟ) ବ୍ରାହ୍ମ-ବିବାହକୁ ସେତେବେଳେ ସର୍ବୋତ୍କୃଷ୍ଟ ବିବାହ ବୋଲି ଧରାଯାଉଥିଲା

ଏବଂ ଅଧିକାଂଶ ଜାଣିବା ଶୁଣିବା ଲୋକେ ସେହି ବିବାହ-ପଦ୍ଧତି ଅନୁସରଣ କରୁଥିଲେ ।

(ଠ) କେତେବେଳେ କେମିତି ଆସୁର-ବିବାହ ମଧ୍ଯ ପ୍ରଚଳିତ ଥିଲା ।

(ଡ) ବିବାହ ପରେ ବରଘରେ ଚତୁର୍ଥୀ ଉତ୍ସବ ଭଳି ଏକ ଉତ୍ସବ ଅନୁଷ୍ଠିତ ହେଉଥିଲା । କିନ୍ତୁ ବିବାହର କେତେ ଦିନ ପରେ ତାହା ଅନୁଷ୍ଠିତ ହେଉଥିଲା, ସେ କଥା ଠିକ୍ ଭାବରେ କହିହେବ ନାହିଁ ।

(ଢ) ସେତେବେଳେ କନ୍ୟାପିତା ତାଙ୍କ ବଳକୁ ଚାହିଁ ଯୌତୁକ ଦେଉଥିଲେ । କିନ୍ତୁ ଏଥିପାଇଁ ବରପକ୍ଷରୁ କିଛି ଦାବି କରାଯାଉ ନଥିଲା । ଏହା ଥିଲା କନ୍ୟା ପିତାଙ୍କର ସମ୍ପୂର୍ଣ୍ଣ ଇଚ୍ଛାଧୀନ ।

(ଣ) ବାଲ୍ୟବିବାହ-ପ୍ରଥା ସେତେବେଳେ ଆଦୌ ନଥିଲା । ବରକନ୍ୟାଙ୍କର ବୟଃପ୍ରାପ୍ତି ପରେ ହିଁ ବିବାହ ସଂଘଟିତ ହେଉଥିଲା । ବର ଓ କନ୍ୟାଙ୍କର ବୟଃପ୍ରାପ୍ତିର ବୟସ ଯଥାକ୍ରମେ ପଚିଶ ବର୍ଷ ଓ ଷୋହଳ ବର୍ଷ ବୋଲି ଗଣାଯାଉଥିଲା ।

(ତ) ସାଧାରଣତଃ ସମବର୍ଣ୍ଣ ବ୍ୟକ୍ତିଙ୍କ ମଧ୍ୟରେ ବିବାହ ସଂଘଟିତ ହେଉଥିଲା । ବେଳେ ବେଳେ ଅନୁଲୋମ ବିବାହ ମଧ୍ୟ ସଂଘଟିତ ହେଉଥିଲା । କିନ୍ତୁ ପ୍ରତିଲୋମ ବିବାହ ସମାଜରେ ଥିଲା ନିନ୍ଦନୀୟ ।

(ଥ) ସେତେବେଳେ ପାତିବ୍ରତ୍ୟ ଉପରେ ଖୁବ୍ ଗୁରୁତ୍ୱ ଦିଆ ଯାଉଥିଲା । ସ୍ତ୍ରୀ ଦ୍ୱାରା ସ୍ୱାମୀ ଦେବତା ଜ୍ଞାନରେ ପୂଜିତ ହେଉଥିଲେ । ସ୍ୱାମୀ ମଧ୍ୟ ସ୍ତ୍ରୀ ପ୍ରତି ସ୍ନେହପ୍ରବଣ ଓ ନିଷ୍ଠାବାନ୍ ରହୁଥିଲେ ଏବଂ ତାଙ୍କୁ ରକ୍ଷା କରୁଥିଲେ ।

(ଦ) ସ୍ତ୍ରୀର ସ୍ୱାମୀଙ୍କୁ ଛାଡ଼ପତ୍ର ଦେବାର ପ୍ରଶ୍ନ ହିଁ ନଥିଲା । ନିର୍ଦ୍ଦିଷ୍ଟ କେତେକ କାରଣବଶତଃ ସ୍ୱାମୀ ସ୍ତ୍ରୀକୁ ଛାଡ଼ପତ୍ର ଦେଇପାରୁଥିଲେ ।

(ଧ) ସେତେବେଳେ ବିଧବା-ବିବାହ ସମାଜରେ ପ୍ରଚଳିତ ଥିଲା । ସ୍ୱାମୀଙ୍କ ମୃତ୍ୟୁ ପରେ ସ୍ତ୍ରୀ ସାଧାରଣତଃ ଦେବରଙ୍କୁ ବିବାହ କରୁଥିଲା ।

**ବାନର-ବିବାହ :**

ପୂର୍ବ ଅନୁଚ୍ଛେଦମାନଙ୍କରେ ଆର୍ଯ୍ୟ-ସମ୍ପ୍ରଦାୟର ବିବାହ ସମ୍ପର୍କରେ ଆଲୋଚନା କରାଗଲା । ବର୍ତ୍ତମାନ ରାମାୟଣକାଳୀନ ସମାଜରେ ବାନରମାନଙ୍କ ମଧ୍ୟରେ କିପରି ବିବାହ-ପଦ୍ଧତି ପ୍ରଚଳିତ ଥିଲା ସେ ବିଷୟରେ ଆଲୋଚନା କରାଯାଉଛି । ତତ୍ପୂର୍ବରୁ ବାନର-ଗୋଷ୍ଠୀ ସଂପର୍କରେ ସାମାନ୍ୟ ଧାରଣା ହେବା ଆବଶ୍ୟକ ।

ସାଧାରଣତଃ ବାନର କହିଲେ ଆମେ ମାଙ୍କଡ଼ ବୋଲି ବୁଝିଥାଉଁ । ବାସ୍ତବିକ ରାମାୟଣରେ ଏମାନଙ୍କୁ କପି, ଶାଖାମୃଗ, ପ୍ଲବଙ୍ଗମ ଆଦି ନାମରେ ଡ଼କା ଯାଇଛି ଏବଂ ଏଗୁଡ଼ିକ ହେଲେ ମାଙ୍କଡ଼ର ପ୍ରତିଶବ୍ଦ । କିନ୍ତୁ ପ୍ରକୃତ କଥା ହେଲା, ଏମାନେ ଥିଲେ ମଣିଷ । ଏମାନେ ଥିଲେ ଏକ ଅସଭ୍ୟ ଜାତି । ଏମାନଙ୍କ ରୂପ ଚେହେରା ଥିଲା ଯାହା କି କପିରୂପ ସହିତ ତୁଳନୀୟ । ଏମାନେ ଥିଲେ ଅର୍ଦ୍ଧନଗ୍ନ । ଏମାନେ ଖୁବ୍ ହୃଷ୍ଟପୁଷ୍ଟ ଓ ଖାଟ ଥିଲେ । ବଣ-ଜଙ୍ଗଲରେ ବୁଲିବା, ଗଛକୁ ଗଛ ଡ଼େଇଁବା ଆଦି କର୍ମରେ ଏମାନେ ଥିଲେ ଧୁରୀଣ । ଏମାନେ ଅଣ୍ଟାରେ ଗୋଟିଏ ଦଉଡ଼ି ଗୁଡ଼ାଇ ରଖୁଥିଲେ ଯାହା କି ପଛକୁ ସାମାନ୍ୟ ଲାଞ୍ଜ ଆକାରରେ ଝୁଲି ରହୁଥିଲା । ଏହି ଦଉଡ଼ିଟି ଏମାନଙ୍କୁ ଲଢେଇରେ ସାହାଯ୍ୟ କରୁଥିଲା । ଏହା ଦ୍ୱାରା ଏମାନେ ଶତ୍ରୁମାନଙ୍କୁ ବାନ୍ଧି-ପାରୁଥିଲେ, ଗଛରୁ ଗଛକୁ ଡେଇଁ ପାରୁଥିଲେ ଏବଂ ପାହାଡ଼ ଚଢ଼ି ପାରୁଥିଲେ । ହନୁମାନଙ୍କ ଲାଞ୍ଜରେ ଲଙ୍କାରେ ଦଉଡ଼ି ବନ୍ଧାଯାଇ ତାହାକୁ ଲମ୍ବା କରି ଦିଆ-ଯାଇ ସେଥିରେ ଅଗ୍ନିସଂଯୋଗ କରାଯାଇଥିବା କଥାର ବର୍ଣ୍ଣନା ଅଛି । ଏଥିରୁ ଏହି ସୂଚନା ମିଳୁଛି ଯେ ତାଙ୍କ ଲାଞ୍ଜ ଥିଲା ଗୋଟିଏ ଦଉଡ଼ି ଏବଂ ସେଥିରେ ଆଉ ଦଉଡ଼ି ବନ୍ଧାଯାଇ ତାହାକୁ ଲମ୍ବା କରିଦିଆ ଯାଇଥିଲା । ହୁଏତ ଜାମ୍ବବାନଙ୍କ ଭଳି କେତେକ ବାନର ଅନ୍ୟମାନଙ୍କ ଅପେକ୍ଷା ଅଧିକତର ଲୋମଶ ଥିଲେ ଏବଂ ସେଥିପାଇଁ ସେମାନଙ୍କୁ ରାମାୟଣରେ 'ଋକ୍ଷ' ବା ଭାଲୁ ବୋଲି କୁହାଯାଇଛି । ଦକ୍ଷିଣଭାରତରେ ଆର୍ଯ୍ୟ ମୁନିଋଷିମାନେ ଆର୍ଯ୍ୟ-ସଂସ୍କୃତିର ବିସ୍ତାର ଲାଗି ଅନୁପ୍ରବେଶ କରିବା ଅବସରରେ ଏମାନେ ସେମାନଙ୍କ ସଂପର୍କରେ ଆସିଥିଲେ ଏବଂ ସେହି ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇଥିଲେ । ରାମ-ଲକ୍ଷ୍ମଣ ଆଦି ଦକ୍ଷିଣ ଭାରତକୁ ଆସିବାର ବହୁ ବର୍ଷ ପୂର୍ବରୁ ଏହା ଘଟିଥିଲା । ସେଥିପାଇଁ ତ ରାମ ସୀତାବିରହରେ ଅରଣ୍ୟରେ ଭ୍ରମୁଥିବା ସମୟରେ ଭିକ୍ଷୁବେଶୀ ହନୁମାନ୍ ତାଙ୍କୁ ଆକ୍ଷେପ କରି ଯେଉଁ ସଂଭାଷଣ କରିଥିଲେ ସେଥିରେ ସେ ଚକିତ ହୋଇ ଯାଇଥିଲେ । ତହିଁରୁ ସେ ସ୍ଥିରନିଶ୍ଚୟ ହୋଇଗଲେ ଯେ ହନୁମାନ୍ ହେଉଛନ୍ତି ସଭ୍ୟ ଗୋଷ୍ଠୀର ଅନ୍ତର୍ଭୁକ୍ତ । ହନୁମାନଙ୍କ ଚାଲିଚଳଣ, କଥାବାର୍ତ୍ତା ଆଦି ସଂପର୍କରେ ସେ ଲକ୍ଷ୍ମଣଙ୍କୁ ଯାହା କହିଥିଲେ, ତାହା ରାମାୟଣର କିଷ୍କିନ୍ଧାକାଣ୍ଡର ୩ୟ ସର୍ଗରେ ବର୍ଣ୍ଣିତ । ଏଥିରୁ ଜଣାଯାଏ ଯେ:

କ) ହନୁମାନ୍ ଆର୍ଯ୍ୟମାନଙ୍କ ଭଙ୍ଗୀରେ ପ୍ରଥମ ଦର୍ଶନରେ ରାମଲକ୍ଷ୍ମଣ ଦୁହିଁଙ୍କୁ କୁଶଳ ସଂଭାଷଣ କରିଥିଲେ ।

ଖ) ତାଙ୍କ ଭାଷାପ୍ରୟୋଗରୁ ଜଣାପଡୁଥିଲା, ସେ ଋଗ୍‌ବେଦ, ଯଜୁର୍ବେଦ ଓ ସାମବେଦରେ ଥିଲେ ଧୁରୀଣ ।

ଗ) ସେ ଶୁଦ୍ଧ ଭାବରେ ଉଚ୍ଚାରଣ କରିପାରୁଥିଲେ ଏବଂ ତେଣୁ ତାଙ୍କର ନିଶ୍ଚିତ ଭାବରେ ବ୍ୟାକରଣ ଜ୍ଞାନ ଥିଲା ।

ଘ) କଥା କହିଲା ବେଳେ ତାଙ୍କ ମୁଖ, ନେତ୍ର, ଲଲାଟ ତଥା ଦେହର ଅନ୍ୟାନ୍ୟ ଅଙ୍ଗମାନଙ୍କରେ କିଛି ହିଁ ବିକାରଭାବ ପ୍ରକଟିତ ହେଉନଥିଲା ।

ଙ) ସେ ନିଜର ଅଭିପ୍ରାୟ ଅତି ସ୍ପଷ୍ଟ ଭାବରେ ନିବେଦନ କରିଥିଲେ ।

ଚ) ସେ ସଂସ୍କୃତ ଭାଷାରେ ଥିଲେ ପ୍ରବୀଣ ।

ଛ) ତାଙ୍କ ହୃଦୟ, କଣ୍ଠ ଓ ମୂର୍ଦ୍ଧାରୁ ନେଇଁ ବାଣୀ ଆସୁଥିଲା, ତାହାର ଶତ୍ରୁ-ପ୍ରାଣକୁ ମଧ୍ୟ ଜିଣିଯିବାର କ୍ଷମତା ଥିଲା । ସେହି ବାଣୀ ଥିଲା ଖୁବ୍ ଲଳିତ ଓ ହୃଦୟସ୍ପର୍ଶୀ ।

ଏଭଳି ଭାଷାପ୍ରୟୋଗ କ'ଣ ସାଧାରଣ ମାଙ୍କଡ଼ କିମ୍ବା ଭାଲୁ କରିପାରେ ? ଏଥିରୁ ସ୍ପଷ୍ଟ ଭାବରେ ସୂଚନା ମିଳେ ଯେ ବାନରମାନେ ଥିଲେ ଗୋଟିଏ ସ୍ୱତନ୍ତ୍ର ଗୋଷ୍ଠୀର ଅନ୍ତର୍ଭୁକ୍ତ ଏବଂ ସେମାନଙ୍କ ଉପରେ ଆର୍ଯ୍ୟ-ସଂସ୍କୃତିର ପ୍ରଭାବ ପୂର୍ବରୁ ପଡ଼ିଥିଲା । ଏହି ମତର ପୁଷ୍ଟିସାଧନ ଏସ୍. ଏନ୍. ବ୍ୟାସ ମଧ୍ୟ କରିଥାନ୍ତି । ତାଙ୍କ ଭାଷାରେ

> Vali's cremation also makes it abundantly clear that the Vanaras had become completely Aryanised and that their outlook and spirit were Aryan. (୪୦-କ)

ଏହି ପୃଷ୍ଠଭୂମିରେ ସେମାନଙ୍କ ମଧ୍ୟରେ ପ୍ରଚଳିତ ଥିବା ବିବାହସମ୍ବନ୍ଧ ସମ୍ପର୍କରେ ଆଲୋଚନା କରିବା ତେଣୁ ଯଥାର୍ଥ ହେବ ।

ଆର୍ଯ୍ୟସଂସ୍କୃତିର ପ୍ରଭାବ ବାନରମାନଙ୍କ ଉପରେ ପଡ଼ିଥିଲେ ମଧ୍ୟ ଆର୍ଯ୍ୟ-ବିବାହର ମର୍ମ ସେମାନେ ସମ୍ୟକ ଭାବରେ ଉପଲବ୍ଧି କରିପାରି ନଥିଲେ । ଆର୍ଯ୍ୟବିବାହ ଆଦୌ ଯୌନକ୍ରୀଡ଼ା ନଥିଲା । ବୈବାହିକ ଜୀବନରେ ସଂଯତ ଯୌନ ଆଚରଣ ଥିଲା ଆର୍ଯ୍ୟବିବାହର ପ୍ରଧାନ ଲକ୍ଷ୍ୟ । କିନ୍ତୁ ବାନରମାନଙ୍କ କ୍ଷେତ୍ରରେ ଏହା ନଥିଲା । କିଷ୍କିନ୍ଧାରାଜ ବାଳୀଙ୍କୁ ଉଦାହରଣସ୍ୱରୂପ ନିଆଯାଇପାରେ । ସୁଗ୍ରୀବ ଥିଲେ ତାଙ୍କର ସାନ ଭାଇ, ପୁଅ ସମାନ । ରୁମା ଥିଲେ ସୁଗ୍ରୀବଙ୍କର ସ୍ତ୍ରୀ । ସେ ହେଉଛନ୍ତି ବାଳୀଙ୍କ ବୋହୂ ସମାନ । କିନ୍ତୁ ବାଳୀ କଲେ କ'ଣ ? ସେ ଯୌନ-ଲାଳସାର ବଶବର୍ତ୍ତୀ ହୋଇ ସୁଗ୍ରୀବଙ୍କୁ ରାଜ୍ୟରୁ ତଡ଼ିଦେଇ ରୁମାଙ୍କୁ ନିଜର ପତ୍ନୀ କରିନେଲେ । ତାରାଙ୍କ ପରେ ରୁମା ତାଙ୍କର ହେଲେ ଦ୍ୱିତୀୟା ପତ୍ନୀ । ଏଭଳି କାର୍ଯ୍ୟ ଆର୍ଯ୍ୟସମାଜରେ କଦାପି ଅନୁମୋଦିତ

ହୋଇ ନଥାନ୍ତା । ସନାତନ ଧର୍ମର ବିଧିବିଧାନକୁ ପରିହାର କରି ବାଲୀ କନିଷ୍ଠ ଭ୍ରାତାଙ୍କ ପତ୍ନୀଙ୍କୁ ବିବାହ କରିଥିବାରୁ ରାମ ତାଙ୍କୁ ହତ୍ୟା କଲେ ବୋଲି ସ୍ପଷ୍ଟ ଭାବରେ କହିଛନ୍ତି । ଏ ସଂପର୍କରେ ତାଙ୍କର ମୃତ୍ୟୁମୁଖୀ ବାଳୀଙ୍କ ପ୍ରତି ନିମ୍ନଲିଖିତ ଉକ୍ତି ଉଲ୍ଲେଖନୀୟ

× × ×

ରୁମାୟାଂ ବର୍ତ୍ତସେ କାମାତ୍ ସ୍ନୁଷାୟାଂ ପାପକର୍ମକୃତ୍
ତଦ୍‌ବ୍ୟତୀତସ୍ୟ ତେ ଧର୍ମାତ୍ କାମବୃତ୍ତସ୍ୟ ବାନର ।
ଭ୍ରାତୃଭାର୍ଯ୍ୟାଭିମର୍ଶେଽସ୍ମିନ୍ ଦଣ୍ଡୋଽୟଂ ପ୍ରତିପାଦିତଃ । (୪୧)

ଅର୍ଥାତ୍ ରୁମା ହେଉଛନ୍ତି ତୁମର ପୁତ୍ରବଧୂ ସମାନ । ତୁମେ ତାଙ୍କ ସହିତ ରତ ହେବାରୁ ପାପକର୍ମ କରି ବସିଛ । ଆହେ ବାନର ! କାମର ଅଧୀନ ହୋଇ ତୁମେ ଏଭଳି ଧର୍ମପଥରୁ ବିଚ୍ୟୁତ ହୋଇଛ । ନିଜ ସାନ ଭାଇଙ୍କ ସ୍ତ୍ରୀଙ୍କୁ ରମଣ କରିଥିବାରୁ ତୁମକୁ ଏହି ଦଣ୍ଡ ଦିଆ ଯାଇଛି । ଏଥିରୁ ଏହି ସୂଚନା ମିଳୁଛି ଯେ ବାନରମାନଙ୍କ ବିବାହକୁ ଯୌନପ୍ରବଣତା ଆଚ୍ଛନ୍ନ କରି ରଖିଥିଲା ।

ବାଲୀଙ୍କ ମୃତ୍ୟୁ ପରେ ସୁଗ୍ରୀବ ତାଙ୍କ ପତ୍ନୀ ରୁମାଙ୍କୁ ଫେରାଇ ଆଣିବା ସଙ୍ଗେ ସଙ୍ଗେ ବାଳୀପତ୍ନୀ ତାରାଙ୍କୁ ମଧ୍ୟ ବିବାହ କରିଥିଲେ । ସୁଗ୍ରୀବଙ୍କ ପକ୍ଷରେ ବିଧବା ଭ୍ରାତୃଜାୟାଙ୍କୁ ବିବାହ କରିବା ଦୂଷଣୀୟ ନଥିଲା । କାରଣ ଆର୍ଯ୍ୟ-ପରମ୍ପରାରେ ମଧ୍ୟ ବିଧବା ଭ୍ରାତୃଜାୟାଙ୍କୁ ବିବାହ କରିବାର ପ୍ରଥମ ଅଧିକାର ଥିଲା ଦେବରଙ୍କର ଏବଂ ସୁଗ୍ରୀବ ଥିଲେ ତାରାଙ୍କର ଦେବର । ଏଥିରୁ ଏହି ସୂଚନା ମିଳୁଛି ଯେ ବାନରମାନଙ୍କ ମଧ୍ୟରେ ବି ଆର୍ଯ୍ୟ-ସଂପ୍ରଦାୟ ଭଳି ବିଧବା-ବିବାହ ପ୍ରଚଳିତ ଥିଲା ।

କିନ୍ତୁ ଗୋଟିଏ ବିଷୟରେ ଆଶ୍ଚର୍ଯ୍ୟ ଲାଗେ ଯେ ରାମାୟଣରେ କୌଣସିଠାରେ ବାନରମାନଙ୍କର ବିବାହ-ପଦ୍ଧତି କଥାର ଉଲ୍ଲେଖ ନାହିଁ । ଆର୍ଯ୍ୟ ବିବାହରେ ପିତା ବରକୁ ସ୍ୱଗୃହକୁ ନିମନ୍ତ୍ରଣ କରି କନ୍ୟାଦାନ କରିଥାନ୍ତି । ଏପରି କି ରାକ୍ଷସ-ସଂପ୍ରଦାୟରେ ମଧ୍ୟ ସେହି ପ୍ରଥା ଚାଲୁଥିବାର ନିଦର୍ଶନ ରାମାୟଣରେ ମିଳିଥାଏ । ରାବଣ-ମନ୍ଦୋଦରୀ ବିବାହକୁ ଏଠାରେ ଉଦାହରଣ ସ୍ୱରୂପ ନିଆ ଯାଇପାରେ । କିନ୍ତୁ ବାଲୀ କିମ୍ବା ସୁଗ୍ରୀବ କିମ୍ବା ଆଉ କୌଣସି ବାନରଙ୍କ ବିବାହ ସଂପର୍କରେ ସେଭଳି କିଛି ବର୍ଣ୍ଣନା ନାହିଁ । ବାଲୀଙ୍କ ମୃତ୍ୟୁରେ ତାଙ୍କ ବିଧବା ପତ୍ନୀ ତାରା ବିକଳ ଭାବରେ ରୋଦନ କରିଛନ୍ତି । କିନ୍ତୁ ପରେ ପରେ ଯେତେବେଳେ ସୁଗ୍ରୀବ ରାଜା ହୋଇଛନ୍ତି ଏବଂ ଅଙ୍ଗଦ ଯୁବରାଜ

ହୋଇଛନ୍ତି, ତାଙ୍କୁ ସୁଗ୍ରୀବଙ୍କ ପତ୍ନୀ ହିସାବରେ ଦେଖିବାକୁ ମିଳୁଛି । ଏଥିପାଇଁ କିଛି ବିବାହୋତ୍ସବ ଅନୁଷ୍ଠିତ ହୋଇନାହିଁ । ଆଜିକାଲିକାର ଭାଷାରେ କହିବାକୁ ଗଲେ ସୁଗ୍ରୀବ ତାରଙ୍କୁ ସ୍ତ୍ରୀ ଭାବରେ ଆଦର ନେଇଥିଲେ । ଠିକ୍ ସେମିତି ତାଙ୍କ ବଡ଼ ଭାଇ ବାଳୀ ରୁମାଙ୍କୁ ସ୍ତ୍ରୀ ଭାବରେ ଆଦର ନେଇଥିଲେ । ଏଥିରୁ ଏହି ସଂକେତ ମିଳୁଛି ଯେ ବାନର-ବିବାହ ବର-କନ୍ୟାଙ୍କ ପାଇଁ ଥିଲା ମୁକ୍ତ ଓ ଏଥିପାଇଁ ବରପିତା ଓ କନ୍ୟାପିତାଙ୍କ ସ୍ୱୀକୃତିର ଆବଶ୍ୟକତା ପଡ଼ୁ-ନଥିଲା । ସେଥିପାଇଁ ଆର୍ଯ୍ୟ-ସମ୍ପ୍ରଦାୟ ଭଳି କନ୍ୟାପିତାଙ୍କର କନ୍ୟାଦାନ କରିବାର ପ୍ରଶ୍ନ ହିଁ ଉଠୁନଥିଲା । ଏ ବିବାହ ଥିଲା ଅତି ସରଳ । ଜଣେ ଆଉ ଜଣକୁ ସ୍ତ୍ରୀ କିମ୍ବା ସ୍ୱାମୀ ଭାବରେ ମାନି ଯାଉଥିଲା । ସେତିକିରେ ବିବାହ ସରିଯାଉଥିଲା । ଆର୍ଯ୍ୟମାନଙ୍କ ଭଳି କର୍ମକାଣ୍ଡନିଷ୍ଠ ଜଟିଳ ବିବାହ-ପଦ୍ଧତି ବାନରମାନଙ୍କ ଦ୍ୱାରା ଅନୁସୃତ ହେଉନଥିଲା ।

କନ୍ୟା-ଦାନର ପ୍ରଶ୍ନ ନଥିବାରୁ କନ୍ୟାପିତାଙ୍କ ଯୌତୁକ ଦେବାର ପ୍ରଶ୍ନ ହିଁ ଉଠୁ ନଥିଲା । ଅତଏବ, ବାନର-ବିବାହରେ ଯୌତୁକ-ପ୍ରଥା ନଥିଲା ବୋଲି ବିଶ୍ୱାସ କରିବାକୁ ହେବ ।

ବାନର-ବିବାହରେ ଆନୁଷ୍ଠାନିକ ମନ୍ତ୍ରପାଠ ମାଧ୍ୟମରେ ବୈବାହିକ ପବିତ୍ରତା ଆଣାଇବାର ଚେଷ୍ଟା କରା ଯାଉନଥିଲେ ମଧ୍ୟ, ସ୍ୱାମୀ-ସ୍ତ୍ରୀ ଯେ ପରସ୍ପର ପ୍ରତି ପ୍ରେମନିଷ୍ଠ ତଥା ବିଶ୍ୱାସବଦ୍ଧ ନଥିଲେ ତାହା ନୁହେଁ । ସେମାନଙ୍କ ଦାମ୍ପତ୍ୟ-ଜୀବନରେ ମଧ୍ୟ ପାରସ୍ପରିକ ପ୍ରେମ, ପ୍ରୀତି, ଅଭିମାନ ଆଦି ଗୁଣମାନ ରହିଥିଲା । ବାନରନାରୀ ତାରା କିମ୍ବା ରୁମା ଏକା ସାଙ୍ଗରେ ବାଳୀ ଓ ସୁଗ୍ରୀବଙ୍କ ସହିତ କେବେହେଲେ ରହିନଥିଲେ । ସେମାନେ ଯେଉଁ ସମୟରେ ଯାହାଙ୍କର ସ୍ତ୍ରୀ ହୋଇଥିଲେ, ସେତେବେଳେ ସେହି ସେହି ସ୍ୱାମୀମାନଙ୍କ ପ୍ରତି ଥିଲେ ପ୍ରୀତିଭାବସମ୍ପନ୍ନା ତଥା ବିଶ୍ୱାସନିଷ୍ଠା । ବାଳୀଙ୍କ ମୃତ୍ୟୁରେ ତାରା ଯେଉଁ ହୃଦୟବିଦାରକ ବିଳାପ କରିଥିଲେ, ତାହା କିଷ୍କିନ୍ଧାକାଣ୍ଡର ୨୦ଶ ଓ ୨୩ଶ ସର୍ଗରେ ବର୍ଣ୍ଣିତ । ତନ୍ମଧ୍ୟରୁ ଏଠାରେ ଗୋଟିଏ ପଙ୍‌କ୍ତି ଉଲ୍ଲେଖମାତ୍ର

ମତ୍ତଃ ପ୍ରିୟତରା ନୂନଂ ବାନରେନ୍ଦ୍ର ମହୀ ତବ ।
ଶେଷେ ହି ତାଂ ପରିଷ୍ୱଜ୍ୟ ମାଂ ଚ ନ ପ୍ରତି ଭାଷସେ । (୪୬)

ଅର୍ଥାତ୍ ହେ ବାନରରାଜ ! ମୋʼଠାରୁ ନିଶ୍ଚିତ ଭାବରେ ଏ ପୃଥିବୀ ତୁମର ଅଧିକ ପ୍ରିୟ । ସେଥିପାଇଁ ପରା ତୁମେ ତାହାକୁ ଆଲିଙ୍ଗନ କରି ରହିଛ ଏବଂ ମତେ କିଛି କଥା କହୁନାହଁ ! ଏଥିରେ ଜଣେ ସଦ୍ୟ ବିଧବାଙ୍କର ବେଦନାର୍ତ୍ତ କଣ୍ଠର ଉଦ୍‌ଗାରର ସ୍ଫୁରଣ ସମ୍ୟକ୍ ଭାବରେ ପରିସ୍ଫୁଟ । ପୁଣି ଆଉ ଠାଏ (୪।୧୯।୨୮) ତାଙ୍କୁ

'କୁରରୀମିବ' ବା 'କପୋତୀ ଭଳି' କାନ୍ଦୁଥିବାର ଦେଖି ସୁଗ୍ରୀବ ମନରେ ଖୁବ୍ କଷ୍ଟ ପାଇଥିବା କଥାର ଉଲ୍ଲେଖ ଅଛି । ପୁଣି ଆଉ ଠାଏ (୩।୧୯।୧୮) ସେ ବିଳାପ କରି କହିଛନ୍ତି

ପୁତ୍ରେଣ ମମ କଂ କାର୍ଯ୍ୟଂ ରାଜ୍ୟେନାପି କିମାତ୍ମନା ।
କପିସିଂହେ ମହାଭାଗେ ତସ୍ମିନ୍ ଭର୍ତ୍ତରି ନଶ୍ୟତି ।

ଅର୍ଥାତ୍ ମୋ'ର ସ୍ୱାମୀ ବାନରସିଂହ ଆଜି ଯେତେବେଳେ ମୃତ, ସେତେବେଳେ ମୋ'ର ପୁତ୍ରଠାରେ ବା ରାଜ୍ୟଠାରେ କିମ୍ବା ମୋ' ନିଜଠାରେ କିବା ପ୍ରୟୋଜନ ? ସେ ସ୍ୱାମୀଙ୍କ ମୃତ୍ୟୁରେ ନିଜ ଜୀବନ ହାରିଦେବାକୁ ବସିଥିଲେ । କିନ୍ତୁ ଅନ୍ୟ ବାନରମାନେ ପୁତ୍ରର ମୁଖ ଚାହିଁ ତାଙ୍କୁ ବଞ୍ଚି ରହିବା ପାଇଁ ବାରମ୍ବାର ଅନୁରୋଧ କରିବାରୁ ସେ ଆତ୍ମାହୁତି ଦେବାରୁ ନିବୃତ୍ତ ହୋଇଥିଲେ । ସେ ଯେଉଁ ଆଚରଣ ଦେଖାଇଥିଲେ, ଅନ୍ୟ କୌଣସି ପତିସୋହାଗିନୀ ଆର୍ଯ୍ୟନାରୀ ତାହାଠାରୁ ଆଉ କିଛି ଅଧିକ ଦେଖାଇ ନଥାନ୍ତେ । ଏଥିରୁ ଜଣାପଡ଼ୁଛି ଯେ ବାନର-ସମ୍ପ୍ରଦାୟରେ ଦାମ୍ପତ୍ୟ-ଜୀବନ ଖୁବ୍ ପ୍ରୀତିପୂର୍ଣ୍ଣ ଓ ସୁଖମୟ ଥିଲା ଏବଂ ଜଣକର ବିରହରେ ଅପରର ଜୀବନ ଦୁଃସହ, ଦୁଃଖଦ ଓ ଜ୍ୱାଳାମୟ ହୋଇ ଉଠୁଥିଲା । ଅତଏବ ଏହା ନିଶ୍ଚିତ ଭାବରେ ବାନରମାନଙ୍କ ଦାମ୍ପତ୍ୟ-ଜୀବନର କେତେକ ଉଜ୍ଜ୍ୱଳମୟ ଦିଗ । ତେଣୁ, ସେମାନଙ୍କ ବିବାହକୁ କେବଳ ଯୌନନିଷ୍ଠ ଜାନ୍ତବ ବିବାହର ଆଖ୍ୟା ଦେବା ସମୀଚୀନ ହେବ ନାହିଁ । ସେହି ବିବାହରେ ମଧ୍ୟ ଯଥୋଚିତ ଦାମ୍ପତ୍ୟ-ପ୍ରେମ ରହିଥିଲା ।

ବାନରମାନେ ବହୁ ପତ୍ନୀ ଗ୍ରହଣ କରୁଥିଲେ । ବାଳୀଙ୍କର ପତ୍ନୀ ତାରା ଥିବା କଥା ଏବଂ ସେ ସୁଗ୍ରୀବଙ୍କ ପତ୍ନୀ ରୁମାଙ୍କୁ ଶଯ୍ୟାଶାୟିନୀ କରାଇଥିବା କଥା ପୂର୍ବରୁ ବର୍ଣ୍ଣିତ । ଏମାନଙ୍କ ବ୍ୟତୀତ ତାଙ୍କର ଆହୁରି ଅନେକ ପତ୍ନୀ ଥିଲେ ବୋଲି ବିଶ୍ୱାସ କରାଯାଏ । ଅବଶ୍ୟ ସେମାନଙ୍କର ନାମ ରାମାୟଣରେ ଉଲ୍ଲିଖିତ ହୋଇନାହିଁ । କିନ୍ତୁ ଗୋଟିଏ ପଙ୍କ୍ତି ଅନୁଧ୍ୟାନ କଲେ ଆମେ ଜାଣିପାରିବା ଯେ ବାଳୀଙ୍କର ଏକାଧିକ ପତ୍ନୀ ଥିଲେ । ବାଳୀଙ୍କ ଶବ-ସଂସ୍କାର କରାଗଲା ବେଳେ ତାରା ବିକଳ ଭାବରେ ବିଳାପ କରି କହୁଛନ୍ତି :

ଏଷ ତ୍ୱାଂ ରାମରୂପେଣ କାଳଃ କର୍ଷତି ବାନର ।
ଯେନ ସ୍ମ ବିଧବାଃ ସର୍ବାଃ କୃତା ଏକେଷୁଣା ରଣେ । (୪୩)

ଅର୍ଥାତ୍ ବାନରରାଜ ! କାଳ ରୂପରେ ରାମ ଆସି ତୁମକୁ ଟାଣି ନେଇ ଯାଉଛନ୍ତି । ଯୁଦ୍ଧରେ ତାଙ୍କର ଗୋଟିଏ ମାତ୍ର ବାଣରେ ଆମେ ସମସ୍ତେ ବିଧବା ହୋଇଗଲୁ । ଏଠାରେ 'ଆମେ ସମସ୍ତେ, ବିଧବା ହୋଇଗଲୁ' ବୋଲି କହିବାର ତାତ୍ପର୍ଯ୍ୟ

ହେଲା, ବାଲୀଙ୍କର ଏକାଧିକ ପତ୍ନୀ ଥିଲେ । ତାରା ଏଠାରେ କେବଳ ନିଜକୁ ଓ ରୁମାଙ୍କୁ ଲକ୍ଷ୍ୟ କରି କହୁ ନାହାନ୍ତି । ତାହା ହୋଇଥିଲେ ଦ୍ୱିବଚନାନ୍ତ ଶବ୍ଦ 'ଆମେ ଦୁହେଁ' ବୋଲି ଲାଗିଥାନ୍ତା, 'ଆମେ ସବୁ' କିନ୍ତୁ ନୁହେଁ । ତା'ଛଡ଼ା ସେ ରୁମାଙ୍କ ପ୍ରତି କାହିଁକି ବା ଲକ୍ଷ୍ୟ କରି କହିବେ ? ରୁମା ତ ଥିଲେ ସୁଗ୍ରୀବଙ୍କ ପତ୍ନୀ । ବାନରମାନେ ଯେ ଏକାଧିକ ପତ୍ନୀ ରଖୁଥିଲେ ଏବଂ ଅନ୍ୟମାନଙ୍କ ସ୍ତ୍ରୀମାନଙ୍କୁ ଅପହରଣପୂର୍ବକ ନିଜସ୍ୱ କରି ନେଉଥିଲେ, ସେ ସଂପର୍କରେ ମନ୍ତବ୍ୟ ଦେବାକୁ ଯାଇ ଶର୍ମା କୁହନ୍ତି

> That this was a common practice among the Vanaras, is also shown by a statement by the Vanaras loyal to Vali in which they expressed their apprehensions that they would be dispossessed of their women by the victorious Vanaras coming into Kiskindha with Sugriva. (୪୪)

ବାଲୀଙ୍କର ସୁଗ୍ରୀବଙ୍କ ସ୍ତ୍ରୀ ରୁମାଙ୍କୁ ବଳପ୍ରୟୋଗପୂର୍ବକ ବିବାହ କରିବା ଏହାର ଏକ ନିଦର୍ଶନ । ବାସ୍ତବିକ ସୁଗ୍ରୀବ ରାମଙ୍କ ଆଗରେ ବାଲୀଙ୍କ ବୃତ୍ତାନ୍ତ ବଖାଣିଲା ବେଳେ ସ୍ପଷ୍ଟ ଭାବରେ କହିଛନ୍ତି ଯେ ବାଲୀ ତାଙ୍କ ସ୍ତ୍ରୀଙ୍କୁ ଜବରଦସ୍ତି ଅପହରଣ କରିନେଇଥିଲେ । (୪୫) ଏଥିରୁ ଏହି ତଥ୍ୟ ମିଳୁଛି ଯେ ବାନରମାନେ ବଳପୂର୍ବକ ଅନ୍ୟମାନଙ୍କ ସ୍ତ୍ରୀମାନଙ୍କୁ ଅପହରଣ କରି ନେଉଥିଲେ ଏବଂ ତାହା ବାନରସମାଜ ଦ୍ୱାରା ସ୍ୱୀକୃତ ହେଉଥିଲା । ସେମାନଙ୍କ ଭିତରେ ଥିବା ସଂଯମହୀନତା ଥିଲା ଏ ପ୍ରକାର ଯୌନଉଚ୍ଛୃଙ୍ଖଳତାର ପ୍ରଧାନ କାରଣ । ବାନରମାନଙ୍କ ଯୌନ ଜୀବନ କିପରି ଖୁବ୍ ଢିଲା ଥିଲା ସେ ବିଷୟରେ ମତ ଦେବାକୁ ଯାଇ ଶର୍ମା ଆଉ ଠାଏ କୁହନ୍ତି :

> The sex relations of the Vanaras are extremely loose, verging almost on promiscuity. (୪୬)

ବାନର-କନ୍ୟା ଇଚ୍ଛାକୁଳର ସ୍ୱାମୀଙ୍କୁ ବରଣ କରି ପାରୁଥିଲା । ଉଦାହରଣ ସ୍ୱରୂପ, ବାନରୀ ଅଞ୍ଜନାଙ୍କ ପ୍ରେମରେ ପଡ଼ି ବାୟୁଦେବତା ତାଙ୍କୁ ବିବାହ କରିଥିଲେ ଏବଂ ଏହି ପ୍ରେମବିବାହର ଫଳଶ୍ରୁତିସ୍ୱରୂପ ହନୁମାନଙ୍କର ଜନ୍ମ ହୋଇଥିଲା । କିନ୍ତୁ ବାନର ପୁରୁଷ ଉଚ୍ଚକୁଳର କୌଣସି କନ୍ୟାଙ୍କୁ ବିବାହ କରିଥିବାର ପ୍ରମାଣ ରାମାୟଣରେ ନାହିଁ । ଏହାର ତାତ୍ପର୍ଯ୍ୟ ହେଲା, ଆର୍ଯ୍ୟ-ସଂପ୍ରଦାୟ ଭଳି ବାନର-ସଂପ୍ରଦାୟରେ ମଧ୍ୟ 'ଅନୁଲୋମ ବିବାହ' ପ୍ରଚଳିତ ଥିଲା, 'ପ୍ରତିଲୋମ ବିବାହ' କିନ୍ତୁ ନୁହେଁ ।

ଉପରୋକ୍ତ ଆଲୋଚନା ଦୃଷ୍ଟିରେ ବାନର-ବିବାହ ପ୍ରସଙ୍ଗରେ ଆମେ ନିମ୍ନଲିଖିତ ନିର୍ଣ୍ଣୟ ଆଣିପାରିବା

କ) ବାନର-ବିବାହରେ ଆର୍ଯ୍ୟ-ବିବାହ-ପଦ୍ଧତି ଅନୁସୃତ ହେଉ ନଥିଲା । ଏଥିରେ ବିବାହର କର୍ମକର୍ମାଣି ଆଦି କରାଯାଉ ନଥିଲା ।

ଖ) ଏହି ବିବାହରେ କନ୍ୟାପିତା ଓ ବରପିତାଙ୍କ ଅନୁମତି ନେବାର ଆବଶ୍ୟକତା ପଡ଼ୁ ନଥିଲା ।

ଗ) ଏଥିରେ କନ୍ୟାପିତାଙ୍କ ପକ୍ଷରୁ ଦାନ, ଯୌତୁକ ଆଦି ଦେବାର ପ୍ରଶ୍ନ ହିଁ ଉଠୁନଥିଲା ।

ଘ) ଏହି ବିବାହରେ ଯୌନନିଷ୍ଠତା ଅଧିକ ପରିମାଣରେ ରହୁଥିଲା ।

ଙ) ଏଭଳି ଯୌନନିଷ୍ଠତା ସତ୍ତ୍ୱେ ବାନରମାନଙ୍କ ଦାମ୍ପତ୍ୟଜୀବନ ସୁଖମୟ ତଥା ପ୍ରେମମୟ ହେଉଥିଲା । ଏଥିରେ ପାରସ୍ପରିକ ଆଦାନ-ପ୍ରଦାନ ତଥା ସମର୍ପଣ-ଭାବ କିଛି କମ୍ ନଥିଲା ।

ଚ) ବାନର-ବିବାହରେ ପୁରୁଷର ଶାରୀରିକ ଶକ୍ତି ଖୁବ୍ କାମ ଦେଉଥିଲା । ଅପେକ୍ଷାକୃତ ବଳବାନ୍ ବ୍ୟକ୍ତି ଦୁର୍ବଳ ବ୍ୟକ୍ତିର ସ୍ତ୍ରୀକୁ ଅପହରଣ କରୁଥିଲା ଏବଂ ବାନର-ସମାଜ ଏହାକୁ ସ୍ୱୀକୃତ ଦେଉଥିଲା ।

ଛ) ଜଣେ ପୁରୁଷ ଏକାଧିକ ପତ୍ନୀ ଗ୍ରହଣ କରିପାରୁଥିଲା ।

ଜ) ଜଣେ ସ୍ତ୍ରୀ ଏକାଧିକ ସ୍ୱାମୀ ଗ୍ରହଣ କରି ପାରୁ ନଥିଲା ।

ଝ) ବାନର-ସମାଜରେ ବିଧବା-ବିବାହ ପ୍ରଚଳିତ ଥିଲା ।

ଞ) ଏହି ସମାଜରେ ଗାନ୍ଧର୍ବ ବିବାହ ମଧ୍ୟ ପ୍ରଚଳିତ ଥିଲା ।

ଟ) ଏହି ସମାଜରେ ଅନୁଲୋମ ବିବାହ ପ୍ରଚଳିତ ଥିଲା, ପ୍ରତିଲୋମ ବିବାହ କିନ୍ତୁ ନୁହେଁ ।

ଠ) ଜୀବନସାଥୀ ବାଛିବାରେ ଆର୍ଯ୍ୟସମ୍ପ୍ରଦାୟଠାରୁ ବାନର-ସମ୍ପ୍ରଦାୟ ମଧ୍ୟରେ ବରକନ୍ୟାଙ୍କର ସ୍ୱାଧୀନତା ଅଧିକ ଥିଲା ।

ଡ) ଯୌନନିଷ୍ଠତା ବାନର-ବିବାହରେ ଅଧିକ ପରିମାଣରେ ଥିଲେ ମଧ୍ୟ ଏହାକୁ ସମ୍ପୂର୍ଣ୍ଣ ରୂପେ ଜାନ୍ତବ ବିବାହ ସହିତ ତୁଳନା କରି ହେବନାହିଁ । ଏଥିରେ ମଧ୍ୟ ଦାମ୍ପତ୍ୟ-ଜୀବନର ସୂକ୍ଷ୍ମ ଓ ରୁଚିପୂର୍ଣ୍ଣ ଅନୁଭୂତିସମୂହର ଉପଲବ୍ଧି ଲାଗି ଅବକାଶ ଥିଲା ।

**ରାକ୍ଷସ-ବିବାଦ**

ଏ ତ ଗଲା ବାନର ବିବାଦ କଥା । ବର୍ତ୍ତମାନ ଆମେ ରାକ୍ଷସ-ବିବାଦକୁ ବିଚାରକୁ ନେବା । ରାକ୍ଷସ କହିଲେ ଆମେ ସାଧାରଣତଃ ବୁଝୁଁ ନେଉଁ, ଯାହା କିଛି ଖରାପ ଜିନଷ, ତାହା ସହିତ ଏହି ଗୋଷ୍ଠୀ ସମ୍ପୃକ୍ତ । ଏମାନେ ବିରୂପ; ଏମାନେ ମଦ ଖାଇ ମାତାଲ ହୁଅନ୍ତି; ଏମାନେ ଯୌନ ଜୀବନରେ ଅତି ଉଚ୍ଛୃଙ୍ଖଳ; ଏମାନେ ଆର୍ଯ୍ୟ-ବିରୋଧୀ; ଏମାନେ ନର-ମାଂସ ଖାଆନ୍ତି ଇତ୍ୟାଦି । ବାସ୍ତବିକ ରାମାୟଣରେ ବାଲ୍ମୀକି ଏମାନଙ୍କର ଯେଉଁଭଳି ଚିତ୍ର ଦେଇଛନ୍ତି, ତହିଁରୁ ଏହି ଧାରଣା ଉପୁଜିବା ସ୍ୱାଭାବିକ । ରାମାୟଣରେ ଏମାନଙ୍କୁ କୁହାଯାଇଛି 'ଋଷିକଣ୍ଟକ' (୧।୧୧।୬), 'ବ୍ରାହ୍ମଣକଣ୍ଟକ' (୩।୩୫।୨୨), 'ଲୋକକଣ୍ଟକ' (୧।୧୦।୭୪), 'ମୁନିଘ୍ନ' (୩।୩୪।୪) 'ଯଜ୍ଞଘ୍ନ' (୧।୮।୧୪) ଇତ୍ୟାଦି । ଆର୍ଯ୍ୟମାନେ ରାକ୍ଷସମାନଙ୍କ ଉପରେ ବିଜୟ ହାସଲ କରିଥିଲେ । ବାଲ୍ମୀକି ହେଉଛନ୍ତି ଆର୍ଯ୍ୟମାନଙ୍କ ପ୍ରତିନିଧି । ବିଜେତା ନିକଟରେ ବିଜିତର ଦୋଷଗୁଡ଼ିକ ବେଶି ଧରାପଡ଼େ ଏବଂ ବେଳେ ବେଳେ ବିଜେତା ଏହି ଦୋଷଗୁଡ଼ିକୁ ଅତିରଞ୍ଜିତ କରି କହିଥାଏ । ବାସ୍ତବିକ, ତାହା ହିଁ ଘଟିଛି ରାମାୟଣରେ । ଗ୍ରିଫିଥ୍‌ଙ୍କ ଭାଷାରେ

> The Aryan poet has described the aoborigines of Lanka as Raksasas, as monsters, demons and cannibals with that contempt which has marked civilized conquerers in all ages. (୪୭)

କିନ୍ତୁ ରାମାୟଣରେ ରାକ୍ଷସମାନଙ୍କ ଜୀବନଧାରା ଓ ରାଜ୍ୟ ସମ୍ପର୍କରେ ଏଭଳି ବର୍ଣ୍ଣନା ଅଛି, ଯହିଁରୁ ଆମେ ଜାଣିପାରୁଁ ଯେ ସେମାନେ ଏକ ସଭ୍ୟ ଜାତି ଥିଲେ । ବିଶେଷ କରି ବସ୍ତୁତାନ୍ତ୍ରିକ ସଭ୍ୟତାରେ ସେମାନେ ଥିଲେ ଅଗ୍ରଗଣ୍ୟ । ଏପରି କି ଏହି କ୍ଷେତ୍ରରେ ସେମାନେ ଆର୍ଯ୍ୟମାନଙ୍କୁ ମଧ୍ୟ ଅତିକ୍ରମ କରି ଯାଇଥିଲେ । ରାବଣର ରାଜଧାନୀ ଲଙ୍କାପୁରୀର ଯେପରି ବର୍ଣ୍ଣନା ଦିଆଯାଇଛି, ତହିଁରୁ ସ୍ପଷ୍ଟ ଜଣାପଡ଼େ ଯେ ରାକ୍ଷସମାନଙ୍କର ସଭ୍ୟତା ଥିଲା ଖୁବ୍ ଉନ୍ନତ । ଲଙ୍କାର ଶ୍ରୀ ତୁଳନାରେ ଅଯୋଧ୍ୟାର ଶ୍ରୀ ଥିଲା ଅତି ତୁଚ୍ଛ । ସେଥିପାଇଁ ତ ଲଙ୍କାକୁ କୁହାଯାଉଥିଲା ସ୍ୱର୍ଣ୍ଣପୁରୀ । ଖାଲି ସେତିକି ନୁହେଁ, ସେମାନେ ମଧ୍ୟ ଆର୍ଯ୍ୟମାନଙ୍କ ଭଳି ବେଦବିତ୍ ଥିଲେ, ସନ୍ଧ୍ୟା, ସ୍ୱସ୍ତ୍ୟୟନ ଆଦି ସମାପନ କରୁଥିଲେ ଏବଂ ବିବାହାଦି କର୍ମକର୍ମାଣି ପ୍ରତି ସମଧିକ ଅନୁରକ୍ତ ଥିଲେ । ବାସ୍ତବିକ ରାମାୟଣ ଯୁଗରେ ଏହା କିପରି ଘଟିଥିଲା, ତାହା ଭାବିଲେ ଆମକୁ ଆଶ୍ଚର୍ଯ୍ୟ ହେବାକୁ

ପଡ଼ୁଥାଏ । କିଭଳି ପରିସ୍ଥିତିରେ କିପରି ଏବଂ କେତେବେଳେ ସେମାନେ ଆର୍ଯ୍ୟ-ସଭ୍ୟତା ଓ ସଂସ୍କୃତିର ସଂପର୍କରେ ଆସିଥିଲେ, ତାହା ଖ୍ରିବଲ ବେଲକୁ ମୁଣ୍ଡ ଘୂରାଇ ଦିଏ । ବାସ୍ତବିକ୍ ଗ୍ରିଫିଥ୍‌ଙ୍କ ଭଳି ପଣ୍ଡିତଙ୍କ ମୁଣ୍ଡ ମଧ୍ୟ ଏଥିପାଇଁ ଘୂରି ଯାଇଥିଲା, ଯାହା କି ତାଙ୍କର ନିମ୍ନଲିଖିତ ବକ୍ତବ୍ୟରୁ ସ୍ପଷ୍ଟ

> The Raksasas sang solemn morning hymns of prayer and praise and their priests were skilled in the rites and rituals and knew the Vedas and their six Angas. As to how they came in touch with the Aryan civilization is quite puzzling. (୪୮)

ରାକ୍ଷସ ଓ ଆର୍ଯ୍ୟମାନଙ୍କ ମଧ୍ୟରେ ମୁଖ୍ୟତଃ ତିନୋଟି ବିଷୟରେ ବିଭେଦ ଥିଲା । ନୃତାତ୍ତ୍ୱିକ ଦୃଷ୍ଟିକୋଣରୁ ସେମାନେ ଥିଲେ ପୃଥକ୍ ପୃଥକ୍ ଜାତିର ଅନ୍ତର୍ଗତ । ରାକ୍ଷସମାନେ ଥିଲେ କୃଷ୍ଣକାୟ ଏବଂ ଆର୍ଯ୍ୟମାନେ ଥିଲେ ଗୌରବର୍ଣ୍ଣ-ବିଶିଷ୍ଟ । ଦ୍ୱିତୀୟତଃ ରାକ୍ଷସମାନଙ୍କ ପରିବାର ଥିଲା ମାତୃପ୍ରଧାନ ଓ ଆର୍ଯ୍ୟମାନଙ୍କ ପରିବାର ଥିଲା ପିତୃପ୍ରଧାନ । ରାବଣ ଓ ତା'ର ଭ୍ରାତାମାନଙ୍କର ପିତା ବିଶ୍ରବା ଋଷି ହୋଇଥିଲେ ମଧ୍ୟ ସେମାନଙ୍କ ମାତା ଥିଲା କୈକସୀ ରାକ୍ଷସୀ । ତେଣୁ ସେମାନେ ହେଲେ ରାକ୍ଷସ । ଆର୍ଯ୍ୟମାନଙ୍କ କ୍ଷେତ୍ରରେ ବିଶ୍ରବା ଋଷିଙ୍କ ସନ୍ତାନମାନେ ତାଙ୍କର ଗୋତ୍ର ଓ କୁଳର ଗୌରବ ପାଇଥାନ୍ତେ । ତୃତୀୟତଃ ରାକ୍ଷସମାନେ ଥିଲେ ଦେହବାଦୀ ଏବଂ ଦେହେତର ଆତ୍ମା ଉପରେ ସେମାନଙ୍କର ଆସ୍ଥା ଓ ବିଶ୍ୱାସ ନଥିଲା । ଅନ୍ୟ ପକ୍ଷରେ ଆର୍ଯ୍ୟମାନେ 'ଆତ୍ମା' ଉପରେ ଥିଲେ ଘୋର ବିଶ୍ୱାସୀ । ଏହି ତିନୋଟି ମୌଳିକ ବିଷୟରେ ଉକ୍ତ ଦୁଇ ଗୋଷ୍ଠୀ ମଧ୍ୟରେ ବିଭେଦ ରହିଥିଲା । ତାହା ସତ୍ତ୍ୱେ ରାକ୍ଷସମାନେ ସଂପୂର୍ଣ୍ଣ ଅସଭ୍ୟ ଓ ବର୍ବର ନଥିଲେ । ଅନ୍ୟ ପକ୍ଷରେ, ସେମାନେ ଥିଲେ ଏକ ଉନ୍ନତ ଓ ସଭ୍ୟ ଜାତିର ଅନ୍ତର୍ଭୁକ୍ତ । ଏହାକୁ ମୂଳଭିତ୍ତି କରି ସେମାନଙ୍କ ମଧ୍ୟରେ ପ୍ରଚଳିତ ଥିବା ବିବାହ-ପଦ୍ଧତି ବିଷୟରେ ଆମକୁ ଅନୁଧ୍ୟାନ କରିବାକୁ ହେବ ।

ରାବଣ ଓ ତା'ର ଭଉଣୀ ଶୂର୍ପଣଖା ଓ ଦୁଇ ସାନ ଭାଇ କୁମ୍ଭକର୍ଣ୍ଣ ଓ ବିଭୀଷଣଙ୍କ ବିବାହ ବିଷୟ ରାମାୟଣର ଉତ୍ତରକାଣ୍ଡସ୍ଥ ଦ୍ୱାଦଶ ସର୍ଗରେ ବର୍ଣ୍ଣିତ । ଏହି ଅନୁଷ୍ଠାନଗୁଡ଼ିକ କିଭଳି ଘଟିଥିଲା, ସେ ବିଷୟରେ ଅଗସ୍ତ୍ୟ ମୁନି ରାମଙ୍କୁ ବୁଝାଇ କହିଛନ୍ତି । ରାବଣ ଶିକାର କରି ଯାଉଥିବା ସମୟରେ ମନ୍ଦୋଦରୀଙ୍କୁ ଓ ତାଙ୍କ ପିତା ମୟଙ୍କୁ ବନରେ ଦେଖିଲା । ସେ ମୟଙ୍କୁ ତାଙ୍କ

ପରିଚୟ ପଚାରି ବୁଝିନେଲା ଏବଂ ମୟ ମଧ୍ୟ ରାବଣଠାରୁ ତା'ର ପରିଚୟ ପଚାରି, ତା'ର କୁଳ, ଗୋତ୍ର ଆଦି ବିଷୟରେ ବୁଝିନେଲେ । ରାବଣ ବିଶ୍ରବା ଋଷିଙ୍କର ପୁଅ ବୋଲି ଜାଣି ତା' ହାତରେ ନିଜ ଝିଅକୁ ଟେକି ଦେବା ପାଇଁ ସେ ମନସ୍ଥ କଲେ ଏବଂ ସେହିଠାରେ ହିଁ ବିବାହ ସମାହିତ ହୋଇଗଲା । କନ୍ୟାଦାନ କଲା ସମୟରେ ମୟ କହିଥିଲେ

ଇୟଂ ମମାତ୍ମଜା ରାଜନ୍ ହେମୟାପ୍ସରସା ଧୃତା ।
କନ୍ୟା ମନ୍ଦୋଦରୀ ନାମ ପତ୍ନ୍ୟର୍ଥଂ ପ୍ରତିଗୃହ୍ୟତାମ୍ । (୪୯)

ଅର୍ଥାତ୍ ହେ ରାଜନ୍, ଏହି ହେଉଛି ମୋ' ଝିଅ ଯାହାକୁ କି ହେମା ନାମକ ଜଣେ ଅପ୍ସରା ଗର୍ଭରେ ଧରିଥିଲେ । ଏହାର ନାମ ମନ୍ଦୋଦରୀ । ତୁମେ ଏହାକୁ ପତ୍ନୀ ରୂପେ ଗ୍ରହଣ କର । ରାବଣ ଏଥିରେ ନିଜର ସମ୍ମତି ପ୍ରଦାନ କଲା । ସେହିଠାରେ ମୟ ନିଜ ଝିଅର ହାତ ରାବଣର ହାତରେ ମିଳାଇ ଦେଇ ଉପରୋକ୍ତ ମତେ କହିଥିବା କଥା ରାମାୟଣରେ (୭।୧୨।୧୭) ବର୍ଣ୍ଣିତ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ରାବଣର ପିତା କିମ୍ବା ମାତାଙ୍କର ସମ୍ମତି ଏଥିପାଇଁ ଅଣାଯାଇ ନାହିଁ । ଆଉ ମଧ୍ୟ ଆର୍ଯ୍ୟ-ବିବାହରେ ବରଶୋଭାଯାତ୍ରା, ବିବାହ-ବେଦୀରେ ନାନାଦି କର୍ମାନୁଷ୍ଠାନମାନ ଯାହା ହୁଏ, ତାହା ଏଠାରେ ହୋଇନାହିଁ । ପୁନଶ୍ଚ କନ୍ୟା ବରଘରକୁ ଆସିଲାବେଳେ ଯାନଯୌତୁକ କିଛି ଆଣିଥିବା କଥାର ଉଲ୍ଲେଖ ନାହିଁ । କେବଳ ପିତା କନ୍ୟାଦାନ କରିଛନ୍ତି । ଅତଏବ, ଏ ପ୍ରକାର ବିବାହ ସମ୍ପୂର୍ଣ୍ଣ ଭାବରେ ଆର୍ଯ୍ୟବିବାହ-ପଦ୍ଧତିକୁ ଅନୁସରଣ କରିଥିଲା ବୋଲି କୁହାଯାଇପାରିବ ନାହିଁ । ଏହା ବରଂ ଥିଲା ପବିତ୍ର ଆର୍ଯ୍ୟବିବାହ ଓ ଯୌନନିଷ୍ଠ ବାନର-ବିବାହର ମଧ୍ୟବର୍ତ୍ତୀ ଏକ ପଦ୍ଧତି ।

ରାକ୍ଷସମାନଙ୍କର ସମାଜ ମାତୃପ୍ରଧାନ ଥିଲା ସତ୍ୟ; କିନ୍ତୁ ବିବାହରେ ବର କନ୍ୟାକୁ ଗ୍ରହଣ କରୁଥିଲା; କନ୍ୟା କିନ୍ତୁ ବରକୁ ଗ୍ରହଣ କରୁ ନଥିଲା । କନ୍ୟା ବରଘରକୁ ବାହା ହୋଇ ଯାଉଥିଲା; ବର ବାହା ହୋଇ କନ୍ୟାଘରକୁ ଆସୁ ନଥିଲା । ଅତଏବ, ସେମାନଙ୍କ ସମାଜ ଆଂଶିକ ମାତୃପ୍ରଧାନ ଓ ଆଂଶିକ ପିତୃପ୍ରଧାନ ଥିଲା ବୋଲି କହିଲେ ଠିକ୍ ହେବ ।

ରାବଣ ନିଜ ସାନ ଭଉଣୀ ଶୂର୍ପଣଖାର ବିବାହ ବିଦ୍ୟୁଜ୍ଜିହ୍ୱ ରାକ୍ଷସ ସହିତ କରାଇଥିବା କଥା ରାମାୟଣରେ (୭।୨।୨) ବର୍ଣ୍ଣିତ । ଆଉ ମଧ୍ୟ ସେ ନିଜ ବିବାହ ପରେ ତା'ର ସାନ ଭାଇ ଦୁଇ ଜଣଙ୍କର ବିବାହ କରାଇଥିବା କଥା ତହିଁରେ (୭।୧୨।୨୨) ଉଲ୍ଲିଖିତ । ଏମାନେ ସମସ୍ତେ ରାକ୍ଷସ-କୁଳରେ ହିଁ ବିବାହ କରିଥିଲେ । ଏଥିରୁ ଜଣା ପଡ଼ୁଛି ଯେ ରାକ୍ଷସ-ବିବାହ ସାଧାରଣତଃ

ନିଜ ଗୋଷ୍ଠୀରେ ସୀମିତ ଥିଲା ଏବଂ ଏ ବିବାହ ପିତା କିମ୍ବା ଜ୍ୟେଷ୍ଠ ଭ୍ରାତା (ସମ୍ଭବତଃ ପିତାଙ୍କ ଅବର୍ତ୍ତମାନରେ) କରାଉଥିଲେ ।

କିନ୍ତୁ ଅନେକ କ୍ଷେତ୍ରରେ ରାକ୍ଷସମାନେ ଅନ୍ୟ ଗୋଷ୍ଠୀରୁ ମଧ୍ୟ କନ୍ୟା ଆଣୁଥିଲେ । ସେଥିପାଇଁ ସେମାନଙ୍କୁ ବଳପ୍ରୟୋଗ କରିବାକୁ ପଡୁଥିଲା । ରାବଣ ଉପରେ ଅନେକ ବ୍ୟକ୍ତିଙ୍କୁ ମାରି ସେମାନଙ୍କ ବିଧବା ପତ୍ନୀମାନଙ୍କୁ ବଳପୂର୍ବକ ବିବାହ କରିଥିଲା ଏବଂ ଅପହରଣ ସମୟରେ ଏହି ନାରୀମାନେ କିପରି କରୁଣ ବିଳାପ କରୁଥିଲେ ତାହାର ମର୍ମନ୍ତୁଦ ବିବରଣୀ ଆମେ ରାମାୟଣରେ (୭।୨୪) ଦେଖିବାକୁ ପାଇଥାଉଁ । ଏତେ ନାରୀସମ୍ଭୋଗ କରି ମଧ୍ୟ ରାବଣର କାମଲିପ୍‌ସା ମେଣ୍ଟି ନଥିଲା ଏବଂ ଶେଷରେ ସେ ସୀତାଙ୍କୁ ଅପହରଣ କଲା । ଏଥିରୁ ଜଣାପଡୁଛି ଯେ ରାକ୍ଷସମାନଙ୍କର କାମଲିପ୍‌ସା ଥିଲା ପ୍ରବଳ ଏବଂ ସେମାନେ ବିବାହକୁ ଏକ ପବିତ୍ର ଅନୁଷ୍ଠାନ ବୋଲି ଗ୍ରହଣ ନକରି କାମସମ୍ଭୋଗରେ ଏକ ସାଧନ ବୋଲି ବିଚାରୁଥିଲେ । ଆର୍ଯ୍ୟ-ବିବାହ ଓ ରାକ୍ଷସ-ବିବାହର ଲକ୍ଷ୍ୟ ମଧ୍ୟରେ ଏହା ହିଁ ଥିଲା ମୌଳିକ ପ୍ରଭେଦ । ଅତଏବ, ରାକ୍ଷସମାନଙ୍କର ବହୁ ପତ୍ନୀ ଗ୍ରହଣ ଥିଲା ଏକ ସାଧାରଣ ଚଳଣି । କିନ୍ତୁ ସ୍ତ୍ରୀମାନେ ବହୁ ପତିଗ୍ରହଣ କରି ପାରୁନଥିଲେ । କୌଣସି ଜଣେ ହେଲେ ରାକ୍ଷସୀର ଏକାଧିକ ପତି ଥିବାର ନିଦର୍ଶନ ଆମେ ରାମାୟଣରେ ଦେଖିବାକୁ ପାଉନାହିଁ ।

ରାକ୍ଷସ-କୁଳରେ କନ୍ୟା ଯୌବନାବସ୍ଥା ପ୍ରାପ୍ତ ହେଲା ପରେ ଯାଇ ବିବାହ କରୁଥିଲା । ସେମାନଙ୍କ ମଧ୍ୟରେ ବାଲ୍ୟବିବାହ-ପ୍ରଥା ଆଦୌ ପ୍ରଚଳିତ ନଥିଲା । ରାବଣର ମାତା କୈକସୀ ରାକ୍ଷସୀ ଯୌବନ ପାଇଲା ଉତ୍ତାରୁ ତା'ର ପିତା ସୁମାଳୀ ରାକ୍ଷସ କନ୍ୟାର ବିବାହ କଥା ଚିନ୍ତା କରିଥିଲା ବୋଲି ରାମାୟଣରେ (୭।୯।୭) ବର୍ଣ୍ଣିତ । ଏଥିରୁ ଏହି ସୂଚନା ମିଳୁଛି ଯେ ରାକ୍ଷସ-ସମ୍ପ୍ରଦାୟରେ ବାଲ୍ୟବିବାହ ପ୍ରଥା ଆଦୌ ପ୍ରଚଳିତ ନଥିଲା । ଏ କ୍ଷେତ୍ରରେ ସେମାନେ ଆର୍ଯ୍ୟମାନଙ୍କ ନୀତିନିୟମକୁ ଅନୁସରଣ କରୁଥିବାର ଜଣାଯାଏ ।

ଅନେକ କ୍ଷେତ୍ରରେ ଦେଖାଯାଏ ଯେ ରାକ୍ଷସ-କନ୍ୟାର ପତିନିର୍ବାଚନରେ ସ୍ୱାଧୀନତା ଥିଲା ଏବଂ ସେ ନିଜ ତରଫରୁ ଆଗେ ଯାଇ ପତିଙ୍କୁ ବରଣ କରୁଥିଲା । ସେହି କୈକସୀ ରାକ୍ଷସୀ କଥା ମଧ୍ୟ ଏଠାରେ ଉଦାହରଣ ସ୍ୱରୂପ ନିଆଯାଇପାରେ । ସେ ନିଜେ ଯାଇ ବିଶ୍ରବା ମୁନିଙ୍କୁ ପତି ରୂପରେ ବରଣ କରିଥିବା କଥା ରାମାୟଣରେ (୭।୯।୧୧) ବର୍ଣ୍ଣିତ । ଶୂର୍ପଣଖା ମଧ୍ୟ ବିଧବା ହୋଇସିବା ପରେ ରାମଙ୍କୁ ଏବଂ ତାଙ୍କଠାରୁ ବିଫଳା ହେବା ପରେ ଲକ୍ଷ୍ମଣଙ୍କୁ ପତି ରୂପରେ

ବରଣ କରିବା ପାଇଁ ଉଦ୍ୟମ କରିଥିଲି । ଏଥିରୁ ଜଣାଯାଏ ଯେ କେତେକ କ୍ଷେତ୍ରରେ ରାକ୍ଷସକନ୍ୟାମାନଙ୍କର ସ୍ୱୟଂ ପତିନିର୍ବାଚନ କରିବାର କ୍ଷମତା ଥିଲା ଯାହା କି ଆର୍ଯ୍ୟ-କନ୍ୟା କିମ୍ବା ବାନର-କନ୍ୟାଙ୍କ ପାଖରେ ନଥିଲା । ପତି-ନିର୍ବାଚନରେ ସ୍ତ୍ରୀମାନଙ୍କର ସ୍ୱାଧୀନତା ରାକ୍ଷସ-ସମାଜରେ ଅଧିକତର ପ୍ରସାରିତ ଥିବାର ଜଣାପଡ଼େ ।

କନ୍ୟାର ମୂଲ୍ୟ କନ୍ୟାପିତାଙ୍କୁ ଦେଇ ତାଙ୍କଠାରୁ କନ୍ୟାଗ୍ରହଣ କରି ଯେଉଁ ବିବାହ ସଂପନ୍ନ କରାଯାଇଥାଏ, ତାହା ଆସୁର ବିବାହ ନାମରେ ଅଭିହିତ ବୋଲି ପୂର୍ବରୁ କୁହାଯାଇଛି । ଆଉ ମଧ୍ୟ କୁହାଯାଇଛି ଯେ ଏହି ବିବାହ-ପଦ୍ଧତି ଆର୍ଯ୍ୟସଂପ୍ରଦାୟରେ ନିନ୍ଦିତ ହେଉଥିଲେ ମଧ୍ୟ ବେଳେ ବେଳେ ପ୍ରଚଳିତ ଥିଲା ଏବଂ ଦଶରଥ-କୈକେୟୀଙ୍କ ବିବାହକୁ ଏହି ପର୍ଯ୍ୟାୟଭୁକ୍ତ କରାଯାଇପାରେ । ରକ୍ଷସମାନଙ୍କ ମଧ୍ୟରେ ବି ଏଭଳି ବିବାହ ପ୍ରଚଳିତ ଥିବାର ସୂଚନା ଆମେ ରାବଣର ସୀତାଙ୍କ ପ୍ରତି ପ୍ରୟୋଗ କରାଯାଇଥିବା ଗୋଟିଏ ପଙ୍କ୍ତିରୁ ଜାଣିପାରୁ । ସେତେବେଳେ ସୀତା ଅଛନ୍ତି ଅଶୋକବନରେ ବନ୍ଦିନୀ । ରାବଣ ତାଙ୍କୁ ନାନା ପ୍ରକାର ପ୍ରଲୋଭନ ଦେଖାଇ ତା'କୁ ବିବାହ କରିବା ପାଇଁ ପ୍ରରୋଚନା ଦେଉଛି । ସେ କହୁଛି

ବିଜିତ୍ୟ ପୃଥିବୀଂ ସର୍ବାଂ ନାନାନଗରମାଲିନୀମ୍ ।
ଜନକାୟ ପ୍ରଦାସ୍ୟାମି ତବ ହେତୋର୍ବିଲାସିନି । (୫୦)

ଅର୍ଥାତ୍ ଆଗୋ ବିଳାସିନି ! ନାନା ନଗରରେ ପରିଶୋଭିତ ସାରା ପୃଥିବୀକୁ ଜିଣି ମୁଁ ତୁମପାଇଁକି ଜନକଙ୍କୁ ଦେଇଦେବି । କନ୍ୟା ପାଇବା ପାଇଁ କନ୍ୟାପିତାଙ୍କୁ ଧନ ଦେବା କଥା ଯଦି ରାକ୍ଷସ-ସମାଜରେ ପ୍ରଚଳିତ ନଥାନ୍ତା, ତେବେ ରାବଣ ସୀତାଙ୍କୁ ଏଭଳି କଥା କହି ନଥାନ୍ତା । ଅତଏବ, କ୍ଷେତ୍ରବିଶେଷରେ ଆସୁର-ବିବାହ-ପ୍ରଥା ରାକ୍ଷସ-ସମାଜରେ ଚଳୁଥିଲା ବୋଲି ବିଶ୍ୱାସ କରାଯାଇପାରେ ।

ବିଧବା ବିବାହ-ପ୍ରଥା ରାକ୍ଷସ-ସମାଜରେ ଚଳୁଥିଲା କି ନାହିଁ ସେ ବିଷୟରେ ସଠିକ୍ ଧାରଣା କରିହୁଏ ନାହିଁ । ରାବଣର ମୃତ୍ୟୁ ପରେ ତା'ର ସ୍ତ୍ରୀମାନେ ବିଧବା ହୋଇଥିଲେ । କିନ୍ତୁ ସେମାନେ ପୁନର୍ବିବାହ କରିଥିବା କଥା ରାମାୟଣରେ କୁତ୍ରାପି ଉଲ୍ଲେଖ ନାହିଁ । କେବଳ ଗୋଟିଏ କ୍ଷେତ୍ରରେ ବିଧବା-ବିବାହର ସାମାନ୍ୟ ସୂଚନା ମିଳିଥାଏ । ଶୂର୍ପଣଖା ବିଧବା ଥାଇ ରାମ ଓ ଲକ୍ଷ୍ମଣଙ୍କୁ ବିବାହ କରିବା ପାଇଁ ନିଜ ଆଡ଼ୁ ପ୍ରସ୍ତାବ ଦେଇଥିଲା । ସେ କାମଜର୍ଜରିତା ହୋଇ ଏହି ପ୍ରସ୍ତାବ ଦେଇଥିବାର ସମ୍ଭାବନା ଅଧିକ । କାରଣ ବିଧବା-ବିବାହ ଯଦି ରାକ୍ଷସ-ସମାଜରେ ଚଳୁଥାନ୍ତା, ତେବେ ସେ ଲକ୍ଷ୍ମଣଙ୍କ ଦ୍ୱାରା ଦଣ୍ଡିତା ହୋଇ ଫେରିଆସି ଏ ଦଣ୍ଡର

ପ୍ରକୃତ କାରଣ ତା'ର ବଡ଼ ଭାଇ ରାବଣ ଆଗରେ କହିଥାନ୍ତା । କିନ୍ତୁ ସେ ଏହି କଥାଟିକୁ ଗୋପନ ରଖିଥିଲା । ଏଥିରୁ ଅନୁମିତ ହୁଏ ଯେ ସମ୍ଭବତଃ ରାକ୍ଷସ-ସମାଜରେ ବିବାହବିବାହ ଚଳୁନଥିଲା ଏବଂ ଏହାକୁ ଏକ ଗର୍ହିତ କର୍ମ ବୋଲି ଧରାଯାଉଥିଲା । ତେଣୁ ଶୂର୍ପଣଖା ରାବଣ ତା' ଆଡ଼ୁ କରାଯାଇଥିବା ପ୍ରେମ-ନିବେଦନ କଥାଟିକୁ ରାବଣ ଆଗରେ ଗୋପନ ରଖିଥିଲା । ଶୂର୍ପଣଖା ରାମ ଓ ଲକ୍ଷ୍ମଣଙ୍କ ସାଥିରେ ଏକ ବ୍ୟଭିଚାରିଣୀର ସଯୋଗ ସ୍ଥାପନ କରିବାକୁ ଚାହୁଁଥିଲା ବୋଲି ମନେହୁଏ । ଏହି ଦୃଷ୍ଟିରୁ ଦେଖିଲେ ରାକ୍ଷସମାନଙ୍କ ସମାଜରେ ବିଧବା-ବିବାହ-ପ୍ରଥା ଚଳୁ ନଥିଲା ବୋଲି ଆମକୁ ବିଶ୍ୱାସ କରିବାକୁ ପଡ଼ିବ ।

ଉପରୋକ୍ତ ଆଲୋଚନା ଦୃଷ୍ଟେ ରାକ୍ଷସ-ବିବାହ ସମ୍ପର୍କରେ ଆମେ ନିମ୍ନଲିଖିତ ଶେଷ ନିର୍ଦ୍ଧାରଣ ଆଣି ପାରିବା

କ) ରାକ୍ଷସ-ବିବାହ ବାନରମାନଙ୍କର ଯୌନନିଷ୍ଠ ବିବାହ ଓ ଆର୍ଯ୍ୟମାନଙ୍କର ମନ୍ତ୍ରପୂତ ପବିତ୍ର ବିବାହର ଏକ ମଧ୍ୟବର୍ତ୍ତୀ ପଦ୍ଧତିକୁ ଅନୁସରଣ କରିଥିଲା ।

ଖ) ବେଳେ ବେଳେ (ରାବଣ-ମନ୍ଦୋଦରୀ ବିବାହରେ) କନ୍ୟାପିତା ବରର କୁଳପରିଚୟ ଜାଣି ସାରିବା ପରେ ବରହସ୍ତରେ ସ୍ୱକନ୍ୟାକୁ ଅର୍ପଣ କରୁଥିଲେ । ଏଥିରେ ବରପକ୍ଷର ପିତା କିମ୍ବା ମାତାଙ୍କର ସମ୍ମତି ନେବାର ଆବଶ୍ୟକତା ପଡ଼ୁନଥିଲା ।

ଗ) ବେଳେ ବେଳେ କନ୍ୟା ସ୍ୱୟଂ ଯାଇ (ବିଶ୍ରବା-କୈକେସୀ ବିବାହରେ) ପତିଙ୍କୁ ବରଣ କରୁଥିଲା ।

ଘ) ଜ୍ୟେଷ୍ଠ ଭ୍ରାତା କନିଷ୍ଠା ଭଗ୍ନୀ ଓ କନିଷ୍ଠ ଭ୍ରାତାଙ୍କୁ ବିବାହ ଦେବାର ଦାୟିତ୍ୱ ବହନ କରୁଥିଲେ ।

ଙ) ବରକନ୍ୟା ଯୌବନାବସ୍ଥା ପାଇବା ପରେ ବିବାହ କରୁଥିଲେ । ବାଲ୍ୟ ବିବାହ-ପ୍ରଥା ଆଦୌ ପ୍ରଚଳିତ ନଥିଲା ।

ଚ) ରାକ୍ଷସମାନେ ବହୁ ପତ୍ନୀ ଗ୍ରହଣ କରୁଥିଲେ ।

ଛ) ରାକ୍ଷସୀମାନେ ବହୁ ପତି ଗ୍ରହଣ କରିପାରୁ ନଥିଲେ ।

ଜ) ସାଧାରଣତଃ ରାକ୍ଷସମାନେ ନିଜ ଗୋଷ୍ଠୀ ମଧ୍ୟରେ ସେମାନଙ୍କ ବିବାହକୁ ସୀମିତ ରଖୁଥିଲେ । କିନ୍ତୁ ସେମାନେ କେତେକ କ୍ଷେତ୍ରରେ ବାହାର ସମ୍ପ୍ରଦାୟରୁ ମଧ୍ୟ କନ୍ୟା ଆଣୁଥିଲେ । ସେହିସବୁ କ୍ଷେତ୍ରରେ ସେମାନଙ୍କୁ ବଳପ୍ରୟୋଗ କରିବାକୁ ପଡ଼ୁଥିଲା ।

ଙ) ଅବିବାହିତା କନ୍ୟା କିମ୍ବା ବିବାହିତା ନାରୀ କିମ୍ବା ବିଧବା ନାରୀ କେହି ରାକ୍ଷସମାନଙ୍କ ବଳପ୍ରୟୋଗରୁ ମୁକ୍ତ ନଥିଲେ ।

ଞ) ରାକ୍ଷସମାନେ ନିଜେ ଅବଶ୍ୟ ଅନ୍ୟର ବିଧବା ନାରୀମାନଙ୍କୁ ବିବାହ କରୁଥିଲେ; କିନ୍ତୁ ରାକ୍ଷସୀମାନେ ବିଧବା ହେବା ପରେ ପୁନର୍ବିବାହ କରୁ ନଥିଲେ ।

ଝ) ରାକ୍ଷସମାନଙ୍କ ମଧ୍ୟରେ କନ୍ୟାପିତାଙ୍କୁ ଧନ ଦେଇ କନ୍ୟା ଗ୍ରହଣ କରିବା ପ୍ରଥାଟି ପ୍ରଚଳିତ ଥିଲା । ଏହା ଆସୁର ବିବାହ ନାମରେ ଅଭିହିତ ।

ଠ) ରାକ୍ଷସ-ସମାଜ ଆଂଶିକ ପିତୃପ୍ରଧାନ ଓ ଆଂଶିକ ମାତୃପ୍ରଧାନ ଥିଲା । କନ୍ୟାକୁ ବର ଗ୍ରହଣ କରୁଥିଲା; କନ୍ୟା ବରକୁ ଗ୍ରହଣ କରୁ ନଥିଲା । କନ୍ୟା ବର-ଘରକୁ ଆସୁଥିଲା; ବର କନ୍ୟା-ଘରକୁ ଆସୁନଥିଲା । କିନ୍ତୁ ସନ୍ତାନ-ସନ୍ତତିମାନେ ମାତୃକୁଳକୁ ଭିତ୍ତି କରି ନିଜର ପରିଚୟ ଦେଉଥିଲେ, ପିତୃକୁଳକୁ ଭିତ୍ତି କରି କିନ୍ତୁ ନୁହେଁ ।

ଏହା ହେଲା ରାମାୟଣକାଳୀନ ସମାଜରେ ଆର୍ଯ୍ୟ, ବାନର ଓ ରାକ୍ଷସ, ଏହି ତିନି ପ୍ରଧାନ ଗୋଷ୍ଠୀ ମଧ୍ୟରେ ଚଳୁଥିବା ବିବାହ-ପଦ୍ଧତି ସମ୍ପର୍କରେ ଏକ ସଂକ୍ଷିପ୍ତ ଚିତ୍ର । ଏହା ଅନୁଧ୍ୟାନ କଲେ ଆମେ ଜାଣି ପାରିବା କିପରି ଧୀରେ ଧୀରେ ଆର୍ଯ୍ୟ-ବିବାହର ପ୍ରଭାବ ଅନ୍ୟ ଦୁଇ ସମ୍ପ୍ରଦାୟ ମଧ୍ୟରେ ଚଳୁଥିବା ବିବାହ ଉପରେ ପଡ଼ିବାକୁ ଲାଗିଥିଲା ଏବଂ କିପରି ରାକ୍ଷସମାନେ ଆର୍ଯ୍ୟମାନଙ୍କର ପରମ ଶତ୍ରୁ ଓ ପରମ ବିରୋଧୀ ଥିବା ସତ୍ତ୍ୱେ ଧୀରେ ଧୀରେ ଆର୍ଯ୍ୟ ବିବାହ-ପଦ୍ଧତିର ପୂତପବିତ୍ର ଆହ୍ୱାନ ପ୍ରତି ଆକୃଷ୍ଟ ହୋଇଉଠିଥିଲେ । ବାଲ୍ମୀକି ରାମାୟଣର ପରମ୍ପରା ଅନୁଯାୟୀ ପୁରୁଷ ଓ ନାରୀର ପବିତ୍ର ମିଳନ ହେଲା ବିବାହ । ଯଦିଓ ରାମାୟଣୀୟ ସମାଜ ଥିଲା ପୁରୁଷନିଷ୍ଠ, ତଥାପି ତହିଁରେ ନାରୀର ଭୂମିକା କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନଥିଲା । ଏହି ଭୂମିକାର ନିର୍ଦ୍ଦିଷ୍ଟ ସ୍ୱରୂପ କ'ଣ ଥିଲା, ତାହା ପରବର୍ତ୍ତୀ ପରିଚ୍ଛେଦରୁ ଆଲୋଚନା କରାଯିବ ।

## ଟିପ୍ପଣୀ

(୧) ଏହି ଷୋହଳଗୋଟି ସଂସ୍କାର ହେଲେ ଗର୍ଭାଧାନ, ପୁଂସବନ, ସୀମନ୍ତୋ-ନ୍ନୟନ, ଜାତକର୍ମ, ନାମକରଣ, ନିଷ୍କ୍ରମଣ, ଅନ୍ନପ୍ରାଶନ, ଚୂଡ଼ାକର୍ମ, କର୍ଣ୍ଣବେଧ, ଉପନୟନ, ବ୍ରତାଦେଶ, ବେଦ-ସ୍ୱାଧ୍ୟାୟ, ବିବାହ ଓ ଅଗ୍ନି-ପରିଗ୍ରହ । ଏଗୁଡ଼ିକ ସମ୍ପର୍କରେ ବିଶଦ ଆଲୋଚନା ଲାଗି ଦେଖନ୍ତୁ, ଲେଖକଙ୍କର ଭାରତୀୟ ସଂସ୍କୃତି ବୈଦିକ ପର୍ବ (୨ୟଭାଗ) ପୃ. ୨୦୫-୨୦୯

(୧-କ) S. Radhakrishnan Religion and Society, George Allen and Unwin Ltd (5th Impression, 1966) . p. 161.

(୧-ଖ) ଋଗ୍‌ବେଦ, ୫।୪।୧୦ ।

(୧-ଗ) S. Radhakrishnan, op. cit: p. 151.

(୨) ଶତପଥ ବ୍ରାହ୍ମଣ, ୫।୧।୬।୧୦ । ତୈତ୍ତିରୀୟ ବ୍ରାହ୍ମଣରେ (୨।୨।୨।୬) ମଧ୍ୟ ଏହି ପଙ୍‌କ୍ତି ଅବିକୃତ ଭାବରେ ଦେଖିବାକୁ ମିଳିଥାଏ ।

(୩) ପାଣିନି, ଅଷ୍ଟାଧ୍ୟାୟୀ, ୪।୧।୩୩ ।

(୪) ରାମାୟଣ, ୧।୭୩।୨୬ ।

(୪-କ) S. Radhakrishnan : op. cit: pp. 163-164.

(୫) ମନୁସ୍ମୃତି ଅନୁସାରେ ଏହି ଆଠ ପ୍ରକାର ବିବାହର ସଂଜ୍ଞା ଓ ସ୍ୱରୂପ କ'ଣ ସେ ବିଷୟରେ ସବିଶେଷ ଆଲୋଚନା ଲାଗି ଦେଖନ୍ତୁ ଲେଖକଙ୍କର ଭାରତୀୟ ସଂସ୍କୃତି ବୈଦିକ ପର୍ବ (୨ୟ ଭାଗ) ପୃ. ୩୦୦-୩୦୨ । ଏଠାରେ ମନେ ରଖିବାକୁ ହେବ ଯେ ବଶିଷ୍ଠ ଓ ଆପସ୍ତମ୍ବ ଛଅ ପ୍ରକାର ବିବାହକୁ ସ୍ୱୀକୃତ ଦେଇଥାନ୍ତି, ଯଥା, ବ୍ରାହ୍ମ, ଦୈବ, ଆର୍ଷ, ଗାନ୍ଧର୍ବ, କ୍ଷାତ୍ର ବା ରାକ୍ଷସ ଏବଂ ମାନୁଷ ବା ଆସୁର । ଗୌତମ ଓ ବୌଧାୟନ କିନ୍ତୁ ଆଉ ଦୁଇ ପ୍ରକାର ବିବାହକୁ ଏହି ତାଲିକାରେ ଯୋଡ଼ିଥାନ୍ତି, ଯଥା, ପ୍ରାଜାପତ୍ୟ ଓ ପୈଶାଚ । ଆଉ ମଧ୍ୟ ଦେଖନ୍ତୁ ମହାଭାରତ, ୧।୭୪।୮-୯ ।

(୬) S Radhakrishnan : op. cit: p. 165.

(୭) Ibid, Debala quoted.

(୭-କ) Ibid; p. 167.

(୮) ରାମାୟଣ, ୧।୭୦; ୧।୭୧ ।

(୯) R. Sharma A Socio-Political Study of the Valmiki Ramayana, p. 71.

(୯-କ) J. L. Brockington, Righteous Rama—the Evolution of an Epic (1984), p. 169.

(୧୦) S. Radhakrishnrin op. cit., p. 163.

(୧୧) ମନୁସ୍ମୃତି, ୮।୨୨୭ ।

(୧୨) ଋଗ୍‌ବେଦ, ୧୦।୮୫।୪୭ ।

(୧୩) S. Radhakrishnan: op. cit., p. 162.

(୧୪) ରାମାୟଣ, ୧।୬୨।୨୩ ।

(୧୫) ତତ୍ରୈବ, ୧।୬୭।୧୭ ।

(୧୬) ତତ୍ରୈବ, ୧।୬୮।୧୭ ।

(୧୭) ତତ୍ରୈବ, ୧।୬୯।୯-୧୦ ।

(୧୮) ତତ୍ରୈବ, ୧।୬୯।୧୭-୧୯ ।

(୧୯) ତତ୍ରୈବ, ୧।୭୩।୨୬-୨୭ ।

(୨୦) S. Radhakrishnan op. cit: p. 163.

(୨୦-କ) J. L. Brockington: op. cit: p. 171.

(୨୧) ରାମାୟଣସ୍ଥ ସାଙ୍କାଶ୍ୟାର ପାଲି ପ୍ରତିରୂପ ହେଉଛି 'ସାଂକସ୍ସ' । ଏହାକୁ ଆଧୁନିକ ଉତ୍ତର ପ୍ରଦେଶର ଫରୁକାବାଦ ଜିଲ୍ଲାସ୍ଥ 'ସଙ୍କସ' ଗ୍ରାମ ସହିତ ଚିହ୍ନଟ କରାଯାଇଥାଏ । ଭୂଖୋଦନ ଫଳରେ ଏଠାରୁ ଅନେକ ପନୁତାତ୍ତ୍ୱିକ ଧ୍ୱଂସାବଶେଷ ବାହାରିଛି, ଯାହା ଉପରେ କ ହାରନନ୍ଦ ଶାସ୍ତ୍ରୀ ଗବେଷଣାମୂଳକ ଆଲୋଚନା କରିଛନ୍ତି ।
ଦେଖନ୍ତୁ, B. C. Law. Historical Geography of Ancient India: Munsiram Manoharlal (1984) p. 120.

(୨୧-କ) R. Sharma, op. cit: pp. 59-60.

(୨୨) S. Radhakrishnan op. cit.: p. 163.

(୨୩) ରାମାୟଣ, ୧।୭୭।୧୪ ।

(୨୩-କ) S. Radhakrishnan. op. cit., Havelock Ellis quoted. p. 146.

(୨୩-ଖ) S. Radhakrishnan: op. cit: p. 146.

(୨୪) ଏସ୍. ଏନ୍. ବ୍ୟାସ, ରାମାୟଣକାଳୀନ ସମାଜ (ହିନ୍ଦୀ), ପୃ. ୧୧୯-୧୨୦ ।

(୨୫) A. S. Altekar: The Position of Women in Hindu Civilization, p. 46.

(୨୬) Ibid.

(୨୭) ରାମାୟଣ, ୭।୮୯।୮ ।

(୨୮) R. Sharma: op. cit: p. 53.

(୨୯) ରାମାୟଣ, ୭।୧୭।୩୦-୩୧ ।

(୩୦) ଋଗ୍ବେଦ, ୭।୮୦।୯ ।

(୩୧) S. Radhakrishnan: op. cit: p. 165.

(୩୨) ଅଥର୍ବ ବେଦ, ୨୨ଶ କାଣ୍ଡ ।

(୩୩) History and Culture of the Indian People: Vol.I Bharatiya Vidya Bhavan, "Social and Economic Conditions" Article by V. M. Apte : p. 392.

(୩୩-କ) S. Radhakrishnan: op. cit: p. 168.

(୩୪) ରାମାୟଣ, ୨।୧୦୮।୩୪ ।

(୩୪-କ) I. B. Horner Woman under the Primitive Budhism p. 28.

(୩୫) ରାମାୟଣ, ୫।୨୪।୮ ।

(୩୫-କ) ଋଗ୍ବେଦ, ୬।୧୧୫।୨୨-୨୩ ।

(୩୫-ଖ) R. Sharma: op. cit: Dhairyabala quoted p. 101.

(୩୬) ରାମାୟଣ, ୬।୧୧୯।୨୬ ।

(୩୭) S. Radhakrishnan: op. cit: p. 174.

(୩୭-କ) ରାମାୟଣ, ୩।୪୫।୨୬ ।

(୩୭-ଖ) ଋଗ୍ବେଦ, ୨।୩୪।୧୩ ।

(୩୮) ଋଗ୍ବେଦ, ୧୦।୧୮।୭ ।

(୩୯) ରାମାୟଣ, ୩।୪୫।୭ ।

(୪୦) S. Radhakrishnan: East and West in Religion: George Allen and Unwin Ltd (3rd Impression, 1954). p. 142.

(୪୦-କ) S. N. Vyas: India in the Ramayana Age: p. 50.

(୪୧) ରାମାୟଣ, ୪।୮।୧୯-୨୦ ।

(୪୨) ଋଗ୍ବେଦ, ୪।୨୩।୩ ।

(୪୩) ଋଗ୍ବେଦ, ୪।୨୫।୦୩ ।

(୪୪) R. Sharma, op. cit: p. 47.

(୪୫) ରାମାୟଣ, ୪।୧୦।୨୬ ।

(୪୬) R. Sharma, op. cit: p. 281.

(୪୭) Griffith Ramayana (English Translation) Introduction.

(୪୮) Griffith ; Ramayana (English Translation) Footnote, Book-V.

(୪୯) ରାମାୟଣ, ୬।୧୨।୧୮ ।

(୫୦) ଋଗ୍ବେଦ, ୫।୨୦।୧୮ ।



## ତୃତୀୟ ପରିଚ୍ଛେଦ

# ଶିକ୍ଷାର ସ୍ୱରୂପ

ମନୁଷ୍ୟ ମଧ୍ୟରେ ଉଭୟ ଦେବତ୍ୱ ଓ ପଶୁତ୍ୱ ବିଦ୍ୟମାନ । ଯେ ଯେଉଁ ଗୁଣଟିକୁ ଯେପରି ଭାବରେ ବିକଶିତ କରିଇପାରିଲା, ସେ ସେହି ଅବସ୍ଥାକୁ ପାଇଥାଏ । ତେଣୁ ମନୁଷ୍ୟ ଉଦ୍ୟମ ବଳରେ ଦେବତା ହୋଇପାରେ ଅଥବା ପଶୁ ହୋଇପାରେ । ତା' ପକ୍ଷରେ ସଂସ୍କୃତିସମ୍ପନ୍ନ ହେବା ପାଇଁ ଶିକ୍ଷାର ଆଶ୍ରୟ ନେବାକୁ ପଡ଼ିବ । ଶିକ୍ଷା ତା'ର ଅନ୍ତଃପ୍ରବୃତ୍ତିକୁ ବିକଶିତ କରିଇ ତା'କୁ ଉପଯୁକ୍ତ ମାର୍ଗରେ ଗତି କରିବା ପାଇଁ ପ୍ରେରଣା ଦେଇଥାଏ । ତେଣୁ ଯୁଗେ ଯୁଗେ ସଂସ୍କୃତିର ବିକାଶ ଓ ଅଭିବୃଦ୍ଧିକୁ ଦୃଷ୍ଟିରେ ରଖି ଶିକ୍ଷାକୁ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଦିଆ ହୋଇ ଆସିଛି । ବୈଦିକ କାଳରେ ଶିକ୍ଷାଦାନ କରୁଥିବା ବ୍ୟକ୍ତିଙ୍କୁ ସର୍ବୋଚ୍ଚ ସ୍ଥାନ ଦିଆଯାଉଥିଲା । ଜୀବନର ସମସ୍ତ ସୁଖ-ସୁବିଧା ତଥା ଆଶୀର୍ବାଦକୁ ଗୁରୁଙ୍କ ଅବଦାନ ବୋଲି ଧରାଯାଉଥିଲା । ବାଳଶାସ୍ତ୍ରୀ ହରଦାସଙ୍କ ଭାଷାରେ

> It is the Guru, the Acharya, who is the life-giver, the preceptor, and also the death of a disciple when he commits wrong. All the blessings and the bliss are the gifts of the Acharya. (୧)

ବୈଦିକ ପରମ୍ପରାକୁ ମୁଖ୍ୟତଃ ଅନୁସରଣ ଓ ଅନୁକରଣ କରୁଥିବା ରାମାୟଣ-କାଳରେ ମଧ୍ୟ ଏହି ସ୍ଥିତି ଥିଲା ।

### ପ୍ରତ୍ୟକ୍ଷ ସୂଚନାର ଅଭାବ

ଅବଶ୍ୟ ରାମାୟଣରେ ଶିକ୍ଷାଦାନ ପ୍ରଣାଳୀ, ଶିକ୍ଷାସଙ୍ଗଠନ ଓ ଶିକ୍ଷକଙ୍କ ବିଷୟରେ କେଉଁଠାରେ ହେଲେ ପ୍ରତ୍ୟକ୍ଷ ଭାବରେ ଉଲ୍ଲେଖ କରା ଯାଇନାହିଁ । ତାହାର ଅର୍ଥ ନୁହେଁ ଯେ ସେତେବେଳେ ଶିକ୍ଷା-ଦାନ ହେଉ ନଥିଲା କିମ୍ବା ଶିକ୍ଷାକୁ ମର୍ଯ୍ୟାଦା ଦିଆ ଯାଉ ନଥିଲା । ରାମାୟଣରେ ରାମ, ଲକ୍ଷ୍ମଣ, ସୀତା ଆଦି ଯେଉଁ ଚରିତ୍ରମାନଙ୍କର ଅବତାରଣା କରାଯାଇଛି, ବିନା ଶିକ୍ଷାରେ କ'ଣ ଏଭଳି ମହାନ୍ ଚରିତ୍ରମାନଙ୍କର ସୃଷ୍ଟି କେବେହେଲେ ସମ୍ଭବ ହୋଇପାରେ ? ସାରା ରାମାୟଣ ତ ସମଗ୍ର ମାନବ ଜାତି ପାଇଁ ଗୋଟିଏ ମହତ୍ତ୍ୱ

ଶିକ୍ଷା । ମହାଭାରତ ପ୍ରତି ମଧ ଏହି ଯୁକ୍ତି ସମର୍ଥକ ପ୍ରଯୁଜ୍ୟ । ଏହି ଭାରତୀୟ ମହାକାବ୍ୟ ଦୁଇଟି ହେଉଛି ଶିକ୍ଷାର ଏକ ଅପୂର୍ବ ଭଣ୍ଡାର, କେବଳ କେତେକ ଅତୀତ ଘଟଣା ଓ ଚରିତ୍ରର ସମାହାର ମାତ୍ର ନୁହେଁ । ରାୟ ପ୍ରମଥନାଥ ମଲ୍ଲିକ ବାହାଦୂର ଏହି ମତର ପୁଷ୍ଟିସାଧନ କରିବାକୁ ଯାଇ ଯଥାର୍ଥରେ କୁହନ୍ତି

> The Indian Epic is not written as a history of past events but records what education means; who fashioned and modelled the indeals of society in the religious and spiritual worlds. The world is not a collection of individuals, bare facts and figures lying side by side with incidents of life. The relation between man and the world is something more than this. (୧-କ)

ରାମାୟଣର ଶିକ୍ଷା ହେଲା, ଧର୍ମ ଓ ଅଧର୍ମ ମଧ୍ୟରେ ସଂଘର୍ଷ ଏବଂ ପରିଶେଷରେ ଧର୍ମର ବିଜୟ; ସତ୍ୟ ଓ ଅସତ୍ୟ ମଧ୍ୟରେ ସଂଘର୍ଷ ଏବଂ ପରିଶେଷରେ ସତ୍ୟର ବିଜୟ । ମହାଭାରତର ଉକ୍ତି ଅନୁଯାୟୀ 'ସନ୍ତୋ ତପସା ଭୂମିଂ ଧାରୟନ୍ତି' । ଅର୍ଥାତ୍ ସାଧୁ ଲୋକମାନେ କଷ୍ଟ ସହିବା ଫଳରେ ପୃଥିବୀରେ ଧର୍ମରକ୍ଷା ହୋଇ-ଥାଏ । ସେହି ଧର୍ମକୁ ରକ୍ଷା କରିବା ଲାଗି, ସମସ୍ତଙ୍କର ଭଲ ଲାଗି ରାମ ଓ ସୀତା ସେମାନଙ୍କ ଜୀବନର ଅଧିକାଂଶ ସମୟ କଷ୍ଟ ସହିଲେ । ସେଥିପାଇଁ ସେମାନଙ୍କ ମନରେ ଦୁଃଖ ନଥିଲା, ଅନୁଶୋଚନା ନଥିଲା । ଏହା କ'ଣ କେବେ ହେଲେ ବିନା ଶିକ୍ଷାରେ ସମ୍ଭବ ? ରାମାୟଣରେ ବିକ୍ଷିପ୍ତ ଭାବରେ ଶିକ୍ଷିତ ବ୍ୟକ୍ତି-ମାନଙ୍କ କାର୍ଯ୍ୟକଳାପ ସମ୍ପର୍କରେ କମ୍ବା ଶିକ୍ଷା ସମ୍ପର୍କରେ ଯେଉଁଠି ଯାହା ଉଲ୍ଲେଖ ଅଛି, ସେହି ତଥ୍ୟଗୁଡ଼ିକୁ ଏକତ୍ରିତ କରି ଏବଂ ପର୍ଯ୍ୟାଲୋଚନା, ଅନୁଶୀଳନ ତଥା ବିଶ୍ଳେଷଣ କରି ଆମେ ରାମାୟଣୀୟ ଶିକ୍ଷା ସମ୍ପର୍କରେ ଏକ ସ୍ଥୂଳ ଧାରଣା କରି ପାରିବା । ରାମାୟଣ-ଯୁଗରେ ସମାଜର ବିଭିନ୍ନ ଶ୍ରେଣୀର ଲୋକମାନେ କିପରି ଉପଯୁକ୍ତ ଶିକ୍ଷା ପାଇ ପାରିବେ ସେଥିପାଇଁ ଉଭୟ ରାଜନ୍ୟବୃନ୍ଦ ଓ ନେତୃବୃନ୍ଦ ସତତ ଉଦ୍ୟମଶୀଳ ଥିବା କଥା ଆମେ ସ୍ୱାମୀ ନିଃଶ୍ରେୟସାନନ୍ଦଙ୍କ ନିମ୍ନୋକ୍ତ ବକ୍ତବ୍ୟରୁ ଜାଣିପାରିବା

> The work of the ruler and the leaders was thus to see that the proper kind of education was given to the different sections of society, and also

> to help individually and collectively to blossom forth and spread their fragrance from within their own particular spheres. (୧-ଖ)

ତତ୍କାଳୀନ ଶିକ୍ଷାପ୍ରଣାଳୀ ରାଜପୁତ୍ରମାନଙ୍କୁ ମଧ୍ୟ ଶିକ୍ଷାର ମହତ୍ତ୍ୱ ବିଷୟରେ ସଚେତନ କରାଇ ଦେଇଥିଲା । ରାମ ରାଜପୁତ୍ର ଅବସ୍ଥାରେ ଆଚାର୍ଯ୍ୟମାନଙ୍କୁ ଦେଖିଲେ ପଚାରୁଥିଲେ,

ଶୁଶ୍ରୂଷନ୍ତେ ଚ ବଃ ଶିଷ୍ୟାଃ ।

ଅର୍ଥାତ୍ ଶିଷ୍ୟମାନେ ଆପଣମାନଙ୍କର ସେବା କରୁଛନ୍ତି ତ ? (୨) ଏଥିରୁ ଜଣାପଡ଼ୁଛି ଯେ ସମାଜର ରକ୍ଷକମାନେ ସର୍ବଦା ଶିକ୍ଷାର ଗୁଣାତ୍ମକ ମାନ କିପରି ଅବ୍ୟାହତ ରହିବ, ସେଥି ପ୍ରତି ଚେଷ୍ଟିତ ଥିଲେ ଏବଂ ସମାଜର ସର୍ବାଙ୍ଗୀନ ଉନ୍ନତିଲାଗି ଶିକ୍ଷାର ଆବଶ୍ୟକତା ସମ୍ପର୍କରେ ସଂପୂର୍ଣ୍ଣ ଅବହିତ ଥିଲେ ।

**ବୈଦିକ ଶିକ୍ଷାର ପରମ୍ପରା**

ବୈଦିକ ଶିକ୍ଷାର ମୌଳିକ ଉଦ୍ଦେଶ୍ୟ ଥିଲା ଚରିତ୍ର-ଗଠନ । ଶିଷ୍ୟ କିପରି ଭଲ ମଣିଷଟିଏ ହେବ ତାହା ଥିଲା ଗୁରୁଙ୍କର ଲକ୍ଷ୍ୟ । ସେଥିପାଇଁ ସେ ଶିଷ୍ୟଙ୍କୁ କହୁଥିଲେ 'ମନୁର୍ଭବ' । ଅର୍ଥାତ୍ ମଣିଷଟିଏ ହୁଅ । ବୈଦିକ ଶିକ୍ଷା ଥିଲା ଉଭୟ ବିଚାରନିଷ୍ଠ ଓ ଆଚାରନିଷ୍ଠ । ଉଭୟ ଜ୍ଞାନର ତୀକ୍ଷ୍ଣ ଓ ଚରିତ୍ରର ଶୁଦ୍ଧତା ଆଣାଇବା ଲାଗି ଆଚାର୍ଯ୍ୟ ସତତ ଥିଲେ ଉଦ୍ୟମଶୀଳ । ତାଙ୍କୁ ଆଚାର୍ଯ୍ୟ ବୋଲି କୁହାଯିବାର କାରଣ ହେଉଛି, ସେ ଯାହା କହୁଥିଲେ, ତାହାକୁ ନିଜ ଆଚରଣ ମାଧ୍ୟମରେ ଦର୍ଶାଇ ଦେଉଥିଲେ । ତେଣୁ ଜଣେ ଆଚାର୍ଯ୍ୟ ହେବା ଥିଲା କାଠିକର ପାଠ । ଜଣେ ଯୋଗ୍ୟ ଗୁରୁଙ୍କ ବିଷୟରେ ମନୁ କୁହନ୍ତି :

ସାବିତ୍ରୀମାତ୍ରସାରୋଽପି ବରଂ ବିପ୍ରଃ ସୁଯନ୍ତ୍ରିତଃ ।
ନା ଯନ୍ତ୍ରିତସ୍ତ୍ରିବେଦୋଽପି ସର୍ବାଶୀ ସର୍ବବିକ୍ରୟୀ । (୩)

ଅର୍ଥାତ୍ ତିନି ବେଦରେ ପଣ୍ଡିତ ଥିବା ଅସଂଯତ ବ୍ରାହ୍ମଣଙ୍କ ଅପେକ୍ଷା ବରଂ କେବଳ ମାତ୍ର ଗାୟତ୍ରୀମନ୍ତ୍ର ଜାଣିଥିବା ଜଣେ ସଂଯତ ବ୍ରାହ୍ମଣ ବହୁଗୁଣରେ ଶ୍ରେୟସ୍କର । ଆଚାର ସମ୍ପର୍କରେ ପୁଣି ସେ କୁହନ୍ତି

ଆଚାରଃ ପରମୋ ଧର୍ମଃ ଶ୍ରୁତ୍ୟୁକ୍ତଃ ସ୍ମାର୍ତ୍ତଏବ ଚ । (୪-କ)

ଅର୍ଥାତ୍ ବେଦ ଓ ସ୍ମୃତି-ଶାସ୍ତ୍ର କହିବା ଅନୁସାରେ ଆଚାର ହେଉଛି ପରମ ଧର୍ମ । ଆଚାର୍ଯ୍ୟ ତେଣୁ ଶିଷ୍ୟଙ୍କୁ କହୁଥାନ୍ତି,

ସତ୍ୟଂବଦ ଧର୍ମଂ ଚର ।

ଅର୍ଥାତ୍ ତୁମେ ସତ କୁହ; ଧର୍ମାଚରଣ କର । ମେଗାସ୍ଥିନିସ୍ ଯେତେବେଳେ ମୌର୍ଯ୍ୟସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କ ରାଜସଭାକୁ ଗ୍ରୀକ୍ ରାଜଦୂତ ହୋଇ ଆସିଥିଲେ (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) ସେତେବେଳେ ମଧ୍ୟ ସେ ହିନ୍ଦୁମାନଙ୍କର ସତ୍ୟବାଦିତା ଓ ଚରିତ୍ର-ଶୁଦ୍ଧି ଦେଖି ଅବାକ୍ ହୋଇଯାଇଥିଲେ । ସେ ତାଙ୍କ ବିବରଣୀରେ ଲେଖିଛନ୍ତି

> Truth and virtue are the guiding principles of the Hindus. No Hindu has been punished for telling a lie. There is no touting in Hindustan. (୪)

ଭାରତୀୟ ଶିକ୍ଷା ହିଁ ଲୋକମାନଙ୍କ ମନରେ ଏଭଳି ଆଚରଣ-ଶୁଦ୍ଧି ଆଣାଇ ପାରୁଥିଲା । ବୈଦିକ ଶିକ୍ଷାକୁ ଅନୁସରଣ କରିବାକୁ ଯାଇ ରାମାୟଣୀୟ ଶିକ୍ଷା ମଧ୍ୟ ଏହି ଆଚରଣ-ଶୁଦ୍ଧି ଉପରେ ଖୁବ୍ ଗୁରୁତ୍ୱ ଦେଉଥିଲା । ଏହା ଫଳରେ ବ୍ୟକ୍ତିବିଶେଷ ନିଜର ତଥା ନିଜ ପରିବାରର ଅଭ୍ୟୁଦୟ ଚାହିଁବା ସଙ୍ଗେ ସଙ୍ଗେ ସାରା ସମାଜ ଓ ଦେଶର ଅଭ୍ୟୁଦୟ ଚାହିଁବା ପାଇଁ ପ୍ରେରଣା ପାଉଥିଲା । ସ୍ୱାମୀ ନିଃଶ୍ରେୟସାନନ୍ଦଙ୍କ ଭାଷାରେ

> Education was so organised that each section of society knew not merely the details of fulfilling its own special function, but also the relative place of its contribution in the general scheme. (୫)

## ଉପନୟନ ଓ ବ୍ରହ୍ମଚର୍ଯ୍ୟାଶ୍ରମ

ରାମାୟଣରେ ଆମେ ଅନେକ ସ୍ଥାନରେ ବିଦ୍ୱାନ୍, ପଣ୍ଡିତ, ବେଦବିତ୍, ଶ୍ରୁତିପାରଗ, ବହୁଶ୍ରୁତ, ସଂସ୍କାରସମ୍ପନ୍ନ, ଆଦି ଶବ୍ଦଗୁଡ଼ିକର ପ୍ରୟୋଗ ଦେଖିଥାଉ । ସଂସ୍କାରସମ୍ପନ୍ନର ଅର୍ଥ ହେଉଛି ବୈଦିକ ଷୋଡ଼ଶ ସଂସ୍କାର ମଧ୍ୟ ଦେଇ ଗତି କରିଥିବା ବ୍ୟକ୍ତି । 'ଉପନୟନ' ତନ୍ମଧ୍ୟରୁ ଅନ୍ୟତମ । ଉପନୟନ କର୍ମରେ ବ୍ୟକ୍ତି ଗୁରୁଙ୍କ ଆଶ୍ରମକୁ ଯାଉଥିଲା ଏବଂ ସେଠାରେ ଶିକ୍ଷା ପାଉଥିଲା । ବୈଦିକ କାଳରୁ ଯେଉଁ ଆଶ୍ରମଧର୍ମ ଗଢ଼ି ଆସୁଥିଲା, ତନ୍ମଧ୍ୟରୁ ବ୍ରହ୍ମଚର୍ଯ୍ୟାଶ୍ରମ ଥିଲା ଏକତମ । ମନୁସ୍ମୃତିରେ ମଧ୍ୟ ଏହି ଆଶ୍ରମଧର୍ମ ବିଷୟରେ ଉଲ୍ଲେଖ ଅଛି ଏବଂ ବ୍ରହ୍ମଚର୍ଯ୍ୟାଶ୍ରମକୁ ଉପଯୁକ୍ତ ମର୍ଯ୍ୟାଦା ଦିଆଯାଇଛି; କାରଣ ସେହି ସମୟଟି ଥିଲା ବ୍ୟକ୍ତିର ପାଠ ପଢ଼ିବା ସମୟ ଏବଂ ଭବିଷ୍ୟତ୍‌ରେ ସେ କିପରି ଭଲ ମଣିଷଟିଏ ହୋଇ ଠିଆ ହେବ, ତଦ୍‌ବିଷୟରେ ସେ ସେହି ସମୟରେ ହିଁ ଶିକ୍ଷା

ଯାଉଥିଲା । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ, ଏହି ତିନି ବର୍ଣ୍ଣର ଲୋକେ ଉପନୟନ କର୍ମ ମାଧ୍ୟମରେ ଗୁରୁକୁଳରେ ରହି ବ୍ରହ୍ମଚର୍ଯ୍ୟବ୍ରତ ପାଳନ କରୁଥିଲେ । ବିନା ଉପନୟନରେ ଯେ ବ୍ରାହ୍ମଣ 'ବ୍ରାତ୍ୟ' (ପତିତ ଆର୍ଯ୍ୟ) ସଙ୍ଗେ ସମାନ, ଏବଂ ତେଣୁ ତା'ର ଗାୟତ୍ରୀ ମନ୍ତ୍ର ପଢ଼ିବାର ଅଧିକାର ନାହିଁ, ଏହି କଥା ମନୁସ୍ମୃତି (୨।୩୯) ସ୍ପଷ୍ଟ ଭାବରେ କହିଥାଏ । ଗୁରୁକୁଳରେ ରହି କିପରି ନିଷ୍ଠାପର ଭାବରେ ବ୍ରହ୍ମଚର୍ଯ୍ୟବ୍ରତ ପାଳିବାକୁ ପଡ଼ିବ ତଦ୍‌ବିଷୟ ଟିକିନିଖି ଭାବରେ ମନୁସ୍ମୃତିରେ (୨ୟ ଅଧ୍ୟାୟ) ଆଲୋଚିତ । ବ୍ରହ୍ମଚର୍ଯ୍ୟାଶ୍ରମ ପରେ ବା ପାଠପଢ଼ା ସରିବା ପରେ ଯାଇ ବ୍ୟକ୍ତି ଗୃହସ୍ଥାଶ୍ରମରେ ପ୍ରବେଶ କରୁଥିଲା । ବ୍ରହ୍ମଋଷିଙ୍କୁ ସମାଜରେ ଖୁବ୍ ମର୍ଯ୍ୟାଦା ଦିଆ ଯାଉଥିଲା ଏବଂ ସେ ସମସ୍ତଙ୍କ ଦ୍ୱାରା ସମ୍ମାନିତ ହେଉଥିଲେ । ରାମାୟଣ-ଯୁଗରେ ମଧ୍ୟ ଠିକ୍ ଅନୁରୂପ ସ୍ଥିତି ଥିବା କଥା ଆମେ ଜାଣି ପାରୁଥାଉଁ । ସେତେବେଳେ ମଧ୍ୟ ମୋଟାମୋଟି ଏହି ଶିକ୍ଷାପଦ୍ଧତି ଚାଲିବା ସଙ୍ଗେ ସଙ୍ଗେ ଶିକ୍ଷିତ ବ୍ୟକ୍ତିମାନଙ୍କୁ ଖୁବ୍ ଆଦର-ସମ୍ମାନ ଦେଖା ଯାଉଥିଲା । ବାଲ୍ମୀକି ରାବଣର ମୁହଁରେ କୁହାଇଛନ୍ତି (୫।୮୮।୯) ଯେ ଜଣେ ବୟସ୍କ ଓ ଅନୁଭୂତିସମ୍ପନ୍ନ ବ୍ୟକ୍ତି ଆଜି ଜଣେ କମ୍‌ବୟସର ଅଥଚ ପଣ୍ଡିତ ବ୍ୟକ୍ତିଙ୍କ ପାଖକୁ ଗଲାବେଳେ ତାଙ୍କ ମନରୁ ବୟସ ତଥା ଅନୁଭୂତିର ଅଭିମାନକୁ ପରିହାର କରି ଉକ୍ତ ପଣ୍ଡିତ ବ୍ୟକ୍ତିଙ୍କ ପାଖରେ ଅତୀବ, ନମ୍ରତାର ଭାବ ଦେଖାଇବାକୁ ପଡ଼ିବ । ବିଦ୍ୟା ମଣିଷକୁ ବଡ଼ କରାଏ, ବୟସ କିନ୍ତୁ ନୁହେଁ । ଏହା ହେଉଛି ରାମାୟଣର ଆପ୍ତ ବାକ୍ୟ । ରାମାୟଣର ବର୍ଣ୍ଣନା ଅନୁସାରେ (୨।୯୪।୧୨) ବଢ଼େଇକାମ, ଲୁଗାବୁଣା, ସିଲେଇ କାମ ଆଦି ମଧ୍ୟ ଲୋକେ ଶିଖୁଥିଲେ । ଆଉ ଗୋଟିଏ ସ୍ଥାନର ବକ୍ତବ୍ୟ ଅନୁଯାୟୀ (୫।୧୫।୧୦) ସଙ୍ଗୀତ, ନୃତ୍ୟ, ଚିତ୍ରକଳା ଆଦିର ଶିକ୍ଷା ମଧ୍ୟ ଖୁବ୍ ଲୋକପ୍ରିୟ ଥିଲା ।

ଏଠାରେ ପ୍ରସଙ୍ଗକ୍ରମେ 'ବହୁଶ୍ରୁତ' ଶବ୍ଦର ଅର୍ଥ ନେଇ ପଣ୍ଡିତମାନଙ୍କ ମଧ୍ୟରେ ହେଉଥିବା ବିବାଦ ବିଷୟ ଉଲ୍ଲେଖନୀୟ । ରାମାୟଣରେ ଅଯୋଧ୍ୟାର ଲୋକମାନଙ୍କ ସମ୍ପର୍କରେ କୁହାଯାଇଛି

ତସ୍ମିନ୍ ପୁରବରେ ହୃଷ୍ଟା ଧର୍ମାତ୍ମାନୋ ବହୁଶ୍ରୁତାଃ । (୬)

ଅର୍ଥାତ୍ ସେହି ଶ୍ରେଷ୍ଠ ନଗରରେ (ଲୋକେ ଥିଲେ) ଆନନ୍ଦିତ, ଧର୍ମାତ୍ମା ଓ ଅନେକ ବେଦ ତଥା ଉପନିଷଦରେ ପଣ୍ଡିତ । ବିକଙ୍ଗ୍‌ଟନ୍ କିନ୍ତୁ ଏହି 'ବହୁଶ୍ରୁତାଃ'ର ଆକ୍ଷରିକ ଅର୍ଥ କରି କୁହନ୍ତି ଯେ ସେଠାକାର ଲୋକମାନେ ବହୁତ ପାଠ ଶୁଣି ଶୁଣି ପଢ଼ୁଥିଲେ ଏବଂ ତାହାକୁ ଭିତ୍ତି କରି ପ୍ରମାଣ କରିବାକୁ ଚେଷ୍ଟା କରନ୍ତି ଯେ ରାମାୟଣ କାଳରେ ଲିପିର ପ୍ରଚଳନ ନଥିଲା ଏବଂ ଲେଖା ମାଧ୍ୟମରେ ପଢ଼ା

ଯାଉନଥିଲ । (୭) ଏ ପ୍ରକାର ଅର୍ଥ ଏବଂ ତଦ୍‌ଭିତ୍ତିକ ଏ ପ୍ରକାର ନିର୍ଣ୍ଣୟ ଭ୍ରମାତ୍ମକ । ରାମାୟଣ-କାଳରେ ଯେ ଲିପିର ପ୍ରଚଳନ ଥିଲା, ସେ ବିଷୟରେ ପୃଥକ୍ ଭାବରେ ଏହି ପରିଚ୍ଛେଦରେ ପରେ ଆଲୋଚନା କରାଯିବ । 'ବହୁଶ୍ରୁତ'ର ପ୍ରକୃତ ଅର୍ଥ ହେଉଛି ବହୁ ବେଦ ଓ ବହୁ ଉପନିଷଦ ଜାଣିଥିବା ବ୍ୟକ୍ତି ବା ବହୁ ବେଦ ଓ ବହୁ ଉପନିଷଦ ଜାଣିଥିବା ବ୍ୟକ୍ତି । ଭାରତୀୟମାନଙ୍କ ନିକଟରେ ବେଦ ଓ ଉପନିଷଦ ଶ୍ରୁତି ନାମରେ ପରିଚିତ । ଏହିଭଳି ଶାସ୍ତ୍ରଜ୍ଞ ବ୍ୟକ୍ତି-ମାନଙ୍କର କଥା ବାଲ୍ମୀକି ଏଠାରେ ଉଲ୍ଲେଖ କରିଛନ୍ତି । ଏହାର ଅର୍ଥ ନୁହେଁ ଯେ ଶ୍ରବଣ ମାଧ୍ୟମରେ ଜମା ଶିକ୍ଷା ଦିଆ ଯାଉନଥିଲା । ଅନ୍ୟ ପକ୍ଷରେ, କଥୋପକଥନ ଭଙ୍ଗୀରେ ଶିକ୍ଷାଦାନର ବହୁଳ ପ୍ରଚଳନ ଥିଲା ଏବଂ ଗୁରୁଶିଷ୍ୟଙ୍କ ସମ୍ପର୍କର ଅନ୍ତରଙ୍ଗତା ଦୃଷ୍ଟିରୁ ଏ ପ୍ରକାର ଶିକ୍ଷା ବିଶେଷ ଭାବରେ ଫଳପ୍ରଦ ହେଉଥିଲା ।

## ଶିକ୍ଷାର ପ୍ରକାରଭେଦ

ଶିକ୍ଷା ସଂପର୍କରେ ବାଲ୍ମୀକି ଶିକ୍ଷା, ଅଧ୍ୟୟନ, ବିନୟ ଓ ଉପଦେଶ ଏହିପରି ଚାରୋଟି ଶବ୍ଦର ପ୍ରୟୋଗ ବିଭିନ୍ନ ସ୍ଥାନରେ କରିଛନ୍ତି । ଏଗୁଡ଼ିକରୁ ହିଁ ଶିକ୍ଷାର ସ୍ୱରୂପ ଓ ଲକ୍ଷ୍ୟ ବିଷୟ ସ୍ପଷ୍ଟ ହୋଇ ଉଠୁଛି । ଶିକ୍ଷା ଶବ୍ଦର ପ୍ରୟୋଗ ଆମେ ରାମାୟଣର (୭।୬୩।୫) 'ଶିକ୍ଷାମସ୍ୱେଷୁ ଦର୍ଶୟନ୍' ପଙ୍କ୍ତିଟିରେ ପାଉଥିଉଁ । ଶିକ୍ଷାର ଅର୍ଥ ଏଠି ହେଲା ଶିଖିବାର ଜ୍ଞାନ ପାଇବା । ବ୍ୟକ୍ତି ପାଖରେ ଯେଉଁ ଜ୍ଞାନ ନଥିବ, ତାହାକୁ ପାଇବାର ନାମ ହେଲା ଶିକ୍ଷା । ଏହା 'ଶିକ୍ଷ୍' ଧାତୁରୁ ନିଷ୍ପନ୍ନ । ଏହାର ତାତ୍ପର୍ଯ୍ୟ ହେଲା ନୂତନ ନୂତନ ଜ୍ଞାନ ଶିଷ୍ୟକୁ ଦେବା ହେଉଛି ଶିକ୍ଷାର ଲକ୍ଷ୍ୟ । ସେହିପରି ଅଧ୍ୟୟନ ଶବ୍ଦର ପ୍ରୟୋଗ ଆମେ ଦେଖୁଁ ଆଉ ଗୋଟିଏ ପଙ୍କ୍ତି (୭।୩୯।୧୪) 'ଯେବା ତୁ ଶାସ୍ତ୍ରମଧ୍ୟେତୁମ୍'ରେ । ଅଧ୍ୟୟନ ଶବ୍ଦର ଉଦ୍ଭବ ହୋଇଛି 'ଇ' ଧାତୁ ସହିତ 'ଅଧି' ଉପସର୍ଗ ଲାଗି 'ଅନଟ୍' ପ୍ରତ୍ୟୟ ହେବା ଫଳରେ । 'ଇ' ଧାତୁର ଅର୍ଥ ହେଲା ଯିବା । ଏହା ଦ୍ୱାରା ଗୁରୁଗୃହକୁ ଯାଇ ଶିଷ୍ୟର ଶିକ୍ଷାଲାଭ କରିବାର ସଙ୍କେତ ପ୍ରକଟିତ ହେଉଛି । ଏହା ଉପନୟନ-କର୍ମର ସୂଚନା ଦେଉଛି । ବ୍ୟକ୍ତିର ଏହି ସମୟଟି ହେଉଛି 'ବ୍ରହ୍ମଚର୍ଯ୍ୟାଶ୍ରମ' । ଅତଏବ ବୈଦିକ-ଯୁଗର ବ୍ରହ୍ମଚର୍ଯ୍ୟାଶ୍ରମ ସଂପର୍କରେ ଯେଉଁସବୁ ନୀତି-ନିୟମମାନ ପ୍ରଚଳିତ ଥିଲା, ସେଗୁଡ଼ିକ ମଧ୍ୟ ମୋଟାମୋଟି ରାମାୟଣ ଯୁଗରେ ପ୍ରଚଳିତ ଥିଲା ବୋଲି ଆମକୁ ଧରିନେବାକୁ ହେବ । ରାମାୟଣରେ ଠାଏ (୫।୨୯।୧୩-୧୦) ରାମଙ୍କୁ 'ରାଜବିଦ୍ୟାବିନୀତ' ଓ 'ଯଜୁର୍ବେଦବିନୀତ' ବୋଲି କୁହାଯାଇଛି । ଏହାର ସାଧାରଣ ଅର୍ଥ ହେଲା ସେ ରାଜବିଦ୍ୟା ଓ ଯଜୁର୍ବେଦ ଜାଣିଥିଲେ । 'ବି'

ଧାତୁ (ନେବା) 'ବି' ଉପସର୍ଗଯୁକ୍ତ ହୋଇ ବିନୟ ଶବ୍ଦର ସୃଷ୍ଟି ହୋଇଛି । ଗୋଟିଏ ନିର୍ଦ୍ଦିଷ୍ଟ ଓ ଶୃଙ୍ଖଳିତ ମାର୍ଗରେ ବ୍ୟକ୍ତିକୁ କଢ଼ାଇ ନେଉଥିବା ବିଦ୍ୟାର ନାମ ହେଲା 'ବିନୟ' । ସେହି ଅର୍ଥରେ ବୌଦ୍ଧମାନଙ୍କ 'ବିନୟପିଟକ'ର ସୃଷ୍ଟି । ଏହା ବ୍ୟକ୍ତିକୁ ଏକ ଶୃଙ୍ଖଳିତ ମାର୍ଗରେ ଚଳାଇ ତା'ର ଆଚରଣକୁ ଶୁଦ୍ଧ କରାଇଥାଏ । ଏହା ତେଣୁ ହେଉଛି ଆଚାର-ବିଦ୍ୟା । ରାମ ଶୃଙ୍ଖଳିତ ଭାବରେ ରାଜବିଦ୍ୟା ସମାପନ କରୁଥିଲେ ଏବଂ ଯଜୁର୍ବେଦରେ ବର୍ଣ୍ଣିତ ଯଜ୍ଞାଦି ସମୁଚିତ ଭାବରେ ସମ୍ପନ୍ନ କରୁଥିଲେ ବୋଲି ବାଲ୍ମୀକି ଏଠାରେ କହିଛନ୍ତି । ଏହି ଆଚରଣ-ଶୁଦ୍ଧି ଏବଂ ଶୃଙ୍ଖଳିତ ମାର୍ଗରେ ଗମନ ଥିଲା ଶିକ୍ଷାର ଆଉ ଏକ ଉଦ୍ଦେଶ୍ୟ । ଉପଦେଶ ଶବ୍ଦର ପ୍ରୟୋଗ ଆମେ ରାମାୟଣରେ (୨।୮୩।୧୨) ଅନ୍ୟତ୍ର ଦେଖିବାକୁ ପାଇଥାଉଁ । 'ଦିଶ୍' ଧାତୁ 'ଉପ' ଉପସର୍ଗଯୁକ୍ତ ହୋଇ 'ଉପଦେଶ' ଶବ୍ଦର ଉଦ୍ଭବ ହୋଇଛି । 'ଦିଶ୍' ଧାତୁର ଅର୍ଥ ହେଲା ବୁଝାଇ କହିବା । ଗୁରୁ ଶିଷ୍ୟକୁ ଭଲ ଭାବରେ ବୁଝାଇ କରି ଶିକ୍ଷା ଦେଉଥିଲେ । କୋମଳମତି ଶିଶୁକୁ ନାନା ପ୍ରକାର ସରଳ ଉଦାହରଣ ମାଧ୍ୟମରେ ଶିକ୍ଷାଦାନ କରା ଯାଉଥିଲା । ବେଦାନ୍ତର ବିଭିନ୍ନ କଠିନ ତତ୍ତ୍ୱମାନ ଉପରେ ସୁନ୍ଦର-ସୁନ୍ଦର ଗଳ୍ପ ଓ ଉଦାହରଣ ମାଧ୍ୟମରେ ବୁଝାଇ ଦିଆ ଯାଉଥିଲା ତାହାର ନିଦର୍ଶନ ଆମେ ଉପନିଷଦରେ ପାଇଥାଉଁ । ଗୁରୁ କେବଳ ପାଠ ପଢ଼ାଇଦେଲେ ତାଙ୍କ କର୍ତ୍ତବ୍ୟ ସରୁନଥିଲା । ଶିଷ୍ୟ ତାହାକୁ ବୁଝି ପାରିବା ପରେ ଯାଇ ତାଙ୍କ କର୍ତ୍ତବ୍ୟ ସରୁଥିଲା । ଯେଉଁ ଆଚାର ବିଷୟରେ ଶିକ୍ଷା ଦିଆ ଯାଉଥିଲା, ତାହାକୁ ଉପରେ ଶିଷ୍ୟ ସ୍ୱଜୀବନରେ ଅକ୍ଷରେ ଅକ୍ଷରେ ନିଷ୍ଠାପର ଭାବରେ ପାଳନ କରିବ, ସେଥିପ୍ରତି ଗୁରୁ ବିଶେଷ ଭାବରେ ଯତ୍ନବାନ୍ ଥିଲେ । ଶିଷ୍ୟଠାରେ ଯେଉଁ ଅନନ୍ତ ଶକ୍ତିର ଭଣ୍ଡାର ଅଛି ତାହାର ଆବରଣକୁ ଗୁରୁ ଖୋଲି ଦେଉଥିଲେ । ସେ ଯେ ଦିବ୍ୟଶକ୍ତିର ଆଧାର ଏବଂ ନିରବଚ୍ଛିନ୍ନ ଉଦ୍ୟମ ଫଳରେ ଯେ ସେହି ଶକ୍ତିର ସ୍ଫୁରଣ ତା'ଠାରେ ସମ୍ଭବପର, ତାହା ଗୁରୁ ତା'କୁ ବୁଝାଇ ଦେଉଥିଲେ । ଶିକ୍ଷାର ଏହା ହିଁ ଥିଲା ସର୍ବପ୍ରଥମ ଓ ଚରମ ଲକ୍ଷ୍ୟ । ରାଧାକୁମୁଦ ମୁଖାର୍ଜୀ ଏହି ମତର ପୁଷ୍ଟିସାଧନ କରିବାକୁ ଯାଇ ଯଥାର୍ଥରେ କହନ୍ତି

> Thus the first principle of this education was to bring into play the cosmic principle upon the individual by building up in the latter a strong store of infinite energy or divine potency through the practice of brahmacharya (chastity), the first necessary condition for increasing the

vital force within and giving scope to its working. (୭-କ)

ଅବଶ୍ୟ ସେ ବୈଦିକ ଶିକ୍ଷାର ପରମ୍ପରା ଉପରେ ଏହି ମନ୍ତବ୍ୟଟି ଦେଇଛନ୍ତି । ଏହା ରାମାୟଣୀୟ ଶିକ୍ଷା ପ୍ରତି ମଧ୍ୟ ସମଧିକ ପ୍ରଯୁଜ୍ୟ; କାରଣ ତାହା ସ୍ଥୂଳତଃ ବୈଦିକ ପରମ୍ପରାକୁ ହିଁ ଅନୁସରଣ କରି ଆସିଛି ଏବଂ ରାମାୟଣ-ଯୁଗରେ ମଧ୍ୟ ଶିକ୍ଷା ପ୍ରତି ମର୍ଯ୍ୟାଦା-ପ୍ରଦର୍ଶନ ବୈଦିକ-ଯୁଗ ଭଳି ଅନାହତ ରହି ଆସିଛି । ଉପରୋକ୍ତ ଆଲୋଚନା ଦୃଷ୍ଟେ ଆମେ ରାମାୟଣକାଳୀନ ଶିକ୍ଷାର ଲକ୍ଷ୍ୟ ଓ ସ୍ୱରୂପ ବିଷୟରେ ଏହି ନିର୍ଣ୍ଣୟରେ ପହଞ୍ଚି ପାରିବା

କ) ଶିଷ୍ୟଙ୍କୁ ନୂଆ ନୂଆ ଜ୍ଞାନ ଦେବା ଥିଲି ଶିକ୍ଷାର ଉଦ୍ଦେଶ୍ୟ ।

ଖ) ଗୁରୁ-ଗୃହକୁ ଯାଇ ଶିଷ୍ୟଙ୍କୁ ଶିକ୍ଷାପ୍ରାପ୍ତି କରିବାକୁ ପଡ଼ୁଥିଲି ।

ଗ) ଶିଷ୍ୟଙ୍କୁ ଜୀବନରେ ଶୃଙ୍ଖଳା ମାଧ୍ୟମରେ ଏକ ନିର୍ଦ୍ଦିଷ୍ଟ ପଥରେ ଚଳାଇବା ଥିଲି ଶିକ୍ଷାର ଆଉ ଏକ ଲକ୍ଷ୍ୟ ।

ଘ) ଶିଷ୍ୟଙ୍କୁ ଭଲ ଭାବରେ ବୁଝାଇ-ସୁଝାଇ ଶିକ୍ଷା ଦିଆଯାଉଥିଲି ।

ଙ) ଶିଷ୍ୟଠାରେ ଥିବା ଅନନ୍ତ ଶକ୍ତି ଓ ସମ୍ଭାବନାକୁ ଜାଗ୍ରତ କରାଇ ଦିଆ-ଯାଉଥିଲି ଏବଂ ତା'ର ଦିବ୍ୟାଲୋକର ଆବରଣଟିକୁ ଖୋଲି ଦିଆଯାଉଥିଲି ।

## ଆଶ୍ରମର ସ୍ୱରୂପ

ଏହି ଆଶ୍ରମର ସ୍ୱରୂପ ତେବେ କିପରି ଥିଲି ? ଏଗୁଡ଼ିକ କ'ଣ କେବଳ ଅରଣ୍ୟରେ ଥିଲି ନା ଆଉ କେଉଁଠି ବି ଥିଲି ? ଏଗୁଡ଼ିକ ସହରରେ ଥିଲି ନା ନାହିଁ ? ଏହି ପ୍ରଶ୍ନଗୁଡ଼ିକ ନିଶ୍ଚିତ ଭାବରେ କୌତୂହଳପୂର୍ଣ୍ଣ । ଆଶ୍ରମରେ ଦିଆଯାଉଥିବା ଶିକ୍ଷାର ସ୍ୱରୂପ ସଂପର୍କରେ ରାମାଶ୍ରୟ ଶର୍ମା କୁହନ୍ତି

> Obviously this arrangement had a distinct merit. It ensured compulsory education for everyone and at the same time harnessed the energies of the entire nation for the preservation of the Veda the national treasure of learning. (୮)

ଆଶ୍ରମରେ ଯଦି ସବୁ ବର୍ଣ୍ଣର ଲୋକଙ୍କୁ ଶିକ୍ଷା ଦିଆଯାଉଥିଲି, ତେବେ ସେମାନଙ୍କ ବାସ୍ତବ ଜୀବନରେ ଆବଶ୍ୟକ ହେଲି ଭଳି ବିଭିନ୍ନ ବିଷୟରେ ନିଶ୍ଚୟ ଶିକ୍ଷା ଦିଆ ଯାଉଥିବ । ଆଧୁନିକ ମହାବିଦ୍ୟାଳୟମାନଙ୍କ ଭଳି ବିଭିନ୍ନ ବିଭାଗମାନ ସେଠାରେ ଥିବ । ବାସ୍ତବରେ ରାଧାକୁମୁଦ ମୁଖାର୍ଜି ମହାଭାରତ ଉପରେ

ଆଲୋଚନା ପ୍ରସଙ୍ଗରେ ତତ୍‌କାଳୀନ ଆଶ୍ରମମାନଙ୍କରେ ବିଭିନ୍ନ ବିଭାଗମାନ ଥିବା କଥାର ଉଲ୍ଲେଖ କରିଛନ୍ତି । ତାଙ୍କ ମତରେ ସେହି ବିଭାଗମାନ ହେଲା

କ) ଅଗ୍ନିସ୍ଥାନ (ଅଗ୍ନିକୁ ପୂଜା କରିବାର ଓ ପ୍ରାର୍ଥନାର ସ୍ଥାନ)
ଖ) ବ୍ରହ୍ମସ୍ଥାନ (ବେଦ-ବିଭାଗ)
ଗ) ବିଷ୍ଣୁସ୍ଥାନ (ରାଜନୀତି, ଅର୍ଥନୀତି ଓ ବାର୍ତ୍ତା ବା ବାଣିଜ୍ୟବ୍ୟବସାୟ-ନୀତି ଶିକ୍ଷା ଦେବାର ବିଭାଗ),
ଘ) ମହେନ୍ଦ୍ରସ୍ଥାନ (ସାମରିକ ଶିକ୍ଷା ବିଭାଗ),
ଙ) ବିବସ୍ୱତ୍‌ସ୍ଥାନ (ଜ୍ୟୋତିର୍ବିଦ୍ୟା ବିଭାଗ),
ଚ) ସୋମସ୍ଥାନ (ଉଦ୍ଭିଦ ବିଭାଗ),
ଛ) ଗରୁଡ଼ସ୍ଥାନ (ଯାନ ବିଷୟରେ ଶିକ୍ଷା ଦେବା ବିଭାଗ), ଏବଂ
ଜ) କାର୍ତ୍ତିକେୟସ୍ଥାନ (ସେନାବାହିନୀ ସଙ୍ଗଠନ ବିଷୟରେ ଶିକ୍ଷା ଦେବା ବିଭାଗ) । (୯)

ରାମାୟଣରେ ମଧ୍ୟ (୩।୧୨।୧୭-୧୮) ଅଗସ୍ତ୍ୟ ମୁନିଙ୍କ ଆଶ୍ରମରେ ବ୍ରହ୍ମସ୍ଥାନ, ଶିବସ୍ଥାନ, ଅଗ୍ନିସ୍ଥାନ, ଇନ୍ଦ୍ରସ୍ଥାନ, ବିବସ୍ୱତ୍‌ସ୍ଥାନ, ସୋମସ୍ଥାନ, ଭଗସ୍ଥାନ, କୁବେରସ୍ଥାନ, ଧାତୃସ୍ଥାନ, ବିଧାତୃସ୍ଥାନ ଏବଂ ବାୟୁସ୍ଥାନ ଥିବାର ଉଲ୍ଲେଖ ଅଛି । ଭାଷ୍ୟକାରମାନେ ସାଧାରଣତଃ ଏଗୁଡ଼ିକୁ ବିଭିନ୍ନ ଦେବତାଙ୍କ ପୂଜାର୍ଚ୍ଚନାର ସ୍ଥଳୀ ବୋଲି ଅର୍ଥ କରିଥାନ୍ତି । ମୁଖାର୍ଜୀଙ୍କ ଉପରୋକ୍ତ ମତକୁ ଗ୍ରହଣ କଲେ ଆମକୁ ବିଶ୍ୱାସ କରିବାକୁ ହେବ ଯେ ଏଗୁଡ଼ିକ ମଧ୍ୟ ଥିଲା ଶିକ୍ଷାଦାନ ଲାଗି ଆଶ୍ରମର ବିଭିନ୍ନ ବିଭାଗ । ଏଥିରୁ ସୂଚନା ମିଳୁଛି ଯେ ଆଶ୍ରମରେ ଅଧ୍ୟାତ୍ମବିଦ୍ୟା ସହିତ ସଂସାରର ବ୍ୟାବହାରିକ ବିଦ୍ୟା, ଯଥା, ବିଜ୍ଞାନ ରାଜନୀତି, ଅର୍ଥନୀତି ଆଦି ବିଷୟରେ ମଧ୍ୟ ଶିକ୍ଷା ଦିଆ ଯାଉଥିଲା । ବ୍ରକିଙ୍ଗ୍‌ଟନ ମଧ୍ୟ ଏହି ମତର ପୌଷ୍ଟିକତା ସାଧନ କରନ୍ତି । ତାଙ୍କ ଭାଷାରେ

> Various practical branches of learning were clearly well developed although we have no references to the formal learning processes. (୧୦)

ଦଶରଥଙ୍କ ମୃତ୍ୟୁ ପରେ ଭରତଙ୍କ ଅଯୋଧ୍ୟାରେ ଅନୁପସ୍ଥିତି ହେତୁ (ସେ ମାମୁଘରେ ଥିଲେ) ତାଙ୍କ ମୃତ ଶରୀରକୁ ତୈଳରେ ବୁଡ଼ାଇ ରଖା ଯାଇଥିଲା । ଏହା ଫଳରେ ତାହା ପଚି ଯାଇନଥିଲା । ବାନର ସୁଷେଣ ଲକ୍ଷ୍ମଣଙ୍କୁ ଦୁଇ ଥର ଚେରମୂଳି ଔଷଧର ପ୍ରୟୋଗ ଦ୍ୱାରା ଯୁଦ୍ଧଜନିତ ରୋଗର ଆଘାତରୁ ବଞ୍ଚାଇ ଦେଇ ପାରିଥିଲେ । ଭରତଙ୍କ ସେନାବାହିନୀ ସାଥିରେ ଅନ୍ୟମାନଙ୍କ

ସହିତ ବୈଦ୍ୟମାନେ ମଧ୍ୟ ଯାଇଥିଲେ । ଚିକିତ୍ସା-ଶାସ୍ତ୍ର ବିଷୟରେ ଶିକ୍ଷା ଦିଆଯାଉନଥିଲେ ଏଭଳି କଥା ସମ୍ଭବ ହୋଇ ପାରିଥାନ୍ତା କେଉଁଠୁ ? ଶିକ୍ଷାର ବିଭିନ୍ନ ବିଷୟବସ୍ତୁ ସମ୍ପର୍କରେ ବିଶଦ ଭାବରେ ଆଲୋଚନା ପରେ କରାଯିବ । ରାମାୟଣର ବର୍ଣ୍ଣନା ଅନୁଯାୟୀ (୧।୨।୪୩, ୨।୧୦୩।୭; ୩।୧୬।୧) ସାରା ଦେଶରେ ଆଶ୍ରମମାନ ଜାଲି ଭଳି ବିଛାଇ ହୋଇ ରହିଥିଲା । ବିଶେଷ କରି ସରଯୂ, ଗଙ୍ଗା, ଯମୁନା ଓ ଗୋଦାବରୀ ନଦୀର ତୀରବନ ଥିଲା ବିଧି ଆଶ୍ରମରେ ଭରପୂର । ଏହି ଆଶ୍ରମ-ପରମ୍ପରା ବେଦ-ଉପନିଷଦ ଯୁଗରୁ ଚାଲି ଆସୁଥିଲା । ରାମାୟଣ ଓ ମହାଭାରତ କାଳରେ ମଧ୍ୟ ଏଭଳି ଅନେକ ଆଶ୍ରମ ଥିବା କଥା ରାଧାକୁମୁଦ ମୁଖର୍ଜୀ କହିଛନ୍ତି । ତାଙ୍କ ଭାଷାରେ

> In the Ramayana we have the instance of the ashrama (hermitage) of Bharadwaja at Prayaga, and in the Mahabharat we read of the ashrama of Saunaka, distinguished as a Kulapati or teacher of ten thousond pupils, at the Naimisa forest, and that of Kanva on the bank of the Malini river. (୧୦-କ)

ଆଶ୍ରମ ଶବ୍ଦର ଉଦ୍ଭବ ହୋଇଛି 'ଶ୍ରମ୍' ଧାତୁ ସହିତ 'ଆ' ଉପସର୍ଗ ସଂଯୁକ୍ତ ହେବା ଦ୍ୱାରା । ଏହାର ତାତ୍ପର୍ଯ୍ୟ ହେଲା, ଏଠାରେ ଶ୍ରମସାଧନ କରି ବ୍ରହ୍ମଚର୍ଯ୍ୟ-ବ୍ରତ ପାଳିବାକୁ ହେବ ବା କାମ-ଦାମ କରି ପାଠ ପଢ଼ିବାକୁ ହେବ । ଏଠାରେ ଶିଷ୍ୟମାନେ ସମସ୍ତେ ଗୁରୁଙ୍କର ସେବା କରୁଥିଲେ, ତାଙ୍କ ଘରର ନାନା ପ୍ରକାର କାମ-ଧନ୍ଦା କରୁଥିଲେ, ତାଙ୍କ ଗାଈଗୋରୁ ଜଗୁଥିଲେ ଏବଂ ତାହାର ଭିତରେ ପୁଣି ପାଠ ପଢ଼ୁଥିଲେ । ଶତପଥ ବ୍ରାହ୍ମଣରେ ତେଣୁ ଠାଏ (୩।୬।୨।୧୫) ଉଲ୍ଲେଖ ଅଛି ଯେ ବ୍ରହ୍ମଚାରୀମାନେ (ଛାତ୍ରମାନେ) ଆଚାର୍ଯ୍ୟଙ୍କ, ତାଙ୍କ ଘରକୁ ଏବଂ ତାଙ୍କ ଗାଈ-ଗୋରୁଙ୍କୁ ରକ୍ଷା କରିଥାନ୍ତି । ଏତଦ୍‌ବ୍ୟତୀତ ସେମାନେ ଭିକ୍ଷା ମଧ୍ୟ କରୁଥିଲେ । ଏହିସବୁ କାମ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟନିର୍ଘଣ୍ଟ ଅନୁଯାୟୀ ସମାହିତ ହେଉଥିଲା । ଫଳରେ ପାଠପଢ଼ା ବ୍ୟାହତ ହେଉନଥିଲା । ରାମାୟଣକାଳୀନ ଆଶ୍ରମରେ ମଧ୍ୟ ଏହି ସ୍ଥିତି ଥିଲା । ଶିଷ୍ୟ ଗୁରୁଙ୍କ ପାଇଁ ପାଣି ଆଣିବାର ଏବଂ ତାଙ୍କ ଲୁଗାପଟା ଧରି ତାଙ୍କ ପଛେ ପଛେ ଗାଧୁଆ-ତୁଠକୁ ଯିବାର ବର୍ଣ୍ଣନା ଆମେ ରାମାୟଣରେ (୧।୨।୭; ୧।୨।୯) ଦେଖିବାକୁ ପାଇଥାଉଁ । ଆଶ୍ରମରେ ଗୁରୁଙ୍କୁ ଘେରିକରି ବହୁ ସଂଖ୍ୟାରେ ଶିଷ୍ୟମାନେ ବସି ତାଙ୍କଠାରୁ ଉପଦେଶ ଶୁଣୁଥିବାର ବର୍ଣ୍ଣନା ମଧ୍ୟ ଆମେ ରାମାୟଣରେ ଅନେକତ୍ର ଦେଖିଥାଉଁ ।

ଏହି ଗୁରୁମାନେ ଥିଲେ ଜଣେ ଜଣେ ପ୍ରଖ୍ୟାତ ଋଷି । ଭରଦ୍ୱାଜ, ଅତ୍ରି, ବିଶ୍ୱାମିତ୍ର, ଅଗସ୍ତ୍ୟ ଆଦି ସେମାନଙ୍କର ଅନ୍ତର୍ଗତ ।

ରାମାୟଣୀୟ ଆଶ୍ରମମାନଙ୍କରେ ପ୍ରାଚୁର୍ଯ୍ୟ ଭରି ରହିଥିଲା ଅଥବା ତତ୍କାଳୀନ ଋଷିମାନେ ସେମାନଙ୍କ ପ୍ରଭାବବଳରେ ସ୍ଥାନୀୟ ଅଞ୍ଚଳରୁ ଆବଶ୍ୟକତା ଅନୁଯାୟୀ ବହୁଦ୍ରବ୍ୟ ସଂଗ୍ରହ କରି ପାରୁଥିଲେ । ସେନାବାହିନୀ ସହିତ ରାଜାମାନଙ୍କୁ ଅତିଥିସତ୍କାରରେ ଆପ୍ୟାୟିତ କରିବାର କ୍ଷମତା ସେମାନଙ୍କର ଥିଲା । ଋଷି ବଶିଷ୍ଠ ସସୈନ୍ୟ ରାଜା ବିଶ୍ୱାମିତ୍ରଙ୍କୁ ଦେଇଥିବା ଅତିଥି-ସତ୍କାରର ପ୍ରାଚୁର୍ଯ୍ୟ ସମ୍ପର୍କରେ ମୁଖାର୍ଜୀ ଯାହା କହିଛନ୍ତି, ତାହା ଏଠାରେ ପ୍ରଣିଧାନଯୋଗ୍ୟ । ତାଙ୍କ ଭାଷାରେ

> The ashrama also entertained its royal guests with the performances of musicians and dancing girls. All this lavsih hospitality was extemporized for the occasion, showing the resources which Rishi Bharadwaja could command in the locality by his personality, (୧୧)

ଏହାର ଅର୍ଥ କିନ୍ତୁ ନୁହେଁ ଯେ ଆଶ୍ରମବାସୀ ଋଷିମାନେ ଏବଂ ଆଶ୍ରମର ଅନ୍ୟାନ୍ୟ ଅନ୍ତେବାସୀମାନେ ପ୍ରାଚୁର୍ଯ୍ୟରେ ଭାସି ଭାସି ବିଳାସମୟ ଜୀବନଯାପନ କରୁଥିଲେ । ସେମାନଙ୍କର ଭୋଗୈଶ୍ୱର୍ଯ୍ୟ ଠୁଳ କରିବାର କ୍ଷମତା ଅବଶ୍ୟ ଥିଲା; କିନ୍ତୁ ସେମାନେ ନିଜ ପାଇଁ ତାହା ଆଦୌ କରୁନଥିଲେ । ସେମାନେ ଅତି ସରଳ, କୃଚ୍ଛ୍ର ଓ ଭୋଗହୀନ ସାଧାରଣ ଜୀବନଯାପନ କରୁଥିଲେ । ସେମାନଙ୍କଠାରେ ଆଦୌ ସଂଗ୍ରହ ଓ ସଞ୍ଚୟର ମନୋବୃତ୍ତି ନଥିଲା । ପ୍ରତ୍ୟେକ ଦିନର ସବନମ୍ ଗୃହିଦା ମେଣ୍ଟାଇବାର ଦ୍ରବ୍ୟମାନ ସେମାନେ ପ୍ରତିଦିନ ସଂଗ୍ରହ କରୁଥିଲେ । ଏପରିକି ହୋମ ଲାଗି ସେମାନେ କାଠ ମଧ୍ୟ ଆଗରୁ ସଂଗ୍ରହ କରି ରଖୁନଥିଲେ ।

ଅନେକଗୁଡ଼ିଏ ଆଶ୍ରମ ଏକାଠି ଠୁଳ ହୋଇଥିବା ସ୍ଥାନରେ ଜଣେ ପ୍ରମୁଖ ବ୍ୟକ୍ତି କୁଳପତି ହୋଇ ରହୁଥିଲେ । ସମଗ୍ର କୁଳ ତାଙ୍କ ନିର୍ଦ୍ଦେଶରେ ପରିଚାଳିତ ହେଉଥିଲା । ସେ ମଧ୍ୟ କୁଳକୁ ରକ୍ଷା କରିବାର ଦାୟିତ୍ୱ ବହନ କରୁଥିଲେ । ରାମ ଚିତ୍ରକୂଟରେ ଥିବା ସମୟରେ ଏଭଳି ଜଣେ କୁଳପତିଙ୍କ ସମ୍ପର୍କରେ ଆସିଥିଲେ ।

ଏ ତ ଗଲା ଅରଣ୍ୟରେ ଥିବା ଋଷିଆଶ୍ରମ କଥା । ଏତଦ୍‌ବ୍ୟତୀତ ସହରରେ ମଧ୍ୟ ଆଶ୍ରମ ଥିଲା । ବାଲ୍ମୀକି ରାମାୟଣରେ (୨।୬୭।୧୫)

ଅଯୋଧ୍ୟାପୂର୍ବସ୍ଥ ବିଭିନ୍ନ ବୈଦିକ ପରଂପରାର ଅନେକ ଆଚାର୍ଯ୍ୟ ସେମାନଙ୍କ ଆଶ୍ରମ ସ୍ଥାପନ କରି ରହିଥିବାର ଏବଂ ରାମଙ୍କ ବନଗମନ ସମୟରେ ତାଙ୍କ ହାତରୁ ବିଭିନ୍ନ ଦାନ ଗ୍ରହଣ କରିଥିବାର ବର୍ଣ୍ଣନା କରିଛନ୍ତି । ରାମ ଓ ତାଙ୍କ ଭାଇମାନେ ଅଯୋଧ୍ୟାରେ ହିଁ ସେମାନଙ୍କର ଆନୁଷ୍ଠାନିକ ଶିକ୍ଷା ପାଇଥିଲେ । ସେମାନେ ବଶିଷ୍ଠଙ୍କ ପାଖରୁ ଅବଶ୍ୟ ଧର୍ମନୀତି ସଂପର୍କରେ ଶିକ୍ଷା ପାଇଥିଲେ । ଅଯୋଧ୍ୟାର ଆଉ ଜଣେ ଆଚାର୍ଯ୍ୟ ଥିଲେ କୌଣ୍ଡିନ୍ୟ ଯାହାଙ୍କଠାରୁ ସେମାନେ ଦଣ୍ଡନୀତି ଓ ସମରବିଦ୍ୟା ସଂପର୍କରେ ଶିକ୍ଷା ପାଇଥିଲେ । ରାମାୟଣର ବର୍ଣ୍ଣନା ଅନୁଯାୟୀ (୨।୨।୩୬), ଧର୍ମ ଓ ଅର୍ଥକୁ ପ୍ରତିପାଦନ କରିବାରେ କୁଶଳ ଥିବା ବ୍ରାହ୍ମଣମାନେ ରାମଙ୍କୁ ଶିକ୍ଷାଦାନ କରିଥିଲେ । ଏଥିରୁ ଜଣାଯାଏ ଯେ ରାମଙ୍କର ଏକାଧିକ ଗୁରୁ ଥିଲେ । ଶିକ୍ଷାର ବିଭିନ୍ନ ବିଭାଗରେ ଥିବା ବିଶାରଦ ଗୁରୁମାନେ ରାମଙ୍କୁ ସଂପୃକ୍ତ ବିଷୟରେ ଶିକ୍ଷା ଦେଇଥିଲେ । ରାମଙ୍କ ବନବାସର ଅବ୍ୟବହିତ ପୂର୍ବରୁ ଅଗସ୍ତ୍ୟ ଓ କୌଶିକ ନାମକ ଆଉ ଦୁଇ ଜଣ ଆଚାର୍ଯ୍ୟ ମଧ୍ୟ ତାଙ୍କଠାରୁ ଦାନ ଗ୍ରହଣ କରିଥିଲେ । ସମ୍ଭବତଃ ଏହି ଅଗସ୍ତ୍ୟ ଦକ୍ଷିଣଭାରତରେ ଆଶ୍ରମ କରି ରହିଥିବା ଅଗସ୍ତ୍ୟ ଋଷି ନୁହନ୍ତି କିମ୍ବା ଏହି କୌଶିକ ବିଶ୍ୱାମିତ୍ର ଋଷି ନୁହନ୍ତି । ତା' ହେଲେ ଏ ଦୁହେଁ ସମ୍ଭବତଃ ଅଯୋଧ୍ୟାବାସୀ ଏବଂ ଏମାନଙ୍କର ଆଶ୍ରମ ଅଯୋଧ୍ୟାରେ ପ୍ରତିଷ୍ଠିତ ଥିଲା । ରାମାୟଣର ଆଉ ଗୋଟିଏ ସ୍ଥାନରେ (୨।୩୨।୨୬) କୌଶଲ୍ୟାଙ୍କ ନିକଟରୁ ଦାନ ପାଇ କେତେକ ବ୍ରାହ୍ମଣ ସେମାନଙ୍କର ଆଶ୍ରମମାନ ଚଳାଉଥିବା କଥା ବର୍ଣ୍ଣିତ । ସେମାନେ ମଧ୍ୟ ରାମଙ୍କଠାରୁ ଅନୁରୂପ ଭାବରେ ତାଙ୍କ ବନଗମନ ସମୟରେ ଦାନଗ୍ରହଣ କରିଥିଲେ । ଏହିସବୁ ନିଦର୍ଶନରୁ ଜଣାଯାଏ ଯେ ରାମାୟଣ-ଯୁଗରେ ସହରରେ ମଧ୍ୟ ଆଶ୍ରମ ରହିଥିଲା । ଗାଁ-ଗଣ୍ଡାରେ ଆଶ୍ରମ ଥିଲା କି ନାହିଁ ତାହାର ବର୍ଣ୍ଣନା ଅବଶ୍ୟ ରାମାୟଣରେ ନାହିଁ । ଆଜିକାଲି ଭଳି ସେତେବେଳେ ତ ଗାଁମାନ ଲାଗି କରି ନଥିବ । ଗାଁମାନଙ୍କର ଅନ୍ତର୍ବର୍ତ୍ତୀ ସ୍ଥାନରେ ଜଙ୍ଗଲ ଥିବ । ସେହି ଜଙ୍ଗଲରେ ଆଶ୍ରମ ଥିବ ଏବଂ ସେହି ଆଶ୍ରମ ଗାଁ-ପିଲାମାନଙ୍କର ଶିକ୍ଷା ପ୍ରତି ଦୃଷ୍ଟି ଦେଉଥିବ । ଆବଶ୍ୟକ ସ୍ଥଳରେ କେତେକ ବଡ଼ ବଡ଼ ଗାଁରେ ଯେ ଆଶ୍ରମ ନଥିବ ତାହା କହିହେବ ନାହିଁ । ଏଥିରୁ ଏହି ସତ୍ୟ ନିଷ୍କାସିତ ହେବ ଯେ ସେତେବେଳେ ଉଭୟ ଅରଣ୍ୟ ଓ ନଗରରେ ଆଶ୍ରମ ରହିଥିଲା ଏବଂ ଆବଶ୍ୟକ ସ୍ଥଳେ କେତେକ ଗାଁରେ ମଧ୍ୟ ତାହା ଥିଲା ।

### ଶିକ୍ଷାଦାନର ପଦ୍ଧତି

ବର୍ତ୍ତମାନ ଶିକ୍ଷାଦାନର ପଦ୍ଧତି ବିଚାରଣୀୟ । ଆଚାର୍ଯ୍ୟ ଲିଖିତ ପୁସ୍ତକ ପଢ଼ାଉଥିଲେ ନା ମୌଖିକ ଭାବରେ ପଢ଼ାଉଥିଲେ ? ସେତେବେଳେ

ଲିପିର ଉଦ୍ଭାବନ ହୋଇଥିଲା କି ନାହିଁ ? ବାଲ୍ମୀକି ଯେତେବେଳେ ରାମାୟଣ ଲେଖିଲେ (ଖ୍ରୀ: ପୂ: ୫ମ ଶତାବ୍ଦୀରୁ ଖ୍ରୀ: ପୂ: ୭ଷ୍ଠ ଶତାବ୍ଦୀ ମଧ୍ୟରେ) ସେତେବେଳକୁ ଲିପିର ଉଦ୍ଭାବନ ହୋଇଥିଲା କି ନାହିଁ ? ବାଲ୍ମୀକିଙ୍କର ଲିପି ସମ୍ପର୍କରେ ଧାରଣା ଥିଲା କି ନାହିଁ ? ଏସବୁ ନିଶ୍ଚିତ ଭାବରେ କୌତୂହଳ-ପୂର୍ଣ୍ଣ ପ୍ରଶ୍ନ । ରାମାୟଣୀୟ ଶିକ୍ଷାଦାନ-ପଦ୍ଧତିର ଆଲୋଚନା ପ୍ରସଙ୍ଗରେ ଏହି ପ୍ରଶ୍ନଗୁଡ଼ିକର ସମୁଚିତ ଉତ୍ତର ଦିଆଯିବା ଆବଶ୍ୟକ । କାରଣ ବାଲ୍ମୀକି ନିଜେ ତତ୍‌କାଳୀନ ଶିକ୍ଷାଦାନ-ପଦ୍ଧତି ସମ୍ପର୍କରେ ବିଶେଷ ଭାବରେ କେଉଁଠି ହେଲେ ରାମାୟଣରେ ଆଲୋଚନା କରିନାହାନ୍ତି ।

ରାମାୟଣର ବହୁ ପୂର୍ବରୁ ବୈଦିକ କାଳରେ ମଧ୍ୟ ଲିଖନ-ପ୍ରଣାଳୀର ପ୍ରଚଳନ ଥିଲା । କିନ୍ତୁ ମୌଖିକ ପାଠ ଉପରେ ବିଶେଷ ଗୁରୁତ୍ୱ ଦିଆ-ଯାଉଥିଲା । ଏହାର ମୁଖ୍ୟତଃ ଦୁଇଟି କାରଣ ଥିଲା । ପ୍ରଥମଟି ହେଲା ଗୁରୁ-ଶିଷ୍ୟଙ୍କର ପାରସ୍ପରିକ ନିକଟ-ସମ୍ପର୍କ ଯାହାକି ଅତି ମାତ୍ରାରେ ଅନ୍ତରଙ୍ଗ ଥିଲା । ଏଭଳି କ୍ଷେତ୍ରରେ ବକ୍ତା ଓ ଶ୍ରୋତା ଉଭୟ ମୌଖିକ ଶିକ୍ଷା ପ୍ରତି ଆଗ୍ରହୀ ହୋଇ ଉଠୁଥିଲେ । ଦ୍ୱିତୀୟରେ ବୈଦିକ ମନ୍ତ୍ରଗୁଡ଼ିକର ସଠିକ ଉଚ୍ଚାରଣ ଉପରେ ଅତି ଗୁରୁତ୍ୱ ଦିଆ ଯାଉଥିଲା । ଉଚ୍ଚାରଣର ବିଭିନ୍ନତାରେ ଅର୍ଥର ବିଭିନ୍ନତା ଆସିଯାଉଥିଲା ଏବଂ ମନ୍ତ୍ର କାମ କରୁନଥିଲା । ତେଣୁ ଗୁରୁଙ୍କ ମୁଖନିଃସୃତ ବାଣୀ ଉପରେ ଶିଷ୍ୟମାନେ ଅତିମାତ୍ରାରେ ଥିଲେ ନିର୍ଭରଶୀଳ । ଏବେ ମଧ୍ୟ ଆମେ ବିଭିନ୍ନ ବିଶିଷ୍ଟ ବକ୍ତାମାନଙ୍କ ମୁଖରୁ ପ୍ରବଚନ ଶୁଣୁଛୁ । ଏହାର ଅର୍ଥ ନୁହେଁ ଯେ ଆମେ ଲିଖିତ ପୁସ୍ତକ ବିଷୟରେ ଅନଭିଜ୍ଞ । ଋଗ୍‌ବେଦରେ ଲିଖନ-ପ୍ରଣାଳୀ ସମ୍ପର୍କରେ ଯେଉଁ ପରୋକ୍ଷ ସୂଚନା ଦିଆଯାଇଛି, ତାହା ଏଠାରେ ଉଲ୍ଲେଖନୀୟ । ତନ୍ମଧ୍ୟ ଗୋଟିଏ ମନ୍ତ୍ରରେ କୁହାଯାଇଛି

> "ଜଣେ ମଣିଷ ବାଣୀକୁ ଦେଖି ମଧ୍ୟ ଦେଖିପାରେ ନାହିଁ । ଆଉ ଜଣେ ଶୁଣି ମଧ୍ୟ ଶୁଣି ପାରେ ନାହିଁ । ସୁନ୍ଦର ପୋଷାକ ପିନ୍ଧିଥିବା ପ୍ରିୟତମା ପତ୍ନୀ ନିଜକୁ ତାର ସ୍ୱାମୀଙ୍କ ନିକଟରେ ସମର୍ପଣ କରିଦେଲା ପରି ଆଉ ଜଣକ ପାଖରେ ସେହି ବାଣୀ ସହଜରେ ଆସି ଧରା ଦେଇଥାଏ ।" (୧୬)

ପ୍ରକୃତ ବେଦ-ମନ୍ତ୍ରର ଅର୍ଥ କିଏ ବୁଝିପାରେ ତାହା ଦର୍ଶାଇବା ଲାଗି ଏଠାରେ ପତି-ପତ୍ନୀଙ୍କ ସମ୍ପର୍କର ଏହି ଉଦାହରଣଟି ଦିଆଯାଇଛି । ଜଣେ ମଣିଷ ବେଦ-ମନ୍ତ୍ରକୁ ଦେଖି ମଧ୍ୟ ଦେଖି ପାରେ ନାହିଁ ବୋଲି କହିବାର ତାତ୍ପର୍ଯ୍ୟ ତେବେ କ'ଣ ? ଏହା ଯଦି ଲେଖାଯାଇ ନଥାନ୍ତା, ତେବେ ଏହାକୁ ଦେଖିବା ପ୍ରଶ୍ନ ଉଠନ୍ତା ବା କେଉଁଠୁ ? ଋଗ୍‌ବେଦର ଋଷି ଏହାର ଲିଖିତ ରୂପଟିକୁ କଳ୍ପନା ବା କରିଥାନ୍ତେ କେମିତି ? ଅତଏବ, ବୈଦିକ କାଳରେ ଲିପିର ଉଦ୍ଭାବନ

ହୋଇ ଯାଉଥିଲା, ଯଦିଓ ଆମେ ସେହି ଲିପିର ଆକୃତି ଓ ସ୍ୱରୂପ ବିଷୟରେ ସଠିକ ଉପାଦାନ ଏପର୍ଯ୍ୟନ୍ତ ପାଇ ପାରିନାହୁଁ । ସିନ୍ଧୁ ସଂସ୍କୃତିର ଅବଶେଷରୁ (ଖ୍ରୀ: ପୂ: ୨୫୦୦) ମିଳିଥିବା ଚିତ୍ରଲିପିକୁ ବୈଦିକ କାଳର ଲିପି ବୋଲି ଏସ୍. ଆର୍. ରାଓଙ୍କ ଭଳି ବିଦ୍ୱାନ କହିବାକୁ ଆରମ୍ଭ କଲେଣି । ଲେଖକ ମଧ୍ୟ ଏ ସମ୍ପର୍କରେ ଅନ୍ୟତ୍ର ସବିଶେଷ ଆଲୋଚନା କରିଛନ୍ତି । (୧୩)

ଅଶୋକଙ୍କ ପୂର୍ବରୁ (ଖ୍ରୀ. ପୂ. ୩ୟ ଶତାବ୍ଦୀ) ଥିବା କୌଣସି ଲିପି ଆମେ ଦେଖିବାକୁ ପାଉନାହୁଁ । ତାଙ୍କ ଶିଳାଲିପି ସ୍ଥାନବିଶେଷରେ ଉଭୟ ବ୍ରାହ୍ମୀ ଓ ଖରୋଷ୍ଟି ଲିପିରେ ଲିଖିତ । ଏଭଳି ଲିପିର ଉଦ୍ଭବ କ'ଣ ସେହି ଅଶୋକଙ୍କ ସମୟରେ ହୋଇଥିବ ? ଏଥିପାଇଁ ନିଶ୍ଚୟ ଅନେକ ବର୍ଷ ବିତି ଯାଇଥିବ । ଏହି ବର୍ଷମାନଙ୍କରେ ଏହାର କ୍ରମବିକାଶ ସଂଘଟିତ ହୋଇଥିବ । ତାଙ୍କ ପୂର୍ବବର୍ତ୍ତୀ ବୁଦ୍ଧଙ୍କ ସମୟରେ ମଧ୍ୟ (ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ) ଏକ ପ୍ରକାର ଲିପିର ପ୍ରଚଳନ ଥିଲା । ତାହାର ସ୍ୱରୂପ କିପରି ଥିଲା ସେ କଥା ଆମେ ଅବଶ୍ୟ କହି ପାରିବା ନାହିଁ । ପ୍ରସିଦ୍ଧ ବୌଦ୍ଧତତ୍ତ୍ୱବିତ୍ ରାଇସ୍ ଡ଼ାଭିଡ୍‌ସ (Rhys Davids) ସ୍ପଷ୍ଟ ଭାବରେ ମତ ଦେଇ କହିଛନ୍ତି ଯେ ବୌଦ୍ଧଯୁଗରେ ଲିଖନ ପ୍ରଣାଳୀର ପ୍ରଚଳନ ଥିଲା । (୧୪) ବୈଶାଳୀର ଲିଚ୍ଛବିମାନେ ନ୍ୟାୟବିଚାର କରିବା ସମୟରେ 'ପ୍ରବେଣୀ ପୁସ୍ତକ'ର (Book of Precedents) ଉପଯୋଗ କରୁଥିଲେ । ଏହା ଆଧୁନିକ ଉଚ୍ଚ ନ୍ୟାୟାଳୟମାନଙ୍କର Case Law ସହିତ ସମାନ । ବୌଦ୍ଧଗ୍ରନ୍ଥ ବିନୟପିଟକରେ (୪।୭) ମଧ୍ୟ 'ଲେଖ' ଶବ୍ଦର ଉଲ୍ଲେଖ ଅଛି । ଏଥିରୁ ଜଣାଯାଉଛି ଯେ ବୌଦ୍ଧ ଯୁଗରେ ମଧ୍ୟ ଲୋକେ ଲିଖନ ପ୍ରଣାଳୀ ଜାଣିଥିଲେ । ବାଲ୍ମୀକି ଯେଉଁ ସମୟରେ ରାମାୟଣ ଲେଖିଥିଲେ ତାହା ପ୍ରାୟ ବୁଦ୍ଧଙ୍କ ସମୟର ପାଖାପାଖି । ତେଣୁ ସେ ଲିପି ସମ୍ପର୍କରେ ସମ୍ପୂର୍ଣ୍ଣ ଅବହିତ ଥିଲେ ବୋଲି ଆମକୁ ମାନି ନେବାକୁ ପଡ଼ିବ । ବୈଦିକ କାଳରେ ଲିପିର ପ୍ରଚଳନ ଥିଲା ଏବଂ ବୁଦ୍ଧଙ୍କ ସମୟରେ ମଧ୍ୟ ଏହାର ପ୍ରଚଳନ ଥିଲା । ଅତଏବ, ଅନ୍ତର୍ବର୍ତ୍ତୀ ସମୟ ରାମାୟଣ-ଯୁଗରେ ଯେ ଲିପିର ପ୍ରଚଳନ ଥିବ ଏ କଥା ସ୍ୱୀକାର କରିବା ପାଇଁ କିଛି ବାଧା ନାହିଁ ।

ରାମାୟଣରେ ମଧ୍ୟ 'ଲେଖା' ସମ୍ପର୍କରେ ଅନେକ ସ୍ଥାନରେ ଉଲ୍ଲେଖ ଅଛି । ହନୁମାନ୍ ସୀତାଙ୍କୁ ଅଶୋକବନରେ ରାମଙ୍କର ନାମାଙ୍କିତ ମୁଦ୍ରିକାଟିଏ ଅଭିଜ୍ଞାନସ୍ୱରୂପ ଦେଇଥିବାର ଯେଉଁ ବର୍ଣ୍ଣନା ରାମାୟଣରେ ଅଛି, ତାହା ସର୍ବଜନବିଦିତ । ଲିପିର ପ୍ରଚଳନ ନଥିଲେ ମୁଦ୍ରିକାରେ ରାମଙ୍କର ନାମାଙ୍କନ ହୋଇଥିଲା କିପରି ? ଅଶୋକବନରେ ସୀତା ବନ୍ଦିନୀ ଥିବା ଅବସ୍ଥାରେ ରାବଣ

ତାଙ୍କର ପ୍ରଣୟପ୍ରାର୍ଥୀ ହୋଇଛୁ । ସୀତା ତା'ଙ୍କୁ ପ୍ରତ୍ୟାଖ୍ୟାନ କରିବାକୁ ଯାଇ ରଘୁନାଥ ରାମଙ୍କ ବଳବୀର୍ଯ୍ୟର ପ୍ରଶଂସା କରିଛନ୍ତି । ତାଙ୍କ ଭାଷାରେ :

> ଇହ ଶୀଘ୍ରଂ ସୁପର୍ବାଣୋ ଜ୍ୱଳିତାସ୍ୟା ଇବୋରଗାଃ ।
> ଇଷବୋ ନିପତିଷ୍ୟନ୍ତି ରାମଲକ୍ଷ୍ମଣଲକ୍ଷିତାଃ ।। (୧୫)

ଅର୍ଥାତ୍ ଏଠାରେ ରାମ ଓ ଲକ୍ଷ୍ମଣଙ୍କ ନାମାଙ୍କିତ ଏବଂ ସୁନ୍ଦର ସୁନ୍ଦର ଗଣ୍ଠି ଥିବା ବାଣମାନ ଜଳନ୍ତା ମୁହଁ ଥିବା ସାପମାନଙ୍କ ଭଳି ଶୀଘ୍ର ଆସି ପଡ଼ିବ । ଏଥିରୁ ଏହି ସୂଚନା ମିଳୁଛି ଯେ ବୀରମାନେ ସେମାନଙ୍କ ବାଣରେ ନିଜ ନାଁ କୁ ଲେଖାଉ-ଥିଲେ । ଲିପିର ପ୍ରଚଳନ ନଥିଲେ ଏହା କେବେ ସମ୍ଭବ ହୋଇ ପାରନ୍ତା କି ? ରାମାୟଣରେ ଠାଏ (୨।୨।୨) 'ଲେଖା' ବିଷୟରେ ସ୍ପଷ୍ଟ ଭାବରେ ଉଲ୍ଲେଖ ଅଛି ଏବଂ ଆଉ ଠାଏ (୨।୩୯।୪୩) 'ଲିଖିତ ପୁସ୍ତକ' ବିଷୟରେ ମଧ୍ୟ ଉଲ୍ଲେଖ ଅଛି । ଏଥିରେ ପୁଣି ଠାଏ (୭।୧୧୧।୫) 'ପଠ୍' ଧାତୁର ପ୍ରୟୋଗ ଅଛି । ଏହି ଧାତୁର ଅର୍ଥ ହେଉଛି ପଢ଼ିବା । ଲେଖା ଜିନିଷକୁ ହିଁ ପଢ଼ା ଯାଇଥାଏ । ଏଣୁ ରାମାୟଣ ଯୁଗରେ ଲିଖନପ୍ରଣାଳୀ ଜଣାନଥିଲା ବୋଲି କହିବା ଠିକ୍ ହେବନାହିଁ । ଶଂସିତ ଶ୍ଳୋକଟି ହେଲା

> ଅପୁତ୍ରୋ ଲଭତେ ପୁତ୍ରମଧନୋ ଲଭତେ ଧନମ୍ ।
> ସର୍ବପାପୈଃ ପ୍ରମୁଚ୍ୟତେ ପାଦମପ୍ୟସ୍ୟ ଯଃ ପଠେତ୍ ।।

ଅର୍ଥାତ୍ ଏହାର (ରାମାୟଣର) ପଠନ ଦ୍ୱାରା ପୁତ୍ରହୀନ ପୁତ୍ର ପାଇଥାଏ ଏବଂ ଧନହୀନ ଧନ ପାଇଥାଏ । ଯେ ପ୍ରତିଦିନ ଏହାର ଗୋଟିଏ ଚରଣ ମଧ୍ୟ ପଢ଼ିଥାଏ, ସେ ସର୍ବ ପାପରୁ ମୁକ୍ତି ପାଇଥାଏ । ଉକ୍ତ ଗ୍ରନ୍ଥରେ ଆଉ ଠାଏ ମଧ୍ୟ (୭।୧୧୧।୨୧) 'ପଠ୍' ଧାତୁର ପ୍ରୟୋଗ ଆମେ ଦେଖିବାକୁ ପାଇଥାଉଁ । ଉଦାହରଣ ସ୍ୱରୂପ, ଯସ୍ତ୍ୱିଦଂ ରଘୁନାଥସ୍ୟ ଚରିତଂ ସକଳଂ ପଠେତ୍ । (ଯେ ରଘୁନାଥଙ୍କର ଏହି ସକଳ ଚରିତ ପଢ଼ିଥାଏ) । ପୁନଶ୍ଚ ଏହାର ଆଉ ଗୋଟିଏ ସ୍ଥାନରେ (୧।୧।୧୦୦) ମଧ୍ୟ ଆମେ 'ପଠ୍' ଧାତୁର ପ୍ରୟୋଗ (ପଠନ୍ ଦ୍ୱିଜୋ) ଦେଖିଥାଉଁ । ଲେଖା ନଥିଲେ ପଢ଼ିବାର ପ୍ରଶ୍ନ ଉଠିବ ବା କେଉଁଠୁ ? ଏଚ୍. ଡ଼ି. ସଙ୍କାଳିଆ ମଧ୍ୟ ତାଙ୍କ ପୁସ୍ତକ **'Ramayan Myth of Reality'**ରେ ରାମାୟଣକାଳୀନ ଲିଖନପ୍ରଣାଳୀ ଉପରେ ସବିଶେଷ ଆଲୋଚନା କରିଛନ୍ତି ଏବଂ ସେତେବେଳେ ଲିଖନପ୍ରଣାଳୀ ଲୋକମାନଙ୍କ ଜଣାଥିଲା ବୋଲି ନିର୍ଣ୍ଣୟରେ ପହଞ୍ଚିଛନ୍ତି । ବ୍ରକିଙ୍ଗ୍‌ଟନ୍ କିନ୍ତୁ ଏହି ମତର ବିରୋଧ କରନ୍ତି ଏବଂ କହନ୍ତି ଯେ ରାମାୟଣରେ ଯେଉଁଠାରେ ଲେଖନ-ପ୍ରଣାଳୀ

ବିଷୟରେ ଉଲ୍ଲେଖ ଅଛି, ତାହା ପ୍ରକ୍ଷିପ୍ତ ଏବଂ ତାହା ଭାରତରେ ଲିଖନ-ପ୍ରଣାଳୀ ପ୍ରଚଳିତ ହେବାପରେ ଏଥିରେ ଅନୁପ୍ରବେଶ କରିଛି । ତାଙ୍କ ବକ୍ତବ୍ୟକୁ ଏଠାରେ ଉଦ୍ଧାର କରାଯାଇପାରେ

> However the point that all of these references (to writing) are to such specialised use may suggest that they are in fact archaic, belonging to the period when writing was known but not yet used for general communication of which the first recorded instance is the Ashokan edicts of the 3rd century B. C. Certainly there is never any reference to a written message in any of the various accounts of messengers or ambassadors going back and forth. (୧୬)

ତାଙ୍କ ଯୁକ୍ତିର ମୁଖ୍ୟ ଆଧାର ହେଲା, ଯେହେତୁ ଅଶୋକଙ୍କ ଶିଳାଲେଖ ପୂର୍ବରୁ (ଖ୍ରୀ: ପୂ: ୩ୟ ଶତାବ୍ଦୀ) ଥିବା କୌଣସି ଲିପି ଆମର ଦୃଷ୍ଟିକୁ ଆସିନାହିଁ, ରାମାୟଣ-ଯୁଗରେ ଲିପିର ପ୍ରଚଳନ ଥିଲା ବୋଲି ବିଶ୍ୱାସ କରିହେବ ନାହିଁ । ଅଶୋକଙ୍କ ଶିଳାଲେଖର ପୂର୍ବରୁ ବୌଦ୍ଧଯୁଗରେ ଏବଂ ତତ୍ପୂର୍ବରୁ ବୈଦିକ ଯୁଗରେ ଲିଖନ-ପ୍ରଣାଳୀର ପ୍ରଚଳନ ଥିବା କଥା ପୂର୍ବରୁ ଦର୍ଶାଯାଇଛି । ରାମାୟଣରେ ଏହି ବିଷୟରେ ସ୍ପଷ୍ଟ ଭାବରେ ଉଲ୍ଲେଖ ଥିବା ଦୃଷ୍ଟିରୁ ବ୍ରକିଙ୍ଗଟନ୍‌ଙ୍କ ଏ ପ୍ରକାର ଯୁକ୍ତି କଦାପି ଗ୍ରହଣୀୟ ନୁହେଁ । ଆମକୁ ତେଣୁ ନିଃସନ୍ଦେହ ଭାବରେ ମାନିନେବାକୁ ହେବ ଯେ ରାମାୟଣ ଯୁଗରେ ଲୋକେ ଲେଖି ଜାଣିଥିଲେ ।

ଏହା ସତ୍ତ୍ୱେ କିନ୍ତୁ ଅଧିକାଂଶ ଶିକ୍ଷା ମୌଖିକ ଭାବରେ ଦିଆଯାଉଥିଲା । ଏହାର କାରଣସ୍ୱରୂପ ପୂର୍ବରୁ କୁହାଯାଇଛି ଯେ ପ୍ରାଚୀନ ବୈଦିକ ପରମ୍ପରା ଉପରେ ଆଧାରିତ ରାମାୟଣ-ପରମ୍ପରାରେ ଗୁରୁ-ଶିଷ୍ୟଙ୍କ ସମ୍ପର୍କ ଥିଲା ଅତ୍ୟନ୍ତ ବ୍ୟକ୍ତିଗତ । ଗୁରୁ ପ୍ରତ୍ୟେକ ଶିଷ୍ୟ ପ୍ରତି ଅନ୍ତରଙ୍ଗ ଓ ବ୍ୟକ୍ତିଗତ ଦୃଷ୍ଟି ଦେଉଥିଲେ । ସେଥିପାଇଁ ଗୁରୁଙ୍କ ମୁଖରୁ ଶ୍ରବଣ, ଆବୃତ୍ତି, ଆଲୋଚନା ଓ ବ୍ୟକ୍ତିଗତ କଥୋପକଥନ ମାଧ୍ୟମରେ ଶିକ୍ଷାଗ୍ରହଣ ଅଧିକତର ଫଳପ୍ରଦ ହେଉଥିଲା । ରାମାୟଣ-ଯୁଗରେ ମଧ୍ୟ ଏହି ଶିକ୍ଷା-ପ୍ରଣାଳୀ ଅନୁସୃତ ହେଉଥିଲା । ନିଜ ପୁତ୍ରଙ୍କ ମୃତ୍ୟୁରେ ମର୍ମାହତ ହୋଇ ଅନ୍ଧମୁନି ବିଳାପ କରି କହୁଛନ୍ତି ଯେ ସେ ଆଉ ଏଣିକି ତାଙ୍କ ପୁତ୍ରମୁଖରୁ ମଧୁର ସ୍ୱରରେ ଶାସ୍ତ୍ରାବୃତ୍ତି ଶୁଣି ପାରିବେ ନାହିଁ ।

ଏହା ରାମାୟଣର ଅଯୋଧ୍ୟାକାଣ୍ଡରେ (୭୬।୩୬) ବର୍ଣ୍ଣିତ । ବାରମ୍ବାର ଶାସ୍ତ୍ରର ଆବୃତ୍ତିକୁ ସେତେବେଳେ ଖୁବ୍ ଗୁରୁତ୍ୱ ଦିଆ ଯାଉଥିଲା । ତଦ୍ଦ୍ୱାରା ପାଠ ଭଲ ଭାବରେ ମନେ ରହିପାରୁଥିଲା ଏବଂ ମନ୍ତ୍ରର ଉଚ୍ଚାରଣ-ବିଧି ମଧ୍ୟ ଭଗ୍ନ ହେବାର କୌଣସି ଆଶଙ୍କା ରହୁ ନଥିଲା । ସୀତା ଅଶୋକବନରେ ଥିବା ସମୟରେ ତାଙ୍କ ଦୁରବସ୍ଥା ବର୍ଣ୍ଣନା ପ୍ରସଙ୍ଗରେ କୁହାଯାଇଛି ଯେ (୫।୭୬।୧୮) ପାଠ ପଢ଼ୁଆ ଲୋକଙ୍କର ପାଠକୁ ବାରମ୍ବାର ଆବୃତ୍ତି ନକରିବା ଫଳରେ ଯେଉଁଭଳି ଦୟନୀୟ ଅବସ୍ଥା ହୁଏ, ସୀତାଙ୍କର ଅବସ୍ଥା ଠିକ୍ ସେହିଭଳି ଥିଲା । ପି. ଭି. କାଣେ ମଧ୍ୟ ଏ ସମ୍ପର୍କରେ କୁହନ୍ତି ଯେ ପ୍ରାଚୀନ ଭାରତୀୟ ପରମ୍ପରା ଅନୁଯାୟୀ ଜ୍ଞାନୀ ବ୍ୟକ୍ତିଙ୍କ ସାରା ଜୀବନ ସ୍ୱାଧ୍ୟାୟରେ ରତ ରହିବାକୁ ପଡ଼ୁଥିଲା ଏବଂ ପ୍ରତିଦିନ ପଠିତ ପାଠରୁ କିଛି କିଛି ଆବୃତ୍ତି କରିବାକୁ ପଡ଼ୁଥିଲା । ଏହାର ଏକ ମାତ୍ର ଲକ୍ଷ୍ୟ ଥିଲା ପାଠ କିପରି ଭଲ ଭାବରେ ମନେ ରହିବ । (୧୬) ଏହି ପରମ୍ପରା ତେଣୁ ରାମାୟଣ-ଯୁଗରେ ମାନ୍ୟତା ପାଉଥିବା ସ୍ୱାଭାବିକ ।

କଥୋପକଥନ ଭଙ୍ଗୀରେ ଶିକ୍ଷା ପାଇବାର ଦୃଷ୍ଟାନ୍ତ ଆମେ ପାଇଥାଉଁ ରାମ-ଲକ୍ଷ୍ମଣଙ୍କ କ୍ଷେତ୍ରରେ ଯେତେବେଳେ ସେମାନେ ଋଷି ବିଶ୍ୱାମିତ୍ରଙ୍କର ସାନ୍ନିଧ୍ୟରେ ଆସିଥିଲେ ଏବଂ ତାଙ୍କ ସହିତ ବିଭିନ୍ନ ସ୍ଥାନକୁ ଯାଇଥିଲେ । ଏହି କଥା ବାଲକାଣ୍ଡର ପଞ୍ଚବିଂଶ ସର୍ଗରୁ ଏକୋନବିଂଶ ସର୍ଗ ପର୍ଯ୍ୟନ୍ତ ଅତି ରୋଚକ ଭାବରେ ବର୍ଣ୍ଣିତ । ଅଯୋଧ୍ୟାରୁ ସିଦ୍ଧାଶ୍ରମକୁ ଯିବା ବାଟରେ ରାମ ବିଶ୍ୱାମିତ୍ରଙ୍କୁ ନାନା ପ୍ରଶ୍ନ ପଚାରୁଥାନ୍ତି ଏବଂ ସେ ଉପଦେଶ ଛଳରେ ଏହାର ସଠିକ୍ ଉତ୍ତରମାନ ଦେଉଥାନ୍ତି । ଏହି ଅବସରରେ ସେ ରାମଙ୍କୁ ଅନେକ ଦିବ୍ୟାସ୍ତ୍ର ସମ୍ପର୍କରେ ଶିକ୍ଷା ଦେଇଥିଲେ । ଆଉ ମଧ୍ୟ ସେ ରାମଙ୍କୁ 'ବଳା' ଓ 'ଅତିବଳା' ନାମକ ଦୁଇ ବିଦ୍ୟା ପ୍ରଦାନ କରିଥିଲେ, ଯାହା ଫଳରେ ରାମ ଖୁବ୍ ତେଜସ୍ୱୀ ହୋଇ ଉଠିଥିଲେ ଏବଂ ତାଙ୍କ କ୍ଷୁଧା-ତୃଷ୍ଣା ଦୂର ହୋଇ ଯାଇଥିଲା । ସିଦ୍ଧାଶ୍ରମରୁ ମିଥିଳାକୁ ଯିବା ବାଟରେ ମଧ୍ୟ ସେ ରାମ-ଲକ୍ଷ୍ମଣଙ୍କୁ ଏହିପରି ଭାବରେ ଅନେକ ଉପଦେଶ ଦେଇଥିଲେ । ସନ୍ଧ୍ୟା ସମୟରେ ଧର୍ମ, ନୀତିଶାସ୍ତ୍ର ଓ ନୈତିକ ମୂଲ୍ୟବୋଧ ଉପରେ ଆଲୋଚନା ତଥା ତର୍କ-ବିତର୍କ ହେବାଟା ସେତେବେଳେ ଆଶ୍ରମ-ଜୀବନର ଏକ ଦୈନନ୍ଦିନ କାର୍ଯ୍ୟକ୍ରମ ଥିଲା । ଯଜ୍ଞ ସମୟରେ ବାହାରୁ ଆସିଥିବା ଅନେକ ନିମନ୍ତ୍ରିତ ବିଦ୍ୱାନ୍‌ଙ୍କୁ ନେଇ ବିଭିନ୍ନ ଆଲୋଚନାଚକ୍ରମାନ ଅନୁଷ୍ଠିତ ହେଉଥିଲା । ଏତଦ୍ଦ୍ୱାରା ଛାତ୍ରମାନେ ଯେଉଁ ମୌଖିକ ଶିକ୍ଷା ପାଉଥିଲେ ତାହାର ମହତ୍ତ୍ୱ ଥିଲା ଅବର୍ଣ୍ଣନୀୟ ଏବଂ ତାହା ପୁସ୍ତକଗତ ଶିକ୍ଷାଠାରୁ ଅଧିକତର ଫଳପ୍ରଦ ହେଉଥିଲା । ଏହି ମତର ପୁଷ୍ଟି ସାଧନ ଶର୍ମାଙ୍କ ନିମ୍ନୋକ୍ତ ବକ୍ତବ୍ୟ ଦ୍ୱାରା ହୋଇଥାଏ ;

> Debates and discussions are seen being specially held on the occasion of sacrificial sessions when scholars of distant lands assembled at one place and exchanged their views. This method must have been found particularly useful for senior students who carried on their studies in specialised branches of learning. (୧୮)

ମହାରାଜ ଦଶରଥ ପୁତ୍ରକାମନାରେ ଅଶ୍ୱମେଧ ଯଜ୍ଞ କରୁଥିବା ସମୟରେ ବ୍ରାହ୍ମଣମାନେ ବିଭିନ୍ନ ତତ୍ତ୍ୱକୁ ନେଇ, ପରସ୍ପର ମଧ୍ୟରେ ଯୁକ୍ତିତର୍କରେ ବୁଡ଼ି ରହୁଥିବା କଥା ରାମାୟଣରେ (୧।୧୪।୧୯) ବର୍ଣ୍ଣିତ । ଯଜ୍ଞ ସମୟରେ ହେଉଥିବା ଏହି ତର୍କସଭା ଉପନିଷଦୀୟ ଯୁଗରେ ରାଜର୍ଷି ଜନକ ଓ ପ୍ରବାହଣ ଆଦି ଅନୁଷ୍ଠିତ କରାଉଥିବା ତର୍କସଭାମାନଙ୍କର ସମକକ୍ଷ ଭଳି ମନେହୁଏ । ଏହିପରି ଭାବରେ ରାମାୟଣଯୁଗରେ ଶିକ୍ଷାପଦ୍ଧତି ପ୍ରଚଳିତ ଥିଲା । ଲିଖିତ ପୁସ୍ତକର ପ୍ରଚଳନ ଥିଲେ ହେଁ ମୌଖିକ ଢଙ୍ଗରେ ଶିକ୍ଷା-ଦାନ ଉପରେ ଅଶେଷ ଗୁରୁତ୍ୱ ଦିଆ ଯାଉଥିଲା ।

## ଗୁରୁଙ୍କ ପ୍ରକାରଭେଦ

ରାମାୟଣରେ ତିନି ପ୍ରକାର ଗୁରୁଙ୍କର ନାମୋଲ୍ଲେଖ ଅଛି । ସେମାନେ ହେଲେ ଆଚାର୍ଯ୍ୟ, ଉପାଧ୍ୟାୟ ଓ କୁଳପତି । ଆଚାର୍ଯ୍ୟ ଓ ଉପାଧ୍ୟାୟ ନାମର ଉଲ୍ଲେଖ ତିରିଶରୁ ଅଧିକ ଥର ଦେଖା ଯାଇଥାଏ । କୁଳପତିର ଉଲ୍ଲେଖ ମାତ୍ର ଗୋଟିଏ ସ୍ଥାନରେ ଅରଣ୍ୟକାଣ୍ଡରେ (୨୦।୧।୧୨) ଅଛି । ଛାତ୍ରମାନଙ୍କଠାରୁ ଦରମା ନେଇ ପଢ଼ାଉଥିବା ଗୁରୁଙ୍କୁ କୁହାଯାଉଥିଲା ଉପାଧ୍ୟାୟ । ପ୍ରତିଟି ଗାଁ ଓ ସହରରେ ଉପାଧ୍ୟାୟମାନଙ୍କର ପାଠଶାଳା ଭରପୂର ରହୁଥିଲା । ସ୍ଥାନୀୟ ଲୋକମାନେ ଚାନ୍ଦା-ଭେଦା କରି ଉପାଧ୍ୟାୟଙ୍କର ପ୍ରାପ୍ୟ ଦେଉଥିଲେ । ଇଂରାଜୀ ଶିକ୍ଷାର ପ୍ରଚଳନ ପୂର୍ବରୁ ଆମ ଦେଶରେ ସ୍ଥିର ହୋଇ ରହିଥିବା ଚଟଶାଳୀ ବା ଚଉପାଢ଼ୀ ହେଉଛି ଉପାଧ୍ୟାୟଙ୍କ ଶିକ୍ଷାନୁଷ୍ଠାନ ସହିତ ତୁଳନୀୟ । ଅରଣ୍ୟରେ ପୁଞ୍ଜୀଭୂତ ହୋଇ ଯେଉଁ ଆଶ୍ରମପଦମାନ ଥିଲା ସେମାନଙ୍କର ଜଣେ ମୁଖ୍ୟ ଥିଲେ । ତାଙ୍କୁ କୁହା ଯାଉଥିଲା କୁଳପତି । ସମସ୍ତ ଆଶ୍ରମର ଅନ୍ତେବାସୀମାନେ ଥିଲେ କୁଳର ଅନ୍ତର୍ଗତ । ସେମାନଙ୍କ ଶିକ୍ଷା-ଦୀକ୍ଷା, ରକ୍ଷଣାବେକ୍ଷଣ ଓ ଭଲ-ମନ୍ଦ ଆଦିର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ଥିଲା । ଏହି ନାମର ଅନୁସରଣରେ ଆଧୁନିକ ବିଶ୍ୱବିଦ୍ୟାଳୟମାନଙ୍କର ଶାସନମୁଖ୍ୟଙ୍କୁ କୁଳପତି ବୋଲି

କୁହାଯାଇଛି । ରାମ ବନବାସ ସମୟରେ ଚିତ୍ରକୂଟରେ ଥିବା ଅବସରରେ ଏଭଳି ଜଣେ କୁଳପତିଙ୍କ ସମ୍ପର୍କରେ ଆସିଥିଲେ । ରାକ୍ଷସମାନଙ୍କ ଉପଦ୍ରବରୁ ନିଜ କୁଳକୁ ବଞ୍ଚାଇବା ଲାଗି ସେ କେତେକ ଆଶ୍ରମବାସୀଙ୍କ ଧରି ଅନ୍ୟତ୍ର ନିରାପଦ ସ୍ଥାନକୁ ଚାଲି ଯାଉଥିଲେ । ରାମ ଅଭୟବର ଦେବା ସତ୍ତ୍ୱେ ବି ସେ ରହି ନଥିଲେ । କିନ୍ତୁ ଆଉ କେତେକ ଆଶ୍ରମବାସୀ ରାମଙ୍କ କଥା ମାନି ରହି ଯାଇଥିଲେ ଏବଂ ରାମ ରାକ୍ଷସମାନଙ୍କ ଉପଦ୍ରବ ଦୂର କଲା ପରେ ସେମାନେ ସୁଖ ଶାନ୍ତିରେ ଆଶ୍ରମଜୀବନ ବିତାଇ ଥିଲେ । ଏଥିରୁ ଜଣାପଡ଼ୁଛି ଯେ ସାଧାରଣ ଗୁରୁ-ଶିଷ୍ୟ ପରମ୍ପରା ଭଳି କୁଳପତି-କୁଳ ପରଂପରା ସେତେଟା ନିବିଡ଼ ଓ ଦୃଢ଼ ନଥିଲା । ଶିଷ୍ୟ ପକ୍ଷରେ ଗୁରୁଙ୍କ ଆଦେଶକୁ ଟାଳି ଦେବାର ପ୍ରଶ୍ନ ହିଁ ନଥିଲା । ଅଥଚ ଏଠାରେ କୁଳପତିଙ୍କର ଆଦେଶକୁ କୁଳର କେତେକ ସଦସ୍ୟ ଉଲ୍ଲଂଘନ କରିଥିବା କଥାର ଉଲ୍ଲେଖ ଅଛି । ଏଥିରୁ ଆଉ ମଧ୍ୟ ଜଣାପଡ଼ୁଛି ଯେ ଆଶ୍ରମପଦମାନଙ୍କୁ ରକ୍ଷା କରିବାର ଦାୟିତ୍ୱ ରାଜା ଓ ରାଜପୁତ୍ରଙ୍କ ଠାରେ ଥିଲା । ଶିକ୍ଷାଯତନମାନଙ୍କରେ କପରି ବିନା ବାଧା-ବିଘ୍ନରେ ଓ ନିରବଚ୍ଛିନ୍ନ ଭାବରେ ଶିକ୍ଷାଦାନ କରାଯାଇ ପାରିବ, ସେଥି ପ୍ରତି ସେମାନେ ଦୃଷ୍ଟି ଦେଉଥିଲେ । ବାସ୍ତବରେ ଏହି ଦାୟିତ୍ୱକୁ ତୁଲାଇବା ଲାଗି ରାମ-ଲକ୍ଷ୍ମଣଙ୍କୁ ତାଙ୍କ ପିତା ମୁନି ବିଶ୍ୱାମିତ୍ରଙ୍କ ସାଥିରେ ଅରଣ୍ୟକୁ ପଠାଇଥିଲେ । ବନବାସ ସମୟରେ ମଧ୍ୟ ରାମ ତାଙ୍କର ରାଜପୁତ୍ରୋଚିତ କର୍ତ୍ତବ୍ୟକୁ ଯଥୋଚିତ ପାଳନ କରିଥିଲେ । ସେଥିପାଇଁ ସେ ଚିତ୍ରକୂଟସ୍ଥ ଆଶ୍ରମପଦମାନଙ୍କୁ ରାକ୍ଷସମାନଙ୍କ କବଳରୁ ମୁକ୍ତ କରିଥିଲେ ।

ତା' ପରେ ଆଚାର୍ଯ୍ୟଙ୍କ କଥା । ଆଚାର୍ଯ୍ୟଙ୍କ ଅତୁଳ ମହିମା ଭାରତ-ଭୂମିରେ ଯୁଗ ଯୁଗ ଧରି ପ୍ରକୀର୍ତ୍ତିତ । ବୈଦିକ କାଳରୁ ହିଁ ଏହା ଚାଲି ଆସିଛି । ପିତା-ମାତା ବାହ୍ୟ ଶରୀରକୁ ରୂପାୟିତ କରିଥାନ୍ତି; କିନ୍ତୁ ଆଚାର୍ଯ୍ୟ ଅନ୍ତଃ-ଶରୀରକୁ ରୂପାୟିତ କରିଥାନ୍ତି । ପିତା-ମାତା ଦେହର ପୁଷ୍ଟି ସାଧନ କରାଇଥାନ୍ତି; କିନ୍ତୁ ଆଚାର୍ଯ୍ୟ ଆତ୍ମାର ପୁଷ୍ଟି ସାଧନ କରାଇଥାନ୍ତି । ଆଚାର୍ଯ୍ୟଙ୍କ ପାଖକୁ ଆସିବା ପରେ ବ୍ୟକ୍ତିର ଦ୍ୱିତୀୟ ଜନ୍ମ ହୋଇଥାଏ । ତେଣୁ ତା'କୁ କୁହାଯାଏ ଦ୍ୱିଜ । ଆଚାର୍ଯ୍ୟ ଶିଷ୍ୟକୁ ନିଜ ଗର୍ଭକୁ ନେଇଯାଇ ପୁଣି ପରେ ତା'କୁ ଜନ୍ମଦାନ କରନ୍ତି ବୋଲି ଅଥର୍ବ ବେଦରେ ଠାଏ କୁହାଯାଇଛି । ସମ୍ପୃକ୍ତ ମନ୍ତ୍ରଟି ହେଲା :

ଆଚାର୍ଯ୍ୟ ଉପନୟମାନୋ ବ୍ରହ୍ମଚାରିଣଂ କୃଣୁତେ ଗର୍ଭଂ ଅନ୍ତଃ ।। (୧୯)

ଅର୍ଥାତ୍ ଆଚାର୍ଯ୍ୟ ଶିଷ୍ୟର ଦାୟିତ୍ୱ ନେଇ ତା'କୁ ନିଜର ଗର୍ଭସ୍ଥ କରି ଦିଅନ୍ତି । ଏଠାରେ ଗର୍ଭସ୍ଥ କରିଦେବାକୁ ଏକ ସାଙ୍କେତିକ ଅର୍ଥରେ ଗ୍ରହଣ କରିବାକୁ

ହେବ । ଏହାର ଅର୍ଥ ନୁହେଁ ଯେ ପ୍ରକୃତରେ ଆଚାର୍ଯ୍ୟ ଶିଷ୍ୟଙ୍କୁ ନେଇ ନିଜ ଗର୍ଭରେ ପୁରାଇ ରଖନ୍ତି । ଏହାର ଅର୍ଥ ହେଉଛି, ଆଚାର୍ଯ୍ୟ ନିଜ ଅନ୍ତରର ସକଳ ମମତା, ସକଳ ଶ୍ରଦ୍ଧା, ସକଳ ଚେଷ୍ଟା ଦେଇ ଶିଷ୍ୟଙ୍କୁ ମଣିଷଟିଏ କରି ଗଢ଼ି ତୋଳନ୍ତି, ତା'ଙ୍କୁ ନୂତନ ଜନ୍ମ ଦିଅନ୍ତି; ତା'ର ଜ୍ଞାନ-ଚକ୍ଷୁକୁ ଖୋଲି-ଦିଅନ୍ତି । ଉପନୟନ ସଂସ୍କାରର ଏହା ହିଁ ତ ହେଉଛି ପ୍ରକୃତ ଅର୍ଥ । ଉପନୟନ ସମୟରେ ଗୁରୁ ଓ ଶିଷ୍ୟଙ୍କର ହୃଦୟ ମିଶି ଯାଇଥାଏ । ଗୁରୁ ତାଙ୍କ ହାତ-ପାପୁଲିକୁ ନେଇ ଶିଷ୍ୟର ଗ୍ରୀବା ଉପରେ ରଖନ୍ତି ଏବଂ କହନ୍ତି, "ଆଜିଠାରୁ ଆମ ଦୁହିଁଙ୍କ ମଧ୍ୟରେ ଅନନ୍ତ ଶ୍ରଦ୍ଧା ଓ ବିଶ୍ୱାସ ରହୁ ।" ବୋଲି ଯାଉଥିବା ଏହି ମନ୍ତ୍ରର ନାମ 'ଶ୍ରଦ୍ଧାମନ୍ତ୍ର' । ଉପନୟନ ବିଧିରେ ଏହା ଏବେ ମଧ୍ୟ ବୋଲାଯାଉଛି । ଏହାର ତାତ୍ପର୍ଯ୍ୟ ଏବଂ ଆଚାର୍ଯ୍ୟ ଓ ଶିଷ୍ୟଙ୍କର ପାରସ୍ପରିକ ଭୂମିକା ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ଆର୍. ବି ପାଣ୍ଡେ ଯଥାର୍ଥରେ କହନ୍ତି

The sacrament symbolizes the student's entering the boundless realm of knowledge, it marks for him his destination, it asks him to be vigilant and steadfast in his path, and it reminds him of the need of complete harmony between him and his teacher. In his venture the student is assured of the help of society, of all living creatures, and of the invisible powers. (୨୦)

ଆଚାର୍ଯ୍ୟ ସରଳ ଓ ନିରାଡ଼ମ୍ବର ଜୀବନଯାପନ କରୁଥିଲେ ହେଁ ତାଙ୍କ ହୃଦୟ ଥିଲା ଖୁବ୍ ବିଶାଳ ଏବଂ ମନ ଥିଲା ଆକାଶଠାରୁ ଉଚ୍ଚତର । ନିଜର ସବୁକିଛି ଦେଇ ସେ ସମାଜର ମଙ୍ଗଳ କରିବା ପାଇଁ ଚାହୁଁଥିଲେ । ସେହି ଉଦ୍ଦେଶ୍ୟ ରଖି ସେ ଶିଷ୍ୟମାନଙ୍କ ଭରଣପୋଷଣ ଭାର ବହନ କରୁଥିଲେ । ରାଜାମାନେ ତଥା ଅନ୍ୟାନ୍ୟ ରାଜପୁରୁଷମାନେ ମୃଗୟା-ବିନୋଦନରେ ଅରଣ୍ୟକୁ ଯାଇଥିବା ଅବସରରେ ମୁନି-ଆଶ୍ରମମାନଙ୍କୁ ଯାଉଥିଲେ ଏବଂ ଆଶ୍ରମବାସୀମାନଙ୍କ ସୁଖ-ସୁବିଧା ପ୍ରତି ଦୃଷ୍ଟି ଦେଉଥିଲେ । ଏହିପରି ଭାବରେ ଶିକ୍ଷା ସମାଜର ଯଥାଯଥ ପୃଷ୍ଠପୋଷକତା ଲାଭ କରୁଥିଲା । ସ୍ୱାମୀ ନିଃଶ୍ରେୟସାନନ୍ଦ ମଧ୍ୟ ଏହି ମତର ପୁଷ୍ଟି ସାଧନ କରନ୍ତି । ଏ ସଂପର୍କରେ ତାଙ୍କର ବକ୍ତବ୍ୟ ହେଲା

The training of the young was fittingly taken up by men who led sublime lives themselves and

who had the broadness of heart to give to others their best, absolutely free. Society realised the value of such training, and wherever the teachers took up their residence, in the cities or in the forests, it voluntarily supplied them with the necessary means for the maintenance of their families as well as disciples. (୨୦-କ)

ଏହିପରି ଭାବରେ ସମାଜ ଶିକ୍ଷା ସହିତ ଓତଃପ୍ରୋତଃ ଭାବରେ ଜଡ଼ିତ ରହିଥିଲା । ସମାଜ ଆଚାର୍ଯ୍ୟଙ୍କୁ ଦେଖୁଥିଲା ଏବଂ ଆଚାର୍ଯ୍ୟ ଅତି ନିଷ୍ଠାର ସହିତ ତାଙ୍କର ସବୁ-କିଛି ସମାଜକୁ ଦାନ କରୁଥିଲେ ।

ଆଚାର୍ଯ୍ୟ ଜଣେ ହେବା ଥିଲା ଭାରି କଠିନ ବ୍ୟାପାର । ସେ ଥିଲେ ସକଳ ସଦାଚାରର ଓ ସଦ୍‌ଗୁଣର ଭଣ୍ଡାର । ସେ ଯାହା କହୁଥିଲେ, ତାହା ନିଜ ଆଚରଣରେ ଦର୍ଶାଉ ଥିଲେ । ସେଥିପାଇଁ ତ ତାଙ୍କର ନାମ ଥିଲା ଆଚାର୍ଯ୍ୟ ବା ଆଚାରର ଆକର-କ୍ଷେତ୍ର । ବକ୍ (Buck) ଆଉ ଟିକିଏ ଆଗେଇ ଯାଇ କହନ୍ତି

God himself is the supreme teacher and to a student him teacher is God, (୨୧)

ଏହା ହିଁ ତ ହେଉଛି ଆପସ୍ତମ୍ବ ଧର୍ମଶାସ୍ତ୍ରର (୩୨।୧।୨)ବାଣୀ ଯେଉଁଠି କି କୁହାଯାଇଛି ଆଚାର୍ଯ୍ୟ ହେଉଛନ୍ତି ଶିଷ୍ୟ ପକ୍ଷରେ ଭଗବାନଙ୍କ ସମତୁଲ୍ୟ ।

ଆଚାର୍ଯ୍ୟଙ୍କର ଏହି ମର୍ଯ୍ୟାଦା-ସମ୍ପନ୍ନ ସ୍ଥିତି ରାମାୟଣ ଯୁଗରେ ମଧ୍ୟ ଅବ୍ୟାହତ ରହିଥିଲା । ରାମ-ଲକ୍ଷ୍ମଣ ନିଜକୁ ଗୁରୁ ବିଶ୍ୱାମିତ୍ରଙ୍କ 'କିଙ୍କର' ବୋଲି ମନେ କରୁଥିଲେ । ସେ ଦୁହିଁଙ୍କ ପାଖରେ ରାଜପୁତ୍ରଙ୍କ ଅହଂକାର ନଥିଲା । ସେ ଦୁହିଁଙ୍କର ନିମ୍ନୋକ୍ତ ଉକ୍ତି ଏହାର ପରିଚାୟକ

ଇମୌ ସ୍ମ ମୁନିଶାର୍ଦ୍ଦୂଳ କିଙ୍କରୌ ସମୁପାଗତୌ ।
ଆଜ୍ଞାପୟ ମୁନିଶ୍ରେଷ୍ଠ ଶାସନଂ କରବାବ କିମ୍ ।। (୨୨)

ଅର୍ଥାତ୍ ହେ ମୁନିଶାର୍ଦ୍ଦୂଳ ! ଆମେ ଦୁହେଁ ଆପଣଙ୍କ କିଙ୍କର ହୋଇ ଏବେ ଉପସ୍ଥିତ । ହେ ମୁନିଶ୍ରେଷ୍ଠ ଆଦେଶ ଦିଅନ୍ତୁ ଆମେ କି ସେବା କରିବୁ ? ଶିଷ୍ୟ ସବୁବେଳେ ଗୁରୁଙ୍କର ସେବକ ବୋଲି ନିଜକୁ ଜ୍ଞାନ କରୁଥିଲା । ବିଶ୍ୱାମିତ୍ରଙ୍କ ସହିତ ସିଦ୍ଧାଶ୍ରମକୁ ଯିବା ବେଳେ ଏବଂ ସେଠାରୁ ପୁଣି ଜନକପୁରୀ ମିଥିଲାକୁ ଯିବା ବେଳେ ରାମ-ଲକ୍ଷ୍ମଣ ତାଙ୍କୁ ଯେଉଁ ସମ୍ମାନ ଓ ଭକ୍ତି ପ୍ରଦର୍ଶନ

କରିଥିବା କଥା ରାମାୟଣରେ ଅନେକ ସ୍ଥାନରେ ବର୍ଣ୍ଣିତ । ବଶିଷ୍ଠଙ୍କ ହୃଦୟ ମଧ୍ୟ ଏଥିରେ ବିକଳିତ ହୋଇ ଯାଇଥିଲା ଏବଂ ସେ ଶ୍ରଦ୍ଧାନ୍ୱିତ ହୋଇ ସ୍ୱତଃପ୍ରବୃତ୍ତ ଭାବରେ ରାମଙ୍କୁ ଅନେକ ବିଷୟର ଶିକ୍ଷା ଦେଉଥିଲେ । ଅନ୍ୟାନ୍ୟ ଆଚାର୍ଯ୍ୟ, ଯଥା, ବଶିଷ୍ଠ, କୌଣ୍ଡିନ୍ୟ, ଅଗସ୍ତ୍ୟ ଆଦିଙ୍କ ପ୍ରତି ମଧ୍ୟ ରାମ ସମଧିକ ସମ୍ମାନ ପ୍ରଦର୍ଶନ କରୁଥିଲେ । ଆଚାର୍ଯ୍ୟଙ୍କ ପାଖକୁ ଗଲାବେଳେ କିପରି ଭଦ୍ରତା ଓ ନମ୍ରତା ରକ୍ଷା କରିବାକୁ ହେବ, ତାହାର ସ୍ପଷ୍ଟ ସୂଚନା ବାଲ୍ମୀକି ରାମାୟଣରେ ଠାଏ (୫।୩୫।୬୩) ଦେଇଛନ୍ତି । ସେଠାରେ କୁହାଯାଇଛି ଯେ ଶିଷ୍ୟ ଆଚାର୍ଯ୍ୟଙ୍କ ପାଖକୁ ଗଲାବେଳେ ଯେଉଁଭଳି ନମ୍ର ବ୍ୟବହାର ଦେଖାଇ-ଥାଏ ହନୁମାନ୍ ଠିକ୍ ସେହିଭଳି ଭାବରେ ସୀତାଙ୍କ ପାଖକୁ ଗଲେ । ଆଚାର୍ଯ୍ୟଙ୍କ ନିକଟରେ ଶିଷ୍ୟ ଥିଲା ପୁତ୍ର ସମାନ । ରାମ ବାଲୀଙ୍କୁ ତିନି ପିତା ଓ ତିନି ପୁତ୍ର ବିଷୟରେ ଉଲ୍ଲେଖ କରିବାକୁ ଯାଇ କହିଛନ୍ତି (୪।୮।୧୩-୧୪) ଜ୍ୟେଷ୍ଠ-ଭ୍ରାତା, ପିତା ଓ ଆଚାର୍ଯ୍ୟ ହେଉଛନ୍ତି ତିନି ପିତା ଏବଂ କନିଷ୍ଠ ଭ୍ରାତା, ପୁତ୍ର ଓ ଶିଷ୍ୟ ହେଉଛନ୍ତି ତିନି ପୁତ୍ର । ସେହି ଦୃଷ୍ଟିରୁ ସୁଗ୍ରୀବଙ୍କ ପତ୍ନୀ ତାରା ଥିଲେ ବାଲୀଙ୍କର ପୁତ୍ରବଧୂ ସମାନ । ତାଙ୍କୁ ନିଜର ସ୍ତ୍ରୀ କରି ରଖିବାରେ ବାଲୀ ଯେ କି ପାପ କରି ବସିଛନ୍ତି ତାହା ରାମ ତାଙ୍କୁ ଦର୍ଶାଇଥିଲେ । ଅତଏବ, ସାରା ଶିକ୍ଷା-ବ୍ୟବସ୍ଥାର ଆଚାର୍ଯ୍ୟ ଯେ ଥିଲେ କେନ୍ଦ୍ର-ବିନ୍ଦୁ ଭଳି, ଏ କଥା କହିଲେ ସତ୍ୟର ଅପଲାପ ହେବ ନାହିଁ । କାଣେ ମଧ୍ୟ ଏହି ମତର ପୃଷ୍ଠପୋଷକତା କରିଥାନ୍ତି ଯେଉଁଠି ସେ କହିଥାନ୍ତି

> The teacher is the pivot of the whole educational system. (୨୩)

ରାମାୟଣ-ଯୁଗରେ ଆଚାର୍ଯ୍ୟଙ୍କ ପ୍ରତି ଏହି ଯେଉଁ ସମ୍ମାନାସ୍ପଦ ବ୍ୟବହାର ପ୍ରଦର୍ଶନ କରାଯାଉଥିଲା, ତାହା ଫଳରେ ଶିକ୍ଷା-ବ୍ୟବସ୍ଥା ଖୁବ୍ ଫଳପ୍ରଦ ଭାବରେ କାର୍ଯ୍ୟକାରୀ ହୋଇପାରୁଥିଲା ଏବଂ ରାଜାମାନେ ତଥା ସମାଜର ଅନ୍ୟ ଲୋକମାନେ ଶିକ୍ଷା ପ୍ରତି ପ୍ରାଥମିକତା ଦେବାକୁ ବାଧ୍ୟ ହେଉଥିଲେ ।

### ନାରୀଶିକ୍ଷା

ବର୍ତ୍ତମାନ ପ୍ରଶ୍ନ ହେଉଛି କେବଳ ବାଳକମାନେ ଶିକ୍ଷା ପାଉଥିଲେ ନା ବାଳିକାମାନେ ମଧ୍ୟ ଶିକ୍ଷା ପାଉଥିଲେ ? ସ୍ତ୍ରୀଶିକ୍ଷା ସମାଜରେ ଆଦୃତ ହେଉଥିଲା କି ନାହିଁ ? ରାମାୟଣରେ ସୀତା, କୌଶଲ୍ୟା, କୈକେୟୀ, ତାରା, ମନ୍ଦୋଦରୀ ଆଦି ନାରୀ ଚରିତ୍ରମାନଙ୍କର ଯେଉଁଭଳି ଭାବରେ ଅବତାରଣା କରାଯାଇଛି, ତହିଁରୁ ଅନୁମିତ ହୁଏ ଯେ ସେମାନେ ନିଶ୍ଚିତ ଭାବରେ ଶିକ୍ଷିତା ଥିଲେ । କିପରି ସତୀ-ସାଧ୍ୱୀ

ସ୍ତ୍ରୀ ହିସାବରେ ଚାଲି ପତିଙ୍କର ସହଧର୍ମିଣୀ ଓ ସହକର୍ମିଣୀ ହେବାକୁ ପଡ଼ିବ, ତତ୍ ସମ୍ପର୍କରେ ଶିକ୍ଷା ସୀତା ପିତୃଗୃହରେ ପାଇଥିବା କଥା ସେ ନିଜେ ଶାଶୁ କୌଶଲ୍ୟାଙ୍କ ଆଗରେ ଓ ଅର୍ଦ୍ଧ-ପତ୍ନୀ ଅନସୂୟାଙ୍କ ଆଗରେ ସ୍ପଷ୍ଟ ଭାବରେ ପ୍ରକାଶ କରିଥିବା ବିଷୟ ରାମାୟଣରେ ବର୍ଣ୍ଣିତ । ପୁନଶ୍ଚ ଉକ୍ତ ଗ୍ରନ୍ଥର କଥନ ଅନୁସାରେ (୩।୭୦।୭; ୪।୫୨।୧୭) ସନ୍ନ୍ୟାସିନୀ ଶବରୀ ଥିଲେ ଆଧ୍ୟାତ୍ମିକ ଜ୍ଞାନରେ ପ୍ରବୀଣା ଏବଂ ସନ୍ନ୍ୟାସିନୀ ସ୍ୱୟଂପ୍ରଭା ଥିଲେ 'ସର୍ବଜ୍ଞା' । ଅନସୂୟା ମଧ୍ୟ ତାଙ୍କର ସାରା ଜୀବନ ତପସ୍ୟାରେ କଟାଇଥିଲେ ଏବଂ ଏଭଳି ଆଧ୍ୟାତ୍ମିକ ସିଦ୍ଧିର ଅଧିକାରିଣୀ ହୋଇ ପାରିଥିଲେ ଯାହାକି ବଡ଼ ବଡ଼ ମୁନି-ଋଷିମାନଙ୍କ ପାଇଁ ସହଜଲଭ୍ୟ ନଥିଲା । ବିନା ଉପନୟନରେ ଅଥବା ବିନା ଶିକ୍ଷାରେ ଯେ ଏହି ନାରୀମାନେ ଏଭଳି ବ୍ୟବହାର ପ୍ରଦର୍ଶନ କରିଥିଲେ ଏହା କହିବାର ଅର୍ଥ ହେଉଛି ଉପନୟନ ଅଥବା ଶିକ୍ଷାର ପ୍ରକୃତ ଅର୍ଥ ପ୍ରତି ଅସମ୍ମାନ ଦର୍ଶାଇବା । ସୀତାଙ୍କ ଶିକ୍ଷା ବିଷୟରେ ମନ୍ତବ୍ୟ ଦେବାକୁ ଯାଇ ଶର୍ମା ଯଥାର୍ଥରେ କହନ୍ତି

> Now, such a character could only be the product of an efficient system of education which she must have found available to herself in her father's house. (୨୪)

ଏଣୁ ଏଥିରୁ ଆମେ ଏହି ସତ୍ୟରେ ଉପନୀତ ହେବା ଯେ ରାମାୟଣ-ଯୁଗରେ ଉଭୟ ବାଳକ ଓ ବାଳିକାମାନେ ଶିକ୍ଷା ପାଉଥିଲେ । ସ୍ତ୍ରୀଶିକ୍ଷାର ପ୍ରଚଳନ ଓ ତାହାର ସ୍ୱରୂପ ସମ୍ପର୍କରେ ଏକ ବିଶଦ ଆଲୋଚନା ପରବର୍ତ୍ତୀ ୪ର୍ଥ ପରିଚ୍ଛେଦରେ କରାଯାଉଛି । ତେଣୁ ଏଠାରେ ତାହାର ପୁନରାଲୋଚନାର ଆବଶ୍ୟକତା ନାହିଁ ।

## ବାନର ଓ ରାକ୍ଷସ ଗୋଷ୍ଠୀ ମଧ୍ୟରେ ଶିକ୍ଷା

ଆର୍ଯ୍ୟମାନଙ୍କ ମଧ୍ୟରେ ଶିକ୍ଷା କିପରି ଗୁରୁତ୍ୱ ପାଇଥିଲା ତଦ୍ ବିଷୟରେ ଉପରଲିଖିତ ଅନୁଚ୍ଛେଦମାନଙ୍କରେ ଆଲୋଚନା କରାଗଲା । ଏହା ବାନର ଓ ରାକ୍ଷସ-ଗୋଷ୍ଠୀ ମଧ୍ୟରେ ବି ସମଧିକ ଆଦର ଲାଭ କରିଥିଲା । ବାନରମାନେ ଥିଲେ ଅରଣ୍ୟବାସୀ ଆର୍ଯ୍ୟେତର ଏକ ଗୋଷ୍ଠୀ ଯେଉଁମାନେ ଆର୍ଯ୍ୟ-ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇଥିଲେ । ରାକ୍ଷସମାନଙ୍କ ଉପରେ ଏ ପ୍ରଭାବ ପଡ଼ିବାକୁ ବାକି ଥିଲା । ରାକ୍ଷସମାନେ ଆର୍ଯ୍ୟେତର ଗୋଷ୍ଠୀ ହେଲେ ହେଁ ଯେଉଁ ଅର୍ଥରେ ପୂର୍ବେ 'ଆର୍ଯ୍ୟ' ଶବ୍ଦର ଅର୍ଥ କରାଯାଉଥିଲା, ସେହି ଅର୍ଥରେ ସେମାନେ ମଧ୍ୟ ଥିଲେ ଆର୍ଯ୍ୟ ।

ଆର୍ଯ୍ୟ ଅର୍ଥ ସଂସ୍କୃତିସମ୍ପନ୍ନ । ସେମାନେ ମଧ୍ୟ ଥିଲେ ସଭ୍ୟ ଓ ସଂସ୍କୃତ ଯଦିଓ ସେମାନଙ୍କ ସଂସ୍କୃତି ଥିଲା ଉତ୍ତର ଭାରତୀୟ ଆର୍ଯ୍ୟ-ସଂସ୍କୃତିଠାରୁ ପୃଥକ୍ । ରାକ୍ଷସ ଓ ବାନରମାନଙ୍କ ମଧ୍ୟରେ ପ୍ରଭେଦ ଦର୍ଶାଇବାକୁ ଯାଇ ବ୍ରକିଙ୍ଗ୍‌ଟନ୍ ଯଥାର୍ଥରେ କହନ୍ତି

> The Raksasas therefore may be considered to reflect, not so much a forest-tribe like the Vanaras, but rather another relatively advanced culture to the south with whom the Aryans were just coming into contact. (୨୪-କ)

ରାକ୍ଷସ-ସଂସ୍କୃତିରେ ଆଧ୍ୟାତ୍ମିକତା ଅପେକ୍ଷା ବସ୍ତୁବାଦିତା ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା ।

ହନୁମାନ୍ କପିର ଶୁଙ୍କ-ପୁଚ୍ଛ ହୋଇ ବ୍ରାହ୍ମଣବେଶ ଧରି ନିର୍ଭୁଲ ଭାବରେ ବେଦ-ମନ୍ତ୍ର ଉଚ୍ଚାରଣ କରି କରି ପମ୍ପା-ସରୋବର ନିକଟରେ ରାମ-ଲକ୍ଷ୍ମଣଙ୍କ ପାଖକୁ ଆସିଥିଲେ ତାହା ପୂର୍ବରୁ ବର୍ଣ୍ଣିତ । ବାନର ସୁଷେଣ ଜଣେ ବଡ଼ ବୈଦ୍ୟ ଥିଲେ । ବାନର ନଳଙ୍କୁ ସେତୁ-ନିର୍ମାଣର କୌଶଳ ଭଲ ଜଣାଥିଲା । ବାଳୀ, ସୁଗ୍ରୀବ, ହନୁମାନ୍ ଆଦି ଥିଲେ ଜଣେ ଜଣେ ମହାନ୍ ବୀର ପୁରୁଷ । ବାନରୀ ତାରା ଥିଲେ ଜଣେ ବୁଦ୍ଧିମତୀ ମହିଳା । ସେ ବାଳୀଙ୍କୁ ରାମ ଓ ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନ କରିବା ପାଇଁ ଉପଦେଶ ଦେଇ କହିଥିବା କଥା ରାମାୟଣରେ (୪।୧୫।୨୦) ରୋଚକ ଭାବରେ ବର୍ଣ୍ଣିତ । ତାଙ୍କ ବକ୍ତବ୍ୟ ଥିଲା

> "ଅହଂ ହି ତେ କ୍ଷେମଂ ମନ୍ୟେ ତେନ ରାମେଣ ସୌହୃଦମ୍ ।
> ସୁଗ୍ରୀବେଣ ଚ ସମ୍ପ୍ରୀତିଂ ବୈରମୁତ୍ସୃଜ୍ୟ ଦୂରତଃ ।"

ଅର୍ଥାତ୍ ମୁଁ ଆପଣଙ୍କ ପାଇଁ ଏହି କଥା ଉଚିତ ମନେକରୁଛି ଯେ ଆପଣ ବୈର-ଭାବକୁ ଛାଡ଼ି ଦେଇ ରାମଙ୍କ ସହିତ ମିତ୍ରତା ସ୍ଥାପନ କରନ୍ତୁ ଏବଂ ସୁଗ୍ରୀବଙ୍କ ସାଥିରେ ମଧ୍ୟ ପ୍ରେମର ସମ୍ବନ୍ଧ ସ୍ଥାପନ କରନ୍ତୁ । ବାଳୀ ମୃତ୍ୟୁ-ଶଯ୍ୟାରେ ପଡ଼ିଥିବା ସମୟରେ ସୁଗ୍ରୀବ ଓ ଅଙ୍ଗଦଙ୍କୁ ଯେଉଁ ଉପଦେଶ ଦେଇଥିଲେ ତହିଁରୁ ଜଣାଯାଏ ଯେ ରାଜନୀତି, ସମାଜନୀତି, ଧର୍ମନୀତି ଓ ସଦାଚାର ସମ୍ପର୍କରେ ତାଙ୍କର ଭଲ ଜ୍ଞାନ ଥିଲା । ବିନା ଶିକ୍ଷାରେ କ'ଣ ଏହା କେବେ ସମ୍ଭବ ହୋଇପାରିଥିବ ? ଠିକ୍ ଅନୁରୂପ ଭାବରେ ରାବଣ, କୁମ୍ଭକର୍ଣ୍ଣ, ଇନ୍ଦ୍ରଜିତ୍ ଆଦି ରାକ୍ଷସମାନେ ମଧ୍ୟ ଜଣେ ଜଣେ ମହାନ୍ ବୀର ଥିଲେ । ରାକ୍ଷସମାନଙ୍କ ଗୃହନିର୍ମାଣ-କୌଶଳର ପଟାନ୍ତର ନଥିଲା । ସେମାନେ ଲଙ୍କାକୁ ସ୍ୱର୍ଣ୍ଣପୁରୀ କରାଇ ଦେଇଥିଲେ ।

ରାକ୍ଷସମାନଙ୍କ ମଧ୍ୟରେ ବିଭୀଷଣଙ୍କ ଭଳି ସଦାଗୁଣୀ ପୁରୁଷ ଥିଲେ ଏବଂ ତ୍ରିଜଟା ଭଳି ସଦାଗୁଣୀ ନାରୀ ଥିଲେ । ରାଣୀ ମନ୍ଦୋଦରୀ ରାବଣକୁ ଯେଉଁ ଉପଦେଶମାନ ବାରମ୍ବାର ଦେଉଥିଲେ ତହିଁରୁ ତାଙ୍କ ଦୂରଦର୍ଶିତାର ପରିଚୟ ମିଳେ । ସେ ସବୁବେଳେ ସୀତାଙ୍କୁ ରାମଙ୍କ ହାତରେ ଫେରାଇ ଦେବାପାଇଁ ପରାମର୍ଶ ଦେଉଥିଲେ । ପୁନଶ୍ଚ ରାବଣ ମଧ୍ୟ ସ୍ୱୟଂ ଥିଲା ଜଣେ ବେଦଜ୍ଞ ପଣ୍ଡିତ । ରାମାୟଣରେ ରାକ୍ଷସ-ସଭାର ଯେଉଁ ବର୍ଣ୍ଣନା ଅଛି ତହିଁରୁ ସୂଚନା ମିଳେ ଯେ ରାକ୍ଷସ ରାଜାମାନେ ରାଷ୍ଟ୍ରଶାସନର ନୀତି ବିଷୟରେ ସମ୍ପୂର୍ଣ୍ଣ ଅବହିତ ଥିଲେ । ଏହା ନିଶ୍ଚିତ ଭାବରେ ସେମାନେ ପାଇଥିବା ଶିକ୍ଷାର ଫଳଶ୍ରୁତି ହୋଇଥିବ । ଅତଏବ, ଆମକୁ ଗ୍ରହଣ କରିବାକୁ ହେବ ଯେ ବାନର ଓ ରାକ୍ଷସ ସମ୍ପ୍ରଦାୟ ମଧ୍ୟରେ ବି ଶିକ୍ଷା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା ଏବଂ ଏହି ସମ୍ପ୍ରଦାୟଦ୍ୱୟରେ ମଧ୍ୟ ଶିକ୍ଷାର ଦ୍ୱାର ଉଭୟ ପୁରୁଷ ଓ ସ୍ତ୍ରୀଙ୍କ ପାଇଁ ଉନ୍ମୁକ୍ତ ଥିଲା ।

## ଶିକ୍ଷାର ବିଷୟବସ୍ତୁ

ପୂର୍ବରୁ କୁହାଯାଇଛି ଯେ ଶିକ୍ଷାର ପଦ୍ଧତି ବିଷୟରେ ରାମାୟଣରେ ପ୍ରତ୍ୟକ୍ଷ ଭାବରେ କେଉଁଠି ହେଲେ ବର୍ଣ୍ଣନା ନାହିଁ । ଠିକ୍ ଅନୁରୂପ ଭାବରେ ଶିକ୍ଷାର ବିଷୟ-ବସ୍ତୁ ସମ୍ପର୍କରେ ମଧ୍ୟ କେଉଁଠି ହେଲେ ପ୍ରତ୍ୟକ୍ଷ ଉଲ୍ଲେଖ ନାହିଁ । ରାମାୟଣର ବିଭିନ୍ନ ଚରିତ୍ରମାନେ କେଉଁ କେଉଁ ବିଦ୍ୟାରେ ପାରଙ୍ଗମ ଥିଲେ ତାହାର ସୂଚନା ଆମେ ଇତସ୍ତତଃ ଭାବରେ ଉକ୍ତ ଗ୍ରନ୍ଥରେ ଦେଖିବାକୁ ପାଇଥାଉଁ । ସେହି ସୂଚନାରୁ ଆମେ ମୋଟାମୋଟି ଧାରଣା କରିପାରୁଁ, ତତ୍କାଳୀନ ଶିକ୍ଷାରେ କେଉଁ କେଉଁ ବିଷୟବସ୍ତୁମାନ ଅନ୍ତର୍ଭୁକ୍ତ ଥିଲା । ଶିକ୍ଷା ଦେଲା ବେଳେ ଉଭୟ ତାତ୍ତ୍ୱିକ ଜ୍ଞାନ ଓ ବ୍ୟାବହାରିକ ଜ୍ଞାନ ପ୍ରତି ସମାନ ଦୃଷ୍ଟି ଦିଆ ଯାଉଥିଲା । ବ୍ୟକ୍ତି ବ୍ରହ୍ମଚର୍ଯ୍ୟାଶ୍ରମ ପରେ ଗୃହସ୍ଥାଶ୍ରମରେ ପ୍ରବେଶ କଲେ ସାଧାରଣତଃ ଯେଉଁ ଯେଉଁ ସମସ୍ୟାଗୁଡ଼ିକର ସମ୍ମୁଖୀନ ହୋଇଥାଏ, ତତ୍ସମ୍ପର୍କରେ ଭଲ ଭାବରେ ଶିକ୍ଷା ଦିଆ ଯାଉଥିଲା । ରାମଙ୍କର ଶିକ୍ଷା ତାତ୍ତ୍ୱିକ ଥିବା ସଙ୍ଗେ ସଙ୍ଗେ ବିଶେଷ ଭାବରେ ବ୍ୟାବହାରିକ ଥିଲା ବୋଲି ରାମାୟଣରେ (୨।୧।୧୭) ବର୍ଣ୍ଣିତ । ବ୍ରିଙ୍ଗଟନ୍ ମଧ୍ୟ ଏହି ମତର ପୁଷ୍ଟିସାଧନ କରିଥାନ୍ତି, ଯେଉଁଠି ସେ କହନ୍ତି

> Rama's own education seems to have had a distinctly practical slaut. In the opening chapter of the Ayodhya Kanda he is described as taking

part in conversations with learned and respectable elders in the intervals of his weapon-training, as the best of those who know the science of the bow (dhanurvedadinam shresthah) and as versed in military tactics and various practical skills. (୨୫)

ସୀତାଙ୍କ ଆଗରେ ରାମଙ୍କର ପରିଚୟ ଦେବାକୁ ଯାଇ ହନୁମାନ୍ ତାଙ୍କୁ କହୁଛନ୍ତି ଯେ (୫।୩୫।୧୩-୧୪) ରାମ ହେଉଛନ୍ତି 'ଧନୁର୍ବେଦ' ଓ 'ଯଜୁର୍ବେଦ'ରେ ଧୁରନ୍ଧର । କେବଳ ଯଜୁର୍ବେଦର ନାମୋଲ୍ଲେଖ କରିବାର ଅର୍ଥ ନୁହେଁ ଯେ ରାମ ଖାଲି ଯଜୁର୍ବେଦ ଜାଣିଥିଲେ ଏବଂ ଅନ୍ୟ ବେଦ ଜାଣି ନଥିଲେ । ଯଜ୍ଞକର୍ମର ସମାପନ ଲାଗି ଯଜୁର୍ବେଦର ଜ୍ଞାନ ନିତାନ୍ତ ଆବଶ୍ୟକ । ସେହି ଜ୍ଞାନ ତାଙ୍କର ଭଲ ଭାବରେ ଥିଲା ବୋଲି ଏଠାରେ କୁହାଯାଇଛି । ରାମାୟଣର ଆଉ ଠାଏ (୧।୧।୧୪) ନାରଦ ମୁନି ରାମଙ୍କର ଗୁଣ ବର୍ଣ୍ଣନା କରି କହିଛନ୍ତି, ରାମ ହେଉଛନ୍ତି

> ରକ୍ଷିତା ସ୍ୱସ୍ୟ ଧର୍ମସ୍ୟ ସ୍ୱଜନସ୍ୟ ଚ ରକ୍ଷିତା ।
> ବେଦବେଦାଙ୍ଗତତ୍ତ୍ୱଜ୍ଞୋ ଧନୁର୍ବେଦେ ଚ ନିଷ୍ଠିତା ॥

ଅର୍ଥାତ୍ ରାମ ନିଜ ଧର୍ମକୁ ରକ୍ଷା କରିଥାନ୍ତି ଏବଂ ନିଜ ଲୋକଙ୍କୁ ରକ୍ଷା କରିଥାନ୍ତି । ବେଦ ଓ ବେଦାଙ୍ଗର ତତ୍ତ୍ୱ ତାଙ୍କୁ ଜଣା ଏବଂ ଧନୁର୍ବେଦରେ ତାଙ୍କର ନିଷ୍ଠା ଅଛି । ପୁଣି ପରବର୍ତ୍ତୀ ଶ୍ଲୋକରେ ତାଙ୍କୁ କୁହାଯାଇଛି 'ସର୍ବଶାସ୍ତ୍ରାର୍ଥତତ୍ତ୍ୱଜ୍ଞଃ' ବୋଲି । ଅତଏବ ରାମଙ୍କ ଶିକ୍ଷା କେବଳ ଧନୁର୍ବେଦ ଓ ଯଜୁର୍ବେଦ ମଧ୍ୟରେ ସୀମିତ ଥିଲା ବୋଲି ଭାବିବାକୁ ହେବ ନାହିଁ । ବେଦ ହେଉଛି ଚାରି, ଯଥା ଋକ୍, ଯଜୁଃ, ସାମ ଓ ଅଥର୍ବ । ବେଦାଙ୍ଗର ସଂଖ୍ୟା ହେଉଛି ଛଅ । ସେଗୁଡ଼ିକ ହେଲା ଶିକ୍ଷା (ଧ୍ୱନିତତ୍ତ୍ୱ), କଳ୍ପ (କର୍ମକାଣ୍ଡ), ବ୍ୟାକରଣ, ନିରୁକ୍ତ (ଶବ୍ଦତତ୍ତ୍ୱ), ଛନ୍ଦ ଓ ଜ୍ୟୋତିଷ । ରାମ ଓ ଦଶରଥ ଏକ ସ୍ୱତନ୍ତ୍ର ଧରଣର ଧନୁର୍ବିଦ୍ୟା ଶିକ୍ଷା ପାଇଥିବା କଥା ରାମାୟଣରେ (୨।୪।୨୦; ୨।୭୦।୭୫) ବର୍ଣ୍ଣିତ । ତାହା ହେଉଛି ଶବ୍ଦବେଧୀ ବାଣର ପ୍ରୟୋଗ । ଏହି ବିଦ୍ୟାରେ ଶବ୍ଦକୁ ଲକ୍ଷ୍ୟ କରି ବାଣ ପ୍ରୟୋଗ କରିବାକୁ ପଡ଼ୁଥିଲା ଏବଂ ତାହା ଯାଇ ଲକ୍ଷ୍ୟ ସ୍ଥଳରେ ଆଘାତ କରୁଥିଲା । ଦଶରଥ ଏଭଳି ବାଣ ପ୍ରୟୋଗ କରି ଅନ୍ଧ ମୁନିଙ୍କ ପୁତ୍ରଙ୍କୁ ଭୁଲରେ ହତ୍ୟା କରିଥିଲେ । ଅତଏବ, ଏହିସବୁ ବିଷୟ ରାମଙ୍କ ଶିକ୍ଷାର ଅନ୍ତର୍ଭୁକ୍ତ ଥିଲା ବୋଲି ଆମକୁ ଗ୍ରହଣ କରିବାକୁ ହେବ ।

ଭରତ ପିଲାଦିନେ ମାତୁଳାଳୟରେ ଥାଇ ଶିକ୍ଷାଲାଭ କରିଥିଲେ । ତାଙ୍କ ଶିକ୍ଷା ଆହୁରି ବିସ୍ତୃତ ଭାବରେ ରାମାୟଣରେ (୧।୬୮।୫୪—୫୮) ବର୍ଣ୍ଣିତ । ବେଦ ଓ ଧନୁର୍ବିଦ୍ୟା ସମ୍ପର୍କରେ ତ ସେ ଶିକ୍ଷା ପାଇଥିଲେ । ଏତଦ୍‌ବ୍ୟତୀତ ଶିଳ୍ପବିଦ୍ୟା ଓ ରାଜନୀତି ବିଦ୍ୟା ସମ୍ପର୍କରେ ମଧ୍ୟ ସେ ଶିକ୍ଷା ପାଇଥିଲେ । ପାଣିରେ ପହଁରିବା, ଖେଳ ଓ କୁସ୍ତି କସରତ କରିବା, ରଥ ଚଳାଇବା, ଚିତ୍ର ଆଙ୍କିବା, ତୁଆଁ-ତେଜିଁ କରିବା ଆଦି ବିଦ୍ୟା ମଧ୍ୟ ତାଙ୍କ ଶିକ୍ଷାର ଅନ୍ତର୍ଗତ ଥିଲା । ଆଉ ମଧ୍ୟ ସେ ହସ୍ତି-ବିଦ୍ୟା ବିଷୟରେ ତାଲିମ ପାଇଥିଲେ । ବୈଦିକ କାଳରୁ ହିଁ ଅଶ୍ୱ-ବିଦ୍ୟା ଭଳି ହସ୍ତି-ବିଦ୍ୟା ଏକ ଅଭିଜାତ ରାଜକୀୟ ବିଦ୍ୟା ଭାବରେ ପରିଗଣିତ ହୋଇ ଆସୁଥିଲା । ଲବ ଓ କୁଶ ବାଲ୍ମୀକିଙ୍କ ଆଶ୍ରମରେ ଥିବା ଅବସରରେ ଯେଉଁ ଶିକ୍ଷା ପାଇଥିଲେ ତାହାର ବିସ୍ତୃତ ବର୍ଣ୍ଣନା ମଧ୍ୟ ରାମାୟଣରେ ଦେଖିବାକୁ ମିଳିଥାଏ । ଧ୍ୱନିତତ୍ତ୍ୱ, ରସ-ଶାସ୍ତ୍ର, କର୍ମକାଣ୍ଡ, ଜ୍ୟୋତିଷ, ବାଦ୍ୟ-ଶାସ୍ତ୍ର, ସଙ୍ଗୀତ ଓ ନୃତ୍ୟ ଆଦି ତହିଁର ଅନ୍ତର୍ଗତ । ଏତଦ୍‌ବ୍ୟତୀତ ସେ ଦୁହେଁ ପୁରାଣ, ବେଦ, ବେଦାଙ୍ଗ ଓ ଧନୁର୍ବିଦ୍ୟା ମଧ୍ୟ ଶିଖିଥିଲେ । ଏଥିରୁ ଜଣାପଡ଼ୁଛି ଯେ ରାଜପୁତ୍ରମାନଙ୍କୁ ଅନେକଗୁଡ଼ିଏ ବିଷୟରେ ଶିକ୍ଷା ଦିଆ ଯାଉଥିଲା । ସେଥିପାଇଁ ତ ରାମଙ୍କୁ ସବୁ ଶାସ୍ତ୍ରର ତତ୍ତ୍ୱ ଜାଣିଥିବା ବ୍ୟକ୍ତି (ସର୍ବଶାସ୍ତ୍ରାର୍ଥତତ୍ତ୍ୱଜ୍ଞଃ) ବୋଲି କୁହାଯାଇଥିବା କଥା ପୂର୍ବରୁ ସୂଚିତ ହୋଇଛି । ଏହି ଶିକ୍ଷାର ଆଭିମୁଖ୍ୟ କ'ଣ ଥିଲା ଏବଂ କେଉଁ ଲକ୍ଷ୍ୟ-ସାଧନ ନିମିତ୍ତ ଏହା ଉଦ୍ଦିଷ୍ଟ ଥିଲା, ତାହାର ସୂଚନା ଆମେ ଶର୍ମାଙ୍କ ନିମ୍ନଲିଖିତ ବକ୍ତବ୍ୟରୁ ପାଇପାରୁଁ

> It may be stated at the very beginning that the entire training and education of a prince was directed towards three ends viz, (i) inculcating in him a sense of high respect towards dharma, the animating force of the entire social and political life of those times, (ii) invigorating him with a strong urge for public welfare, and (iii) fashioning him into an efficient and strong administrator. (୨୨)

ପ୍ରତ୍ୟେକ ବ୍ୟକ୍ତି ସ୍ୱ ସ୍ୱ ସ୍ତରରେ ସୁଗୁରୁ ରୂପେ ସ୍ୱୀୟ କର୍ତ୍ତବ୍ୟ ସମ୍ପାଦନ କରିବାରେ ସମର୍ଥ ହୋଇ ପାରିବ ସେଥିପ୍ରତି ଦୃଷ୍ଟି ଦେବା ଥିଲା ଶିକ୍ଷାର ଐକାନ୍ତିକ ଲକ୍ଷ୍ୟ । ଏହି କର୍ତ୍ତବ୍ୟ ସମ୍ପାଦନକୁ ଅନ୍ୟ ଭାଷାରେ କୁହାଯାଏ ସ୍ୱଧର୍ମ-ପାଳନ । ଗୀତାର ଛନ୍ଦେ ଛନ୍ଦେ ସ୍ୱଧର୍ମ-ପାଳନର ଯଥାର୍ଥତା ଉପରେ ବାରମ୍ବାର ଗୁରୁତ୍ୱ ଦିଆ ଯାଇଛି । ରାମାୟଣୀୟ ଶିକ୍ଷାର ମଧ୍ୟ ଥିଲା ଅନୁରୂପ ଲକ୍ଷ୍ୟ ।

ରାଜପୁତ୍ରମାନଙ୍କୁ 'ଅର୍ଥଶାସ୍ତ୍ର' ବିଷୟରେ ମଧ୍ୟ ଭଲ ଭାବରେ ଶିକ୍ଷା ଦିଆ ଯାଉଥିଲା । କାରଣ ରାଜ୍ୟ-ଶାସନରେ ଏହାର ଅବଦାନ ଥିଲା ଅପରିହାର୍ଯ୍ୟ । ତତ୍ସମ୍ପର୍କରେ ରାମାୟଣରେ ଠାଏ (୨।୨।୨୮) ଉଲ୍ଲେଖ ଅଛି । ଅର୍ଥଶାସ୍ତ୍ରକୁ ଆମେ ଏବେ ଅର୍ଥ ସଂପର୍କୀୟ ବିଦ୍ୟା ବୋଲି ଧରିଥାଉଁ ଯାହାକୁ କି ଇଂରାଜୀରେ କୁହାଯାଏ 'economics' । କିନ୍ତୁ ଭାରତୀୟ ଅର୍ଥଶାସ୍ତ୍ରର ଅର୍ଥ ଆହୁରି ବ୍ୟାପକ । ଏଥିରେ ରାଜନୀତି, ଶାସନନୀତି, ସମାଜନୀତି, ଦଣ୍ଡନୀତି, ଅର୍ଥନୀତି, ବାଣିଜ୍ୟ ଆଦି ସମସ୍ତ ବିଷୟ ଅନ୍ତର୍ଭୁକ୍ତ । ବାତ୍ସ୍ୟାୟନଙ୍କ କାମସୂତ୍ର (୧।୨୦) 'ଅର୍ଥ' ଶବ୍ଦକୁ ବ୍ୟାଖ୍ୟା କରିବାକୁ ଯାଇ କହିଥାଏ ଯେ ଏହା ହେଉଛି ଶିକ୍ଷା, ଭୂମି, ସୁନା, ଗୋମହିଷାଦି ପଶୁ, ଶସ୍ୟ, ଘରର ଆସବାବପତ୍ର, ବନ୍ଧୁ ଏବଂ ପ୍ରାପ୍ତ ବସ୍ତୁର ପରିବର୍ଦ୍ଧନ ଲାଗି ପ୍ରଯୁଜ୍ୟ । ଅତଏବ ଏହିସବୁ ବିଷୟ ଯେଉଁ ଶାସ୍ତ୍ରରେ ଉଲ୍ଲିଖିତ ତାହାର ନାମ 'ଅର୍ଥଶାସ୍ତ୍ର' । କାଣେ ମଧ୍ୟ ଏହି ମତକୁ ପରିପୁଷ୍ଟ କରନ୍ତି । ତାଙ୍କ ଭାଷାରେ

> Therefore, when wealth and prosperity of all kinds is the spring and motive of giving a name, the science treating of these is called 'arthasastra' and when the Government of the people and the punishment of offenders are the main ideas the same is called dandaniti. (୨୨)

ରାମାୟଣ-ଯୁଗରେ ଅର୍ଥଶାସ୍ତ୍ରକୁ ଏହି ଅର୍ଥରେ ହିଁ ଗ୍ରହଣ କରି ଯାଉଥିଲା । ଏହାର ପରବର୍ତ୍ତୀ ମୌର୍ଯ୍ୟ-ଯୁଗରେ ମଧ୍ୟ କୌଟିଲ୍ୟ ଏହି ଅର୍ଥକୁ ଅବଲମ୍ବନ କରି ତାଙ୍କର ଅର୍ଥଶାସ୍ତ୍ର ପୁସ୍ତକଟି ଲେଖିଥିଲେ । ଏହାର ଅଧ୍ୟୟନ ଅବସରରେ ରାଜପୁତ୍ରମାନେ ସାମ, ଦାନ ଦଣ୍ଡ ଓ ଭେଦ ଏହି ଚାରି ନୀତି ସମ୍ପର୍କରେ ଶିକ୍ଷା ପାଉଥିଲେ । ସେମାନେ ଉତ୍ତର-ଜୀବନରେ ଏହି ନୀତିଗୁଡ଼ିକୁ ପ୍ରୟୋଗ କରି ରାଜ୍ୟ-ଶାସନ କରୁଥିଲେ । ରାମାୟଣରେ ଜଣେ ସୁଶାସକ ରାଜାଙ୍କ ପକ୍ଷରେ ଛଅ ପ୍ରକାର ଗୁଣ ହାସଲ କରିବାକୁ ପଡ଼ିବ ବୋଲି ବର୍ଣ୍ଣନା କରିଯାଇଥିବାର (୨।୩।୨୭; ୨।୧୧୪।୫୫-୫୬) ଆମେ ଦେଖିବାକୁ ପାଇଥାଉଁ । ଏହି ଗୁଣ-ଗୁଡ଼ିକ ହେଲା ସନ୍ଧି (ଶାନ୍ତି), ବିଗ୍ରହ (ଯୁଦ୍ଧ), ଯାନ (ସୈନ୍ୟ-ଚାଳନ), ଆସନ (ଶିବିର ପକାଇ ବସିବା), ଦ୍ୱୈଧୀ-ଭାବ (ସୈନ୍ୟଦଳକୁ ଭାଗ ଭାଗ କରିବା), ଏବଂ ସଂଶ୍ରୟ (ଅଧିକତର ବଳଶାଳୀ ଶକ୍ତିର ଆଶ୍ରୟ ନେବା) । ଏହିସବୁ ବିଦ୍ୟା ରାଜପୁତ୍ରମାନଙ୍କୁ ଶିକ୍ଷା ଦିଆ ଯାଉଥିଲା । ରାମଙ୍କ ଗୁଣ ବର୍ଣ୍ଣନା କରିବା ଅବସରରେ ହନୁମାନ୍ ତାଙ୍କୁ 'ରାଜନୀତି-ବିଶାରଦ' (ରାଜନୀତ୍ୟାଂ ବିଶାରଦଃ)

ବୋଲି ସୀତାଙ୍କ ଆଗରେ କହିଥିବା କଥା ରାମାୟଣରେ (୫।୩୫।୧୩) ବର୍ଣ୍ଣିତ । ଏଥିରୁ ବୁଝାପଡ଼ୁଛି ଯେ ରାଜପୁତ୍ରମାନଙ୍କୁ ରାଜନୀତିବିଦ୍ୟା ବିଷୟରେ ବିଶେଷ ଭାବରେ ଶିକ୍ଷା ଦିଆଯାଉଥିଲା ।

ରାଜା ଦଶରଥ ଯେତେବେଳେ ରାମଙ୍କୁ ଯୁବରାଜ କରାଇବା ପାଇଁ ମନେ ମନେ ସ୍ଥିର କଲେ, ସେତେବେଳେ ସେ ରାଜସଭାକୁ ଡକାଇଥିଲେ ଏବଂ ସେଥିପାଇଁ ସଭାସଦମାନଙ୍କର ଆନୁଷ୍ଠାନିକ ଅନୁମତି ନେଇଥିଲେ । ଦଶରଥଙ୍କ ମୃତ୍ୟୁ ପରେ ଅଯୋଧ୍ୟାର ରାଜସଭା ବସି ଭରତଙ୍କୁ ରାଜଗାଦିରେ ବସାଇବା ପାଇଁ ନିଷ୍ପତ୍ତି ନେଇଥିଲା । ଭରତ ରାମଙ୍କୁ ବନବାସରୁ ଫେରାଇ ଆଣିବା ପାଇଁ ଯିବା ଅବସରରେ ରାମ ତାଙ୍କୁ ରାଜ୍ୟ-ଶାସନ ବିଷୟରେ ଅନେକ ପ୍ରଶ୍ନ ପଚାରିଥିଲେ ଏବଂ ଯେଉଁ ଯେଉଁ ନୀତି ଅନୁସରଣ କରି ସୁଶାସନ ଚାଲିବାର କଥା ତାହା ଅଯୋଧ୍ୟାରେ ଅନୁସୃତ ହେଉଛି କି ନାହିଁ ତଦ୍‌ବିଷୟରେ ଜାଣିବାକୁ ଚାହୁଁଥିଲେ । କୌଣସି ସଙ୍କଟ ପଡ଼ିଲେ ରାବଣ ମଧ୍ୟ ତା'ର ରାଜସଭା ଡକାଉଥିଲା ଏବଂ ସଭାସଦ୍‌ମାନଙ୍କର ସୁପରାମର୍ଶ ଗ୍ରହଣ କରୁଥିଲା । ଏଥିରୁ ଜଣାପଡ଼ୁଛି ଯେ ତତ୍କାଳୀନ ରାଜାମାନେ, ରାଜପୁତ୍ରମାନେ ଓ ରାଜସଭାର ସଦସ୍ୟମାନେ ରାଜନୀତି-ବିଦ୍ୟା ତଥା ରାଷ୍ଟ୍ରଶାସନ ସଂପର୍କରେ ଭଲ ଭାବରେ ଅବହିତ ଥିଲେ । ରାଜାମାନେ ଶାସନସଂପର୍କୀୟ ପାରଂପରିକ ନୀତିସମୂହକୁ ଅନୁସରଣ କରି ରାଜ୍ୟ-ଶାସନ କରୁଥିଲେ । ବିନା ଶିକ୍ଷାରେ ଏଭଳି ସ୍ଥିତି କେବେହେଲେ ସମ୍ଭବ ହୋଇ ପାରିନଥିବ ।

ରାଜପୁତ୍ର ଓ ରାଜକନ୍ୟାମାନଙ୍କ ଅତିରିକ୍ତ ଅନ୍ୟାନ୍ୟ ସାଧାରଣ ଲୋକେ ମଧ୍ୟ ଶିକ୍ଷାଲାଭ କରୁଥିଲେ, ଯଦିଓ ସାଧାରଣ ଲୋକଙ୍କ ଶିକ୍ଷା ବିଷୟରେ ରାମାୟଣରେ ବିଶେଷ କୌଣସି ଉଲ୍ଲେଖ ନାହିଁ । ଅବଶ୍ୟ ରାମାୟଣର ଗୋଟିଏ ସ୍ଥାନରେ (୧।୫।୨୦-୨୧) ଅଯୋଧ୍ୟାର ଲୋକମାନେ ମୃଗୟା ଓ ଧନୁର୍ବିଦ୍ୟା ଶିକ୍ଷା କରୁଥିବା ବିଷୟ ବର୍ଣ୍ଣିତ । ବର୍ଣ୍ଣଧର୍ମ ଅନୁଯାୟୀ ସ୍ୱ ସ୍ୱ କର୍ତ୍ତବ୍ୟ ବିଷୟରେ ସମସ୍ତେ ଶିକ୍ଷା ପାଇବାର ପରମ୍ପରା ବୈଦିକ କାଳରୁ ଗଢ଼ି ଆସୁଥିଲା । ଏଭଳି ସ୍ଥିତି ରାମାୟଣ-ଯୁଗରେ ନଥିବାର କିଛି କାରଣ ନାହିଁ । ରାମଙ୍କୁ ଧର୍ମର ରକ୍ଷକ (ଧର୍ମସ୍ୟ ପରିରକ୍ଷିତା) ବୋଲି ରାମାୟଣରେ (୧।୧।୧୩) କୁହା ଯାଇଛି । ବର୍ଣ୍ଣଧର୍ମ ଓ ଆଶ୍ରମଧର୍ମ ଏହି ଧର୍ମର ଅନ୍ତର୍ଗତ । ସମସ୍ତେ ନିଜ ନିଜର ବର୍ଣ୍ଣାନୁସାରୀ କର୍ମ କରିବା ଦିଗରେ ଏବଂ ବ୍ରହ୍ମଚର୍ଯ୍ୟ, ଗୃହସ୍ଥାଶ୍ରମ ଆଦି ଚାରି ଆଶ୍ରମ ପାଳିବା ଦିଗରେ ମଧ୍ୟ ରାମ ଲକ୍ଷ୍ୟ ଦେଉଥିଲେ । କାରଣ ବିନା ଶିକ୍ଷାରେ ବର୍ଣ୍ଣାଶ୍ରମ-ଧର୍ମ ପାଳିବା ଅସମ୍ଭବ । ଏଣୁ, ସେ ସମସ୍ତଙ୍କ ଶିକ୍ଷା ଦିଗରେ ଲକ୍ଷ୍ୟ ଦେଉଥିଲେ ବୋଲି ବୁଝିବାକୁ ହେବ ।

ଏହି ବିଷୟରୁ ଆମକୁ ସ୍ୱୀକାର କରିବାକୁ ହେବ ଯେ ରାମାୟଣୀୟ ଶିକ୍ଷା ଥିଲା ସାର୍ବଜନୀନ ଯଦିଓ ବ୍ୟକ୍ତିଭେଦରେ କେହି କେହି କୌଣସି ଗୋଟିଏ କିମ୍ବା ଏକାଧିକ ବିଷୟରେ ବିଶେଷ ତାଲିମ ପାଉଥିଲେ ।

ସେତେବେଳେ ଭେଷଜ-ବିଜ୍ଞାନର ମଧ୍ୟ ସମଧିକ ବିକାଶ ସାଧିତ ହୋଇଥିବାର ଜଣାଯାଏ । ଭରତ ରାମଙ୍କୁ ବନବାସରୁ ଫେରାଇ ଆଣିବା ନିମିତ୍ତ ଯେଉଁ ବିରାଟ୍ ସେନାବାହିନୀ ଧରି ଯାଇଥିଲେ ସେହି ବାହିନୀ ସାଥିରେ ବୈଦ୍ୟମାନେ ଯାଇଥିବା କଥା ରାମାୟଣରେ ବର୍ଣ୍ଣିତ । ବାନରମାନଙ୍କ ମଧ୍ୟରେ ସୁଷେଣ ନାମକ ଜଣେ ବ୍ୟକ୍ତି ଥିଲେ ଯେ କି ଥିଲେ ଭେଷଜ-ବିଜ୍ଞାନରେ ଭାରି ପ୍ରବୀଣ । ସେ ଲକ୍ଷ୍ମଣଙ୍କୁ ଦୁଇ ଥର ଚେରମୂଳି ଔଷଧର ପ୍ରୟୋଗରେ ଭଲ କରି ଦେଇଥିଲେ । ରାକ୍ଷସକୁଳରେ ଜାତ ବିଭୀଷଣଙ୍କୁ ମଧ୍ୟ ଭେଷଜ-ବିଦ୍ୟା କିଛିଟା ଜଣାଥିଲା । ରାମ ଓ ଲକ୍ଷ୍ମଣ ଶରାହତ ହୋଇ ଭୂମିରେ ପଡ଼ିଥିବା ଅବସ୍ଥାରେ ବାନରବାହିନୀ ମଧ୍ୟରେ ହାହାକାର ପଡ଼ିଯାଇ-ଥିଲା । ସେ ଦୁହିଁଙ୍କ ମୃତ୍ୟୁ ଘଟିଛି ବୋଲି ସମସ୍ତେ ଭାବିନେଇଥିଲେ । ବିଭୀଷଣ କିନ୍ତୁ ସେ ଦୁହିଁଙ୍କ ଚେହେରା ଦେଖି ଏବଂ ଦୁହିଁଙ୍କ ଦେହ ଛୁଇଁ ଜାଣିଥିଲେ ଯେ ଦୁହେଁ ମରି ନାହାନ୍ତି, ମୂର୍ଚ୍ଛା ଯାଇଛନ୍ତି ମାତ୍ର । ସେ ସ୍ପଷ୍ଟ ଭାବରେ ମତ ପ୍ରକାଶ କରି କହିଥିଲେ ଯେ ଯଥାଯଥ ଚେରମୂଳିର ପ୍ରୟୋଗରେ ସେ ଦୁହିଁଙ୍କର ମୂର୍ଚ୍ଛାଭଙ୍ଗ କରାଯାଇ ପାରିବ । ତାଙ୍କର ପରାମର୍ଶରେ ଏବଂ ସୁଷେଣଙ୍କ ନିର୍ଦ୍ଦେଶରେ ହନୁମାନ୍ ମହୋଦୟ ପର୍ବତକୁ ଯାଇ ସେଠାରୁ ଆବଶ୍ୟକ ଚେରମୂଳି ଔଷଧ ଆଣିବାରେ ରାମ-ଲକ୍ଷ୍ମଣଙ୍କ ଚେତା ଫେରି ଆସିଥିଲା । ଏହି ଔଷଧ ଥିଲା ଚାରି ନାମବିଶିଷ୍ଟ, ଯଥା, ମୃତସଞ୍ଜୀବନୀ, ବିଶଲ୍ୟକରଣୀ, ସୁବର୍ଣ୍ଣକରଣୀ ଓ ସନ୍ଧାନୀ । ମୃତସଞ୍ଜୀବନୀ ଥିଲା ମୂର୍ଚ୍ଛାଭଙ୍ଗର ଔଷଧ । ବିଶଲ୍ୟକରଣୀ ଦ୍ୱାରା ଶରୀରର ଶସ୍ତ୍ରାଘାତ ଜନିତ ବେଦନା ଦୂର ହୋଇ ଯାଉଥିଲା ଏବଂ କ୍ଷତଗୁଡ଼ିକ ଶୁଖି ଯାଉଥିଲା । ସୁବର୍ଣ୍ଣକରଣୀ ଔଷଧର ପ୍ରୟୋଗରେ ଦେହର ପୂର୍ବ କାନ୍ତି ଫେରି ଆସୁଥିଲା । ସନ୍ଧାନୀ ଔଷଧର ପ୍ରୟୋଗ ଫଳରେ ଭଙ୍ଗା ହାଡ଼କୁ ଯୋଡ଼ାଯାଇ ପାରୁଥିଲା । ରାବଣର ଶକ୍ତିପ୍ରହାର ଫଳରେ ଲକ୍ଷ୍ମଣ ଯେତେବେଳେ ମୂର୍ଚ୍ଛିତ ହୋଇ ଭୂମିରେ ଶୋଇ ରହିଥିଲେ, ସେତେବେଳେ ସୁଷେଣଙ୍କ ପରାମର୍ଶରେ ହନୁମାନ୍ ମହୋଦୟ ପର୍ବତରୁ ଉପରୋକ୍ତ ଔଷଧ ଆଣିଥିଲେ ଏବଂ ତାହାକୁ ଶୁଙ୍ଘାଇ ଦେବା ଦ୍ୱାରା ଲକ୍ଷ୍ମଣଙ୍କ ମୂର୍ଚ୍ଛାଭଙ୍ଗ ହୋଇଥିଲା । ଏହି କଥା ରାମାୟଣରେ (୬।୭୮।୩୦-୩୨, ୬।୦୧।୮।୩୦) ଅତି ରୋଚକ ଭାବରେ ବର୍ଣ୍ଣିତ । ଏଥିରୁ ଅନୁମିତ ହୁଏ ଯେ ଭେଷଜ-ବିଦ୍ୟା ମଧ୍ୟ ଶିକ୍ଷା-ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା ।

ଆଉ ଗୋଟିଏ ବିଷୟ ହେଉଛି ଶଲ୍ୟ-ଚିକିତ୍ସା । ସେତେବେଳେ ଏହା ଥିଲା କି ନାହିଁ ତାହା ବର୍ତ୍ତମାନ ବିଚାର୍ଯ୍ୟ । ଇନ୍ଦ୍ର ଅହଲ୍ୟାଙ୍କ ପ୍ରତି ବ୍ୟଭିଚାର କରିବା ଫଳରେ ଗୌତମଙ୍କ ଅଭିଶାପରେ ନିଜର ଅଣ୍ଡକୋଷ ଦୁଇଟିକୁ ହରାଇ-ଥିଲେ । ତାଙ୍କ ତରଫରୁ ଅଗ୍ନିଦେବ ଯାଇ ପିତୃଗଣଙ୍କୁ ସେମାନଙ୍କ ପାଖରେ ଥିବା ମେଷଟିର ଅଣ୍ଡକୋଷକୁ ଇନ୍ଦ୍ରଙ୍କ ଲାଗି ମାଗିଥିଲେ । ପିତୃଗଣ ତୃପ୍ତ ହୋଇ ତାହାକୁ ମେଷଠାରୁ ଉତ୍ପାଟିତ କରାଇ ଇନ୍ଦ୍ରଙ୍କଠାରେ ରୋପିତ କରାଇଥିଲେ । ଏହା ଅତି ସୁନ୍ଦର ଭାବରେ ରାମାୟଣରେ (୧।୪୯।୮) ବର୍ଣ୍ଣିତ । ମନୁଷ୍ୟଙ୍କ ଠାରେ ଏଭଳି ଅଙ୍ଗରୋପଣ ହେଉଥିବା କଥାକୁ ଲକ୍ଷ୍ୟ କରି କବି ଏଠାରେ ଇନ୍ଦ୍ରଙ୍କଠାରେ କୋଷ-ରୋପଣକୁ ଆରୋପ କରିଛନ୍ତି । ସମ୍ଭବତଃ ରାମାୟଣ ଯୁଗରେ ଶଲ୍ୟ-ଚିକିତ୍ସା ବିଷୟରେ ଶିକ୍ଷାଦାନ କରା ଯାଉଥିଲା ।

ଏତଦ୍‌ବ୍ୟତୀତ ପଶୁ-ଚିକିତ୍ସା ଦିଗରେ ମଧ୍ୟ ଏହି ଯୁଗରେ ସମଧିକ ଅଗ୍ରଗତି ହୋଇଥିବାର ଜଣାପଡ଼େ । ପଶୁମାନଙ୍କର ପ୍ରକୃତି, ଗ୍ଭଲ-ଚଳଣି, ରୋଗ ଓ ତାହାର ନିଦାନ ଏବଂ ଚିକିତ୍ସା ବିଷୟରେ ଶିକ୍ଷା ଦିଆ ଯାଉଥିଲା । ଭରତ ମାତୁଳାଳୟରେ ଥିବା ସମୟରେ ଅନ୍ୟାନ୍ୟ ବିଷୟ ମଧ୍ୟରେ କିଭଳି ଭାବରେ ହସ୍ତି-ଶିକ୍ଷା ପାଇଥିଲେ, ସେ କଥା ପୂର୍ବରୁ ବର୍ଣ୍ଣିତ । ଅଶ୍ୱ ଓ ଅନ୍ୟାନ୍ୟ ପଶୁମାନଙ୍କୁ ଖୁଆଇବା ଏବଂ ସକଳ ପ୍ରକାର ଯତ୍ନନେବା ବିଷୟରେ ରାମାୟଣରେ କୁହାଯାଇଛି । ରାମଙ୍କ ବନବାସର ଅବ୍ୟବହିତ ପୂର୍ବରୁ ଅଶ୍ୱମାନଙ୍କୁ କିଭଳି ଖାଦ୍ୟ-ପେୟ ଦିଆଯାଉଥିଲା, ତାହାର ଆଭାସ ଆମେ ରାମାୟଣରେ (୨।୪୬।୧୫; ୨।୪୪।୨୧-୨୩) ଦେଖିବାକୁ ପାଇଥାଉଁ । ଆଉ ଠାଏ (୧।୬।୨୦-୨୨) ବିଭିନ୍ନ ପ୍ରକାରର ହସ୍ତୀ ଓ ଅଶ୍ୱଙ୍କର ବର୍ଣ୍ଣନା ଦିଆଯାଇଛି । ଅତଏବ, ବୈଦିକ କାଳ ଭଳି ସେତେବେଳେ ଅଶ୍ୱବିଦ୍ୟା ଉପରେ ମଧ୍ୟ ଖୁବ୍ ଗୁରୁତ୍ୱ ଆରୋପ କରାଯାଉଥିଲା । ରାମାୟଣରେ ମଧ୍ୟ ଗୋମହିଷାଦି ପଶୁ, ଆରଣ୍ୟକ ସିଂହ, ବ୍ୟାଘ୍ର, ମୃଗ ଆଦି ପଶୁ, ଯୁଦ୍ଧରେ ବ୍ୟବହୃତ ହସ୍ତୀ, ଅଶ୍ୱ ଆଦି ପଶୁ, କାକ, ଗୃଧ୍ର, ମୟୂର ଆଦି ପକ୍ଷୀ, ଏହିଭଳି ବହୁ ପଶୁପକ୍ଷୀଙ୍କର ବର୍ଣ୍ଣନା ଦେଖାଯାଏ । ସେହି ବର୍ଣ୍ଣନା-ପ୍ରସଙ୍ଗରେ ସେମାନଙ୍କର ସ୍ୱଭାବ ଓ ପ୍ରକୃତି ସମ୍ପର୍କରେ ମଧ୍ୟ ଉଲ୍ଲେଖ ଦେଖାଯାଏ । ଏଥିରୁ ଜଣା ପଡ଼ୁଛି ଯେ ପଶୁ-ଚିକିତ୍ସା-ବିଜ୍ଞାନ ସହିତ ଜୀବବିଜ୍ଞାନ ସମ୍ପର୍କରେ ମଧ୍ୟ ସେତେବେଳେ ଶିକ୍ଷା ଦିଆ-ଯାଉଥିଲା । ବୃକଙ୍ଗ୍‌ଟନ୍ ମଧ୍ୟ ଠିକ୍ ଅନୁରୂପ ମତ ପୋଷଣ କରନ୍ତି । ତାଙ୍କ ଭାଷାରେ

The practical value of this (education) is obvious although there is also evidence of quite a familiarity with wild-life which might be dignified with the term zoology. (୨୮)

ଜ୍ୟାମିତି (Geometry) ଓ ପରିମିତି (Mensuration) ବିଷୟରେ ଶିକ୍ଷାଦାନର କେତେକ ନିଦର୍ଶନ ମଧ୍ୟ ଆମେ ରାମାୟଣରେ ଦେଖିବାକୁ ପାଇଥାଉଁ । ଦଶରଥଙ୍କ ଦ୍ୱାରା ପୁତ୍ର-କାମନାରେ କରାଯାଇଥିବା ଯଜ୍ଞ ବିଷୟକ ଉଲ୍ଲେଖରେ ଆମେ ଯଜ୍ଞ-ମଣ୍ଡପର ଯେଉଁ ବର୍ଣ୍ଣନା ଦେଖିବାକୁ ପାଇଥାଉଁ, ତହିଁରୁ ଜ୍ୟାମିତିଜ୍ଞାନର ସମ୍ୟକ୍ ସୂଚନା ମିଳିଥାଏ । ଯଜ୍ଞମଣ୍ଡପର ଯେଉଁ ସ୍ତମ୍ଭଗୁଡ଼ିକ ନିର୍ମିତ ହୋଇଥିଲା ସେଗୁଡ଼ିକର ଅଷ୍ଟଭୁଜ (ଅଷ୍ଟାଶ୍ରୀ) ଥିଲା । ଯେଉଁ ପୁରୋହିତମାନେ ଇଟାର ଯଜ୍ଞମଣ୍ଡପଟି ନିର୍ମାଣ କରିଥିଲେ ସେମାନଙ୍କୁ 'ଶୁଲ୍‌କ-କର୍ମ' (mensuration) ଭଲ ଜଣାଥିଲା, ରାମ ଓ ଲକ୍ଷ୍ମଣ ଉଭୟଙ୍କୁ ବାସ୍ତୁ-ବିଦ୍ୟା ମଧ୍ୟ ଭଲ ଜଣାଥିଲା । ଏହି ଜ୍ଞାନ ଫଳରେ ସେମାନେ ସୁନ୍ଦର ଭାବରେ ସେମାନଙ୍କ ଆଶ୍ରମ-କୁଟୀରକୁ ନିର୍ମାଣ କରିପାରିଥିଲେ । ଏଥିରୁ ଜଣାପଡ଼ୁଛି ଯେ ଜ୍ୟାମିତି, ଶୁଲ୍‌କକର୍ମ ବା ପରିମିତି ମଧ୍ୟ ତତ୍‌କାଳୀନ ଶିକ୍ଷାର ଅନ୍ତର୍ଭୁକ୍ତ ଥିଲା ।

ପୂର୍ବରୁ କୁହାଯାଇଛି ଯେ ସେତେବେଳେ ବେଦାଙ୍ଗ ମଧ ଶିକ୍ଷାର ଅନ୍ତର୍ଭୁକ୍ତ ଥିଲା । ଛଅ ପ୍ରକାର ବେଦାଙ୍ଗ ମଧରେ ଜ୍ୟୋତିଷ ଅନ୍ୟତମ । ଅତଏବ ଜ୍ୟୋତିଷ ବିଷୟରେ ମଧ ସେତେବେଳେ ଶିକ୍ଷା ଦିଆଯାଉଥିଲା । ରାମାୟଣରେ ଆମେ ଅନେକ ସ୍ଥାନରେ ବିଭିନ୍ନ ଗ୍ରହ-ନକ୍ଷତ୍ରଙ୍କ ନାମ ଓ ସେମାନଙ୍କ ଗତି ବିଷୟରେ ସୂଚନା ପାଇଥାଉଁ । ସୂର୍ଯ୍ୟଙ୍କ ଦକ୍ଷିଣାୟନ ଗତି ସମ୍ପର୍କରେ ଏଥିରେ (୩।୧୬।୮) ଯେଉଁ ବର୍ଣ୍ଣନା ଅଛି, ତାହା ଏଠାରେ ଉଲ୍ଲେଖନୀୟ । ରାମଙ୍କ ଜାତକ ଆଧାର, ଭଲ ମୁହୂର୍ତ୍ତ ଦେଖି ତାଙ୍କର ଅଭିଷେକ କରାଇବା ପାଇଁ ଦଶରଥଙ୍କର ସଂକଳ୍ପ, ଶୁଭ ମୁହୂର୍ତ୍ତରେ ରାମଙ୍କର ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ ଲାଗି ନିଷ୍ପତ୍ତି ଆଦି ବିଷୟରେ ରାମାୟଣରେ ଯେଉଁ ବର୍ଣ୍ଣନା ଅଛି, ତାହା ତତ୍‌କାଳୀନ ଜ୍ୟୋତିଷ-ଜ୍ଞାନର ଆଉ ଗୋଟିଏ ଗୋଟିଏ ନିଦର୍ଶନ । ଦଶରଥ ରାମଙ୍କ ଅଭିଷେକ ସମ୍ପର୍କରେ ସଭାସଦ୍‌ମାନଙ୍କ ଆଗରେ ପ୍ରସ୍ତାବଟି ଉପସ୍ଥାପିତ କଲାବେଳେ (୨।୨।୧୬) ତାଙ୍କୁ ପୁଣ୍ୟନକ୍ଷତ୍ରଯୁକ୍ତ ଚନ୍ଦ୍ରଙ୍କ ଭଳି ଜଣେ ସୁନ୍ଦର ପୁରୁଷ ବୋଲି ବର୍ଣ୍ଣନା କରିଛନ୍ତି । ଆଉ ଠାଏ ମଧ ବିଶ୍ୱାମିତ୍ରଙ୍କ ସହିତ ରାମ ଓ ଲକ୍ଷ୍ମଣ ଚାଲୁଥିଲା ବେଳେ ଚନ୍ଦ୍ରଙ୍କ ସାଥିରେ ନୂଆ କରି ଉଦିଁ ଆସୁଥିବା ପୁନର୍ବସୁ ନକ୍ଷତ୍ରଦ୍ୱୟ ଭଳି ଦିଶୁଥିବା କଥାର ଉଲ୍ଲେଖ ଅଛି । ସେତେବେଳେ ଯେ

ଜ୍ୟୋତିର୍ବିଦ୍ୟା ଷ୍ଟୁବ୍ ଲେକର୍ପ୍ରିସ୍ଙ୍କ ଥିଲା ଏ ବିଷୟରେ ବ୍ରକଙ୍ଗ୍ଟନ ମଧ୍ୟ ସହମତ । ତାଙ୍କର ନିମ୍ନୋକ୍ତ ଉକ୍ତି ଏଠାରେ ଉଲ୍ଲେଖନୀୟ :

> From the number of similes alluding to the stars and planets at all stages of the epic, it is evident that some basic astronomy was known at an early date. (୨୯)

ଏହିସବୁ ନିଦର୍ଶନରୁ ଆମକୁ ମାନି ନେବାକୁ ହେବ ଯେ ଅନ୍ୟାନ୍ୟ ବିଷୟ ମଧ୍ୟରେ ଜ୍ୟୋତିଷ-ବିଦ୍ୟା ମଧ୍ୟ ତତ୍କାଳୀନ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା ।

ଏହା ତ ଗଲା ସାଧାରଣ ବିଦ୍ୟା କଥା । ଏତଦ୍‌ବ୍ୟତୀତ ଅଛି କେତେକ ଅସାଧାରଣ ତଥା ରହସ୍ୟମୟ ବିଦ୍ୟା ଥିଲା ଯେଉଁ ବିଷୟରେ ମଧ୍ୟ ଶିକ୍ଷା ଦିଆ ଯାଉଥିବାର ନିଦର୍ଶନ ରାମାୟଣରେ ମିଳିଥାଏ । ପୂର୍ବରୁ 'ବଳା' ଓ 'ଅତିବଳା' ବିଦ୍ୟା ବିଷୟରେ କୁହାଯାଇଛି ଯାହାକି ବିଶ୍ୱାମିତ୍ରଙ୍କଠାରୁ ରାମ ଶିକ୍ଷା କରିଥିଲେ । ଏହା ଦ୍ୱାରା ତାଙ୍କର କ୍ଷୁତ୍‌ପିପାସା ଦୂର ହେବା ସଙ୍ଗେ ସଙ୍ଗେ ତାଙ୍କଠାରେ ଅସୀମ ବଳ-ବୀର୍ଯ୍ୟର ସଞ୍ଚାର ହୋଇଥିଲା । ରାମାୟଣରେ ଠାଏ (୧।୨୨।୨୭) 'ସ୍ୱଚ୍ଛନ୍ଦବଳଗାମିନୀ ବିଦ୍ୟା'ର ନାମୋଲ୍ଲେଖ ଅଛି । ଏହି ବିଦ୍ୟାର ଅଧିକାରୀ ବ୍ୟକ୍ତି ନିଜ ଇଚ୍ଛା ଅନୁସାରେ ସକଳ ସ୍ଥାନକୁ ଯାଇପାରିବାର ଶକ୍ତି ହାସଲ କରୁଥିଲେ । 'ସର୍ବଭୂତରୁତବିଦ୍ୟା'ର ଅଧିକାରୀ (୨।୩୫।୧୭) ସବୁ ପ୍ରାଣୀଙ୍କ ଭାଷାକୁ ବୁଝି ପାରୁଥିଲେ । କୈକେୟୀ ଏଭଳି ବିଦ୍ୟାର ଅଧିକାରିଣୀ ଥିଲେ । 'ଚକ୍ଷୁଷ୍ମତୀବିଦ୍ୟା' ବଳରେ (୪।୫୮।୨୭) ଶହେ ଯୋଜନ ଦୂର ପର୍ଯ୍ୟନ୍ତ ଦେଖି ହେଉଥିଲା । ଗୃଧ୍ରମାନେ ଏହି ବିଦ୍ୟାର ଅଧିକାରୀ ଥିଲେ । 'କାମରୂପଧାରିଣୀ ବିଦ୍ୟା'ର ଅଧିକାରୀ (୬।୩୬।୭-୮) ନିଜ ଇଚ୍ଛା ଅନୁସାରେ ରୂପ ଧାରଣ କରିପାରୁଥିଲେ । ବାନର ଓ ରାକ୍ଷସମାନେ ଥିଲେ ଏହି ବିଦ୍ୟାରେ ସିଦ୍ଧହସ୍ତ । 'ଭୂତବିନାଶିନୀ ବିଦ୍ୟା' ବଳରେ (୭।୬୬।୭) ଶିଶୁମାନଙ୍କୁ ଭୂତପ୍ରେତ ଓ ଦୁଷ୍ଟ ଗ୍ରହମାନଙ୍କ କବଳରୁ ରକ୍ଷା କରାଯାଇ ପାରୁଥିଲା । ବାଲ୍ମୀକି ଏହି ବିଦ୍ୟାର ସାହାଯ୍ୟ ନେଇ ଲବ-କୁଶ ଦୁହିଁଙ୍କୁ ରକ୍ଷା କରିଥିଲେ । ସେ ମଧ୍ୟ ଆଉ ଗୋଟିଏ ରହସ୍ୟମୟ ବିଦ୍ୟାର ଅଧିକାରୀ ଥିଲେ । ତାହାର ନାମ ହେଉଛି 'ତ୍ରିକାଳଜ୍ଞତା ବିଦ୍ୟା' (୧।୩।୭), ଯାହା ଫଳରେ ସେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍, ଏହି ତିନିକାଳର କଥା ଜାଣିପାରୁଥିଲେ । 'ଅଣିମା' ବିଦ୍ୟାର ପ୍ରଭାବରେ ବ୍ୟକ୍ତି ଆକାଶରେ ବିଚରଣ କରି ପାରୁଥିଲେ । ହନୁମାନ୍ ଥିଲେ ଏହି ବିଦ୍ୟାର ଅଧିକାରୀ ।

ରାମାୟଣ ଯୁଗରେ ଯେଉଁ ଭାଷାର ଚଳଣି ଥିଲା ତାହା ଏବେ ବର୍ଣ୍ଣନା । ସଂସ୍କୃତର ଅର୍ଥ ହେଲା ଶୁଦ୍ଧପୂତ ବା ନିର୍ମଳ । ଯେଉଁ ଭାଷାରୁ ସମସ୍ତ ମଇଳା ଦୂର ହୋଇଯାଇଛି, ତାହା ହେଉଛି ସଂସ୍କୃତ । ଏହା ହେଉଛି ଦେବଭାଷା । ଦେବତାମାନେ ଏହି ଭାଷାରେ କଥାବାର୍ତ୍ତା ହୁଅନ୍ତି । ତେଣୁ ଏହି ଭାଷାରେ ସେମାନଙ୍କ ଉଦ୍ଦେଶ୍ୟରେ ସମସ୍ତ ସ୍ତୋତ୍ର, ଆବାହନ-ମନ୍ତ୍ର ଆଦି ଲିଖିତ । ଏହା ଏକ ଅଭିଜାତ ଭାଷା ହୋଇଥିବାରୁ ଏହା ରାଜ-ଦରବାରରେ ମଧ୍ୟ ଥିଲା ପ୍ରଚଳିତ । ଏହି ପରମ୍ପରା ଭାରତରେ ବୈଦିକ କାଳରୁ ହିଁ ଗଢ଼ି ଆସୁଥିଲା । ରାମାୟଣଯୁଗରେ ମଧ୍ୟ ଏହି ସ୍ଥିତି ଥିବାର ମନେହୁଏ । ସର୍ବସାଧାରଣ ଲୋକେ କିନ୍ତୁ ଆଉ ଗୋଟିଏ ଭାଷାରେ କଥାବାର୍ତ୍ତା ହେଉଥିଲେ । ତାହା ଥିଲା ପ୍ରାକୃତ ଭାଷା ବା ସର୍ବସାଧାରଣ ଭାଷା । ରାମାୟଣରେ ଆମେ ଏହି ଦୁଇ ପ୍ରକାର ଭାଷା ସଂପର୍କରେ ଉଲ୍ଲେଖ ଦେଖିବାକୁ ପାଇଥାଉଁ । ହନୁମାନ୍ ଥିଲେ ଜାତିରେ ବାନର । ତାଙ୍କ ଭାଷା ଥିଲା ସଂସ୍କୃତେତର, ସମ୍ଭବତଃ ପ୍ରାକୃତ । ସେହି ଭାଷାରେ କଥାବାର୍ତ୍ତା କଲେ କାଳେ ସେ ଧରା ପଡ଼ିଯିବେ, ତେଣୁ ସେ ବ୍ରାହ୍ମଣବେଶ ଧରି ପମ୍ପା ସରୋବର ନିକଟରେ ରାମ-ଲକ୍ଷ୍ମଣଙ୍କ ପାଖକୁ ଅଗ୍ରସର ହେଲାବେଳେ ସଂସ୍କୃତ ଭାଷାରେ ବେଦ-ମନ୍ତ୍ର ଉଚ୍ଚାରଣ କରି କରି ଯାଇଥିଲେ । ଏଥିରୁ ଜଣାପଡ଼ୁଛି ଯେ ବ୍ରାହ୍ମଣମାନଙ୍କର ଭାଷା ଥିଲା ସଂସ୍କୃତ । ଆଉ ମଧ୍ୟ ହନୁମାନ୍ ସୀତାଙ୍କୁ ଠାବ କରିବା ପରେ ତାଙ୍କ ସାଙ୍ଗରେ କଥାବାର୍ତ୍ତା କରିବାକୁ ଗଲାବେଳେ ଭଦ୍ରଜନୋଚିତ ସଂସ୍କୃତ ଭାଷାରେ କଥାବାର୍ତ୍ତା (ବାଚଂ ମାନୁଷୀଂ ସଂସ୍କୃତମ୍) କରିଥିବା କଥା ରାମାୟଣରେ (୫।୨୮।୧୭) ବର୍ଣ୍ଣିତ । ସେ ତେଣୁ ଦ୍ୱିଜମାନଙ୍କର ଭାଷା ସଂସ୍କୃତରେ (ଦ୍ୱିଜାତିରିବ ସଂସ୍କୃତମ୍) କଥାବାର୍ତ୍ତା କରିଥିଲେ । ରାକ୍ଷସ ଇଲ୍ୱଲ ମଧ୍ୟ ବ୍ରାହ୍ମଣମାନଙ୍କୁ ଛଳନା ପ୍ରଦର୍ଶନ ପୂର୍ବକ ଭୋଜନ ପାଇଁ ନିମନ୍ତ୍ରଣ କଲାବେଳେ ସଂସ୍କୃତ ଭାଷା ବ୍ୟବହାର କରି (ସଂସ୍କୃତଂ ବଦନ୍) ସେମାନଙ୍କୁ ଡ଼ାକୁଥିବା କଥା ରାମାୟଣରେ (୩।୧୦।୫୫) ଉଲ୍ଲିଖିତ । ଅତଏବ ବାନରମାନଙ୍କର ଭାଷା ଥିଲା ସଂସ୍କୃତଠାରୁ ପୃଥକ୍ । ସମ୍ଭବତଃ ରାକ୍ଷସମାନଙ୍କ ଭାଷା ସେଇଆ ହିଁ ଥିଲା । ଋଷି ଭରଦ୍ୱାଜ ଶୁଦ୍ଧ ଭାଷାରେ କଥା କହୁଥିବା କଥା ରାମାୟଣରେ ଆଉ ଠାଏ (୨।୮୫।୧୯) ଉଲ୍ଲିଖିତ । ଅନୁମିତ ହୁଏ ଯେ ସେତେବେଳେ ଦୁଇ ପ୍ରକାର ଭାଷା ପ୍ରଚଳିତ ଥିଲା । ଗୋଟିଏ ହେଉଛି ସଂସ୍କୃତ ଯାହାକି ଥିଲା ରାଜଭାଷା । ଏହାକୁ ଶିକ୍ଷିତ ଓ ଦ୍ୱିଜଗୋଷ୍ଠୀର ଲୋକେ ବ୍ୟବହାର କରୁଥିଲେ । ଆଉ ଗୋଟିଏ ଥିଲା ପ୍ରାକୃତ ଯାହାକୁ ଆର୍ଯ୍ୟେତର ଗୋଷ୍ଠୀର ଲୋକେ ତଥା ଗାଁ ଗଣ୍ଡାର ସର୍ବସାଧାରଣ ଲୋକେ ବ୍ୟବହାର କରୁଥିଲେ । ଏହା ସତ୍ତ୍ୱେ ଶିକ୍ଷାର ମାଧ୍ୟମ ଥିଲା କେବଳ ସଂସ୍କୃତ ଭାଷା ।

ଉପରୋକ୍ତ ଆଲୋଚନା ଦୃଷ୍ଟେ ଆମେ ପ୍ରାଚୀନ ଭାରତୀୟ ଶିକ୍ଷା ବିଷୟରେ ନିମ୍ନଲିଖିତ ସିଦ୍ଧାନ୍ତରେ ଉପନୀତ ହୋଇ ପାରିବା

କ) ପ୍ରାଚୀନ ଭାରତୀୟ ଶିକ୍ଷା ଥିଲା ଉଭୟ ଆଚରଣନିଷ୍ଠ ଓ ବିଚାରନିଷ୍ଠ ଏବଂ ଏଥିରେ ଆଚାରକୁ ବିଚାରଠାରୁ ଅଧିକ ପ୍ରାଥମିକତା ଦିଆ ଯାଉଥିଲା; ତେଣୁ ଶିକ୍ଷାଦାତାଙ୍କୁ କୁହାଯାଉଥିଲା ଆଚାର୍ଯ୍ୟ ।

ଖ) ଏହି ଶିକ୍ଷା ମୁଖ୍ୟତଃ ବୈଦିକ ପରଂପରା ଉପରେ ଥିଲା ଆଧାରିତ ।

ଗ) ଏହା ଶିଷ୍ୟର ଅନ୍ତର୍ନିହିତ ଅନନ୍ତ ଶକ୍ତି ଓ ସମ୍ଭାବନାକୁ ପରିସ୍ଫୁରିତ କରୁଥିଲା ଏବଂ ତା'ର ଦିବ୍ୟ ଚେତନାକୁ ବିକଶିତ କରୁଥିଲା ।

ଘ) ଉପନୟନ ସଂସ୍କାରର ପାଳନ-ବିଧି ଅନୁକ୍ରମରେ ଗୁରୁଗୃହରେ ଶିକ୍ଷାଦାନ କରା ଯାଉଥିଲା ।

ଙ) ଆଶ୍ରମରେ ଶିକ୍ଷାଦାନ କରାଯାଉଥିଲା ଏବଂ ଉଭୟ ଅରଣ୍ୟ ଓ ନଗରରେ ଆଶ୍ରମମାନ ଥିଲା ।

ଚ) ଲିଖନ-ପ୍ରଣାଳୀ ପ୍ରଚଳିତ ଥିଲେ ହେଁ ଶିକ୍ଷାଦାନର ପଦ୍ଧତି ମୁଖ୍ୟତଃ ଥିଲା ମୌଖିକ ।

ଛ) ଗୁରୁ-ଶିଷ୍ୟଙ୍କର ସମ୍ପର୍କ ପିତା-ପୁତ୍ରଙ୍କ ସମ୍ପର୍କ ଭଳି ଥିଲା ପୂତ-ପବିତ୍ର ଓ ନିତାନ୍ତ ଅନ୍ତରଙ୍ଗ ।

ଜ) ଗୁରୁ ଦୁଇ ଶ୍ରେଣୀର ଥିଲେ, ଯଥା, ଉପାଧ୍ୟାୟ ଓ ଆଚାର୍ଯ୍ୟ ।

ଝ) ଆଶ୍ରମଗୁଡ଼ିକ ରାଜଶକ୍ତି ଦ୍ୱାରା ଥିଲା ସୁରକ୍ଷିତ ଏବଂ ସବୁ ବର୍ଣ୍ଣର ଲୋକେ ସେମାନଙ୍କର ବର୍ଣ୍ଣୋପଯୋଗୀ ଶିକ୍ଷା କିପରି ପାଇବେ ତାହା ଦେଖିବା ଥିଲା ରାଷ୍ଟ୍ରର ଏକ ପ୍ରଧାନ କର୍ତ୍ତବ୍ୟ ।

ଞ) ଆଚାର୍ଯ୍ୟ ଶିଷ୍ୟ ପାଇଁ ଥିଲେ ଦେବତୁଲ୍ୟ ଏବଂ ସେ ଶ୍ରଦ୍ଧାଳୁ ଭାବରେ ଖୋଲା ମନରେ ତାଙ୍କ ଅର୍ଜିତ ସକଳ ବିଦ୍ୟା ଶିଷ୍ୟକୁ ଦାନ କରୁଥିଲେ ।

ଟ) ଶିକ୍ଷା ଚାରି ପ୍ରକାର ଥିଲା, ଯଥା, ଶିକ୍ଷା, ବିନୟ, ଉପଦେଶ ଓ ଅଧ୍ୟୟନ ।

ଠ) ଶିକ୍ଷା ଥିଲା ସାର୍ବଜନୀନ ଏବଂ ଉଭୟ ପୁରୁଷ ଓ ସ୍ତ୍ରୀ ଏହାର ଅଧିକାରୀ ଥିଲେ ।

ଡ) ଆବଶ୍ୟକ ସ୍ଥଳେ ବିଭିନ୍ନ ବ୍ୟକ୍ତିଙ୍କୁ ନିର୍ଦ୍ଦିଷ୍ଟ କେତେକ ବିଷୟରେ ବିଶାରଦ-ଜ୍ଞାନ ଆହରଣ କରିବାର ସୁଯୋଗ ଦିଆଯାଉଥିଲା ଏବଂ ବର୍ଣ୍ଣଭେଦରେ ଶାସ୍ତ୍ରର ପ୍ରାଧାନ୍ୟରେ ପରିବର୍ତ୍ତନ ଆସୁଥିଲା ।

ଢ) ଚାରି ବେଦ, ଛଅ ବେଦାଙ୍ଗ, ଯଥା, ଶିକ୍ଷା (ଧ୍ୱନିତତ୍ତ୍ୱ), କଳ୍ପ (କର୍ମକାଣ୍ଡ), ବ୍ୟାକରଣ, ନିରୁକ୍ତ (ଶବ୍ଦତତ୍ତ୍ୱ), ଛନ୍ଦ ଓ ଜ୍ୟୋତିଷ ଆଦି ଥିଲା ସାଧାରଣ ଭାବରେ ଶିକ୍ଷାର ବିଷୟବସ୍ତୁ ।

ଣ) ରାଜପୁତ୍ର ଓ କ୍ଷତ୍ରିୟ କୁମାରମାନଙ୍କୁ ଧନୁର୍ବିଦ୍ୟା, ରଥଚାଳନ, ହସ୍ତି-ଚାଳନ, ଅଶ୍ୱଚାଳନ, ରାଜଧର୍ମ, ଆଦି ବିଷୟରେ ବିଶେଷ ଭାବରେ ଶିକ୍ଷା ଦିଆ-ଯାଉଥିଲା ।

ତ) ବ୍ୟାବହାରିକ ବିଦ୍ୟା, ଯଥା, ଭେଷଜ-ବିଦ୍ୟା, ଅସ୍ତ୍ରଚିକିତ୍ସା, ବାଣିଜ୍ୟ, ଅର୍ଥନୀତି, ପଶୁଚିକିତ୍ସା, ଜୀବବିଜ୍ଞାନ ଆଦି ବିଷୟରେ ମଧ୍ୟ ଶିକ୍ଷା ଦିଆ-ଯାଉଥିଲା ।

ଥ) ଗାନ୍ଧର୍ବବିଦ୍ୟା (ନୃତ୍ୟ, ଗୀତ, ବାଦ୍ୟ ଆଦି) ଏବଂ ଚାରୁକଳା ମଧ୍ୟ ଥିଲା ଶିକ୍ଷା-କାର୍ଯ୍ୟକ୍ରମର ଅନ୍ତର୍ଗତ ।

ଦ) ଆର୍ଯ୍ୟ, ବାନର ଓ ରାକ୍ଷସ ଆଦି ସବୁ ଗୋଷ୍ଠୀର ଲୋକେ ଶିକ୍ଷାର ପ୍ରାଧାନ୍ୟ ଉପଲବ୍‌ଧି କରୁଥିଲେ ଏବଂ ଶିକ୍ଷାର ଅଧିକାରୀ ଥିଲେ ।

ଧ) ପତ୍ନୀ କିପରି ପତିଙ୍କର ସହକର୍ମିଣୀ ଓ ସହଧର୍ମିଣୀ ହୋଇପାରିବ ସେଥିପାଇଁ ସେ ଉପଯୁକ୍ତ ଶିକ୍ଷା ପିତୃଗୃହରେ ପାଉଥିଲା ।

ନ) ରାମାୟଣ-ଯୁଗରେ ଉଭୟ ସଂସ୍କୃତ ଓ ପ୍ରାକୃତ ଭାଷାର ପ୍ରଚଳନ ଥିଲା । ବୁଦ୍ଧିଜୀବୀ ଓ ଶିକ୍ଷିତ ଲୋକମାନେ ସଂସ୍କୃତ ଭାଷା ବ୍ୟବହାର କରୁଥିଲା ବେଳେ ସର୍ବସାଧାରଣ ଲୋକେ ପ୍ରାକୃତ ଭାଷା ବ୍ୟବହାର କରୁଥିଲେ । ଶିକ୍ଷାର ମାଧ୍ୟମ କିନ୍ତୁ ଥିଲା ସଂସ୍କୃତ ଭାଷା; କାରଣ ତାହାକୁ ଶୁଦ୍ଧ ଭାଷା ବୋଲି ଧରାଯାଉଥିଲା ।

ଉପରୋକ୍ତ ଆଲୋଚନାରୁ ଆମେ ଜାଣି ପାରିବା, କିପରି ଭାବରେ ଶିକ୍ଷା ଓ ସଂସ୍କୃତିର ସ୍ରୋତ ମୁଖ୍ୟତଃ ଅରଣ୍ୟରୁ ଗ୍ରାମ ଓ ନଗର ଆଡ଼କୁ ପ୍ରବାହିତ ହେଉଥିଲା । ରାଜାମାନେ ଏହାର ପୃଷ୍ଠପୋଷକତା କରୁଥିଲେ ହେଁ ପ୍ରକୃତରେ ଏହାକୁ ଅତି ଯତ୍ନରେ ଧରି ରଖିଥିଲେ ସରଳ ଓ ନିରଳସ ଜୀବନଯାପନ କରୁଥିବା ମୁନି-ଋଷିମାନେ । ରାମାୟଣରେ ଏହି ଋଷିମାନଙ୍କ ଜୀବନ ବିଷୟରେ କିଭଳି ଭାବରେ ସୂଚନା ଦିଆଯାଇଛି, ତାହା ଅନୁଧ୍ୟାନ କରିବା ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ ହେବ । ତଦ୍‌ବିଷୟରେ ପରେ ଆଲୋଚନା କରାଯିବ ।

## ଟିପ୍‌ପଣୀ

(୧) Balasastri Hardas, Glimpses of the Vedic Nation, p. 245.

(୧-କ) Rai Promatha Nath Mullick Bahadur, The Mahabharata as It was and Ever shall Be, p. 38.

(୧-କ) Swami Nihsreyasananda, "The Culture of the Ramayana", The Cultural Heritage of India, Vol.II, p. 36.

(୨) ରାମାୟଣ, ୨।୨।୩୯ ।

(୩) ମନୁସ୍ମୃତି, ୨।୧୮ ।

(୩-କ) ଅଥର୍ବ, ୧।୧୦୮ ।

(୪) Balsastri Hardas, op. cit., Meghasthenes quoted p. 236.

(୫) Swami Nihsreyasananda, op. cit., p. 36.

(୬) ରାମାୟଣ, ୧।୬।୬ ।

(୭) J. L. Brockington, Righteous Rama : Evolution of an Epic, p. 182.

(୭-କ) Radhakumud Mukherjee, "Ancient Indian Education", The Cultural Heritage of India, Vol. II, p. 640.

(୮) R. Sharma, A Socio-Political Study of the Valmiki Ramayana, Motilal Banarasidass 1983), p. 113.

(୯) R. K. Mookerji, Ancient Indian Education, pp. 343-344.

(୧୦) J. L. Brockington, op. cit., p. 184.

(୧୦-କ) Radhakumud Mukherji, "Ancient Indian Education", The Cultural Heritage of India, Vol.II, p. 649.

(୧୧) Ibid, p. 344.

(୧୨) ଋଗ୍‌ବେଦ, ୧୦।୭୧।୪ । ଶଂସିତ ମନ୍ତ୍ରଟି ହେଲା

"ଉତ ତ୍ୱଃ ପଶ୍ୟନ୍ନ ଦଦର୍ଶ ବାଚମୁତ
ତ୍ୱଃ ଶୃଣ୍ୱନ୍ନ ଶୃଣୋତ୍ୟେନାମ୍ ।
ଉତ ଉ ତ୍ୱସ୍ମୈ ତନ୍ୱଂ ବିସସ୍ରେ
ଜାୟେବ ପତ୍ୟେ ଉଶତୀ ସୁବାସାଃ ।"

(୧୩) ସୁରେନ୍ଦ୍ରନାଥ ଶତପଥୀ, ଭାରତୀୟ ସଂସ୍କୃତି—ପ୍ରାଗୈତିହାସିକ ପର୍ବ, ତୃତୀୟ ପରିଚ୍ଛେଦ ।

(୧୪) Rhys Davids, Budhist India, Motital Banarasi-dass (Reprint 1981), Chapter VII.

(୧୫) ରାମାୟଣ, ୫।୨୧।୨୫ ।

(୧୬) J. L. Brockington, op. cit, p. 186.

(୧୭) P. V. Kane, History of Dharmasastra, Vol II, Part-I, p. 356.

(୧୮) R. Sharma, op. cit, p. 124.

(୧୯) ଅଥର୍ବ ବେଦ, ୧୧।୫।୩ ।

(୨୦) R. B. Pandey, "Hindu Sacraments (Sanskaras)" The Cultural Heritage of India, Vol. II, p. 406.

(୨୦-କ) Swami Nihshreyasananda, "The Culture of the Ramayana", The Cultural Heritage of India, Vol. II, p. 39.

(୨୧) Harry M. Buck, "The Role of the Sacred Book in Religion—The Ramayana", The Ramayana Tradition in India, Sahitya Akademi (1980), p. 50.

(୨୨) ରାମାୟଣ, ୧।୩୧।୪ ।

(୨୩) P. V. Kane, History of Dharma-Sastra, Vol. II, p. 326.

(୨୪) R. Sharma, op. cit, p. 75.

(୨୪-କ) J. L. Brockington, op. cit, p. 123.

(୨୫) Ibid, p. 181.

(୨୬) R. Sharma, op. cit: p. 305.

(୨୭) P. V. Kane, History of Dharmasastra, Vol. III, p. 7.

(୨୮) J. L. Brockington, op. cit, p. 185.

(୨୯) Ibid.



## ଚତୁର୍ଥ ପରିଚ୍ଛେଦ

# ନାରୀସମାଜ

ପୁରୁଷ ପାଖରେ ନାରୀ ଯୁଗ ଯୁଗ ଧରି ରହସ୍ୟମୟୀ ହୋଇ ରହି ଆସିଛି । କେତେବେଳେ ସେ କରୁଣାର ଅବତାର ତ ପୁଣି ଆଉ କେତେବେଳେ ଜିଘାଂସାର ଜ୍ୱଳନ୍ତ ପ୍ରତିମୂର୍ତ୍ତି । କେତେବେଳେ ସେ ଏକନିଷ୍ଠ ପ୍ରେମର ପ୍ରତୀକ ତ ପୁଣି ଆଉ କେତେବେଳେ ଅବିଶ୍ୱାସ ଓ ଅଶ୍ରଦ୍ଧାର ପଚମାନ ପରିବେଶରେ ଘୂର୍ଣ୍ଣାୟମାନ କୀଟ । ଜାୟା, ଜନନୀ ଓ ଭଗିନୀର ବହୁ ରୂପ ନେଇ ତା'ର ଆବିର୍ଭାବ । ନାରୀର ରହସ୍ୟମୟତାକୁ ଅଧିକତର ଜଟିଳ କରି ଦେଇଛି ପୁରୁଷପ୍ରଧାନ ସମାଜର ଯୁଗ ଯୁଗ ଧରି ଗଢ଼ି ଆସୁଥିବା ଚିନ୍ତାଧାରା । ପୁରୁଷ ନାରୀ ଅପେକ୍ଷା ସମାଜରେ ନିଜକୁ ଅଧିକତର ପ୍ରାଥମିକତା ଦେଇଆସିଛି ଏବଂ ସେହି ପ୍ରାଥମିକତାକୁ ଯୁକ୍ତିସିଦ୍ଧ କରିବା ପାଇଁ ସେ ନାରୀ ସମ୍ପର୍କରେ ନାନା ପ୍ରକାର ଗଳ୍ପର ଅବତାରଣା କରିଛି । ଏ ସମ୍ପର୍କରେ ରାଧାକୃଷ୍ଣନ୍‌ଙ୍କ ନିମ୍ନୋକ୍ତ ମନ୍ତବ୍ୟ ଯଥେଷ୍ଟ ଆଲୋକ-ପ୍ରଦାନ କରିଥାଏ

> Men, who are responsible for many of the views about women, have indulged in fantastic stories about their nature and men's superiority to them. They have nearly exhausted their ingenuity in portraying the mystery and sactity of women, as well as their glamour and instability. (୧)

ରାମାୟଣୀୟ ସମାଜ ପ୍ରାଚୀନ ବୈଦିକ ସମାଜ ପରି ଥିଲା ପୁରୁଷପ୍ରଧାନ । ପୁଣି ବୈଦିକ ସମାଜରେ ନାରୀର ଯେଉଁ ସ୍ଥିତି ଥିଲା ରାମାୟଣ-ଯୁଗ ବେଳକୁ ତାହାର ଯଥେଷ୍ଟ ଅବକ୍ଷୟ ଘଟି ସାରିଲାଣି । ରାମାୟଣର କଥାବସ୍ତୁ ମୁଖ୍ୟତଃ ଆର୍ଯ୍ୟମାନଙ୍କର କେତେକ ବୀରତ୍ୱମୂଳକ ଅଭିଯାନର କାହାଣୀ ଯେଉଁଥିରେ କି ପୁରୁଷମାନେ ସ୍ୱାଭାବିକ ଭାବରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । କାବ୍ୟର ପରିପୁଷ୍ଟି-ସାଧନ ଲାଗି କେବଳ ଯାହା କେତେଗୁଡ଼ିଏ ନାରୀଚରିତ୍ରର ଅବତାରଣା କରାଯାଇଛି । ତାହା ସତ୍ତ୍ୱେ ଏହି ନାରୀଚରିତ୍ରସମୂହ ମାଧ୍ୟମରେ ରାମାୟଣକାଳୀନ ସମାଜରେ ନାରୀମାନଙ୍କ ସ୍ଥିତି କିଭଳି ଥିଲା, ସେ ବିଷୟରେ ଯଥେଷ୍ଟ ଜ୍ଞାନଲାଭ କରିହୁଏ । ସେହି ଦୃଷ୍ଟିରୁ ବିଚାର କଲେ

ଉକ୍ତ ସମାଜରେ ଥିବା ନାରୀର ସ୍ୱରୂପ ଓ ସ୍ଥିତି ସମ୍ପର୍କରେ ଆଲୋଚନା କରିବା ନିଶ୍ଚିତ ଭାବରେ ଶିକ୍ଷାପ୍ରଦ ତଥା କୌତୂହଳୋଦ୍ଦୀପକ ।

**ବୈଦିକ ପରଂପରା**

ପ୍ରଥମେ ରାମାୟଣ-ଯୁଗରେ ନାରୀର ସାମାଜିକ ସ୍ଥିତି ସଂପର୍କରେ କେଉଁ ପ୍ରାଚୀନ ପରମ୍ପରା କେତେ ଦୂର ପ୍ରଭାବ ପକାଉଥିଲା ତାହା ବିଚାର୍ଯ୍ୟ । କାରଣ ନାରୀ-ପୁରୁଷର ସଂପର୍କ ଗଢ଼ିଆସିଥିଲା କାହିଁ କେଉଁ ପ୍ରାଗୈତିହାସିକ ଯୁଗରୁ । ବୈଦିକ ଯୁଗରେ ଏହା ଏକ ନିର୍ଦ୍ଦିଷ୍ଟ ସ୍ପଷ୍ଟତର ରୂପ ନେଇଥିଲା ଏବଂ ଏହି ରୂପ ସମାଜରେ ଏକ ଦୃଢ଼ ଭିତ୍ତିଭୂମି ପକାଇ ପାରିଥିଲା । ସେତେବେଳକୁ ନାରୀ ଆଉ ପୁରୁଷର ବ୍ୟକ୍ତିଗତ ସମ୍ପତ୍ତି ହୋଇ ନଥିଲା କିମ୍ବା ତା'କୁ କେବଳ ଯୌନଜୀବନରେ ସୁଖୀ କରାଇବା ପାଇଁ ବିଚାର କରାଯାଉ ନଥିଲା । ପରିବାରରେ, ସମାଜରେ ତଥା ରାଷ୍ଟ୍ରରେ ତା'ର ଈଶ୍ୱର ସ୍ତୂପ ପଡ଼ି ଯାଇଥିଲା । ସେ ପୁରୁଷର ଅର୍ଦ୍ଧାଙ୍ଗିନୀରୁ ପରିବାର, ସମାଜ ଓ ରାଷ୍ଟ୍ରର ଅର୍ଦ୍ଧାଙ୍ଗିନୀ ହୋଇ-ଯାଇଥିଲା । ତା'ର ଉନ୍ନତି ଉପରେ ପରିବାର, ସମାଜ ତଥା ରାଷ୍ଟ୍ରର ଉନ୍ନତି ଥିଲା ନିର୍ଭରଶୀଳ । ସେ ପ୍ରାୟ ପୁରୁଷ ସହିତ ସମାନ ହୋଇଯାଇଥିଲା । ଘୋଷା, ଅପାଲା, ବିଶ୍ୱବାରା ଆଦି ଅନେକ ମହୀୟସୀ ନାରୀ ବେଦର ମନ୍ତ୍ରସମୂହ ରଚନା କରିଥିଲେ । ଉପନିଷଦ୍ ଯୁଗର ଗାର୍ଗୀ ତ ଏକ ପ୍ରବାଦ-ରମଣୀ ହୋଇ ରହି ଯାଇଛନ୍ତି । ସେ ଋଷି ଯାଜ୍ଞବଲ୍‌କ୍ୟଙ୍କ ସହିତ ବ୍ରହ୍ମବିଦ୍ୟାସଂପର୍କୀୟ ଯୁକ୍ତିରେ ଅବତୀର୍ଣ୍ଣା ହୋଇଥିଲେ ଏବଂ ନାନା ପ୍ରକାର ଅନ୍ତର୍ଭେଦୀ ପ୍ରଶ୍ନ ପଚାରି ତାଙ୍କୁ ବିବ୍ରତ କରି ଦେଇଥିଲେ । ଶେଷକୁ ସେ ଆଉ ଉତ୍ତର ନପାଇ କହିଥିଲେ, 'ଗାର୍ଗୀ, ତୁମେ ଆଉ ଯଦି ଅଧିକ ବଢ଼ି ପ୍ରଶ୍ନ କରିବ ତେବେ ତୁମ ମୁଣ୍ଡ ଛିଡ଼ିପଡ଼ିବ ।' (୧-କ) ମୁଦ୍‌ଗଲାନୀଙ୍କ ଭଳି ନାରୀ ରଥଚାଳନ-ବିଦ୍ୟାରେ ଅପାର ପଟୁତା ହାସଲ କରି ତାଙ୍କ ସ୍ୱାମୀ ମୁଦ୍‌ଗଲଙ୍କୁ ରଥଚାଳନ-ପ୍ରତିଯୋଗିତାରେ ବିଜୟୀ ହେବା ପାଇଁ ସାହାଯ୍ୟ କରିଥିଲେ । ରାଜା ଖେଲଙ୍କ ପତ୍ନୀ ବିଶ୍‌ପଲା ନିଜ ସ୍ୱାମୀଙ୍କ ମୃତ୍ୟୁ ପରେ ଆର୍ଯ୍ୟ-ଦାସଙ୍କ ମଧ୍ୟରେ ଚାଲିଥିବା ଯୁଦ୍ଧକୁ ସ୍ଥଗିତ ନକରି ଖୁବ୍ ସାହସିକତାର ସହିତ ନିଜ ସୈନ୍ୟବାହିନୀକୁ ପରିଚାଳିତ କରିଥିଲେ ଏବଂ ନିଜର କଟା ଗୋଡ଼ ଜାଗାରେ ଲୁହାର ଗୋଡ଼ଟିଏ ଲଗାଇ ଯୁଦ୍ଧ କରିଥିଲେ । ଏହା ଫଳରେ ସେ ଅନ୍ତରେ ଦାସମାନଙ୍କୁ ପରାଭୂତ କରିପାରିଥିଲେ । (୧-ଖ) ଏଥିରୁ ଜଣାପଡ଼ୁଛି ଯେ କୌଣସି ସାହସିକ କର୍ମସାଧନ ଲାଗି ନାରୀତ୍ୱ ସେତେବେଳେ ବାଧାସ୍ୱରୂପ ଦଣ୍ଡାୟମାନ ହେଉ ନଥିଲା ।

ବୈଦିକ ବିବାହରେ ପୁରୁଷ ଓ ନାରୀର ମିଳନକୁ ଏକ ଅତି ପବିତ୍ର ମିଳନ ବୋଲି ଧରାଯାଉଥିଲା । ଏହାକୁ ଚିରନ୍ତନ ବୋଲି ଆଖ୍ୟାତ କରି

କୁହାଯାଉଥିଲା ଯେ ଏହା କେବେ ଛିନ୍ନ ହେବାର ନୁହେଁ । ସ୍ତ୍ରୀ ସ୍ୱାମୀ-ଗୃହକୁ ଆସିବା ପରେ ତା'ର ପିତୃଗୃହର ସମସ୍ତ ସମ୍ପର୍କ ଛିନ୍ନ କରି ଦେଉଥିଲା । ସ୍ୱାମୀ ଓ ସ୍ତ୍ରୀ ପରସ୍ପରକୁ ସ୍ନେହ, ପ୍ରୀତି, ସଦ୍‌ଭାବ ଆଦି ଦେଇ ବିବାହ-ବନ୍ଧନକୁ କ୍ରମେ ଦୃଢ଼ରୁ ଦୃଢ଼ତର କରୁଥିଲେ । ଉଭୟେ ଏହି ବିବାହ ମାଧ୍ୟମରେ ପରିପୂର୍ଣ୍ଣତା ହାସଲ କରୁଥିଲେ । ବାଲଶାସ୍ତ୍ରୀ ହରଦାସ ବୈଦିକ ବିବାହ ସମ୍ପର୍କରେ ଯଥାର୍ଥରେ କୁହନ୍ତି

In the views of the Vedic Aryas when a man and woman were united by the ties of the sacrament of marriage all duality between them disappeared. Unlike the modern times it was not a partnership in which the thought of individuality was kept alive. The woman merged herself completely in the man. Her identification was complete with her husband to the extent that not only the father and mother of her husband became hers, but even the cattle and servants she had to own and love as her own. (୨)

ଶତପଥ ବ୍ରାହ୍ମଣ ନାରୀର ମର୍ଯ୍ୟାଦାପୂର୍ଣ୍ଣ ସ୍ଥିତି ଉପରେ ଗୁରୁତ୍ୱ ଆରୋପ କରି କହିବାକୁ ଲାଗିଲା

ଅର୍ଦ୍ଧୋ ହ ବା ଏଷ ଆତ୍ମାନୋ ଯତ୍ ଜାୟା ।

ଅର୍ଥାତ୍ ଏହାଙ୍କୁ ଜାୟା ବୋଲି କହିବାର କାରଣ ହେଲା ଏ ହେଉଛନ୍ତି ଆତ୍ମାର ଅର୍ଦ୍ଧେକ । ଯଜ୍ଞ-କର୍ମରେ ପତ୍ନୀର ଆବଶ୍ୟକତା ଉପରେ ଗୁରୁତ୍ୱ ଆରୋପ କରିବାକୁ ଯାଇ ଉକ୍ତ ବ୍ରାହ୍ମଣ (ଆଉ ତୈତ୍ତିରୀୟ ବ୍ରାହ୍ମଣ ମଧ୍ୟ) କହିଲା

ଅଯଜ୍ଞୀୟଃ ବା ଏଷ ଯଃ ଅପତ୍ନୀକଃ । (୨-କ)

ଅର୍ଥାତ୍ ଏହି ଯେଉଁ ପତ୍ନୀହୀନ ପୁରୁଷ ଅଛନ୍ତି, ତାଙ୍କର ଯଜ୍ଞ କରିବାର ଅଧିକାର ନାହିଁ । ଅତଏବ, ଯଜ୍ଞକର୍ମରେ ପତ୍ନୀର ବର୍ତ୍ତମାନତା ଯେ ଅପରିହାର୍ଯ୍ୟ ଏ କଥା ଆର୍ଯ୍ୟ ମନୀଷୀମାନେ ସ୍ୱୀକାର କରିଗଲେ । ରାଧାକୃଷ୍ଣନ୍ ମଧ୍ୟ ଠିକ୍ ଏହି କଥା କୁହନ୍ତି । ତାଙ୍କ ଭାଷାରେ

In the Vedic age the highest expression of religion was the sacrifice. Husband and wife both took part

in it. Prayers and sacrifices were offered jointly by them. Girls had upanayana performed for them and carried out the sandhya rites. (୩)

ଯଜୁର୍ବେଦ (୮।୧) ମଧ୍ୟ କୁହେ ଯେ 'ଯୁବତୀ କନ୍ୟା ବ୍ରହ୍ମଚର୍ଯ୍ୟ ପାଳନପୂର୍ବକ ଯୋଗ୍ୟ ପତିଙ୍କୁ ବରଣ କରିଥାଏ' । ଉଭୟ ପୁରୁଷ ଓ ସ୍ତ୍ରୀ ତେଣୁ ଯଥାକ୍ରମେ ବ୍ରହ୍ମଚାରୀ ଓ ବ୍ରହ୍ମଚାରିଣୀ ହୋଇ ପାରୁଥିଲେ । ଏହି ପରମ୍ପରା ରାମାୟଣ ସମୟକୁ ଗଡ଼ି ଆସିଥିଲା । ତେଣୁ ଆମେ ଉକ୍ତ ଗ୍ରନ୍ଥରେ ନାରୀ ଏକ ମର୍ଯ୍ୟାଦା-ସମ୍ପନ୍ନ ସ୍ଥାନ ଅଧିକାର କରିଥିବାର ବହୁ ନିଦର୍ଶନ ଦେଖିବାକୁ ପାଇଥାଉଁ । ନାରୀ କପରି ପୁରୁଷର ଆତ୍ମା ଭଳି, ତାହାର ଏକ ସୁନ୍ଦର ଉଦାହରଣ ଆମେ ରାମାୟଣରେ ପାଇଥାଉଁ । ଏହା ଅଯୋଧ୍ୟାକାଣ୍ଡରେ ବର୍ଣ୍ଣିତ । ସୀତାଙ୍କୁ ରାମଙ୍କ ସହିତ ବନକୁ ଯିବା ଲାଗି ଯେତେବେଳେ ବଲ୍‌କଲ -ବସ୍ତ୍ର ପିନ୍ଧାଇ ଦିଆଗଲା, ତାହା ଦେଖି ବଶିଷ୍ଠ ସହିପାରିଲେ ନାହିଁ । ସେ କୈକେୟୀଙ୍କ ଉପରେ ଖୁବ୍ ରାଗିଯାଇ ତାଙ୍କୁ ନାନା ପ୍ରକାର କଟୁ କଥା କହିଲେ । ତାଙ୍କ ବକ୍ତବ୍ୟ ହେଲା, ସୀତାଙ୍କୁ ତ ବନବାସ ଦଣ୍ଡ ଦିଆଯାଇ ନାହିଁ । ସେ ବଣକୁ ଯିବେ କାହିଁକ ? ସେ ବରଂ ରାମଙ୍କ ଅନୁପସ୍ଥିତିରେ ରାମଙ୍କ ଲାଗି ଉଦ୍ଦିଷ୍ଟ ରାଜସିଂହାସନରେ ବସିବେ, କାରଣ ସେ ହେଉଛନ୍ତି ରାମଙ୍କର ଆତ୍ମାସଦୃଶ । ତାଙ୍କର କୈକେୟୀଙ୍କ ପ୍ରତି ବକ୍ତବ୍ୟ ହେଲା

> ଆତ୍ମା ହି ଦାରାଃ ସର୍ବେଷାଂ ଦାରସଂଗ୍ରହବର୍ତ୍ତିନାମ୍ ।
> ଆତ୍ମେୟମିତି ରାମସ୍ୟ ପାଲୟିଷ୍ୟତି ମେଦିନୀମ୍ । (୩-କ)

ଅର୍ଥାତ୍ ଗୃହସ୍ଥମାନଙ୍କର ସମସ୍ତଙ୍କର ସ୍ତ୍ରୀ ହେଉଛି ଆତ୍ମା ଭଳି । ଏହି ସୀତା ହେଉଛନ୍ତି ରାମଙ୍କର ଆତ୍ମା । ସେ ତେଣୁ ପୃଥିବୀକୁ ପାଳିବେ । ସ୍ତ୍ରୀକୁ ସ୍ୱାମୀଙ୍କର 'ଆତ୍ମା' ବୋଲି କହିବା ଦ୍ୱାରା ବାଲ୍ମୀକି ବୈଦିକ ଓ ଉପନିଷଦୀୟ ଚିନ୍ତାଧାରାରେ ଥିବା ସ୍ତ୍ରୀସଂପର୍କୀୟ ଭାବଧାରା ପ୍ରତି ମାନ୍ୟତା ପ୍ରଦର୍ଶନ କରିଛନ୍ତି ମାତ୍ର । ଅତଏବ, ରମାୟଣୀୟ ସ୍ତ୍ରୀ ଯେ ବୈଦିକ ପରଂପରା ଦ୍ୱାରା ପୁଷ୍ଟ ମାତ୍ରାରେ ପରିପୁଷ୍ଟା ଏବଂ ଅନେକାଂଶ ତା'ର ଏତ ପ୍ରତିରୂପ ମାତ୍ର, ଏ କଥା କହିଲେ ଅତ୍ୟୁକ୍ତି ହେବନାହିଁ । ରାମାୟଣରେ ନାରୀକୁ କପରି କନ୍ୟା, ମାତା, ଭଗ୍ନୀ, ସ୍ତ୍ରୀ ଆଦି ବିଭିନ୍ନ ଭାବରେ ଚିତ୍ରିତ କରାଯାଇଛି, ଏବଂ କପରି ତିନ ମୁଖ୍ୟ ଗୋଷ୍ଠୀ, ଆର୍ଯ୍ୟ, ବାନର ଓ ରାକ୍ଷସମାନଙ୍କ ମଧ୍ୟରେ ଏହି ଚିତ୍ରଣରେ ବୈଚିତ୍ର୍ୟ ରହିଅଛି, ତାହା ଅନୁଧ୍ୟାନ କରିବା ନିଶ୍ଚିତ ଭାବରେ କୌତୂହଳଜନକ । ନିମ୍ନଲିଖିତ ଅନୁଚ୍ଛେଦଗୁଡ଼ିକରେ ନାରୀର ବିଭିନ୍ନ ଭୂମିକା ସଂପର୍କରେ ପୃଥକ୍ ପୃଥକ୍ ଭାବରେ ଆଲୋଚନା କରାଯାଉଛି ।

**କନ୍ୟା :**

ଜୀବନରେ ନାରୀର ସର୍ବପ୍ରଥମ ଅସ୍ତିତ୍ୱର ଝଲକ ପ୍ରକାଶିତ ହୋଇଥାଏ କନ୍ୟା ରୂପରେ । କନ୍ୟାରୁ ସେ ହୁଏ ପତ୍ନୀ; ତା'ପରେ ହୁଏ ମାତା, ମାତାମହୀ ଇତ୍ୟାଦି । କନ୍ୟା ରୂପରେ ସେ ପରିବାରରେ ଯେଉଁଭଳି ଆଦର-ଯତ୍ନ ପାଇଥାଏ, ତା'ର ଯେଉଁଭଳି ଶିକ୍ଷାର ବ୍ୟବସ୍ଥା କରାଯାଇଥାଏ, ତାହାର ସମ୍ୟକ୍ ପ୍ରଭାବ ପଡ଼ିଥାଏ ତା'ର ଉତ୍ତର-ଜୀବନରେ ବିଭିନ୍ନ ଭୂମିକା ଗ୍ରହଣ କରିବା ଅବସରରେ । ବୈଦିକ ଯୁଗରେ ନାରୀକୁ ସମାଜରେ ଓ ପରିବାରରେ ଉଚ୍ଚ ସ୍ଥାନ ଦିଆଯାଉଥିଲେ ହେଁ କନ୍ୟାର ଜନ୍ମକୁ ସେତେ ଭଲ ଦୃଷ୍ଟିରେ ଗ୍ରହଣ କରାଯାଉଥିଲା । କନ୍ୟାକୁ ଦୁହିତା ବୋଲି କୁହାଯାଉଥିଲା । କେହି କେହି କୁହନ୍ତି ବୈଦିକ କନ୍ୟା ଗାଈ ଦୁହିଁବା କାର୍ଯ୍ୟରେ ନିୟୋଜିତା ଥିଲା ବୋଲି ତା'କୁ କୁହାଯାଉଥିଲା ଦୁହିତା । ପୁଣି ଆଉ କେହି କେହି କୁହନ୍ତି ସେ ପିତାମାତାଙ୍କ ସମ୍ପତ୍ତିକୁ ସେ ଦୋହନ କରି ନେଉଥିଲା ବୋଲି ତା'ର ନାମ ଥିଲା ଦୁହିତା । କନ୍ୟାର ବିବାହୋପଲକ୍ଷେ ଯୌତୁକ ଦେବାକୁ ପଡ଼ୁଥିଲା ଏବଂ ବିବାହ ପରେ ମଧ୍ୟ ବିଭିନ୍ନ ସମୟରେ ପିତାମାତାଙ୍କୁ ତା' ପାଇଁ ବିଭିନ୍ନ ଜିନିଷ ପଠାଇବାକୁ ପଡ଼ୁଥିଲା । ମୋଟ ଉପରେ କନ୍ୟାଟିଏ ଜନ୍ମ ହେଲେ ପିତାମାତାଙ୍କ ପାଇଁ ଗୋଟାଏ ବଡ଼ ପରିମାଣର ବ୍ୟୟର ବାଟ ଖୋଲିଗଲା ବୋଲି ସେତେବେଳେ ବିଚାର କରାଯାଉଥିଲା । ସେଥିପାଇଁ ପୁତ୍ରଜନ୍ମ ଭଳି କନ୍ୟାଜନ୍ମ ପିତାମାତାଙ୍କୁ ସୁଖୀ କରାଇ ପାରୁ ନଥିଲା । ପୁତ୍ରଜନ୍ମକୁ ବେଶି ମାତ୍ରାରେ ପିତାମାତା ଚାହିଁବାର ପ୍ରଧାନ କାରଣ ହେଲା ସେ ସେମାନଙ୍କୁ 'ପୁତ୍' ନାମକ ନରକରୁ ଉଦ୍ଧାର କରି ପାରିବ । ଶ୍ରାଦ୍ଧ ଦେବାର ଅଧିକାର ପୁତ୍ରର ଥିଲା; କନ୍ୟାର କିନ୍ତୁ ନୁହେଁ । ପରେ ଅବଶ୍ୟ ସୂତ୍ର-ଯୁଗରେ ବ୍ୟବସ୍ଥା ଖଞ୍ଜା ହେଲା ଯେ କନ୍ୟା ମଧ୍ୟ ପୁତ୍ର ଭଳି ଏ ପ୍ରକାର ଶ୍ରାଦ୍ଧ ଦେଇପାରିବ । ଏହା ହୋଇପାରିଥିଲା ନାରୀମାନଙ୍କର ସାମାଜିକ ସ୍ଥିତିର କ୍ରମୋନ୍ନତି ଘଟିଥିବା କାରଣରୁ । ବୁଦ୍ଧଙ୍କ (ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀ) କାଳରେ ନାରୀମାନଙ୍କର ବ୍ୟବସ୍ଥା ଅବଶ୍ୟ ଉନ୍ନୀତ ହୋଇ ସାରିଥିଲା ଏବଂ ସେତେବେଳେ କନ୍ୟାଜନ୍ମକୁ ଦୁଃଖର ନିଦାନ ବୋଲି ଆଦୌ ବିଚାର କରାଯାଉନଥିଲା । ଆଦି ପାଲି ବୌଦ୍ଧ ସାହିତ୍ୟରେ ଜନସାଧାରଣଙ୍କ କାମନା ସନ୍ତାନଟିଏ ପାଇଁ (ପୁଅ ପାଇଁ) ହୋଇଥାଏ ବୋଲି ବର୍ଣ୍ଣିତ । ହର୍ଣ୍ଣର (Horner) ଏହି ମତର ପରିପୋଷଣ କରିବାକୁ ଯାଇ କୁହନ୍ତି :

> But at the time of the rise of Budhism and during its early days, the status of unmarried women was higher than it had ever been in India before, and

we may add, than it has been since. This was reflected in the popular sentiment among the ordinary people it was the child (putta) as such, and not the son as opposed to the daughter, who was the object of the parents' affection, and the centre of their hopes and aspirations (୪)

ନାରୀମାନଙ୍କ ସାମାଜିକ ସ୍ଥିତିର କ୍ରମିକ ଉନ୍ନତି ଯେ ବୌଦ୍ଧ ଯୁଗରୁ ଆରମ୍ଭ ହୋଇଥିଲା, ତାହା କହିବା ଅବଶ୍ୟ ଠିକ୍ ହେବନାହିଁ । ଅନ୍ୟ ପକ୍ଷରେ, ଏହି ଯୁଗର ବହୁ ବର୍ଷ ପୂର୍ବରୁ ରାମାୟଣ-ଯୁଗରୁ ହିଁ ଏହାର ଆରମ୍ଭ ହୋଇ ସାରିଥିଲା । ରାମାୟଣ-ଯୁଗରେ ଯେ ପୁତ୍ର-ସନ୍ତାନର ଜନ୍ମରେ ଆନନ୍ଦ ପ୍ରକାଶ କରାଯାଉଥିଲା ଏବଂ ତଦୁପଲକ୍ଷ୍ୟେ ଉତ୍ସବ ସମାହିତ ହେଉଥିଲା, ତାହା ନୁହେଁ । ବରଂ ତାହା ଠିକ୍ ପୂର୍ବଭଳି ରହିଥିଲା । ଉଦାହରଣ ସ୍ୱରୂପ, ରାମାୟଣର (୧।୧୮।୨୦) ବର୍ଣ୍ଣନା ଅନୁସାରେ ରାଜା ଦଶରଥ ତାଙ୍କର ଚାରି ପୁତ୍ର ଜନ୍ମ ହେବାପରେ ଖୁବ୍ ଖୁସି ହୋଇ ସୂତ, ମାଗଧ ଓ ବନ୍ଦୀଜନଙ୍କୁ ପ୍ରଚୁର ପୁରସ୍କାର ଦେଇଥିଲେ ଏବଂ ବ୍ରାହ୍ମଣମାନଙ୍କୁ ଧନ ଓ ସହସ୍ର ଗୋଧନ ଦାନ କରିଥିଲେ । ଅବଶ୍ୟ କନ୍ୟାଜନ୍ମରେ ଏଭଳି ଉତ୍ସବ ପାଳିବାର ଦୃଷ୍ଟାନ୍ତ ରାମାୟଣରେ ନାହିଁ । ଏହା ସତ୍ତ୍ୱେ କନ୍ୟାଜନ୍ମ ଯେ ଅନାଦରଣୀୟ ନଥିଲା ଏବଂ କନ୍ୟାର ସୁଖସାଧନ ପାଇଁ ଯେ ପିତାଙ୍କୁ ବହୁତ ଦୁଃଖକଷ୍ଟ ସହିବାକୁ ପଡ଼ୁଥିଲା ଏବଂ ନିଜର ସୁଖକୁ ଉତ୍ସର୍ଗ କରିବାକୁ ପଡ଼ୁଥିଲା, ତାହାର ଅନେକ ନିଦର୍ଶନ ଆମେ ତହିଁରେ ପାଇଥାଉଁ । ସୀତାଙ୍କୁ କୃଷିକ୍ଷେତ୍ରରେ ପାଇବା ପରେ ଜନକ କେତେ ଯେ ଆନନ୍ଦିତ ହୋଇଥିଲେ ତାହା ସୀତା ନିଜେ ଅତ୍ରିପତ୍ନୀ ଅନସୂୟାଙ୍କ ଆଗରେ ବର୍ଣ୍ଣନା କରିଛନ୍ତି । ତାଙ୍କ ଭାଷାରେ

> ତତଃ ପ୍ରହୃଷ୍ଟୋ ଧର୍ମାତ୍ମା ପିତା ମେ ମିଥିଳାଧିପଃ ।
> ଅବାପ୍ତୋ ବିପୁଳାମୃଦ୍ଧିଂ ମାମବାପ୍ୟ ନରାଧିପଃ ।। (୪-କ)

ଅର୍ଥାତ୍ ସେଉଠୁ ମୋ'ର ଧର୍ମାତ୍ମା ପିତା ମିଥିଳାରାଜ ଖୁବ୍ ଖୁସି ହୋଇଗଲେ । ମତେ ପାଇକରି ରାଜା ଭାବିଲେ ସତେ ଯେମିତି ସେ କୋଟିନିଧି ପାଇଗଲେ ।

ବୈଦିକ ଯୁଗରେ କେବଳ ପୁତ୍ରସନ୍ତାନଙ୍କୁ ହିଁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରାଯାଉଥିଲା । କନ୍ୟାମାନଙ୍କୁ ପୋଷ୍ୟପୁତ୍ରୀ ଭାବରେ ଗ୍ରହଣ କରାଯାଉନଥିଲା । ରାମାୟଣ-ଯୁଗରେ କିନ୍ତୁ ପୁତ୍ର ଓ କନ୍ୟା ମଧ୍ୟରେ ଏ ସମ୍ପର୍କରେ ଥିବା ବିଭେଦ ଉଠିଯାଇଥିଲା । ରାଜା ଲୋମପାଦ ଥିଲେ ଅପୁତ୍ରିକ । ସେ ଦଶରଥଙ୍କ

କନ୍ୟା ଶାନ୍ତାଙ୍କୁ ପୋଷ୍ୟପୁତ୍ରୀ ରୂପରେ ଗ୍ରହଣ କରିଥିଲେ । ସେ ଚାହିଁଥିଲେ ଦଶରଥଙ୍କ ଚାରି ପୁତ୍ରଙ୍କ ମଧ୍ୟରୁ ଜଣଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ପାରିଥାନ୍ତେ । ସେ ଶାନ୍ତାଙ୍କୁ ପୁତ୍ର-ସନ୍ତାନ ଭଳି ସ୍ନେହ, ଆଦର ଦେଇ-ପାଳିଥିଲେ ଏବଂ ତାଙ୍କର ବୟଃପ୍ରାପ୍ତି ପରେ ତାଙ୍କୁ ଋଷ୍ୟଶୃଙ୍ଗ ମୁନିଙ୍କ ହସ୍ତରେ ସମର୍ପଣ କରିଥିଲେ । କେତେ ଯେ କଷ୍ଟ ସହି ସେ ଋଷ୍ୟଶୃଙ୍ଗ ମୁନିଙ୍କୁ ତାଙ୍କ ରାଜଧାନୀକୁ ଅଣାଇଥିଲେ ଏବଂ ତାଙ୍କ ପୌରୋହିତ୍ୟରେ ଅନାବୃଷ୍ଟିକୁ ପ୍ରତିହତ କରିବା ଲାଗି ଚେଷ୍ଟା କରିକି ଶେଷରେ ଶାନ୍ତାକୁ ତାଙ୍କ ସହିତ ବିବାହ କରାଇଥିଲେ, ତାହା ରାମାୟଣରେ ଅତି ରୋଚକ ଭାବରେ ବର୍ଣ୍ଣିତ । ରାଜା ଜନକଙ୍କର ସୀତାଙ୍କ ପ୍ରତି ପ୍ରଦର୍ଶିତ ବ୍ୟବହାରକୁ ଆଉ ଏକ ନିଦର୍ଶନ ସ୍ୱରୂପ ଗ୍ରହଣ କରାଯାଇପାରେ । ସେ ହଳ କରୁ କରୁ କ୍ଷେତରୁ ମଞ୍ଜୁଷାଟିଏ ପାଇଲେ । ତାହା ଭିତରେ ଥିଲେ ସୀତା । ସେ କୁଆଁ କୁଆଁ ଡାକ ଛାଡୁଥିଲେ । ଜନକ ତାଙ୍କୁ ଶ୍ରୁତିରେ ଜାକି ଧରି ଘରକୁ ନେଇ ନିଜ ଝିଅ ଭଳି ପାଳିଲେ । ସେ ଯେ ପୁଅ ନୁହନ୍ତି ସେଥିପାଇଁ ତାଙ୍କ ପ୍ରତି କିଛି ପାତରଅନ୍ତର-ଭାବ ଦେଖାଯାଉ ନଥିଲା । ତାଙ୍କର ବୟଃପ୍ରାପ୍ତି ପରେ ତାଙ୍କ ପାଇଁ ସୁଯୋଗ୍ୟ ବର ଖୋଜିବାରେ ଜନକ ଲାଗି ପଡ଼ିଲେ । ସବୁଠାରୁ ଶ୍ରେଷ୍ଠ ବୀରଙ୍କ ହସ୍ତରେ ସେ ସୀତାଙ୍କୁ ଅର୍ପଣ କରିବେ ବୋଲି ମନସ୍ଥ କଲେ । ଏହି କଥା ବୁଝାଇବାକୁ ଯାଇ ସେ ଋଷି ବିଶ୍ୱାମିତ୍ରଙ୍କୁ କହିଛନ୍ତି

ଭୂତଳାଦୁତ୍ଥିତା ସା ତୁ ବ୍ୟବର୍ଦ୍ଧତ ମମାତ୍ମଜା ।
ବୀର୍ଯ୍ୟଶୁଳ୍କେତି ମେ କନ୍ୟା ସ୍ଥାପିତେୟମୟୋନିଜା ।। (୫)

ଅର୍ଥାତ୍ ମାଟିତଳୁ ଜନ୍ମ ନେଇଥିବା ସେଇ ମୋ'ର କନ୍ୟା ଏବେ ବୟଃପ୍ରାପ୍ତା । ମୋ'ର ସେହି ଅଯୋନିଜା କନ୍ୟାଙ୍କ ପାଣିଗ୍ରହଣ ଲାଗି ମୁଁ ବୀରତ୍ୱର ସର୍ତ୍ତ ରଖିଛୁ । ଏହି ବୀରତ୍ୱର ସର୍ତ୍ତଟି ଥିଲା ଶିବଧନୁରେ ଗୁଣ ଚଢ଼ାଇବା । ଅନେକ ବୀର ରାଜାମହାରାଜା ଆସିଲେ; କିନ୍ତୁ ସେମାନେ କେହି ଏହି ଧନୁରେ ଗୁଣ ଚଢ଼ାଇ ପାରିଲେ ନାହିଁ । ସେମାନେ ଶେଷକୁ ଜନକଙ୍କୁ ଯୁଦ୍ଧରେ ପରାସ୍ତ କରି ସୀତାଙ୍କୁ ବଳପୂର୍ବକ ବିବାହ କରିବାକୁ ଚାହିଁଲେ । ସେମାନେ ଦୀର୍ଘ ଏକ ବର୍ଷ କାଳ ମିଥିଳାନଗରୀକୁ ଅବରୁଦ୍ଧ କରି ରଖିଲେ । ଜନକ ବହୁ କଷ୍ଟ ସ୍ୱୀକାର-ପୂର୍ବକ ସେହି ମିଳିତ ସୈନ୍ୟବାହିନୀର ଆକ୍ରମଣକୁ ପ୍ରତିହତ କରିଥିଲେ ଏବଂ ଆମେ ଜାଣୁ କିପରି ପରିଶେଷରେ ଶିବଧନୁକୁ ଭାଙ୍ଗିଥିବା ରାମଙ୍କୁ ଶେଷରେ ସେ ସୀତାଙ୍କ ଯୋଗ୍ୟ ପତି ଭାବରେ ନିର୍ବାଚିତ କରିପାରିଥିଲେ । ଏ ସମ୍ପର୍କରେ ଗଙ୍ଗାଧର ମିଶ୍ରଙ୍କର ନିମ୍ନଲିଖିତ ମନ୍ତବ୍ୟ ଉଲ୍ଲେଖନୀୟ

> “ଜସ୍ ଶିବଧନୁଷ୍‌କୋ ପରାକ୍ରମ କୀ ପରୀକ୍ଷା କୀ କସୌଟୀ ଉନ୍‌ହୋଂନେ ବନାୟା ଥା, ଉସେ କୋଇ ତୋଡ଼ ନହୀଂ ସକା । ରାମ ଇସ କସୌଟୀ ପର ସଫଲ ଉତରେ । ଇସଲିଏ ରାମକୋ ଉନ୍‌କୋ ନେ ବଧୂରୂପ ମେଂ ସୀତାହୋଂ କୋ ପ୍ରଦାନ କିୟା । ଇସସେ କନ୍ୟାକେ ପ୍ରତି ପିତାକେ ଗୌରବ-ପୂର୍ଣ୍ଣ ସଂକଳ୍ପ ତଥା ନାରୀଶକ୍ତି କେ ପ୍ରତି କବନିଷ୍ଠା କା ଭଲୀ-ଭାଁତି ପରିଚୟ ମିଲତା ହୈ ।” (୬)

ଏଥିରୁ ଜଣାପଡ଼ୁଛି ଯେ ରାମାୟଣୀୟ ପିତା କନ୍ୟାର ଲାଳନପାଳନର ଦାୟିତ୍ୱ ନେବା ସଙ୍ଗେ ସଙ୍ଗେ ତା' ଲାଗି ସୁଯୋଗ୍ୟ ପତିନିର୍ବାଚନର ଗୁରୁ ଦାୟିତ୍ୱ ମଧ୍ୟ ନେଉଥିଲେ । ନିଜ ଜୀବନ ଓ ସ୍ଥିତିକୁ ବିପଦାପନ୍ନ କରି ମଧ୍ୟ ସେ ଏ କାର୍ଯ୍ୟକୁ ତୁଲାଉଥିଲେ । କନ୍ୟା ଲାଗି ପତି-ନିର୍ବାଚନ ନେଇ ଯୋଗ୍ୟତା ବିଷୟରେ ସେ ଆଦୌ ସାଲିସ କରୁନଥିଲେ ।

କନ୍ୟାର ବିବାହ ଯେ ପିତାଙ୍କ ଅଭିରୁଚି ଉପରେ ନିର୍ଭରଶୀଳ ଥିଲା, ତାହାର ଆଉ ଏକ ନିଦର୍ଶନ ଆମେ ରାଜା କୁଶନାଭଙ୍କ ଶତ କନ୍ୟାଙ୍କ ଚରିତରେ ଦେଖିଥାଉଁ । ସେହି କନ୍ୟାମାନେ ଥିଲେ ଯୁବତୀ ଓ ଖୁବ୍ ସୁନ୍ଦରୀ । ବାୟୁ-ଦେବତା ସେମାନଙ୍କ ରୂପରେ ଆକୃଷ୍ଟ ହୋଇ ସେମାନଙ୍କ ପ୍ରଣୟପ୍ରାର୍ଥୀ ହେବାରେ ସେମାନେ ସେଥିରେ ସମ୍ମତ ହୋଇ ନଥିଲେ । ବରଂ ସେମାନେ ଏହି ପ୍ରସ୍ତାବକୁ ନେଇ ସେମାନଙ୍କ ପିତାଙ୍କ ଆଗରେ ଉପସ୍ଥାପିତ କରିବା ପାଇଁ ତାଙ୍କୁ ଅନୁରୋଧ କରିଥିଲେ । କୁଶନାଭ-କନ୍ୟାମାନଙ୍କର ନିମ୍ନୋକ୍ତ ବାଣୀ ଏଠାରେ ଅବଧାରଣୀୟ

> “ପିତୃମନ୍ତଃ ସ୍ମ ଭଦ୍ରଂ ତେ ସ୍ୱଚ୍ଛନ୍ଦେ ନ ବୟଂ ସ୍ଥିତାଃ ।
> ପିତରଂ ନୋ ବୃଣୀଷ୍ୱ ତ୍ୱଂ ଯଦି ନୋ ଦାସ୍ୟତେ ତବ ।।” (୭)

ଅର୍ଥାତ୍ ଦେବ ! ଆପଣଙ୍କର ମଙ୍ଗଳ ହେଉ । ଆମର ପିତା ଅଛନ୍ତି; ଆମେ ସ୍ୱାଧୀନା ନୋହୁଁ । ଆପଣ ପିତାଙ୍କ ପାଖକୁ ଯାଇ ଆମକୁ ବରଣ କରନ୍ତୁ । ଯଦି ସେ ଆମକୁ ଆପଣଙ୍କ ହାତରେ ଟେକି ଦେବେ, ତେବେ ଆମେ ଆପଣଙ୍କର ସ୍ତ୍ରୀ ହୋଇ-ଯିବୁ । ବାୟୁ-ଦେବତା ଏଥିରେ କ୍ରୁଦ୍ଧ ହୋଇ ଅଭିଶାପ ପ୍ରଦାନ ପୂର୍ବକ ସେମାନଙ୍କୁ କୁବ୍‌ଜା କରି ଦେଇଥିଲେ । ସେମାନେ ପଛକେ ଏଭଳି ଅଭିଶାପକୁ ସହିଯାଇଥିଲେ; କିନ୍ତୁ ବିବାହ-କ୍ଷେତ୍ରରେ ପିତାଙ୍କ ସମ୍ମତି ବିନା କିଛି କରିବାକୁ ଚାହିଁ ନଥିଲେ । କୁଶନାଭଙ୍କ କନ୍ୟାମାନେ ହସି-ଖେଳି ନାଚ ଗୀତ ମାଧ୍ୟମରେ ସେମାନଙ୍କ ଜୀବନକୁ ସୁଖରେ କଟାଉଥିଲେ । ଏଭଳି ଆମୋଦ-ପ୍ରମୋଦ ଥିଲା ମୁକ୍ତ ଏବଂ ସେଥିପାଇଁ କେହି ସେମାନଙ୍କୁ ବାଧା ଦେଉ ନଥିଲେ । ଶର୍ମୀଙ୍କ ଭାଷାରେ

Unique is the ease of king Kushanabha who had as many as hundred daughters. They enjoyed themselves dancing, singing and playing. (୮)

କିନ୍ତୁ ବିବାହ-ପ୍ରଶ୍ନ ଯେତେବେଳେ ଉଠିଥିଲା, ସେମାନେ ନିଜର ପିତାଧୀନତା ବିଷୟ ସ୍ୱୀକାର କରିଥିଲେ ଏବଂ ନିଜର କିଛି ମତାମତ ଦେଇ ପାରି ନଥିଲେ ।

ରାମାୟଣୀୟ ସମାଜରେ କନ୍ୟାର ମୁକ୍ତ ଭାବରେ ଚଳ-ପ୍ରଚଳ କରିବାରେ କିଛି ବାଧାବିଘ୍ନ ନଥିଲା । କୁଶନାଭଙ୍କ କନ୍ୟାମାନେ ହସଖୁସି, ନାଚଗୀତ ଆଦିରେ ସେମାନଙ୍କ ଜୀବନକୁ ମୁକ୍ତ ଭାବରେ କଟାଉଥିବା କଥା ପୂର୍ବରୁ କୁହାଯାଇଛି । ଆଉ ଗୋଟିଏ ଉଦାହରଣ ଆମେ ଦେଖୁଁ ରାଜର୍ଷି ତୃଣବିନ୍ଦୁଙ୍କ କନ୍ୟାଙ୍କ କ୍ଷେତ୍ରରେ । ସେ ଅନ୍ୟାନ୍ୟ ଋଷିକନ୍ୟାମାନଙ୍କ ସହିତ ମୁକ୍ତ ଭାବରେ ହସିଖେଳି କପରି ଭାବରେ ଅରଣ୍ୟରେ ବିଚରଣ କରୁଥିଲେ ତଦ୍‌ବିଷୟ ରାମାୟଣରେ (୭।୧।୮) ବର୍ଣ୍ଣିତ । ରାମାୟଣର ନିମ୍ନଲିଖିତ ପଙ୍‌କ୍ତିଟି କୁମାରୀମାନଙ୍କର ସନ୍ଧ୍ୟା ସମୟରେ ମୁକ୍ତ ବିଚରଣର ଆଉ ଏକ ନିଦର୍ଶନ । ଦଶରଥଙ୍କର ମୃତ୍ୟୁ ହୋଇଯାଇଛି । ରାମ ବନବାସ କରିଛନ୍ତି । ଭରତ ମାତୁଳାଳୟରୁ ଫେରିନାହାନ୍ତି । ଅଯୋଧ୍ୟା ସେତେବେଳେ ହୋଇଛି ରାଜାହୀନ । ରାଜା ନଥିଲେ ଦେଶର ଦୁରବସ୍ଥା କ'ଣ ହୁଏ ସେହିସବୁ କଥା ମାର୍କଣ୍ଡେୟ ଆଦି ମୁନିଗଣ ବଶିଷ୍ଠଙ୍କ ଆଗରେ ବୁଝାଇ କହିଛନ୍ତି ଏବଂ ତେଣୁ ଯେଥାଶୀଘ୍ର କାହାଙ୍କୁ ଜଣଙ୍କୁ ରାଜା କରାଇବା ପାଇଁ ତାଙ୍କୁ ଅନୁରୋଧ କରିଛନ୍ତି । ଶଂସିତ ପଙ୍‌କ୍ତିଟି ହେଲା

"ନାରାଜକେ ଜନପଦେ ଉଦ୍ୟାନାନି ସମାଗତାଃ ।
ସାୟାହ୍ନେ କ୍ରୀଡ଼ିତୁଂ ଯାନ୍ତି କୁମାର୍ଯୋ ହେମଭୂଷିତାଃ ॥" (୯)

ଅର୍ଥାତ୍ ଅରାଜକ ଦେଶରେ କନ୍ୟାମାନେ ସୁନାର ଅଲଙ୍କାରମାନ ପିନ୍ଧି ସନ୍ଧ୍ୟା ସମୟରେ ଖେଳିବା ପାଇଁ ଉଦ୍ୟାନକୁ ଆସନ୍ତି ନାହିଁ । ଏହାର ତାତ୍ପର୍ଯ୍ୟ ହେଲା ଯେଉଁ ଦେଶରେ ରାଜା ଥାଆନ୍ତି, ସେଠାରେ ସୁଶାସନ ଥାଏ ଏବଂ ତେଣୁ କନ୍ୟାମାନେ ନିର୍ବାଧରେ ସନ୍ଧ୍ୟା ସମୟରେ ସୁନାର ଅଲଙ୍କାରମାନ ପିନ୍ଧି ଉଦ୍ୟାନରେ କ୍ରୀଡ଼ା କରୁଥାନ୍ତି । ଏହା ହେଉଛି ରାମାୟଣୀୟ ସମାଜର ଏକ ସାଧାରଣ ସ୍ଥିତିର ଚିତ୍ର । ଏଥିରୁ ଏହି ସୂଚନା ମିଳୁଛି ଯେ କନ୍ୟାମାନଙ୍କୁ ନିର୍ବାଧରେ ଓ ମୁକ୍ତ ଭାବରେ ବିଚରଣ କରି ଆନନ୍ଦମୟ ଜୀବନ ଅତିବାହିତ କରିବା ପାଇଁ ସୁବିଧା-ସୁଯୋଗ ଉକ୍ତ ସମାଜ ଦେଇଥିଲା । ଏଥିପାଇଁ ବାଳକ ଓ

ବାଳିକା ମଧ୍ୟରେ ଥିବା ଲିଙ୍ଗ-ପାର୍ଥକ୍ୟ କିଛି ପ୍ରତିବନ୍ଧକ ସୃଷ୍ଟି କରୁନଥିଲି ।

ବିବାହ ପରେ ସ୍ତ୍ରୀର ରକ୍ଷକ ହେଉଥିଲେ ସ୍ୱାମୀ । ତତ୍ପୂର୍ବରୁ କନ୍ୟା-ବସ୍ଥାରେ ତା'ର ରକ୍ଷକ ଥିଲେ ପିତା । ମନୁ (୯।୨୩) ସେଥିପାଇଁ କୁହନ୍ତି

"ପିତା ରକ୍ଷତି କୌମାରେ ।"

ଅର୍ଥାତ୍ ପିତା କନ୍ୟାକୁ କୌମାର-ଅବସ୍ଥାରେ ରକ୍ଷା କରିଥାନ୍ତି । ରାମାୟଣ-ଯୁଗରେ ମଧ୍ୟ ଏହି ସ୍ଥିତି ଥିଲା । ସୀତା, କୌଶଲ୍ୟା, କୈକେୟୀ ଆଦିଙ୍କ କନ୍ୟାବସ୍ଥାରେ ସେମାନଙ୍କ ପିତାମାନେ ସେମାନଙ୍କୁ ଲାଳନ ପାଳନ କରି ଓ ଉପଯୁକ୍ତ ଶିକ୍ଷା ଦେଇ ବୟଃପ୍ରାପ୍ତି ପର୍ଯ୍ୟନ୍ତ ନିଜ ପାଖରେ ରଖିଥିଲେ । କନ୍ୟାମାନଙ୍କର ସୁଖଦୁଃଖ, ଭଲମନ୍ଦ ସବୁର ଦାୟିତ୍ୱ ପିତାମାନେ ନେଇଥିଲେ । ଶେଷକୁ ସେମାନଙ୍କୁ ଯୋଗ୍ୟ ପତିଙ୍କ ହାତରେ ସମର୍ପି ଦେଇ ସେମାନେ ନିଶ୍ଚିନ୍ତ ହୋଇଥିଲେ । ଶିବଧନୁରେ ଗୁଣ ଚଢ଼ାଇବା ପାଇଁ ଅସମର୍ଥ ହେବାପରେ ରାଜା ମହାରାଜାମାନେ ମିଳିତ ଭାବରେ କିପରି ମିଥିଲାପୁରୀକୁ ଦୀର୍ଘ ଏକ ବର୍ଷ କାଳ ଅବରୁଦ୍ଧ କରି ରଖିଥିଲେ ଏବଂ ସୀତାଙ୍କୁ ବଳପୂର୍ବକ ଅପହରଣ କରିନେବାର ସେମାନଙ୍କ ଅପଚେଷ୍ଟାକୁ କିପରି ତାଙ୍କ ପିତା ଜନକ ବ୍ୟର୍ଥ କରି ଦେଇଥିଲେ ତାହା ପୂର୍ବରୁ ବର୍ଣ୍ଣିତ । ଏଥିରେ ଜନକ ପିତା ହିସାବରେ ତାଙ୍କର ଦୁଇଟି କର୍ତ୍ତବ୍ୟ ସମାହିତ କରିଥିଲେ । ପ୍ରଥମତଃ ସେ ପିତା ହିସାବରେ ଥିଲେ କନ୍ୟାର ରକ୍ଷକ ଏବଂ ତେଣୁ ତା'କୁ ସକଳ ପ୍ରକାର ବିପଦରୁ ରକ୍ଷା କରିଥିଲେ । ଦ୍ୱିତୀୟତଃ ଉପଯୁକ୍ତ ବୀର ପୁରୁଷ ଜଣେ ଠିକଣା ନହେବା ପର୍ଯ୍ୟନ୍ତ ସେ ନିଜ କନ୍ୟାକୁ ବିବାହ ଦେବା ପାଇଁ ପ୍ରସ୍ତୁତ ନଥିଲେ । ବାସ୍ତବିକ ସେତେବେଳେ ଉପଯୁକ୍ତ ବରପାତ୍ରଟିଏ ଦେଖି କନ୍ୟାକୁ ତାଙ୍କ ହାତରେ ଟେକି ଦେବା ପିତାଙ୍କର ଥିଲା ଏକ ବଡ଼ ଦାୟିତ୍ୱ । ଏହି ଦାୟିତ୍ୱଟି ଭାରତୀୟ ପିତାମାନେ ଯୁଗ ଯୁଗ ଧରି ବହନ କରି ଆସୁଛନ୍ତି । ସେତେବେଳେ ଗାନ୍ଧର୍ବ-ବିବାହ ସମାଜରେ ଚଳୁ ନଥିଲା । ଏପରିକି କ୍ଷତ୍ରିୟ-ସମାଜରେ ମଧ୍ୟ ତାହା ଚଳୁନଥିଲା । ତେଣୁ କନ୍ୟା ନିଜ ଇଚ୍ଛାରେ ପତିନିର୍ବାଚନ କରିବାର ପ୍ରଶ୍ନ ହିଁ ସେତେବେଳେ ଉଠୁ ନଥିଲା । ତେଣୁ କନ୍ୟା ଲାଗି ବରଟିଏ ବାଛିବାର ଦାୟିତ୍ୱ ପିତାଙ୍କ ପାଇଁ ଆଉ ଟିକିଏ ଅଧିକ ବଢ଼ି ଯାଇଥିଲା । ସେ ଯାହା ହେଉ, ପ୍ରତ୍ୟେକ ପିତା ଏହି ଦାୟିତ୍ୱଟିକୁ ଯଥାସାଧ୍ୟ ସୁରୁଖୁରୁ ରୂପେ ସମ୍ପାଦନ କରିବା ପାଇଁ ଥିଲେ ସତତ ଉଦ୍ୟମଶୀଳ ଏବଂ ଏହି ଉଦ୍ୟମ ତାଙ୍କର ସଫଳ ହେଉଥିଲା । ପିତାଙ୍କ ଦ୍ୱାରା କନ୍ୟାର କରାଯାଇଥିବା ବିବାହ କୌଣସି ଗୋଟିଏ ହେଲେ ସ୍ଥାନରେ ବିଫଳ

ହୋଇଥିବାର ନିଦର୍ଶନ ଆମେ ରାମାୟଣରେ ପାଉନାହିଁ । କିପରି ଗୁରୁ ଆଡ଼କୁ ଆଖି ରଖି ସବୁ କଥାକୁ ବୁଝି ବିଜ୍ଞ ପିତାମାନେ କନ୍ୟାମାନଙ୍କ ବିବାହ କରୁଥିଲେ, ତାହା ଏଥିରୁ ସହଜରେ ଅନୁମେୟ ।

ବର୍ତ୍ତମାନ କନ୍ୟାର ଶିକ୍ଷାକଥା ବିଚାର୍ଯ୍ୟ । ପିତୃଗୃହରେ ଥିବା ସମୟରେ କନ୍ୟାକୁ କି କି ବିଷୟରେ ଶିକ୍ଷା ଦିଆଯାଉଥିଲା, ପୁତ୍ର-ସନ୍ତାନ ଭଳି ତା'ର ଉପନୟନ କରା ଯାଉଥିଲା କି ନାହିଁ ଇତ୍ୟାଦି ବିଷୟ ଏ ସମ୍ପର୍କରେ ଅନୁଧ୍ୟାନ କରିବାକୁ ହେବ । ଅବଶ୍ୟ ପ୍ରାଚୀନ କାଳରେ ବୈଦିକ ଯୁଗରେ କନ୍ୟାମାନଙ୍କର ଉପନୟନ ଯଥାବିଧି ସମାପନ କରାଯାଉଥିଲା । ଅଥର୍ବ ବେଦରେ (୧୧।୫।୧୮) ସ୍ପଷ୍ଟ ଭାବରେ କୁହାଯାଇଛି ଯେ "ପୁରାକଳ୍ପେଷୁ ନାରୀଣାଂ ମୌଞ୍ଜୀବନ୍ଧନଂ ଇଷ୍ୟତେ" ।

ଅର୍ଥାତ୍ ପୁରାକାଳରେ ନାରୀମାନଙ୍କର 'ମୌଞ୍ଜୀବନ୍ଧନ' କରାଯାଉଥିଲା ବା ଉପନୟନ କରାଯାଉଥିଲା । ଉପନୟନ ସମୟରେ 'ମୁଞ୍ଜ' ଘାସର ତିଆରି ଦଉଡ଼ି ଅଣ୍ଟାରେ ବନ୍ଧା ଯାଇଥାଏ । ତାହାକୁ କୁହାଯାଏ 'ମୌଞ୍ଜୀବନ୍ଧନ' । ଏହାର ତାତ୍ପର୍ଯ୍ୟ ହେଲା ଉଭୟ ପୁତ୍ର ଓ କନ୍ୟା ଗୁରୁଗୃହରେ ଯାଇ ପାଠ ପଢ଼ୁଥିଲେ । କିନ୍ତୁ ମନୁଙ୍କ ସମୟ ବେଳକୁ ଏଥିରେ ପରିବର୍ତ୍ତନ ଆସି ସାରିଲାଣି । ମନୁସ୍ମୃତି (୨।୬୭) ଅନୁସାରେ ନାରୀମାନଙ୍କର ବିବାହକୁ ଉପନୟନ ସହିତ ସମାନ ବୋଲି କୁହାଗଲା ଏବଂ ସେମାନଙ୍କ ଲାଗି ପୃଥକ୍ ଉପନୟନର ଆବଶ୍ୟକତା ନାହିଁ ବୋଲି ଦାବି କରାଗଲା । ମନୁଙ୍କ ମତରେ

> ବୈବାହିକୋ ବିଧିଃ ସ୍ତ୍ରୀଣାଂ ସଂସ୍କାରୋ ବୈଦିକଃ ସ୍ମୃତଃ ।
> ପତିସେବା ଗୁରୌବାସୋ ଗୃହାର୍ଥୋଽଗ୍ନିପରିକ୍ରିୟା ॥

ଅର୍ଥାତ୍ ସ୍ତ୍ରୀମାନଙ୍କ ପାଇଁ ବିବାହ ହେଲା ବୈଦିକ ମତରେ ଉପନୟନ ସଂସ୍କାର । ପତିସେବା ହେଉଛି ସେମାନଙ୍କ ପାଇଁ ଗୁରୁଗୃହରେ ବାସ ସମାନ ଏବଂ ଘରକରଣା କାମ ହେଉଛି ଅଗ୍ନି-ଦେବତାଙ୍କୁ ପୂଜା କରିବା ସମାନ । ପ୍ରାଚ୍ୟତତ୍ତ୍ୱବିତ୍ ବିଖ୍ୟାତ ପଣ୍ଡିତ କାଣେ ମଧ୍ୟ ଏହି ମତର ପରିପୁଷ୍ଟ ସାଧନ କରିଥାନ୍ତି । (୧୦) ରାମାୟଣୀୟ ସମାଜରେ ବୈଦିକ ମତରେ ବାଳକମାନଙ୍କ ଭଳି ବାଳିକାମାନଙ୍କ ଲାଗି ଉପନୟନ-ବିଧି ସମାହିତ ହେଉଥିବାର ବର୍ଣ୍ଣନା ନଥିଲେ ମଧ୍ୟ ବାଳିକାମାନେ ଯେ ବାଳକମାନଙ୍କ ସାଥିରେ ଏକାଠି ଗୁରୁଗୃହରେ ପାଠ ପଢ଼ୁଥିଲେ, ତାହାର ବର୍ଣ୍ଣନା ଅଛି । ଉପନୟନ-କର୍ମର ତାତ୍ପର୍ଯ୍ୟ ତ ପାଠପଢ଼ା ଛଡ଼ା ଆଉ କିଛି ନୁହେଁ । ରାଧାକୃଷ୍ଣନ୍ ସ୍ପଷ୍ଟ ଭାବରେ କହିଛନ୍ତି ଯେ ବାଲ୍ମୀକିଙ୍କ ଆଶ୍ରମରେ ଆତ୍ରେୟୀ ନାମ୍ନୀ ଜଣେ କନ୍ୟା ରାମଙ୍କ ପୁତ୍ରଦ୍ୱୟ ଲବ,କୁଶଙ୍କ ସାଥିରେ ଏକାଠି ରହି ପାଠ ପଢ଼ୁଥିଲେ । ତାଙ୍କ ଭାଷାରେ :

Atreyi studied under Valmiki along with Lava and Kusha, the sons of Rama (୧୧)

ଉପନୟନ-ବିଧି କନ୍ୟାମାନଙ୍କ ପାଇଁ କିପରି ଭାବରେ ସମାହିତ ହେଉଥିଲା ତାହାର କିଛି ନିର୍ଦ୍ଦିଷ୍ଟ ବର୍ଣ୍ଣନା ରାମାୟଣରେ ନଥିଲେ ମଧ୍ୟ କନ୍ୟା ବିବାହ ପୂର୍ବରୁ ପିତୃଗୃହରେ ଥିବା ସମୟରେ ଯେ ଯଥୋଚିତ ଶିକ୍ଷାଲାଭ କରୁଥିଲା ଏଥିରେ ସନ୍ଦେହ ନାହିଁ ।

ବୈଦିକ କାଳରେ କନ୍ୟାମାନଙ୍କୁ ସମସ୍ତଙ୍କୁ କେତେକ ନିର୍ଦ୍ଦିଷ୍ଟ ବିଷୟରେ ସାଧାରଣ ଶିକ୍ଷା ଦିଆଯିବା ସଙ୍ଗେ ସଙ୍ଗେ ସେମାନଙ୍କ ବର୍ଣ୍ଣଧର୍ମର ଉପଯୋଗୀ କେତେକ ବିଷୟରେ ମଧ୍ୟ ବିଶେଷ ଶିକ୍ଷା ଦିଆଯାଉଥିଲା । ଉଦାହରଣ ସ୍ୱରୂପ ବ୍ରାହ୍ମଣ-କନ୍ୟାମାନଙ୍କୁ ବେଦାଧ୍ୟୟନ ସମ୍ପର୍କରେ ଶିକ୍ଷା ଦିଆ ଯାଉଥିବା ବେଳେ କ୍ଷତ୍ରିୟ-କନ୍ୟାମାନଙ୍କୁ ଅସ୍ତ୍ର-ଚାଳନା ରଥଚାଳନା ଆଦି ସମ୍ପର୍କରେ ଶିକ୍ଷା ଦିଆ ଯାଉଥିଲା । ଋଗ୍‌ବେଦରେ ମଧ୍ୟ ଆମେ ଏହାର ନିଦର୍ଶନ ପାଇଥାଉଁ । (୧୨) ରାମାୟଣରେ ସ୍ପଷ୍ଟ ଭାବରେ ଠାଏ (୨।୨୦।୧୬) ଉଲ୍ଲେଖ କରାଯାଇଛି ଯେ ରାମ ବନବାସ ଯିବାର ଅବ୍ୟବହିତ ପୂର୍ବରୁ ସେହି ସମ୍ବାଦ ଯେତେବେଳେ ତାଙ୍କ ମାତା କୌଶଲ୍ୟାଙ୍କୁ ଦେବାକୁ ଆସିଥିଲେ, ସେତେବେଳେ ସେ ତାଙ୍କୁ ଅଗ୍ନିଦେବଙ୍କୁ ମନ୍ତ୍ର ଦେଇ ଆହୁତି ଦେଉଥିବାର ଦେଖିଥିଲେ । ଶଂସିତ ପଙ୍‌କ୍ତିଟି ହେଲା :

ଦଦର୍ଶ ମାତରଂ ତତ୍ର ହାବୟନ୍ତୀଂ ହୁତାସନମ୍ ।

ଅର୍ଥାତ୍ ସେ ମାଆଙ୍କୁ ଅଗ୍ନିଦେବତାଙ୍କୁ ଆହୁତି ଦେଉଥିବାର ଦେଖିଥିଲେ । କୌଶଲ୍ୟା ଶିକ୍ଷିତା ନଥିଲେ ନିଜେ ମନ୍ତ୍ର ଉଚ୍ଚାରଣ କରି ଆହୁତି ଦେଉଥାନ୍ତେ ବା କିପରି ? ଏ ଶିକ୍ଷା ନିଶ୍ଚୟ ସେ ପିତୃଗୃହରେ ପାଇଥିବେ । ରାମାୟଣରେ ଆମେ ବେଦଶାସ୍ତ୍ରରେ ପ୍ରବୀଣା ଅନସୂୟା, ସ୍ୱୟଂପ୍ରଭା, ବେଦବତୀ ଆଦି କେତେକ ମହୀୟସୀ ମହିଳାଙ୍କ ନାମ ସମ୍ପର୍କରେ ଆସିଥାଉଁ । ସେମାନେ ସମସ୍ତେ ଥିଲେ ସନ୍ନ୍ୟାସିନୀ ଅଥବା ଋଷିକା । ସନ୍ନ୍ୟାସୀ ଅଥବା ଋଷିମାନଙ୍କ ଭଳି ସେମାନେ ତପଃ-ସାଧନ କରୁଥିଲେ ଏବଂ ସେମାନଙ୍କ ଭଳି ପୂତପବିତ୍ର ଜୀବନଯାପନ କରୁଥିଲେ । କନ୍ୟାବସ୍ଥାରେ ସେମାନେ ଉପନୟନ ମଧ୍ୟ ଦେଇ ଯଦି ଆସି ନଥାନ୍ତେ, ତେବେ ସେମାନଙ୍କ ସ୍ୱ ସ୍ୱ ଜୀବନରେ ଏଭଳି ଆଧ୍ୟାତ୍ମିକ ସିଦ୍ଧି ପାଇବାରେ ସମର୍ଥ ହୋଇଥାନ୍ତେ କି ? ଶର୍ମା ଏହାର ଯଥୋଚିତ ଉତ୍ତର ଦେଇ କହନ୍ତି

To argue that all this was possible for them without upanayana would be taking away of upanayana all its importance and significance. (୧୩)

ଏଥିରୁ ଏହି ସୂଚନା ମିଳୁଛି ଯେ ବୈଦିକ ଯୁଗ ଭଳି ରାମାୟଣ-ଯୁଗରେ ମଧ୍ୟ କନ୍ୟାମାନଙ୍କୁ ପିତୃଗୃହରେ ଶିକ୍ଷାଦାନ କରିବାରେ କିଛି ଅବହେଳା ପ୍ରଦର୍ଶନ କରାଯାଉନଥିଲା । ଏହି ମତ ମଧ୍ୟ ବେଞ୍ଜାମିନ୍ ଖାଁଙ୍କ ଦ୍ୱାରା ଦୃଢ଼ ଭାବରେ ସମର୍ଥିତ ହୋଇଛି ସେ କହନ୍ତି

As we find in the Vedic age, women were allowed to perform penances and religious worship, so also in the Ramayana, we find Kaushalya, Sita, Ahalya, Anasuya, Sabari, Tara, Mandodari, Tapasis performing religious rites and well versed in the Vedic lore. (୧୩-କ)

କୈକେୟୀ ସାରଥି ରୂପେ ଜାଗ୍ରତ ରହି ଦେବାସୁର ଯୁଦ୍ଧରେ ଆହତ ହୋଇଥିବା ଦଶରଥଙ୍କୁ ଯୁଦ୍ଧଭୂମିରେ ଥାଇ ଶୁଶ୍ରୂଷା କରିଥିଲେ ଏବଂ ତତ୍‌ଫଳରେ ତାଙ୍କର ଜୀବନ-ରକ୍ଷା ହୋଇଗଲା । ଏହି କଥା ସେ ଦଶରଥଙ୍କୁ ସ୍ମରଣ କରାଇ ଦେଇଥିବାର କଥା ରାମାୟଣରେ (୨।୧୧।୧୮) ବର୍ଣ୍ଣିତ । ଯୁଦ୍ଧଭୂମିକୁ ଜଣେ ନାରୀ ନିଶ୍ଚିତ ଭାବରେ ଘରକରଣା କାମ ପାଇଁ ଯାଇନଥିବେ । ସେ ନିଶ୍ଚିତ ଭାବରେ ଯାଇଥିବେ ଲଢ଼େଇ କରିବା ପାଇଁ କିମ୍ବା ରଥ ଚଳାଇବା ପାଇଁ କିମ୍ବା ଆହତ ବ୍ୟକ୍ତିମାନଙ୍କର ପ୍ରାଥମିକ ଚିକିତ୍ସା କରିବା ପାଇଁ । ସେତେବେଳେ ପର୍ଯ୍ୟନ୍ତ କୈକେୟୀ ଥିଲେ ଅବିବାହିତା । ଏଥିରୁ ଅନୁମିତ ହୁଏ ଯେ ସେ ପିତୃଗୃହରେ କ୍ଷତ୍ରିୟନନ୍ଦିନୀସୁଲଭ ବିଦ୍ୟା ସମ୍ପର୍କରେ ଶିକ୍ଷା ପାଇଥିଲେ । ସୀତା ରାମଙ୍କ ସହିତ ବନକୁ ଯିବାର ଅବ୍ୟବହିତ ପୂର୍ବରୁ କୌଶଲ୍ୟାଙ୍କଠାରୁ ବିଦାୟ ନେବାକୁ ଆସିଥିଲେ । କୌଶଲ୍ୟା ନିଜ ପତିଙ୍କ ପ୍ରତି ତାଙ୍କର କ'ଣ କ'ଣ କର୍ତ୍ତବ୍ୟ, ତାହା ସଂକ୍ଷେପରେ ସୀତାଙ୍କୁ ବୁଝାଇଥିଲେ । ତାହା ଶୁଣିବା ପରେ ସୀତା କହିଥିଲେ

ଅଭିଜ୍ଞାସ୍ମି ଯଥା ଭର୍ତ୍ତୁର୍ବର୍ତ୍ତିତବ୍ୟଂ ଶ୍ରୁତଂ ଚ ମେ । (୧୪)

ଅର୍ଥାତ୍ ସ୍ୱାମୀଙ୍କ ସହିତ କିପରି ଚଳିବାକୁ ହେବ ସେ ବିଷୟରେ ମୁଁ ଅଭିଜ୍ଞା; ତାହା ମୁଁ ପୂର୍ବରୁ ଶୁଣିଛି । ସେ ଏହି ଜ୍ଞାନ ଅର୍ଜନ କରିଥିଲେ କେଉଁଠି ? ସେ ଏ କଥା ଶୁଣିଥିଲେ କେଉଁଠୁ ? ଏ ଉପଦେଶ ପାଇଥିଲେ କେଉଁଠି ? ପୁନଶ୍ଚ ରାମାୟଣରେ ଆଉ ଠାଏ (୨।୧୨।୪) ସୀତାଙ୍କୁ 'ଅଭିଜ୍ଞା ରାଜଧର୍ମାଣାଂ' ବା ରାଜଧର୍ମସମୂହରେ ଅଭିଜ୍ଞା ବୋଲି କୁହାଯାଇଛି । ଶ୍ଳୋକଟି ହେଲା

ଦେବକାର୍ଯ୍ୟଂ ସ୍ମ ସା କୃତ୍ୱା କୃତଜ୍ଞା ହୃଷ୍ଟଚେତନା ।
ଅଭିଜ୍ଞା ରାଜଧର୍ମାଣାଂ ରାଜପୁତ୍ରୀ ପ୍ରତୀକ୍ଷତେ ॥

ଅର୍ଥାତ୍ ବିଦେହରାଜକୁମାରୀ ସୀତା ଦୈନନ୍ଦିନ କର୍ତ୍ତବ୍ୟସମୂହ ତଥା ରାଜଧର୍ମ-ସମୂହରେ ଅଭିଜ୍ଞା ଥିଲେ । ଏଣୁ ଦେବପୂଜା ସାରି ସେ ପ୍ରସନ୍ନ ଚିତ୍ତରେ ରାମଙ୍କ ଆଗମନକୁ ଅପେକ୍ଷା କରି ରହୁଥିଲେ । ପାରିବାରିକ ଶିକ୍ଷା ତଥା ରାଜଧର୍ମ ସମ୍ପର୍କୀୟ ଶିକ୍ଷା ସୀତା ପାଇଥିଲେ କେଉଁଠି ? ଏହି ଶିକ୍ଷା ସେ ନିଶ୍ଚିତ ଭାବରେ କନ୍ୟାବସ୍ଥାରେ ଥିବା ବେଳେ ପିତୃଗୃହରେ ପାଇଥିବେ ।

ସ୍ତ୍ରୀମାନେ ରାଜଧର୍ମ ସମ୍ପର୍କରେ ସମ୍ୟକ୍ ଭାବରେ ଅବହିତା ଥାଇ ସେମାନଙ୍କ ସ୍ୱାମୀମାନଙ୍କୁ ଓ ଅନ୍ୟମାନଙ୍କୁ ତତ୍‌ସମ୍ପର୍କରେ ଉପଦେଶ ଦେଉଥିବା କଥା ମଧ୍ୟ ରାମାୟଣରେ ଅନେକତ୍ର ବର୍ଣ୍ଣିତ । ମନ୍ଦୋଦରୀ ରାବଣକୁ ବାରମ୍ବାର ଉପଦେଶ ଦେଇ କହି ଆସୁଥିଲେ ଯେ ରାଜାଙ୍କ ପକ୍ଷରେ ପରସ୍ତ୍ରୀ ଅପହରଣ କରିବା ପାପ; ତେଣୁ ସୀତାଙ୍କୁ ତାଙ୍କ ସ୍ୱାମୀଙ୍କୁ ଫେରାଇ ଦେବା ହେଉଛି ତାଙ୍କ କର୍ତ୍ତବ୍ୟ । ରାବଣ କିନ୍ତୁ ଏହା ମାନିନଥିଲେ ଏବଂ ତାହାର କୁପରିଣତି ଆମ ସମସ୍ତଙ୍କୁ ଜଣା । ପ୍ରଥମ ଥର ବାଳୀଙ୍କ ହାତରୁ ପରାସ୍ତ ହୋଇଯିବା ପରେ ଦ୍ୱିତୀୟ ଥର ଯେତେବେଳେ ସୁଗ୍ରୀବ ବାଳୀଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ ଦେଇଥିଲେ, ସେତେବେଳେ ବାଳୀପତ୍ନୀ ତାରା ଏହି ଆହ୍ୱାନର ତାତ୍ପର୍ଯ୍ୟ ବୁଝି-ପାରିଥିଲେ । ସେ ଜାଣି ପାରିଥିଲେ ଯେ ଅନ୍ୟ କୌଣସି ବଳବାନ୍ ବ୍ୟକ୍ତିଙ୍କର ସହାୟତା ପାଇ ସୁଗ୍ରୀବ ଏପରି କରିବାକୁ ଆସିଛନ୍ତି । ସେ ତେଣୁ ବାଳୀଙ୍କୁ ଯୁଦ୍ଧକୁ ଯିବା ପାଇଁ ବାରଣ କରିଥିଲେ । ବାଳୀ ଏହି ବାରଣ ନମାନିବା ଫଳରେ ଶେଷରେ ମୃତ୍ୟୁମୁଖରେ ପଡ଼ିଥିଲେ । ତାରାଙ୍କ ବିଶ୍ଳେଷଣବୁଦ୍ଧି ସମ୍ପନ୍ନ ନିଷ୍ପତ୍ତିର ଆଉ ଏକ ନିଦର୍ଶନ ଆମେ ରାମାୟଣରେ ପାଇଥାଉଁ । ବାଳୀଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଅଙ୍ଗଦଙ୍କୁ ଯେତେବେଳେ କିଷ୍କିନ୍ଧାର ରାଜା କରିବା ପାଇଁ ହନୁମାନ୍ ପ୍ରସ୍ତାବ ଦେଇଥିଲେ, ତାରା ତାହାକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ସେ ସ୍ପଷ୍ଟ ଭାବରେ କହିଥିଲେ ଯେ ରାଜସିଂହାସନ ଲାଗି ସୁଗ୍ରୀବ ପାତ୍ର ହୋଇଛନ୍ତି, ତେଣୁ ଅଙ୍ଗଦ ରାଜା ହେଲେ ସେ ମଧ୍ୟ ତାଙ୍କ ଦ୍ୱାରା ନିହତ ହୋଇପାରନ୍ତି । ତାରାଙ୍କ ସୁପରାମର୍ଶ ଅନୁଯାୟୀ ଅଙ୍ଗଦ ଯୌବରାଜ୍ୟ-ପଦରେ ଅଭିଷିକ୍ତ ହେଲେ ଏବଂ ସୁଗ୍ରୀବ ରାଜା ହେଲେ । ତାରାଙ୍କ ଏବଂବିଧ ବିଚାରବୁଦ୍ଧିଶୀଳତାକୁ ଦେଖି ଆମିନ ଖାଁ ଜଣେ ରାଜନୀତିବିଶାରଦା ମହିଳାଙ୍କ ଦୂରଦୃଷ୍ଟିସମ୍ପନ୍ନ ନିଷ୍ପତ୍ତି ବୋଲି କହିଛନ୍ତି । ସେ ତାରାଙ୍କୁ ପ୍ରଶଂସା କରି କହିଛନ୍ତି

Tara was a politician of no mean order. (୧୪-କ)

ଏହିଭଳି ବିଚାରବୁଦ୍ଧି ସମ୍ପନ୍ନ ପରାମର୍ଶ ଦେଉଥିବା ନାରୀମାନେ କେବେହେଲେ କ'ଣ ଅଶିକ୍ଷିତା ଥାଇ ପାରନ୍ତି ? ଅତଏବ, ସେମାନେ ନିଶ୍ଚିତ ଭାବରେ ଶିକ୍ଷିତା ଥିଲେ ଏବଂ ଏହି ଶିକ୍ଷା-ଦୀକ୍ଷା ସେମାନେ କନ୍ୟାବସ୍ଥାରେ ପାଇଥିଲେ ।

କନ୍ୟାମାନଙ୍କୁ ନୃତ୍ୟ, ଗୀତ, ବାଦ୍ୟ ଆଦି ସୂକ୍ଷ୍ମ କଳାସମ୍ବନ୍ଧ ବିଷୟରେ ମଧ୍ୟ ଶିକ୍ଷା ଦିଆଯାଉଥିଲା । ରାମାୟଣରେ (୧।୫।୨୨) ଅଯୋଧ୍ୟାପୁରୀର ବର୍ଣ୍ଣନା ପ୍ରସଙ୍ଗରେ କୁହାଯାଇଛି, ତାହା ଥିଲା 'ବଧୂନାଟକସଂଘୈଶ୍ଚ ସଂଯୁକ୍ତା', ଅର୍ଥାତ୍ ନଟୀସଂଘ ଦ୍ୱାରା ଭରପୂର । ଏହି ନାଟ୍ୟମଣ୍ଡଳୀରେ କେବଳ ସ୍ତ୍ରୀଲୋକମାନେ ହିଁ ସଭ୍ୟା ଥିଲେ । ଏହା ଅତିରିକ୍ତ ପୁରୁଷମାନଙ୍କର ସ୍ୱତନ୍ତ୍ର ନାଟ୍ୟମଣ୍ଡଳୀମାନ ଅବଶ୍ୟ ଥିଲା । ଆମେ ରାବଣର ରାଜପ୍ରାସାଦ ନୃତ୍ୟଗୀତ-ବାଦ୍ୟବିଶାରଦା ରମଣୀମାନଙ୍କ ଦ୍ୱାରା ଭରପୂର ଥିବାର ନିଦର୍ଶନ ପାଇଥାଉଁ । ରାମାୟଣର ବର୍ଣ୍ଣନା ଅନୁଯାୟୀ (୫।୧୧।୪୩) ହନୁମାନ୍ ସୀତାଙ୍କୁ ଖୋଜି ଖୋଜି ରାବଣର ଅନ୍ତଃପୁରରେ ରାତ୍ରି କାଳରେ ଗୋପନରେ ପ୍ରବେଶକରି ଦେଖିଲେ ଯେ ବହୁ ସ୍ତ୍ରୀ ନୃତ୍ୟ, ଗୀତ, କ୍ରୀଡ଼ା ଆଦି ପରେ ଶ୍ରାନ୍ତା-କ୍ଳାନ୍ତା ଏବଂ ସେମାନେ ବିପର୍ଯ୍ୟସ୍ତକେଶା ଓ ସ୍ରସ୍ତବସନା ହୋଇ ଶୋଇଛନ୍ତି । ଏହି ସ୍ତ୍ରୀମାନେ ନିଶ୍ଚିତ ଭାବରେ ନୃତ୍ୟ, ଗୀତ ଆଦି ଗୃହକଳା ବିଷୟରେ ଶିକ୍ଷାଲାଭ କରିଥିବେ । ଅତଏବ, ଏଥିରୁ ଏହି ସୂଚନା ମିଳୁଛି ଯେ ରାମାୟଣକାଳୀନ ସମାଜରେ କନ୍ୟାମାନଙ୍କୁ ନୃତ୍ୟ, ଗୀତ ଆଦି ଗୃହକଳା ସମ୍ପର୍କରେ ଶିକ୍ଷା ଦେବା ଲାଗି ବିଶେଷ ଧ୍ୟାନ ଦିଆ ଯାଉଥିଲା ।

ଅରଣ୍ୟବାସ ସମୟରେ ସୀତା ରାମଙ୍କୁ କେତେକ ବିଷୟରେ ଉପଦେଶ ଦେଇଥିବା କଥା ରାମାୟଣର ଅରଣ୍ୟକାଣ୍ଡସ୍ଥ ନବମ ସର୍ଗରେ ବର୍ଣ୍ଣିତ । ଏହି ଉପଦେଶ ଦେବାରେ ସୀତାଙ୍କ ମନରେ କିଛି କିଛି ଜ୍ଞାନର ଅହମିକା ନଥିଲା । ବରଂ ସ୍ୱାମୀଙ୍କ ପ୍ରତି ତାଙ୍କର ପୂର୍ବଭଳି ବହୁମାନ୍ୟତା ଅତୁଟ ଥିଲା । ସେ ଜାଣିଥିଲେ ଯେ ତାଙ୍କ ସ୍ୱାମୀ ଏହିସବୁ ବିଷୟରେ ସମ୍ପୂର୍ଣ୍ଣ ଅବହିତ । ତଥାପି ସ୍ତ୍ରୀ ହିସାବରେ ତାଙ୍କର କର୍ତ୍ତବ୍ୟ ସମାପନ କରିବାକୁ ଯାଇ ସେ ସ୍ୱାମୀଙ୍କୁ ଖାଲି ସେହି କଥାଗୁଡ଼ିକ ମନେ ପକାଇ ଦେଇଥିଲେ । ସେ ସ୍ୱାମୀଙ୍କୁ ଶିକ୍ଷା ଦେଉଛନ୍ତି ବୋଲି କଦାପି ଦାବି କରି ନଥିଲେ । ବାସ୍ତବିକ, ସଂସ୍କୃତ ସାହିତ୍ୟରେ କାବ୍ୟକୁ 'କାନ୍ତାସମ୍ମିତ-ଉପଦେଶ' ବୋଲି କାବ୍ୟପ୍ରକାଶକାର ମମ୍ମଟ (୧।୨) କହିଛନ୍ତି । ଅତଏବ, କାନ୍ତାର ଉପଦେଶ ସର୍ବଦା ଥାଏ ମଧୁର ଓ ସୁଖପ୍ରଦ । ସୀତା ଏହିଭଳି ମଧୁର ଭାବରେ ରାମଙ୍କୁ ଉପଦେଶ ଦେଇଥିଲେ । ତେଣୁ ସେ ଅତି ବିନମ୍ର ଭାବରେ କହିଥିଲେ

ସ୍ନେହାଚ୍ଚ ବହୁମାନାଚ୍ଚ ସ୍ମାରୟେ ନ ତୁ ଶିକ୍ଷୟେ । (୧୫)

ଅର୍ଥାତ୍ ମୋ'ର ଆପଣଙ୍କ ପ୍ରତି ଖୁବ୍ ସ୍ନେହ, ଖୁବ୍ ମାନ୍ୟତା । ମୁଁ ଆପଣଙ୍କୁ ଶିକ୍ଷା ଦେବା ଲାଗି ନୁହେଁ ଖାଲି ଯାହା ଏହି ବିଷୟରେ ସ୍ମରଣ କରାଇଦେଉଛି

ବାସ୍ତବିକ ସୀତାଙ୍କର ଏହି ଶିଷ୍ଟ, ବିନମ୍ର ଅଥଚ ପ୍ରଜ୍ଞାଶୀଳ ବାଣୀ ଅନନ୍ୟ । ଏହା ତାଙ୍କ ସୁଶିକ୍ଷାର ପରିଚୟ ଦେଇଥାଏ । ସେ କେଉଁ କେଉଁ ବିଷୟରେ ରାମଙ୍କୁ ଉପଦେଶ ଦେଇଥିଲେ, ତାହାର ତାତ୍ପର୍ଯ୍ୟ ସମ୍ପର୍କରେ ଏଠାରେ ବିଶଦ ଭାବରେ ଆଲୋଚନା କରାଯାଉଛି । ତଦ୍‌ବିଷୟରେ ସଂକ୍ଷେପରେ ଯାହା ସୂଚନା ଦିଆ ଯାଉଛି, ତାହା ଅନୁଧ୍ୟାନ କଲେ ଜାଣିହେବ ତାଙ୍କର ଶିକ୍ଷା କେତେ ଦୂର ଥିଲା ସଂପ୍ରସାରିତ ତଥା ଗଭୀର । ସେ କହିଥିଲେ

କ) ମନୁଷ୍ୟ ପାଇଁ ତିନୋଟି କାମଜ ବିପଦ ଅଛି । ତାହା ହେଲା ପରଦାରାଭି-ଗମନ, ବିନା ଶତ୍ରୁତାରେ ରୌଦ୍ରାଚରଣ ଓ ମିଥ୍ୟାଭାଷଣ । ମନୁଷ୍ୟକୁ ଏହି ତିନୋଟି ବିପଦ ନଆସିବା ଲାଗି ସତତ ସତର୍କ ରହିବାକୁ ହେବ ।

ଖ) ପୁରୁଷ ସ୍ୱୀୟ ପତ୍ନୀ ପ୍ରତି ସର୍ବଦା ନିଷ୍ଠାବାନ୍ ଓ ଅନୁରକ୍ତ ରହିବା ଉଚିତ ।

ଗ) ମନୁଷ୍ୟ ସତ୍ୟସନ୍ଧ ଥାଇ ସର୍ବଦା ଧର୍ମାଚରଣ କରିବା ଉଚିତ ।

ଘ) ପିତୃବଚନ ସର୍ବଥା ପାଳନୀୟ ।

ଙ) ମନୁଷ୍ୟ ଜିତେନ୍ଦ୍ରିୟ ଭାବରେ ଜୀବନନିର୍ବାହ କରିବା ଉଚିତ ।

ଚ) କ୍ଷତ୍ରିୟମାନଙ୍କର ଧନୁଶର ଧରିବାର ଉଦ୍ଦେଶ୍ୟ ହେଉଛି ଦୁର୍ବଳ ଓ ଆର୍ତ୍ତଜନଙ୍କୁ ରକ୍ଷା କରିବା, ସେମାନଙ୍କୁ ପୀଡ଼ା ଦେବାପାଇଁ କଦାପି ନୁହେଁ ।

ଛ) କ୍ଷତ୍ରିୟ ବୀର ବନବାସୀର ଜୀବନଯାପନ କଲାବେଳେ ବନବାସୀ ମୁନିଋଷିଙ୍କ ଭଳି ଅହିଂସାବ୍ରତ ପାଳିବା ଉଚିତ । କେବଳ ଆବଶ୍ୟକ ପଡ଼ିଲେ ତାଙ୍କୁ ଶସ୍ତ୍ର-ଉତ୍ତୋଳନ କରିବାକୁ ହେବ ଏବଂ ତାହା କେବଳ ଆର୍ତ୍ତଜନଙ୍କ ରକ୍ଷଣ ଲାଗି ।

ଜ) ଧର୍ମରୁ ଅର୍ଥ ମିଳେ; ଧର୍ମରୁ ସୁଖ ମିଳେ; ଧର୍ମରୁ ସଂସାରର ସକଳ ସାର ଜିନିଷ ମିଳେ ।

ଝ) ଶରୀରର ସୁଖସ୍ୱାଚ୍ଛନ୍ଦ୍ୟକୁ ତ୍ୟାଗ କରି ବନବାସୀ ବ୍ୟକ୍ତିଙ୍କୁ କୃଚ୍ଛ୍ରସାଧନା-ପୂର୍ବକ ଧର୍ମଲାଭ ଲାଗି ସାଧନାରତ ରହିବାକୁ ହେବ ।

ଞ) ଶରୀର ଓ ମନକୁ ନିରନ୍ତର ଶୁଦ୍ଧ-ପବିତ୍ର ରଖି ତାଙ୍କୁ ଧର୍ମାଚରଣ କରିବାକୁ ହେବ ।

ସୀତା ଏହିସବୁ ଉପଦେଶବାଣୀ ରାମଙ୍କୁ ଶୁଣାଇବା ପରେ ନିଜର ନମ୍ରତା ପ୍ରକାଶପୂର୍ବକ ପୁଣି କହୁଛନ୍ତି, ' ମୁଁ ସ୍ତ୍ରୀଚାପଲ୍ୟ ଫଳରେ ଆପଣଙ୍କୁ ଏତକ କଥା କହିଦେଲି । ଆପଣଙ୍କ ଆଗରେ ଧର୍ମକଥା ବଖାଣିବାକୁ କାହାର ବା ସାମର୍ଥ୍ୟ ଅଛି ? ଆପଣ ନିଜ ବିଚାରବୁଦ୍ଧି ବଳରେ ଆପଣଙ୍କ ସାନ ଭାଇଙ୍କ ସହିତ

ପରାମର୍ଶ କର ଯାହା କରିବାର କଥା ତାହା କରନ୍ତୁ ।' (୧୭) ସୀତାଙ୍କର ଏହି ଉପଦେଶବାଣୀସମୂହ ଅନୁଧ୍ୟାନ କରିସାରିବା ପରେ କିଏ ବା କହିବ ଯେ ସେ ଥିଲେ ଅଶିକ୍ଷିତା ? ଅତଏବ, ସେ ଥିଲେ ଖୁବ୍ ଶିକ୍ଷିତା ଏବଂ ଏହି ଶିକ୍ଷା ସେ କନ୍ୟାବସ୍ଥାରେ ପିତ୍ରାଳୟରେ ପାଇଥିଲେ ।

ଏହିସବୁ ଆଲୋଚନାରୁ ଆମର ସ୍ପଷ୍ଟ ପ୍ରତୀତ ହେବ ଯେ ରାମାୟଣକାଳୀନ ସମାଜରେ କନ୍ୟାଜନ୍ମ ପୁତ୍ରଜନ୍ମ ପରି ସମାନ ଭାବରେ ଥିଲା ପିତାମାତାଙ୍କ ପାଇଁ ଆଦରଣୀୟ ଏବଂ ପୁତ୍ରସନ୍ତାନ ଭଳି କନ୍ୟାସନ୍ତାନର ଯଥୋଚିତ ଯତ୍ନ ନିଆଯାଉଥିଲା । ସୁଯୋଗ୍ୟ ପତ୍ନୀ ହିସାବରେ ଭବିଷ୍ୟତ୍‌ରେ ଠିଆ କରାଇବା ପାଇଁ କନ୍ୟାକୁ ଉପଯୁକ୍ତ ଶିକ୍ଷାଦୀକ୍ଷା ଦେବାର ବ୍ୟବସ୍ଥା କରାଯାଉଥିଲା । ଲିଙ୍ଗର ପାର୍ଥକ୍ୟ ହେତୁ କନ୍ୟା କୌଣସି ପ୍ରକାର ପାରିବାରିକ ବାଛବିଚାରର ସମ୍ମୁଖୀନା ହେଉ ନଥିଲା । କନ୍ୟାବସ୍ଥାର ଉତ୍ତରଣ ପରେ ସେ ହେଉଥିଲା ପତ୍ନୀ । ବର୍ତ୍ତମାନ ପତ୍ନୀର ସ୍ୱରୂପ କିପରି ଭାବରେ ରାମାୟଣରେ ଚର୍ଚ୍ଚିତ, ତାହା ବିଚାର୍ଯ୍ୟ ।

## ପତ୍ନୀ

ଅନେକ ସମୟରେ କୁହାଯାଇଥାଏ ଯେ କୌଣସି ସଭ୍ୟତାର କୃଷ୍ଟି ମାପିବାକୁ ଗଲେ ସେହି ସମାଜରେ ସ୍ତ୍ରୀମାନଙ୍କ ପ୍ରତି ଥିବା ଦୃଷ୍ଟିକୋଣକୁ ବିଚାରକୁ ନେବା ଉଚିତ । ଯେଉଁ ଜାତି ଯେତେ ସଭ୍ୟ, ତାହାର ନାରୀସମାଜ ପ୍ରତି ଦୃଷ୍ଟିଭଙ୍ଗୀ ସେତେ ଉନ୍ନତ । କେବଳ ଶିଷ୍ଟାଚାର ଦୃଷ୍ଟିରୁ ଯେ ସ୍ତ୍ରୀକୁ ପ୍ରାଥମିକତା ଦେଇଦେଲେ ସମାଜ ଉନ୍ନତ ହୋଇଯିବ, ତାହା ଭାବିବା ଠିକ୍ ନୁହେଁ । ଅନେକ ସ୍ଥାନରେ ଔପଚାରିକତା ଦୃଷ୍ଟିରୁ ଯାନବାହାନରେ କିମ୍ବା ଆସନରେ ବସିବା ପାଇଁ ସ୍ତ୍ରୀମାନଙ୍କୁ ପ୍ରାଥମିକତା ଦିଆ ଯାଇଥାଏ । କିନ୍ତୁ ସେହି ସେହି ସମାଜମାନଙ୍କରେ ସ୍ତ୍ରୀମାନଙ୍କ ଉପରେ ବେଶି ଅତ୍ୟାଚାର ହୋଇଥାଏ; ସେଠାରେ ଗୃହପରିଚାଳନାଜନିତ ଦୁଃଖଦୁର୍ଦ୍ଦଶା ବେଶି ପରିବାରକୁ ଘାରିଥାଏ । ତେଣୁ ଆର୍ଯ୍ୟ ଚନ୍ତାନାୟକମାନେ ଆହୁରି ଟିକିଏ ଆଗେଇ ଯାଇ କହିଲେ ଯେ ଯେଉଁଠି ସ୍ୱାମୀ ଓ ସ୍ତ୍ରୀ ପରସ୍ପର ପ୍ରତି ଅତୀବ ବିଶ୍ୱାସନିଷ୍ଠ ଓ ସ୍ନେହନିଷ୍ଠ, ଯେଉଁଠି ଜଣେ ଅପରକୁ ଦେବାରେ ପାଏ ବେଶି ଆନନ୍ଦ, ଅପରଠାରୁ ନେବାରେ କିନ୍ତୁ ନୁହେଁ, ସେହି ସମାଜ ହେଉଛି ପ୍ରକୃତରେ ସଭ୍ୟ ସମାଜ । ଯେଉଁଠି ନାରୀମାନେ ପୂଜିତା, ସେଠି ଦେବତାମାନେ ରମଣ କରନ୍ତି ବୋଲି ସେମାନେ କହିବା ସଙ୍ଗେ ସଙ୍ଗେ ପୁଣି କୁହନ୍ତି ଯେ ପତି ହେଉଛନ୍ତି ପତ୍ନୀର ପରମ ଦେବତା—ଇହକାଳ ଓ ପରକାଳର ସୁଖର ନିଧାନ ତଥା ନିଦାନ । ବାଲ୍ମୀକି ରାମାୟଣରେ ପତିପତ୍ନୀଙ୍କର ଏହି ଚିତ୍ର ଅତି ସୁନ୍ଦର

ଭାବରେ ଅଙ୍କିତ । ରାମ ଓ ସୀତା ହେଉଛନ୍ତି ଆଦର୍ଶ ଦମ୍ପତି । ସେମାନଙ୍କୁ ଯୋଗକ୍ରମେ ରାମାୟଣରେ ବ୍ରହ୍ମଚାରୀ ଓ ବ୍ରହ୍ମଚାରିଣୀ ବୋଲି କୁହାଯାଇଛି । ସେମାନେ ତ ସ୍ୱାମୀ-ସ୍ତ୍ରୀ ଭାବରେ ଜୀବନଯାପନ କରୁଥିଲେ । ତା'ହେଲେ ବ୍ରହ୍ମଚାରୀ ଓ ବ୍ରହ୍ମଚାରିଣୀ ହେଲେ କେମିତି ବୋଲି କେହି କେହି ପ୍ରଶ୍ନ ପଚାରି ପାରନ୍ତି । ଏହାର ଉତ୍ତର ହେଉଛି, ସେମାନେ ଦାମ୍ପତ୍ୟ-ଜୀବନରେ ମଧ୍ୟ ବ୍ରହ୍ମଚର୍ଯ୍ୟ ରକ୍ଷା କରିଥିଲେ । ଦାମ୍ପତ୍ୟ ଜୀବନରେ ଯେ ବ୍ରହ୍ମଚର୍ଯ୍ୟ ପାଳନୀୟ ଏବଂ ଏହା ପାଳିବା ସମ୍ଭବ, ଏ ବିଷୟରେ ସମ୍ୟକ୍ ସୂଚନା ପୂର୍ବବର୍ତ୍ତୀ 'ରାମାୟଣରେ ବିବାହ' ଶୀର୍ଷକ ପରିଚ୍ଛେଦରେ ଦିଆଯାଇଛି । ଯୌନଜୀବନରେ ରାମ ଓ ସୀତା ପରସ୍ପର ପ୍ରତି ଥିଲେ ଖୁବ୍ ବିଶ୍ୱାସୀ । ସେଥିପାଇଁ ଯଥାର୍ଥରେ ସେ ଦୁହିଁଙ୍କୁ ଯୋଗକ୍ରମେ କୁହାଯାଇଛି ବ୍ରହ୍ମଚାରୀ ଓ ବ୍ରହ୍ମଚାରିଣୀ । ରାମାୟଣର ଛନ୍ଦେ ଛନ୍ଦେ ଏହି ଆଦର୍ଶ ଦାମ୍ପତ୍ୟ-ଜୀବନ ଉପରେ ଗୁରୁତ୍ୱ ଦିଆଯାଇଛି । ସୀତାଙ୍କୁ ଉକ୍ତ ଗ୍ରନ୍ଥରେ ଜଣେ ଆଦର୍ଶ ପତ୍ନୀ ଭାବରେ ଯେଉଁଭଳି ଚର୍ଚ୍ଚିତ କରାଯାଇଛି, ତାହା ଉପରେ ମନ୍ତବ୍ୟ ଦେବାକୁ ଯାଇ ବେଞ୍ଜାମିନ୍ ଖାଁ ଲେଖିଛନ୍ତି

> The Valmikian Ramayana presents us with a glorious illustration of an ideal womanhood in Sita so much so that her purity of moral character and her devotion to her husband in prosperity and poverty have become proverbial. (୧୭)

ସେହି ସୀତା ଏବେ ମଧ୍ୟ ପ୍ରତ୍ୟେକ ଭାରତୀୟ ନାରୀର ଆଦର୍ଶସ୍ଥାନୀୟା । ଏହି ପୃଷ୍ଠଭୂମିରେ ରାମାୟଣୀୟ ସମାଜରେ ପତ୍ନୀର ସ୍ୱରୂପ ବିଷୟରେ ଆଲୋଚନା କରିବା ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ ।

ଏହି ପୁସ୍ତକର ପ୍ରଥମ ଭାଗରେ ପଞ୍ଚମ ପରିଚ୍ଛେଦସ୍ଥ 'ସ୍ତ୍ରୀଧର୍ମ' ଶୀର୍ଷକ ଅନୁଚ୍ଛେଦସମୂହରେ ରାମାୟଣୀୟ ସମାଜରେ କିଭଳି ସ୍ତ୍ରୀଧର୍ମ ପାଳିତ ହେଉଥିଲା ତଦ୍‌ବିଷୟ ବିଶଦ ଭାବରେ ଆଲୋଚିତ । ସେହିସବୁ ବିଷୟର ପୁନରାଲୋଚନା ଏଠାରେ କରିବା ଅନାବଶ୍ୟକ । ତେବେ ସେହି ଆଲୋଚନାରୁ ଯେଉଁ ନିଷ୍କର୍ଷସମୂହ ନିଷ୍ପନ୍ନ ହୁଏ, ତାହାର ଏକ ସଂକ୍ଷିପ୍ତ ସୂଚନା ଦେବାର ଆବଶ୍ୟକତା ରହିଅଛି । ଏହି ନିଷ୍କର୍ଷସମୂହ ହେଲା

କ) ପରିବାରରେ ସ୍ତ୍ରୀ ଥିଲା ସ୍ୱାମୀଙ୍କର ଅନୁଗତା ।

ଖ) ସ୍ତ୍ରୀର ସ୍ୱାମୀଙ୍କ ପ୍ରତି ଏଭଳି ଆନୁଗତ୍ୟଭାବ ଥିଲେ ମଧ୍ୟ ସ୍ୱାମୀ ଓ ସ୍ତ୍ରୀ ଉଭୟ

ନିଜ ନିଜର କର୍ତ୍ତବ୍ୟମାନ ନିଷ୍ଠାର ସହିତ ସମାହିତ କରୁଥିଲେ ଏବଂ ସେଥିରେ ବଡ଼ସାନର ବାଛବିଚାର ନଥିଲା ।

ଗ) କନ୍ୟା ପତ୍ନୀ ରୂପେ ପତିଗୃହକୁ ଆସିବା ପୂର୍ବରୁ ତା'ର କର୍ତ୍ତବ୍ୟସମ୍ବନ୍ଧ ସମ୍ପର୍କରେ ସମ୍ପୂର୍ଣ୍ଣ ଭାବରେ ଥିଲା ଅବହିତା । ସେଥିପାଇଁ ସେ ପିତୃଗୃହରେ ଯଥାରୀତି ଶିକ୍ଷା ପାଉଥିଲା ।

ଘ) ସ୍ତ୍ରୀ ସ୍ୱାମୀଙ୍କର କେବଳ ନର୍ମସହଚରୀ ନଥିଲା । ସେ ମଧ୍ୟ ଥିଲା ତାଙ୍କର କର୍ମସହଚରୀ ତଥା ଧର୍ମସହଚରୀ ।

ଙ) ସ୍ୱାମୀ ସ୍ତ୍ରୀ ନିକଟରେ ଥିଲେ ଦେବତାତୁଲ୍ୟ ପୂଜ୍ୟ ।

ଚ) ପାତିବ୍ରତ୍ୟ ଓ ସତୀତ୍ୱ ସ୍ତ୍ରୀର ପ୍ରଧାନ ଧର୍ମ ରୂପରେ ଗଣ୍ୟ ହେଉଥିଲା । ସ୍ତ୍ରୀ ଯେତେ ଅନ୍ୟାନ୍ୟ ବିଷୟରେ ଗୁଣବତୀ ଥିଲେ ମଧ୍ୟ ସତୀତ୍ୱ ବିନା ସେହି ଗୁଣସମୂହର କିଛି ହିଁ ମୂଲ୍ୟ ନଥିଲା ।

ଛ) ସେତେବେଳେ ସତୀଦାହ-ପ୍ରଥା ପ୍ରଚଳିତ ନଥିଲା ।

ଜ) କେଉଁଠାରେ କେମିତି ବିଧବା-ବିବାହ ପ୍ରଥା ପ୍ରଚଳିତ ଥିଲେ ହେଁ ସମାଜରେ ସାଧାରଣତଃ ଏହା ବିଶେଷ ଭାବରେ ଲୋକପ୍ରିୟତା ଅର୍ଜନ କରି ନଥିଲା । ବିଧବା ରମଣୀମାନଙ୍କୁ ପତିହୀନ ଦୁଃଖଦ ଜୀବନଯାପନ କରିବାକୁ ପଡ଼ୁଥିଲା ।

ଝ) ପତିଙ୍କ ଇହଲୋକ ଓ ପରଲୋକର ସୁଖ-କାମନା କରିବା ଥିଲା ସ୍ତ୍ରୀର ପରମ କର୍ତ୍ତବ୍ୟ ।

ଞ) ପତିଙ୍କର ସର୍ବଦା ଅନୁଗାମିନୀ ହେବା ସ୍ତ୍ରୀ ପାଇଁ ଥିଲା ପରମ ଧର୍ମ ।

ଟ) ସେତେବେଳେ ସମାଜରେ କେତେକ ସ୍ୱୈରଚାରିଣୀ ଦୁଷ୍ଟା ସ୍ତ୍ରୀ ଅବଶ୍ୟ ଥିଲେ । କିନ୍ତୁ ସେମାନେ ଥିଲେ ସର୍ବଥା ଅନାଦୃତା ଓ ନିନ୍ଦିତା ।

ଠ) ସ୍ତ୍ରୀର ଇଚ୍ଛା ବିରୁଦ୍ଧରେ ସ୍ୱାମୀ ତା' ସହିତ କାମୋପଭୋଗରେ ମାତି ପାରୁନଥିଲେ ।

ଡ) ପରିବାରରେ ସ୍ୱାମୀ ସ୍ତ୍ରୀକୁ ଅପେକ୍ଷାକୃତ ନିମ୍ନତର ସ୍ଥାନ ନଦେଇ ସର୍ବଦା ନିଜର ସାଥୀ ବୋଲି ଗ୍ରହଣ କରୁଥିଲେ ।

ପତ୍ନୀର ଏହି ଯେଉଁ ସ୍ୱରୂପ କଥା ଉପରେ ଦର୍ଶାଯାଇଛି, ତାହା ରାମାୟଣୀୟ ପତ୍ନୀର ପ୍ରାୟ ସକଳ ପ୍ରଧାନ ପ୍ରଧାନ ବିଭବକୁ ସ୍ପର୍ଶ କରିଛି । ଆଉ ଯେଉଁ କେତୋଟି ବିଶିଷ୍ଟ ବିଭବ ରହିଗଲା, ତଦ୍‌ବିଷୟରେ ନିମ୍ନ ଅନୁଚ୍ଛେଦସମୂହରେ ଆଲୋଚନା କରାଯାଉଛି ।

ପ୍ରଥମ କଥା ହେଲା ପତ୍ନୀର ସ୍ୱାମୀଙ୍କ ପାଇଁ ଉପଦେଷ୍ଟ୍ରୀର ଭୂମିକା ଗ୍ରହଣ । ପତି ଯେ ସବୁବେଳେ ଠିକ୍ କଥା କହୁଥିବେ, ଠିକ୍ କଥା ଚିନ୍ତା କରୁଥିବେ, ଠିକ୍ କାମ କରୁଥିବେ ତାହା ନୁହେଁ । ବେଳେ ବେଳେ ସେ ଭୁଲ ବାଟରେ ଯାଉଥିବେ । ସ୍ତ୍ରୀ ନୀରବରେ ଓ ଅବନତ ଶିରରେ ଯଦି ଏହା ସହିଲେ, କିମ୍ବା କିଛି ପ୍ରତିବାଦ ନକଲା, ତେବେ ସେ ତା'ର କର୍ତ୍ତବ୍ୟ ଠିକ୍ ଭାବରେ ସମାପନ କଲା ବୋଲି କୁହାଯାଇ ପାରିବ ନାହିଁ । ତଦ୍ଦ୍ୱାରା ସେ ତା'ର ସ୍ୱାମୀଙ୍କ 'ସହଧର୍ମିଣୀ' ନାମକୁ ସାର୍ଥକ କଲା ବୋଲି କୁହାଯାଇ ପାରିବ ନାହିଁ । ତା'କୁ ସ୍ୱାମୀଙ୍କୁ ଠିକଣା କଥାଟି କହିବାକୁ ହେବ । ପୁଣି ତାହା ଏପରି ଭାବରେ କହିବାକୁ ହେବ ଯେ ସ୍ୱାମୀ ବୁଝିପାରିବେ ନାହିଁ ଯେ ତାଙ୍କୁ ସ୍ତ୍ରୀଠାରୁ ଉପଦେଶ ଗ୍ରହଣ କରିବାକୁ ପଡ଼ୁଛି । ରାମାୟଣୀୟ ପତ୍ନୀମାନେ ଏହି କର୍ତ୍ତବ୍ୟ ପାଳନ କରିବାରେ ସମ୍ୟକ୍ ଭାବରେ ସଚେତନ ଥିଲେ ଭଳି ଜଣାପଡ଼େ । ସୀତା କିପରି ରାମଙ୍କୁ ଉପଦେଶ ଛଳରେ ଅନେକ ଭଲ ଭଲ କଥା କହିଥିଲେ ତାହା ପୂର୍ବରୁ ବର୍ଣ୍ଣିତ । ଆଉ ମଧ୍ୟ ସେ କିପରି କହିଥିଲେ ଯେ ରାମଙ୍କୁ ଖାଲି ସ୍ମରଣ କରାଇ ଦେଉଛନ୍ତି ଏବଂ କଦାପି ଶିକ୍ଷା ଦେବାର ଚେଷ୍ଟା କରୁ ନାହାନ୍ତି, ତାହା ମଧ୍ୟ ପୂର୍ବରୁ ବର୍ଣ୍ଣିତ । ଏଥିପ୍ରତି ଲକ୍ଷ୍ୟ କରି ଶର୍ମା ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା ଏଠାରେ ଉଲ୍ଲେଖନୀୟ

> The sweet and courteous manner of a wife's counsel has become proverbial in Sanskrit literature. Sita, who preceded her speech with a smile, freely and emphatically expressed her disapproval of Rama's action in killing without provocation the Rakshasas. But she removed all sting in her speech by adding in the end that it was only out of affection that she reminded him of that matter; she did not mean to instruct him (୧୮)

ସୀତାଙ୍କର ଏହି ଉପଦେଶସମୂହ ଥିଲା ଜଣେ ରାଜଧର୍ମପ୍ରବୀଣା ନାରୀଙ୍କ ଉପଦେଶ-ସମୂହ । ବାସ୍ତବିକ ତାଙ୍କୁ ରାମାୟଣରେ 'ଅଭିଜ୍ଞା ରାଜଧର୍ମାଣାଂ' ବା ରାଜଧର୍ମ-ସମ୍ବନ୍ଧରେ ଅଭିଜ୍ଞ ବୋଲି ଅଭିହିତା କରାଯାଇଥିବା କଥା ପୂର୍ବରୁ ଯାହା ଆଲୋଚିତ ହୋଇଛି, ତାହାର ବଳିଷ୍ଠ ଯୌକ୍ତିକତା ଅଛି ଏଇଠି । ରାମ ବନବାସ ଯିବାର ଅବ୍ୟବହିତ ପୂର୍ବରୁ ସୀତାଙ୍କୁ ସାକ୍ଷାତ କରିବା ଅବସରରେ ସେ ସ୍ୱାମୀଙ୍କ ସହିତ ବନଗମନ କରିବାର ଇଚ୍ଛା ପ୍ରକାଶ କରିଥିଲେ ଏବଂ ତାଙ୍କୁ

ସାଥିରେ ନେବା ପାଇଁ ରାମଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ରାମ ସେଥିରେ ରାଜି ହୋଇନଥିଲେ । ସୀତା ଅନେକ ଯୁକ୍ତି ବର୍ଣ୍ଣାଇ ତାଙ୍କର ସ୍ତ୍ରୀଧର୍ମ ଏପରି ସ୍ଥଳରେ କ'ଣ ତାହା ବୁଝାଇଥିଲେ ଏବଂ ପତି ହିସାବରେ ସେହି ଧର୍ମପାଳନରେ ରାମ ତାଙ୍କୁ ସାହାଯ୍ୟ କରିବା ଉଚିତ ବୋଲି କହିଥିଲେ । ରାମ ଓ ସୀତାଙ୍କର ଏ ସମ୍ପର୍କରେ ହୋଇଥିବା କଥୋପକଥନ ଅଯୋଧ୍ୟାକାଣ୍ଡର ୨୯ଶ ଓ ୩୦ଶ ସର୍ଗରେ ବର୍ଣ୍ଣିତ । ରାମ ସୀତାଙ୍କ ଯୁକ୍ତିକୁ ଶେଷରେ ଗ୍ରହଣ କରି ତାଙ୍କୁ ସାଥିରେ ନେବା ଲାଗି ସ୍ୱୀକୃତ ହୋଇଥିଲେ । ରାମାୟଣର ଭାଷାରେ (୨।୩୦।୪୧) ସେ କହିଥିଲେ

ଅନୁଗଚ୍ଛସ୍ୱ ମାଂ ଭୀରୁ ସହଧର୍ମଚରୀ ଭବ ।

ଅର୍ଥାତ୍ ଆଗୋ ଭୀରୁ ସୀତେ ! ତୁମେ ମୋ' ପଛେ ପଛେ ଆସ ଏବଂ ମୋ' ସହିତ ମିଶି ଧର୍ମାଚରଣ କର । ସୀତାଙ୍କୁ ସାଥିରେ ନେବେ କି ନାହିଁ ବୋଲି ରାମଙ୍କ ମନରେ ଯେଉଁ ସନ୍ଦେହ ଝୁଲୁଥିଲା ଏବଂ ସେଥିପାଇଁ ସେ ଯେଉଁ ଧର୍ମସଙ୍କଟର ସମ୍ମୁଖୀନ ହେଉଥିଲେ ତହିଁରୁ ସେ ଏବେ ଉଦ୍ଧାର ପାଇଗଲେ । ତାଙ୍କ ସ୍ତ୍ରୀ ହିଁ ତାଙ୍କୁ ନାନା ପ୍ରକାର ଯୁକ୍ତି ବର୍ଣ୍ଣାଇ ତାଙ୍କୁ ଏ ଧର୍ମସଙ୍କଟରୁ ଉଦ୍ଧାର କରିଦେଲେ । ଇତି ପୂର୍ବରୁ ତାରା ଓ ମନ୍ଦୋଦରୀ କିପରି ସେମାନଙ୍କ ସ୍ୱାମୀମାନଙ୍କୁ ଉପଦେଶ ଦେଇଥିଲେ ସେ କଥା କୁହାଯାଇଛି । ରାଜା ସୌଦାସ ଯେତେବେଳେ ଋଷି ବଶିଷ୍ଠଙ୍କୁ ଅଭିଶାପ ଦେବାକୁ ବସିଥିଲେ, ସେତେବେଳେ ତାଙ୍କ ପତ୍ନୀ ମଦୟନ୍ତୀ ତାଙ୍କୁ ଏହା କରିବା ପାଇଁ ବାରଣ କରିଥିଲେ । କାରଣ ବଶିଷ୍ଠ ଥିଲେ ତାଙ୍କର କୁଳଗୁରୁ ଏବଂ ଦେବତା ସମାନ । ସୌଦାସ ସ୍ତ୍ରୀଙ୍କ-ଉପଦେଶକୁ ଗ୍ରହଣ କରି ନିଜର କ୍ରୋଧକୁ ଶାନ୍ତ କରିଥିଲେ । ମଦୟନ୍ତୀଙ୍କ ନିମ୍ନୋକ୍ତ ଉପଦେଶ ଏଠାରେ ସ୍ମରଣୀୟ :

ରାଜନ୍ ପ୍ରଭୁର୍ଯତୋଽସ୍ମାକଂ ବଶିଷ୍ଠୋ ଭଗବାନ୍ ଋଷିଃ ।
ପ୍ରତିଶପ୍ତୁଂ ନ ଶକ୍ତବ୍ୟଂ ଦେବତୁଲ୍ୟଂ ପୁରୋଧସମ୍ ।। (୧୧)

ଅର୍ଥାତ୍ ଏ ବଶିଷ୍ଠ ହେଉଛନ୍ତି ଆପଣଙ୍କ ପୁରୋହିତ । ଏ ହେଉଛନ୍ତି ଦେବତୁଲ୍ୟ ଏବଂ ଆମର ପ୍ରଭୁସ୍ୱରୂପ । ତେଣୁ ଏହାଙ୍କୁ ପ୍ରତିଶାପ ଦେବା ଉଚିତ ନୁହେଁ । ରାମାୟଣୀୟ ସ୍ତ୍ରୀର ଏହି ସ୍ୱରୂପ ପ୍ରତି ଲକ୍ଷ୍ୟ କରି ଶର୍ମା କହନ୍ତି

Devotion to the husband does not mean blind following. If her husband appeared to be swerving from the path of duty, or was likely to transgress

the limits of righteousness it was the wife's duty to bring him round by her sweet and persuasive words. (୨୦)

ଏହିସବୁ ଆଲୋଚନାରୁ ଆମେ ପ୍ରମାଣ ପାଇବା ଯେ ରାମାୟଣକାଳୀନ ସମାଜରେ ସ୍ତ୍ରୀର ସ୍ୱାମୀଙ୍କୁ ଉପଦେଶ ଦେବାର ଅଧିକାର ସ୍ୱୀକୃତ ହୋଇଥିଲା ଏବଂ ସୁଶିକ୍ଷିତା ସ୍ତ୍ରୀମାନେ ଏହି କର୍ତ୍ତବ୍ୟକୁ ଠିକ୍ ଭାବରେ ସମାହିତ କରୁଥିଲେ ଏବଂ ଏଭଳି କରିବା ଦ୍ୱାରା ସେମାନେ ନିଜର ସହଧର୍ମିଣୀ ନାମକୁ ସାର୍ଥକ କରୁଥିଲେ ।

ସ୍ତ୍ରୀ ସ୍ୱାମୀଙ୍କୁ ଦେବତା ଭଳି ପୂଜା କରୁଥିଲେ ମଧ୍ୟ ସବୁବେଳେ ଯେ ସେ ସ୍ୱାମୀଙ୍କ ପାଖରୁ ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତି ପାଉଥିଲା, ତାହା ନୁହେଁ । ବେଳେ ବେଳେ ସେ ସ୍ୱାମୀଙ୍କ ପାଖରୁ ଅପମାନ ମଧ୍ୟ ପାଉଥିଲା ଏବଂ ସେହି ଅପମାନକୁ ସେ ନୀରବରେ ସହି ଯାଉଥିଲା । ସ୍ୱୟଂ ସତୀ ସାଧ୍ୱୀ ସୀତାଙ୍କ କ୍ଷେତ୍ରରେ ବି ଏଭଳି ଅପମାନ ଯଥେଷ୍ଟ ମିଳିଥିଲା । ରାମ-ରାବଣ ଯୁଦ୍ଧର ପରିସମାପ୍ତି ପରେ ଯାହା ଯାହା ଘଟିଥିଲା, ତାହା ବର୍ଣ୍ଣନାକୁ କିଆଯାଉ । ରାମଙ୍କ ନିର୍ଦ୍ଦେଶରେ ବିଭୀଷଣ ସୀତାଙ୍କୁ ଅଶୋକବନରୁ ଆଣିବାକୁ ଗଲେ । ତାଙ୍କ ନିର୍ଦ୍ଦେଶ ଥିଲା ସୀତା ସ୍ନାନ କରି ସୁନ୍ଦର ବସନ-ଭୂଷଣ ପିନ୍ଧି ତାଙ୍କ ପାଖକୁ ଆସନ୍ତୁ । ସୀତା ସେତେବେଳେ ବିରହବ୍ରତ ପାଳନ କରୁଥିଲେ । ବିଧି ଅନୁଯାୟୀ ସ୍ୱାମୀଙ୍କ ସହିତ ମିଳନ ପୂର୍ବରୁ ସେ ବସନ-ଭୂଷଣ ପିନ୍ଧି ଆବିର୍ଭୂତା ହେବା କଥା ନୁହେଁ । ରାମ ଯେ ଜାଣିବା ଲୋକ ହୋଇ କିଭଳି ଏହି ନିର୍ଦ୍ଦେଶ ଦେଇଥିଲେ, ତାହା ଭାବି ସୀତା ବିସ୍ମିତା ହୋଇ ଯାଇଥିଲେ । ସେ ବାଧ୍ୟ ହୋଇ ସ୍ୱାମୀଙ୍କ ନିର୍ଦ୍ଦେଶ ପାଳିଲେ । ତାଙ୍କ ଦୁଃଖ ଓ ଅପମାନ ଏତିକିରେ ସରିଲା ନାହିଁ । ବିଭୀଷଣ ତାଙ୍କୁ ପାଲିଙ୍କିରେ ବସାଇ ଆଣୁଥିବାର ଦେଖି ରାମ ବିରକ୍ତ ହେଲେ । ସେ ସୀତାଙ୍କୁ ଶୁଣାଇ ଶୁଣାଇ କହିଲେ ଯେ ନାରୀର ଘରଦ୍ୱାର, ବସନ-ଭୂଷଣ ତା'କୁ ସମ୍ମାନ ଦେଇନଥାଏ; ତା'ର ପ୍ରକୃତ ସମ୍ମାନର ନିଦାନ ହେଉଛି ତା'ର ସତୀତ୍ୱ । ତେଣୁ ସେ ସୀତାଙ୍କୁ ଚଲାଇ ଚଲାଇ ଆଣିବାକୁ କହିଲେ । ତାହା ପାଳିତ ହେଲା ଏବଂ ସୀତାଙ୍କୁ ଚାଲି ଚାଲି ଆସିବାକୁ ପଡ଼ିଲା । ସେ ମନେ ମନେ ଖୁବ୍ ରାଗି ଯାଇଥିଲେ ମଧ୍ୟ କିଛି ପାଟି ଫିଟାଇ ନଥିଲେ ଏବଂ ସବୁ ଅପମାନ ସହିଯାଇଥିଲେ । ପତିଙ୍କ ସହିତ ଆସନ୍ନ ମିଳନ ଆଶାରେ ସେ ସବୁ କିଛି ସହିସିବା ପାଇଁ ପ୍ରସ୍ତୁତ ଥିଲେ । ରାମଙ୍କର ଏଭଳି ବ୍ୟବହାର ବିରୁଦ୍ଧରେ ଲକ୍ଷ୍ମଣ, ସୁଗ୍ରୀବ ଓ ହନୁମାନ୍ ଆଦି ପ୍ରତିବାଦ କରିଥିଲେ । କିନ୍ତୁ ଏ ପ୍ରତିବାଦର ଫଳ କିଛି ହେଲା ନାହିଁ । ସତେ ଯେମିତି ରାମ ସୀତାଙ୍କୁ ଆଘାତ ପରେ ଆଘାତ ଦେବା ପାଇଁ ବଦ୍ଧ ପରିକର ହୋଇଥିଲେ ! ସୀତାଙ୍କ

ସମେତ ସେଠାରେ ସମବେତ ଥିବା ସମସ୍ତ ବ୍ୟକ୍ତି ବିସ୍ମିତ ହୋଇଗଲେ, ଯେତେବେଳେ ରାମ କହିଲେ ଯେ ସୀତାଙ୍କ ପାଇଁ ସେ ଏହି ଯୁଦ୍ଧ କରିନାହାନ୍ତି; ବରଂ ସେ ଏହା କରିଛନ୍ତି ତାଙ୍କ ବଂଶର ମର୍ଯ୍ୟାଦା-ରକ୍ଷା କରିବା ପାଇଁ । ସବୁଠାରୁ ସୀତାଙ୍କ ପାଇଁ ଦୁଃଖଦ ଓ ଅପମାନଜନକ ବାଣୀ ରାମଙ୍କର ହେଲା, ସେ ଯେତେବେଳେ ସୀତାଙ୍କର ସତୀତ୍ୱ ଉପରେ ସନ୍ଦେହ କରି ତାଙ୍କୁ ଗ୍ରହଣ କରିବା ପାଇଁ ମନା କରିଦେଲେ ଏବଂ ଭରତ, ଲକ୍ଷ୍ମଣ, ଶତ୍ରୁଘ୍ନ, ସୁଗ୍ରୀବ ଓ ବିଭୀଷଣଙ୍କ ମଧ୍ୟରୁ କାହାକୁ ଜଣଙ୍କୁ ପତିରୂପରେ ବରଣ କରିବା ପାଇଁ କହିଲେ । ରାମୈକପ୍ରାଣା ସୀତାଙ୍କ ପାଇଁ ଏହାଠାରୁ ଆଉ ଅଧିକ କଠୋର ଓ ଅପମାନଜନକ ବଚନ କ'ଣ ବା ଥାଇପାରେ ? ଶେଷକୁ ରାମ କହିଲେ ଯେ ଅଗ୍ନି-ପରୀକ୍ଷାରେ ସୀତା ଉତ୍ତୀର୍ଣ୍ଣା ହେଲେ ଯାଇ ତାଙ୍କ ସତୀତ୍ୱ ପ୍ରମାଣିତ ହେବ ଏବଂ ସେ ତାଙ୍କୁ ଗ୍ରହଣ କରିବେ । ପୁରୁଷପ୍ରଧାନ ସମାଜର ବିଚାର ବିରୁଦ୍ଧରେ ନିରୀହା ନାରୀ ସୀତା ବା ଆଉ କ'ଣ କରିପାରିଥାନ୍ତେ ? ସେ ଅଗ୍ନି-ପରୀକ୍ଷା ଦେବାକୁ ରାଜି ହେଲେ ଏବଂ ଏହି ପରୀକ୍ଷା ଦେଇ ଶେଷରେ ଉତ୍ତୀର୍ଣ୍ଣା ହେଲେ । ସେତେବେଳେ ଯାଇ ରାମ ତାଙ୍କୁ ଗ୍ରହଣ କରିନେଲେ । କିନ୍ତୁ ଅଶ୍ୱମେଧ-ଯଜ୍ଞ କଲାବେଳେ ରାମ ଯେତେବେଳେ ଦ୍ୱିତୀୟ ଥର ପାଇଁ ସୀତାଙ୍କୁ ଅଗ୍ନି-ପରୀକ୍ଷା ଦେବା ପାଇଁ କହିଥିଲେ, ସେ ଏହି ଅପମାନ ସହିପାରି ନଥିଲେ ଏବଂ ଧରଣୀ-ଗର୍ଭରେ ଲୁଚି-ଯାଇଥିଲେ । କିନ୍ତୁ ସେ ଏ ପ୍ରକାର ଅପମାନର ଫଳପ୍ରଦ ପ୍ରତିବାଦ କରି-ପାରିନଥିଲେ । ଏଥିରୁ ଏହି ସୂଚନା ମିଳୁଛି ଯେ ସ୍ତ୍ରୀକୁ ବେଳେ ବେଳେ ନିଜ ସ୍ୱାମୀଙ୍କ ପାଖରୁ ବହୁ ଅପମାନ ମିଳୁଥିଲା ଏବଂ ନୀରବରେ ତଥା ବିନା ପ୍ରତିବାଦରେ ସେ ତାହାକୁ ସହି ଯାଉଥିଲା । ସୀତାଙ୍କ କ୍ଷେତ୍ରରେ ଯଦି ଏଭଳି ଘଟିଥିଲା, ତେବେ ସାଧାରଣ ସ୍ତ୍ରୀମାନଙ୍କ କ୍ଷେତ୍ରରେ କ'ଣ ଘଟୁଥିବ, ତାହା ସହଜରେ ଅନୁମେୟ । ସ୍ତ୍ରୀମାନଙ୍କ ପ୍ରତି ଏଭଳି ଭାବରେ ସାମୟିକ ଅନ୍ୟାୟ-ଅନାଚାର କରାଯାଉଥିଲେ ମଧ୍ୟ ସେମାନଙ୍କର ଅନ୍ୟ ଏକ ରୂପକୁ ରାମାୟଣରେ ସର୍ବତ୍ର ପ୍ରଶଂସା କରାଯାଇଛି । ସେମାନେ ସ୍ୱାମୀମାନଙ୍କ ପ୍ରତି ସର୍ବଦା ସତ୍ୟନିଷ୍ଠ ଓ ସେବାନିଷ୍ଠ ରହୁଥିଲେ । ଯେତେ ଦୁଃଖ-କଷ୍ଟରେ ଥିଲେ ମଧ୍ୟ ସେମାନଙ୍କର ସ୍ୱାମୀମାନଙ୍କ ପ୍ରତି ପ୍ରେମ ଊଣା ହେଉ ନଥିଲା । ସେମାନେ ବାସ୍ତବିକ ଥିଲେ ପ୍ରେମ ଓ କରୁଣାର ଧାରା ଏବଂ ଧୈର୍ଯ୍ୟର ଏକ ସୁଦୃଢ଼ ସ୍ତମ୍ଭ । ଶର୍ମା ତେଣୁ ଯଥାର୍ଥରେ କହନ୍ତି

In fidelity to their spouse, in rendering ungrudging service, in enduring unfold hardships, in showering serene love and affection, in displaying courage

and fortitude in the hour of distress, in being ever vigilant about the welfare of their husbands, in making sacrifice for the interest of their lords, in ready odedience and in their promptness to land by the side of their husbands in the hour of need, the women characters of the Ramayana are simply exemplary. (୨୦-କ)

ରାମାୟଣର ନାରୀ ଧରିତ୍ରୀ ପରି ସବୁ ସହି ଯାଉଥିଲା, ସବୁ ଦାନ କରୁଥିଲା, କିନ୍ତୁ ପ୍ରତିଦାନରେ କିଛି ହିଁ ଚାହୁଁ ନଥିଲା । ସେହି ମହାନ୍ ନାରୀଚରିତ୍ରକୁ ସାଧାରଣ ଭାବରେ ଏବେ ମଧ୍ୟ ଭାରତୀୟ ନାରୀମାନେ ଆଦର୍ଶ ବୋଲି ମାନ୍ୟତା ଦେଇ ଆସୁଛନ୍ତି ।

ଏଠାରେ ଗୋଟିଏ ବିଷୟ ଲକ୍ଷ୍ୟ କରିବାର କଥା ଯେ ଆର୍ଯ୍ୟସମାଜରେ ସ୍ତ୍ରୀର ସତୀତ୍ୱ ଉପରେ ଯେପରି ଗୁରୁତ୍ୱ ଦିଆଯାଉଥିଲା, ବାନରସମାଜରେ ସେପରି ଦିଆ ଯାଉନଥିଲା । ବଳପୂର୍ବକ ଯଦି ସ୍ତ୍ରୀ ଅପର ଦ୍ୱାରା ଅପହୃତା ହେଉଥିଲା, ତେବେ ତା'କୁ ପୁଣି ସ୍ୱାମୀଙ୍କ ପାଖକୁ ଫେରି ଆସିବା ପାଇଁ କିଛି ଅସୁବିଧା ହେଉ ନଥିଲା । ସେଥିପାଇଁ ତା'କୁ କିଛି ପ୍ରାୟଶ୍ଚିତ୍ତ-ବିଧାନ କରିବାକୁ ପଡ଼ୁ ନଥିଲା । ସୁଗ୍ରୀବଙ୍କ ସ୍ତ୍ରୀ ରୁମାଙ୍କୁ ଏଠାରେ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ । ପୁଣି ସେ ସୁଗ୍ରୀବଙ୍କ ପାଖକୁ ଫେରି ଆସିଥିଲେ ଏବଂ ସେ ଦୁହେଁ ପୂର୍ବଭଳି ନିର୍ବାଧରେ ସ୍ୱାମୀ-ସ୍ତ୍ରୀ ଭାବରେ ଜୀବନ-ନିର୍ବାହ କରିବାକୁ ଲାଗିଥିଲେ । ସମାଜ ଏଥିପାଇଁ କିଛି ପ୍ରତିବନ୍ଧକ ସୃଷ୍ଟି କରିନଥିଲା । ଅତଏବ, ଏହି କ୍ଷେତ୍ରରେ ବାନର ସ୍ତ୍ରୀ ଆର୍ଯ୍ୟ ସ୍ତ୍ରୀ ଅପେକ୍ଷା ଅଧିକତର ସୁବିଧାଜନକ ଅବସ୍ଥାରେ ଥିଲା ବୋଲି ସୂଚନା ଆମକୁ ଏଥିରୁ ମିଳୁଛି ।

ଆଉ ଗୋଟିଏ ବିଷୟ ହେଲା ଛାଡ଼ପତ୍ର । ଯଦିଓ ବିବାହ-ବେଦୀରେ ସ୍ୱାମୀ-ସ୍ତ୍ରୀ ଏକ ଚିରନ୍ତନ ବନ୍ଧନରେ ବାନ୍ଧି ହୋଇ ରହିବେ ବୋଲି ଅଗ୍ନି-ଦେବତା ତଥା ଅନ୍ୟାନ୍ୟ ଦେବତା ଓ ବ୍ରାହ୍ମଣମାନଙ୍କ ଆଗରେ ପ୍ରତିଶ୍ରୁତିବଦ୍ଧ ହେଉଥିଲେ, ସ୍ଥଳବିଶେଷରେ ସ୍ୱାମୀଙ୍କ ପକ୍ଷରୁ ଏହି ପ୍ରତିଶ୍ରୁତିକୁ ଭଙ୍ଗ କରା-ଯାଉଥିଲା ଏବଂ ସେ ସ୍ତ୍ରୀକୁ ଛାଡ଼ପତ୍ର ଦେଉଥିଲେ । ଅବଶ୍ୟ ଆଜିକାଲିର ଭାଷା ଭଳି 'ଛାଡ଼ପତ୍ର' ବୋଲି କୌଣସି ଭାଷାର ପ୍ରୟୋଗ ରାମାୟଣରେ ହୋଇନାହିଁ । ତାହା ସ୍ଥାନରେ ସ୍ତ୍ରୀକୁ ପରିତ୍ୟାଗ କରିଥିବା କଥାର ଉଲ୍ଲେଖ ଅଛି । ସ୍ୱାମୀ ଖାଲି ସ୍ତ୍ରୀକୁ 'ପରିତ୍ୟାଗ କଲି' ଏତିକି କହିଦେଲେ ଯଥେଷ୍ଟ ହେଲା । ସେ ସମାଜରେ ସ୍ୱାମୀ-ପରିତ୍ୟକ୍ତା ନାରୀର କଳଙ୍କଟିକୁ ସେହି ମୁହୂର୍ତ୍ତଠାରୁ ହିଁ ବହୁଥିଲା ।

କିନ୍ତୁ ସ୍ତ୍ରୀ ପାଇଁ ଏଭଳି ସ୍ୱାଧୀନତା ନଥିଲା । ରାବଣ ଅନେକ ସ୍ତ୍ରୀଙ୍କୁ ଅପହରଣ କରିଥିଲା । ପରିଶେଷରେ ସେ ସୀତାଙ୍କୁ ପଟ୍ଟମହିଷୀ କରାଇବାର ପ୍ରଲୋଭନ ମଧ୍ୟ ଦେଖାଇଥିଲା । ସେତେବେଳେ ମନ୍ଦୋଦରୀ ଥିଲେ ତା'ର ପଟ୍ଟମହିଷୀ। କିନ୍ତୁ ମନ୍ଦୋଦରୀ ରାବଣକୁ ପରିତ୍ୟାଗ କରିବା କଥା ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ । ଏହା ନିଶ୍ଚିତ ଭାବରେ ସ୍ତ୍ରୀ ପାଇଁ ଥିଲା ଏକ ପକ୍ଷପାତ ବିଚାର । ତା'ର ଦୁର୍ବଳତା ଓ ସ୍ୱାମୀଙ୍କ ଉପରେ ନିର୍ଭରଶୀଳତାର ସୁଯୋଗ ନେଇ ତା' ପ୍ରତି ଏଭଳି ଏକତରଫା ଭାବରେ ଅବିଚାର କରାଯାଉଥିଲା । ପୂର୍ବବର୍ତ୍ତୀ ପରିଚ୍ଛେଦରେ ଆମେ ବର୍ଣ୍ଣନା କରିଛୁ, କିଭଳି ନିମ୍ନଲିଖିତ ପରିସ୍ଥିତିରୁ ଯେକୌଣସି ଗୋଟିକରେ ସ୍ୱାମୀ ସ୍ତ୍ରୀକୁ ପରିତ୍ୟାଗ କରୁଥିଲେ :

କ) ସ୍ୱାମୀଙ୍କ ଜୀବନ ପ୍ରତି ବିପଦର କାରଣ ହେବା;
ଖ) ସ୍ୱାମୀଙ୍କ ସ୍ୱଧର୍ମ ପାଳନରେ ପ୍ରତିବନ୍ଧକ ସୃଷ୍ଟି କରିବା; ଏବଂ
ଗ) ସ୍ୱାମୀଙ୍କ ପ୍ରତି ବିଶ୍ୱାସଘାତକତା କରି ନିଜର ସତୀତ୍ୱ ହରାଇବା ।

ଆଉ ମଧ୍ୟ ଆମେ ଦର୍ଶାଇଛୁ କେଉଁ ପରିସ୍ଥିତିରେ କୈକେୟୀଙ୍କ ମାତା ଓ କୈକେୟୀ ନିଜେ ସେମାନଙ୍କ ସ୍ୱାମୀମାନଙ୍କ ଦ୍ୱାରା ପରିତ୍ୟକ୍ତା ହୋଇଥିଲେ । ଲୋକଙ୍କ ମୁଖରୁ ମିଥ୍ୟାପବାଦ ଉଠିଲା ଯେ ସୀତା ଅସତୀ । ସୀତାଙ୍କ ସତୀତ୍ୱର ମହତ୍ତ୍ୱ ବିଷୟରେ ରାମ ପୂର୍ବରୁ ଅଗ୍ନି-ପରୀକ୍ଷାରୁ ହିଁ ଜାଣିପାରିଥିଲେ । କିନ୍ତୁ ତାହା ସୀତାଙ୍କୁ ଏବେ ସାହାଯ୍ୟ କରିପାରିନଥିଲା । ଶେଷକୁ ସେ ହୋଇଥିଲେ ସ୍ୱାମୀପରିତ୍ୟକ୍ତା । ସୀତାଙ୍କ ସତୀତ୍ୱ ବିଷୟରେ ତ ପ୍ରଜାମାନେ ସନ୍ଦେହ କରିବାରୁ ତାଙ୍କୁ ସ୍ୱାମୀଙ୍କ ଦ୍ୱାରା ବର୍ଜନର ଦୁଃଖ ସହିବାକୁ ପଡ଼ିଥିଲା । କିନ୍ତୁ ରୁମାଙ୍କ କ୍ଷେତ୍ରରେ କ'ଣ ହୋଇଥିଲା ? ସେ ତ ବାଳୀଙ୍କ ଦ୍ୱାରା ନିଶ୍ଚିତ ଭାବରେ ହୋଇଥିଲେ ଉପଭୁକ୍ତା । ସୁଗ୍ରୀବ ତାଙ୍କୁ ପୁନର୍ବାର ଯେତେବେଳେ ସ୍ତ୍ରୀ ଭାବରେ ଗ୍ରହଣ କରିଥିଲେ ସେତେବେଳେ ବାନରସମାଜ କିଛି ଆପତ୍ତି ଉଠାଇ ନଥିଲା । ଆର୍ଯ୍ୟ-ସମାଜ କଥା ହୋଇଥିଲେ ରୁମା ନିଶ୍ଚିତ ଭାବରେ ସ୍ୱାମୀ-ପରିତ୍ୟକ୍ତା ହୋଇଥାନ୍ତେ । ବାସ୍ତବିକ ରାମାୟଣ ଅନୁଧ୍ୟାନ କଲେ ଆମେ ଦେଖୁଁ ଯେ ସ୍ତ୍ରୀକୁ ପରିତ୍ୟାଗ କରିବା କେବଳ ଆର୍ଯ୍ୟସମାଜରେ ସୀମାବଦ୍ଧ ଥିଲା; ଏହା ବାନରସମାଜ କିମ୍ବା ରାକ୍ଷସସମାଜକୁ ସ୍ପର୍ଶ କରିନଥିଲା । ଅତଏବ, ଏ କ୍ଷେତ୍ରରେ ମଧ୍ୟ ଆର୍ଯ୍ୟ-ସ୍ତ୍ରୀ ବାନର-ସ୍ତ୍ରୀ କିମ୍ବା ରାକ୍ଷସ-ସ୍ତ୍ରୀଠାରୁ ଅପେକ୍ଷାକୃତ ନିମ୍ନତର ସାମାଜିକ ସ୍ଥିତିରେ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ (୩।୪) ମଧ୍ୟ କେତେକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ଛାଡ଼ପତ୍ର ଦେବାର ବିଧାନ ରହିଅଛି ଏବଂ ଏଥିରେ ମଧ୍ୟ ସ୍ୱାମୀକୁ ଛାଡ଼ପତ୍ର ଦେବାର

ସ୍ୱାଧୀନତା ସ୍ତ୍ରୀ ପାଇଥିଲେ । ଏହା ସ୍ତ୍ରୀର ଉନ୍ନତତର ସାମାଜିକ ସ୍ଥିତିର ସୂଚନା ଦେଇଥାଏ । ଏହା ହେଉଛି ଖ୍ରୀ. ପୂ: ୪ର୍ଥ ଶତାବ୍ଦୀର ରଚନା । କିନ୍ତୁ ଖ୍ରୀଷ୍ଟପର ସମସ୍ତ ବେଳକୁ ଗୁପ୍ତ ଶାସନଠାରୁ ଛାଡ଼ପତ୍ର ସମ୍ପୂର୍ଣ୍ଣରୂପେ ହିନ୍ଦୁ ସମାଜରୁ ଲୋପ ହୋଇଯାଇଥିବାର ମନେହୁଏ । ଏହି ମତର ପୋଷକତା କରି ବାସମ୍ ମଧ୍ୟ କହନ୍ତି

> The Arthasastra would allow divorce even after religious marriage if a wife had been deserted by her husband and lays down waiting periods form one to twelve years, which varies according to circumstances and class, (୨୯)

ସମ୍ଭବତଃ ବୁଦ୍ଧଙ୍କ ସମୟରୁ (ଖ୍ରୀ: ପୂ. ୬ଷ୍ଠ ଶତାବ୍ଦୀ) ସ୍ତ୍ରୀମାନଙ୍କର ସାମାଜିକ ସ୍ଥିତି ପୂର୍ବଠାରୁ ଅପେକ୍ଷାକୃତ ଅଧିକ ଉନ୍ନତିଲାଭ କରିଥିବା ଦିନଠାରୁ ସେମାନଙ୍କୁ କେତେକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ସ୍ୱାମୀମାନଙ୍କୁ ଛାଡ଼ପତ୍ର ଦେବାର କ୍ଷମତା ମିଳିଥିଲା । ଯେ ଯାହାହେଉ, ଖ୍ରୀ: ପୂ: ଚତୁର୍ଥ ଶତାବ୍ଦୀରେ ଛାଡପତ୍ର-ପ୍ରଥା ଯେତେବେଳେ ଭାରତୀୟ ସମାଜରେ ଥିଲା, ସେତେବେଳେ ଉପର୍ଯୁକ୍ତ ପ୍ରମାଣ ଦୃଷ୍ଟେ ଆମକୁ ସ୍ୱୀକାର କରିବାକୁ ପଡ଼ିବ ଯେ ରାମାୟଣୀୟ ସମାଜରେ ମଧ୍ୟ ଏହା ଥିଲା, ଯଦିଓ ଏହି ଅଧିକାର କେବଳ ପୁରୁଷମାନଙ୍କୁ ମିଳିଥିଲା । ବୈଦିକ ବିବାହ-ବନ୍ଧନର ଦୃଢ଼ତା ରାମାୟଣ ସମୟକୁ ଏତିକି ପରିମାଣରେ ଶିଥିଳ ହୋଇ ଯାଇଥିଲା ।

ରାମାୟଣୀୟ ସମାଜରେ ପୁରୁଷ ବହୁ ପତ୍ନୀ ଗ୍ରହଣ କରୁଥିବା ପ୍ରଥାଟି ପ୍ରଚଳିତ ଥିଲି ବୋଲି ପୂର୍ବରୁ କୁହାଯାଇଛି । ଏ ପ୍ରଥା ବହୁ ଦିନରୁ ଏପରିକି ବୈଦିକ କାଳରୁ ପ୍ରଚଳିତ ଥିବାର ମଧ୍ୟ ସୂଚନା ମିଳୁଛି । ବୈଦିକ ପରିବାରର ଗୃହର ଗୋଟିଏ ଅଂଶକୁ କୁହାଯାଉଥିଲା 'ସ୍ତ୍ରୀଣାଂ ସଦନଂ', ଅର୍ଥାତ୍ ସ୍ତ୍ରୀମାନଙ୍କର ମହଲ । ଏକାଧିକ ସ୍ତ୍ରୀ ଏଥିରେ ବାସ କରୁଥିବାର ସୂଚନା ମିଳୁଛି । ପ୍ରତ୍ୟେକ ସ୍ତ୍ରୀର ନିଜ ସ୍ୱାମୀଙ୍କୁ ନିଜର କରିନେବାର ପ୍ରବୃତ୍ତି ଥାଏ । ନାରୀର ଅର୍ଥନୈତିକ ସ୍ୱାଧୀନତା ଥିବା ସମାଜରେ ମଧ୍ୟ ଏହା ଦେଖା ଦେଇଥାଏ । ଯେଉଁ ସମାଜରେ ଅର୍ଥନୈତିକ ଦୃଷ୍ଟିକୋଣରୁ ନାରୀ ପୁରୁଷ ଉପରେ ନିର୍ଭରଶୀଳ ସେଠାରେ ଏହା ପ୍ରବଳତର ଭାବରେ ପ୍ରକଟିତ ହେବା ସ୍ୱାଭାବିକ । ରାମାୟଣୀୟ ସମାଜରେ ସ୍ତ୍ରୀ ଥିଲା ପ୍ରାୟ ସ୍ୱାମୀଙ୍କ ଉପରେ ନିର୍ଭରଶୀଳା । ଯୌତୁକ ସମୟରେ ସେ ଯେଉଁ ସମ୍ପତ୍ତି ପିତୃଗୃହରୁ ଆଣୁଥିଲା, ତାହା ଉପରେ ଅବଶ୍ୟ ତା'ର ପୂର୍ଣ୍ଣ ଅଧିକାର

ଥିଲା ଏବଂ ତାହାକୁ 'ସ୍ତ୍ରୀଧନ' ବୋଲି କୁହାଯାଉଥିଲା । ଗଙ୍ଗାଧର ମିଶ୍ର ମଧ୍ୟ ଏହି ମତର ପୌଷ୍ଟିକତା ସାଧନ କରନ୍ତି । କୌଶଲ୍ୟା କପରି ଏଭଳି ସ୍ତ୍ରୀଧନର ଅଧିକାରିଣୀ ଥିଲେ, ସେ ସମ୍ପର୍କରେ ମତ ଦେବାକୁ ଯାଇ ସେ କୁହନ୍ତି

> କୌସଲ୍ୟାଦି କୋ ଗ୍ରାମ୍ୟାଦି କୋ କୁଛ ବିଶେଷ ସମ୍ପତ୍ତି ମିଳି ଥୀ ଜିସକା ଓର୍ ସଙ୍କେତ ଲକ୍ଷ୍ମଣ ନେ ବନବାସ କେ ପ୍ରସଙ୍ଗ ମେଂ କିୟା ହୈ । (୨୧-କ)

କିନ୍ତୁ ତାହା ତା'କୁ ସମ୍ପୂର୍ଣ୍ଣ ରୂପେ ଆତ୍ମନିର୍ଭରଶୀଳା କରି ପାରୁନଥିଲା । ଏହା ଫଳରେ ଉକ୍ତ ସମାଜରେ ସ୍ୱାମୀଙ୍କ ନିକଟତର ହେବା ପାଇଁ ସପତ୍ନୀମାନଙ୍କ ମଧ୍ୟରେ ଖୁବ୍ ପ୍ରତିଯୋଗିତା ହେଉଥିଲା । ଉଦାହରଣ ସ୍ୱରୂପ ଦଶରଥଙ୍କ ପରିବାରକୁ ବିଚାରକୁ ନିଆଯାଉ । ସୁମିତ୍ରାଙ୍କ ବିଷୟରେ ଖୁବ୍ କମ୍ ଉଲ୍ଲେଖ ରାମାୟଣରେ ଅଛି । ସମ୍ଭବତଃ ସେ ଦଶରଥଙ୍କର ସେତେ ପ୍ରିୟପାତ୍ରୀ ନଥିଲେ । ସବୁ ରାଣୀଙ୍କ ମଧ୍ୟରେ କୈକେୟୀ ଥିଲେ ତାଙ୍କର ଖୁବ୍ ପ୍ରିୟପାତ୍ରୀ । ତାଙ୍କୁ ଖୁସି କରାଇବାକୁ ଯାଇ ଦଶରଥ ତାଙ୍କୁ ଦେଇଁ ବରଦ୍ୱୟ ଦେଲେ ତାହା ଫଳରେ ତାଙ୍କର ପ୍ରିୟତମ ଜ୍ୟେଷ୍ଠ ପୁତ୍ର ରାମଙ୍କୁ ବନବାସ କରିବାକୁ ପଡ଼ିଲା ଏବଂ ପୁତ୍ର-ବିରହରେ ସେ ପ୍ରାଣତ୍ୟାଗ କଲେ । କୈକେୟୀ ଏଭଳି ବର ମାଗିବାର ଗୋଟିଏ ପ୍ରଧାନ କାରଣ ହେଲା, ସେ ଚାହୁଁନଥିଲେ ଯେ ତାଙ୍କ ସପତ୍ନୀ କୌଶଲ୍ୟାଙ୍କ ପୁତ୍ର ଯୌବରାଜ୍ୟରେ ଅଭିଷିକ୍ତ ହୁଅନ୍ତୁ; କାରଣ ଆଜି ଯୁବରାଜ ହେଲେ କାଲିକି ପୁଣି ସେ ରାଜା ହେବେ । ପରିବାରରେ ସପତ୍ନୀଜନିତ ପାରସ୍ପରିକ ଈର୍ଷ୍ୟା ଓ କଳହର ବିଷମୟ ଫଳଶ୍ରୁତି ବିଷୟରେ କେକୟରାଜ ସମ୍ପୂର୍ଣ୍ଣ ଅବହିତ ଥିଲେ । ତେଣୁ ସେ ତାଙ୍କ କନ୍ୟାଙ୍କୁ ଦଶରଥଙ୍କ ହସ୍ତରେ ସମର୍ପଣ କଲାବେଳେ ତାଙ୍କ (ଦଶରଥଙ୍କ) ପାଖରୁ ଗୋଟିଏ ପ୍ରତିଶ୍ରୁତି ହାସଲ କରାଇ ନେଇଥିଲେ ଯେ କୈକେୟୀଙ୍କ ସନ୍ତାନ ଅଯୋଧ୍ୟାର ସିଂହାସନର ଉତ୍ତରାଧିକାରୀ ହେବେ । କୌଶଲ୍ୟା ଥିଲେ ଦଶରଥଙ୍କର ବଡ଼ରାଣୀ । ସେ ଥିଲେ ଖୁବ୍ ପତିପରାୟଣା । ପତିଙ୍କ ପ୍ରତି କୌଣସି କର୍ତ୍ତବ୍ୟରେ ସେ କେବେହେଲେ ଅବହେଳା କିମ୍ବା ତ୍ରୁଟି ପ୍ରଦର୍ଶନ କରିନଥିଲେ । ତାହା ସତ୍ତ୍ୱେ ସେ ସ୍ୱାମୀଙ୍କର ପ୍ରିୟପାତ୍ରୀ ହୋଇ ପାରିନଥିଲେ । ଏହା ମୂଳରେ କନିଷ୍ଠ ସପତ୍ନୀ କୈକେୟୀଙ୍କର ହାତ ଥିଲା । ବନବାସ କରିବାର ଅବ୍ୟବହିତ ପୂର୍ବରୁ ରାମ ଯେତେବେଳେ କୌଶଲ୍ୟାଙ୍କ ପାଖରୁ ବିଦାୟ ନେବାକୁ ଆସିଥିଲେ, ସେତେବେଳେ ସେ ନିଜ ପୁତ୍ର ଆଗରେ ନିମ୍ନୋକ୍ତ ଦୁଃଖଦ ବାଣୀ ଉଚ୍ଚାରଣ କରିଥିଲେ :

ନ ଦୃଷ୍ଟପୂର୍ବଂ କଲ୍ୟାଣଂ ସୁଖଂ ବା ପତିପୌରୁଷେ ।
ଅପି ପୁତ୍ରେ ବିପଶ୍ୟେୟମିତି ରାମାସ୍ଥିତଂ ମୟା । (୨୨)

ଅର୍ଥାତ୍ ବାପା ରାମ ! ମୋ'ର ସ୍ୱାମୀଙ୍କ ପ୍ରଭୁତ୍ୱ ସମୟରେ ବଡ଼ ରାଣୀ ହିସାବରେ ମତେ ଯେଉଁ କଲ୍ୟାଣ ବା ସୁଖ ମିଳିବାର କଥା, ତାହା ମୁଁ ପାଇନାହିଁ । ମୁଁ ଭାବିଥିଲି ପୁଅର ରାଜ୍ୟରେ ସବୁ ସୁଖ ପାଇବି ଏବଂ ସେଇ ଆଶାରେ ହିଁ ଏ ପର୍ଯ୍ୟନ୍ତ ବଞ୍ଚି ରହିଥିଲି । ସେ ବଡ଼ ରାଣୀ ହୋଇ ମଧ୍ୟ କିପରି ସପତ୍ନୀ-ମାନଙ୍କଠାରୁ ଅପ୍ରିୟ ବଚନ ଶୁଣିଛନ୍ତି, ତାହା ମଧ୍ୟ ସେ ରାମଙ୍କୁ ପରବର୍ତ୍ତୀ ପଙ୍କ୍ତିରେ (୨।୨୦।୩୯) ପ୍ରକାଶ କରିଛନ୍ତି । ପୁଣି ଆଉ ଗୋଟିଏ ପଙ୍କ୍ତିରେ (୨।୨୦।୪୨) ସେ କହିଛନ୍ତି ଯେ ସ୍ୱାମୀଙ୍କଠାରୁ ସେ ଖାଲି ତିରସ୍କାର ହିଁ ପାଇଛନ୍ତି; ପ୍ରେମ କନ୍ତୁ ପାଇ ନାହାନ୍ତି । ରାମଙ୍କର ଜନନୀ ହେବାର ସୌଭାଗ୍ୟ ଅର୍ଜନ କରି ମଧ୍ୟ ସେ ଏପରି ଦୁରବସ୍ଥା କାହିଁକି ପାଇଥିଲେ ? ଏହାର ଏକମାତ୍ର କାରଣ ହେଉଛି ସପତ୍ନୀଜନିତ ଈର୍ଷ୍ୟା ଫଳରେ ତାଙ୍କର ସପତ୍ନୀମାନେ ବିଶେଷ କରି କୈକେୟୀ ତାଙ୍କୁ ତାଙ୍କ ସ୍ୱାମୀଙ୍କ ପାଖରୁ ଦୂରେଇ ରଖିଥିଲେ । ଏଥିରୁ ଏହି ସୂଚନା ମିଳୁଛି ଯେ ରାମାୟଣକାଳୀନ ସମାଜରେ ସ୍ତ୍ରୀକୁ ପତିପ୍ରେମ ପାଇବା ଲାଗି ସପତ୍ନୀମାନଙ୍କ ସହିତ କଠୋର ପ୍ରତିଯୋଗିତା କରିବାକୁ ପଡ଼ୁଥିଲା ଏବଂ ଏଥିରେ ହାରିଗଲେ ତା'କୁ ଦୁଃଖଦ ଜୀବନ କାଟିବାକୁ ହେଉଥିଲା ।

ସ୍ତ୍ରୀ ବିବାହ ପରେ ତା'ର ସ୍ୱାମୀଙ୍କ ସହିତ ଏକ ସୁଶୃଙ୍ଖଳ ଯୌନଜୀବନ ଯାପନ କରୁଥିଲା । ଭାରତୀୟ ଯୌନଜୀବନ କଦାପି ଇନ୍ଦ୍ରିୟତୃପ୍ତିକୁ କେବଳ ଲକ୍ଷ୍ୟ ରଖିନଥାଏ । ଏହାର ଲକ୍ଷ୍ୟ ଥାଏ ସ୍ୱାମୀ-ସ୍ତ୍ରୀଙ୍କ ପାରସ୍ପରିକ ଜୀବନକୁ ସୁଖମୟ କରାଇବା ଏବଂ ପରସ୍ପରକୁ ଅଧିକରୁ ଅଧିକ ବୁଝିବା ପାଇଁ ସାହାଯ୍ୟ କରିବା । ଏ ସମ୍ପର୍କରେ ବାସମ୍‌ଙ୍କ ନିମ୍ନଲିଖିତ ମନ୍ତବ୍ୟ ଯଥାର୍ଥରେ ପ୍ରଣିଧାନଯୋଗ୍ୟ

> Sexuality was not looked on as a mere vent of animal passions of the male, but as a refined mutual relationship for the satisfaction of both parties. The sophisticated townsman for whom the Kamasutra was written was advised to consider the satisfaction of his mistress as well as his own, for she was as passionate as himself, and it was

even said by some that her pleasure in sex was greater than his (୧୩)

ରାମାୟଣୀୟ ସମାଜ ତ ଥିଲା ବହୁପତ୍ନୀକ । ସାଧାରଣତଃ ବହୁପତ୍ନୀକ ସମାଜରେ ପୁରୁଷ ପକ୍ଷରେ ଯୌନ-ବିଶୃଙ୍ଖଳା ବିଶେଷ ପରିମାଣରେ ଦେଖା ଦେଇଥାଏ ଏବଂ ଏହାକୁ ଗୁରୁତର ଅପରାଧ ବୋଲି ଧରା ଯାଇ ନଥାଏ । କିନ୍ତୁ ରାମାୟଣୀୟ ସମାଜରେ ସ୍ଥିତି ଏଭଳି ନଥିଲା । ସ୍ୱାମୀ ଓ ସ୍ତ୍ରୀ ଉଭୟଙ୍କୁ ଶୃଙ୍ଖଳିତ ଯୌନଜୀବନ ବିତାଇବାକୁ ପଡୁଥିଲା । ଅଯୋଧ୍ୟାରେ ନାରୀ ଓ ପୁରୁଷ କିଭଳି ପୂତପବିତ୍ର ଜୀବନଯାପନ କରୁଥିଲେ ସେ ସମ୍ପର୍କରେ କୁହାଯାଇଛି

ସର୍ବେ ନରାଶ୍ଚ ନାର୍ଯଶ୍ଚ ଧର୍ମଶୀଳାଃ ସୁସଂଯତାଃ ।
ମୁଦିତାଃ ଶୀଳବୃତ୍ତାଭ୍ୟାଂ ମହର୍ଷୟ ଇବାମଳାଃ । (୨୪)

ଅର୍ଥାତ୍ ସେଠାକାର ସ୍ତ୍ରୀ-ପୁରୁଷମାନେ ସମସ୍ତେ ଧର୍ମଶୀଳ ଓ ସଂଯତ ଥିଲେ । ସେମାନେ ମହର୍ଷିମାନଙ୍କ ଭଳି ନିର୍ମଳ ଥାଇ ସର୍ବଦା ପ୍ରସନ୍ନ ରହୁଥିଲେ । ସ୍ତ୍ରୀ-ପୁରୁଷଙ୍କ ଜୀବନରେ ମହର୍ଷିଙ୍କ ନିର୍ମଳତା ଆରୋପ କରି ଯାଇଥିବାରୁ ଏଥିରୁ ସୂଚନା ମିଳୁଛି ଯେ ଦାମ୍ପତ୍ୟ ଜୀବନ ଖୁବ୍ ପବିତ୍ର ଥିଲା । ଏଭଳି ପରିବେଷ୍ଟନୀରେ ସ୍ୱାମୀ କିମ୍ବା ସ୍ତ୍ରୀ କେହି ପଥଭ୍ରଷ୍ଟ ହେବାର ସମ୍ଭାବନା ଖୁବ୍ କମ୍ ଥିଲା । ସ୍ତ୍ରୀ ସ୍ୱୈରଚାରିଣୀ ହେଲେ ଖୁବ୍ କଠିନ ଦଣ୍ଡ ପାଉଥିଲା । ଅହଲ୍ୟାଙ୍କ ଉଦାହରଣ ନିଆଯାଉ । ସେ ଅଜ୍ଞାତସାରରେ ହେଲେ ମଧ୍ୟ ଇନ୍ଦ୍ରଙ୍କ ସହିତ ପାପାଚାରରେ ମଜ୍ଜିଥିବାରୁ ତାଙ୍କୁ ପଥର ହୋଇଯିବାକୁ ପଡ଼ିଥିଲା । ତାଙ୍କ ସ୍ୱାମୀ ମଧ୍ୟ ତାଙ୍କୁ ପରିତ୍ୟାଗ କରିଥିଲେ । ଅବଶ୍ୟ ମଣିଷ ପଥର ହୋଇଯିବାକୁ ଆଜିକାଲି କେହି ବିଶ୍ୱାସ କରିପାରିବେ ନାହିଁ । ଏହା ହୁଏତ କବିସୁଲଭ ଅତିରଞ୍ଜିତ ବର୍ଣ୍ଣନା ହୋଇପାରେ । ଅହଲ୍ୟାଙ୍କୁ ଗୌତମ-ମୁନିଙ୍କ ଆଶ୍ରମରେ ପାଷାଣ ଭଳି ନିଶ୍ଚଳ କରାଯାଇଥିବାର ତାତ୍ପର୍ଯ୍ୟ ହେଉଛି, ତାଙ୍କୁ ସେଠାରେ ଏଭଳି ବନ୍ଦିନୀ ଅବସ୍ଥାରେ ରଖାଯାଇଥିଲା ଯେ ସେ ଆଉ ବାହାରକୁ ପାଦେ ହେଲେ ଘୁଞ୍ଚି ପାରୁ ନଥିଲେ । ସେ ଥିଲେ ପାଷାଣ ଭଳି ନିଶ୍ଚଳ । ବାଲ୍ମୀକୀୟ ସମାଜରେ ସ୍ୱାମୀଙ୍କ ପ୍ରତି ବିଶ୍ୱାସଭଙ୍ଗ କରିଥିବା ପଥଭ୍ରଷ୍ଟା ସ୍ତ୍ରୀ ପାଇଁ ଯେଉଁ କଠିନ ଦଣ୍ଡବିଧାନ କରାଯାଉଥିଲା, ଅହଲ୍ୟା ତା'ର ଏକ ନିଦର୍ଶନ । ପରସ୍ତ୍ରୀ ସହିତ ରତ ଥିବା ପୁରୁଷ ପ୍ରତି ମଧ୍ୟ ସମଧିକ କଠିନ ଦଣ୍ଡର ବ୍ୟବସ୍ଥା ଥିଲା । ତା'କୁ ଅରଣ୍ୟରେ ନିର୍ବାସିତ ଜୀବନ କଟାଇବାକୁ ପଡ଼ୁଥିଲା । ଏହି ମତର ପୁଷ୍ଟିସାଧନ କରିବାକୁ ଯାଇ ଶର୍ମା ଯଥାର୍ଥରେ କୁହନ୍ତି

Adultery was a heinous crime and Valmiki's society dealt with severity the parties to such a crime. An adulterous wife was abandoned forthwith by her husband. Likewise, an adulterous man was liable to be banished to the forests. (୨୫)

ଅତଏବ, ଏକ ସୁଶୃଙ୍ଖଳ ଯୌନ-ଚର୍ଯ୍ୟା ମଧ୍ୟ ଦେଇ ପରସ୍ପର ପ୍ରତି ବିଶ୍ୱାସଜନିତ ଅବସ୍ଥାରେ ସୁଖମୟ ଜୀବନଯାପନ କରିବା ଥିଲା ତତ୍‌କାଳୀନ ଦାମ୍ପତ୍ୟ ବନ୍ଧନର ଲକ୍ଷ୍ୟ । ରାମାୟଣରେ ଅନେକ ସ୍ଥଳରେ ସ୍ୱାମୀଙ୍କୁ 'ଭର୍ତ୍ତା' ବୋଲି କୁହା-ଯାଇଛି । ଏହାର ତାତ୍ପର୍ଯ୍ୟ ହେଲା ସେ ସ୍ତ୍ରୀଲାଗି ସବୁ ପ୍ରକାର ସୁଖ ଆଣି ଦେଇଥାନ୍ତି । ରାମାୟଣରେ ଠାଏ (୨।୭୨।୧୫) ସ୍ତ୍ରୀ ପାଇଁ ସ୍ୱାମୀ ହେଉଛନ୍ତି 'ସୁଖଭୋଗାର୍ଥଦାତା' ବୋଲି କୁହା ଯାଇଛି । ପୁଣି ଆଉ ଠାଏ (୨।୪୨।୧୧) ତାଙ୍କୁ ସ୍ତ୍ରୀ ଲାଗି 'ଅମୃତସ୍ୟ ହି ଦାତା' ବା ଅମୃତର ଦାତା ବୋଲି କୁହା-ଯାଇଛି । ଏହାର ତାତ୍ପର୍ଯ୍ୟ ହେଲା, ସ୍ୱାମୀଙ୍କ ସହିତ ଏକାନ୍ତ ଜୀବନ-ଯାପନ କରିବା ସ୍ତ୍ରୀ ପାଇଁ ଅମୃତର ସୁଖ ଆଣି ଦେଉଥିଲା । ଏଥିରୁ ଏହି ସୂଚନା ମିଳୁଛି ଯେ ସ୍ତ୍ରୀର ଦାମ୍ପତ୍ୟ-ଜୀବନ ସାଧାରଣତଃ ଖୁବ୍ ସୁଖମୟ ଥିଲା । ବିଶେଷ କୌଣସି ଦୁର୍ଘଟଣା ନଘଟିଲେ ତା'ର ଏହି ସୁଖରୁ ବଞ୍ଚିତ ହେବାର ସମ୍ଭାବନା ନଥିଲା ।

ଭାରତୀୟ ପରମ୍ପରାରେ ସ୍ତ୍ରୀ ପ୍ରେମର ଏକ ଉଜ୍ଜ୍ୱଳା ସ୍ରୋତସ୍ୱିନୀ । ତା'ର ସ୍ୱାମୀଙ୍କ ପ୍ରତି ପ୍ରେମ ଥାଏ ଅଫୁରନ୍ତ ! ତାହା ଥାଏ ସ୍ୱର୍ଗଙ୍ଗାର ଧାର ପରି ଚିର ନିର୍ମଳ ଓ ଅମୃତରେ ଟଳମଳ । ସେ କେବଳ ଦେବାକୁ ଭଲ ପାଏ; ତା'ର ନେବା ଲାଗି କିଛି ହିଁ ଅଭିଳାଷ ନଥାଏ । ସେ ସ୍ୱାମୀଙ୍କ ଚରଣତଳେ ଚିର-ନିବେଦିତ ଫୁଲ ପରି ନିଜକୁ ସମର୍ପିତ କରି ଦେଇଥାଏ । ଏହି ସମର୍ପଣଭାବ ହେଉଛି ପ୍ରକୃତ ପ୍ରେମର ଲକ୍ଷଣ । ମହାଭାରତରେ (୧୩।୧୨।୧୪) ତେଣୁ ସ୍ତ୍ରୀର ସ୍ୱଭାବ ସମ୍ପର୍କରେ କୁହାଯାଇଛି

ମୃଦୁତ୍ୱଂ ଚ ତନୁତ୍ୱଂ ଚ ପରାଧୀନତ୍ୱମେବ ଚ ।
ସ୍ତ୍ରୀଗୁଣା ଋଷିଭିଃ ପ୍ରୋକ୍ତା ଧର୍ମତତ୍ତ୍ୱାର୍ଥଦର୍ଶିଭିଃ ।

ଅର୍ଥାତ କୋମଳତା, ଦୁର୍ବଳତା ଓ ପରାଧୀନତା ହେଉଛି ସ୍ତ୍ରୀର ଗୁଣ ବୋଲି ଧର୍ମତତ୍ତ୍ୱଦର୍ଶୀ ଋଷିମାନେ କହିଥାନ୍ତି । ଏହି ଗୁଣସମ୍ପନ୍ନା ସ୍ତ୍ରୀ ଯେଉଁ ପ୍ରେମରେ ଅନ୍ଧ୍‌ତା, ସେ ପ୍ରେମରେ କାମର ଲେଶମାତ୍ର ଗନ୍ଧ ନଥାଏ । ସେଠି ଗୋଟିଏ

ଆତ୍ମା ଆଉ ଗୋଟିଏ ଆତ୍ମାକୁ ଡ଼ାକୁ ଥାଏ । ତାହା ହେଉଛି ଧରଣୀକୁ ଅବତରଣ କରିଥିବା ଗୋଟିଏ ଶକ୍ତି ଯାହାକ ମଣିଷକୁ ଧରଣୀରୁ ପୁଣି ସ୍ୱର୍ଗକୁ ନେଇଯିବା ପାଇଁ ସମର୍ଥ । ପ୍ରକୃତ ପ୍ରେମର ସ୍ୱରୂପ ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ରାଧାକୃଷ୍ଣନ୍ କୁହନ୍ତି :

> Through love we create a spiritual reality, and develop our destiny as persons, through the pleasures of the flesh, the happiness of the mind and the joy of spirit. The tempests of the heart are taken over into the calm of the soul. Love is not merely flame muting flame but spirit calling to spirit. (୨୭)

ସାବିତ୍ରୀ ସତ୍ୟବାନ୍‌ଙ୍କୁ ପତି ରୂପରେ ବରଣ କରି ସାରିବା ପରେ ତାଙ୍କ ପିତା ସତ୍ୟବାନ୍‌ଙ୍କ ଅଲ୍ପାୟୁ ବିଷୟ ଜାଣିପାରି ତାଙ୍କୁ (ସାବିତ୍ରୀଙ୍କୁ) ଅନ୍ୟ ପତି ବରଣ କରିବା ପାଇଁ ଯେତେବେଳେ କହିଲେ, ସାବିତ୍ରୀ ତାହା କରିବାକୁ ମନା କରିଥଲେ । ଆର୍ଯ୍ୟନାରୀ ଥରେ ମାତ୍ର ପତିଙ୍କୁ ବରଣ କରିଥାଏ । ଏହି ଥରେ ମାତ୍ର ବରଣ ଦ୍ୱାରା ଯେଉଁ ପ୍ରେମର ସୂତ୍ର ଦୁଇ ପ୍ରାଣୀଙ୍କୁ ବାନ୍ଧି ରଖେ, ତାହା ଚିରଦିନ ପାଇଁ ରହିଯାଏ ଅଚ୍ଛେଦ୍ୟ ହୋଇ । ସାବିତ୍ରୀ ପିତାଙ୍କୁ ଦେଇଥିବା ଉତ୍ତର ମହାଭାରତରେ ନିମ୍ନମତେ ବର୍ଣ୍ଣିତ

> ଦୀର୍ଘାୟୁରଥ ବାଲ୍ପାୟୁଃ ସଗୁଣୋ ନିର୍ଗୁଣୋଽପି ବା ।
> ସକୃଦ୍ ବୃତୋ ମୟା ଭର୍ତ୍ତା ନ ଦ୍ୱିତୀୟଂ ବୃଣୋମ୍ୟହମ୍ ।

ଅର୍ଥାତ୍ ମୋ'ର ସ୍ୱାମୀ ଦୀର୍ଘାୟୁ ହୁଅନ୍ତୁ ଅଥବା ଅଲ୍ପାୟୁ ହୁଅନ୍ତୁ । ଗୁଣୀବାନ୍ ହୁଅନ୍ତୁ ଅଥବା ଗୁଣହୀନ ହୁଅନ୍ତୁ, ମୁଁ ତାଙ୍କୁ ଥରେ ବରଣ କରି ସାରିବା ପରେ ଆଉ ଦ୍ୱିତୀୟ ଥର ପାଇଁ କାହାଙ୍କୁ ସ୍ୱାମୀ ରୂପେ ବରଣ କରିପାରିବି ନାହିଁ । ସାବିତ୍ରୀଙ୍କ ଏହି ବାଣୀରେ ଯେଉଁ ଅନାବିଳ ପତିପ୍ରେମ ପରିସ୍ଫୁଟ, ତହିଁରେ ଦେହଜ କାମନାର ଲେଶ ମାତ୍ର ଚିହ୍ନ ନାହିଁ । ତାହା ହୋଇଥିଲେ ଜାଣିଶୁଣି ସେ ଅଲ୍ପାୟୁ ଜଣେ ବ୍ୟକ୍ତିଙ୍କୁ ନିଜର ପ୍ରେମାସ୍ପଦ ବୋଲି କାହିଁକି ଗ୍ରହଣ କରିଥାନ୍ତେ ? ଏହି ପ୍ରେମ ଜୀବନର ସକଳ ଦୁର୍ବହ ଭାରକୁ ସୁବହ କରି ଦେଇଥାଏ । ସକଳ ଦୁଃଖକୁ ସୁଖରେ ପରିଣତ କରି ଦେଇଥାଏ । ଏହାର ନାମ ହେଉଛି ଶାଶ୍ୱତ ପ୍ରେମ । ଏଥିରେ ଫଳଶ୍ରୁତିର କିଛି ହିଁ ଆଶା ନଥାଏ । ଏଥିରେ ଫେରି ପାଇବା ଲାଗି କିଛି ହିଁ ଅଭୀପ୍‌ସା

ନଥାଏ । ଏ ପ୍ରେମ ହେଉଛି ଈଶ୍ୱରୀୟ । ସ୍ପିନୋଜାଙ୍କ (Spinoze) ମତରେ ଈଶ୍ୱରଙ୍କ ପ୍ରତି ଥିବା ପ୍ରେମରେ ଯଦି କିଛି ଫେରି ପାଇବାର ଆଶା ନରହେ, ତେବେ ତାହା ହିଁ ହେବ ସର୍ବୋତ୍କୃଷ୍ଟ ପ୍ରେମ । ପ୍ରେମ ବେଦନା ଆଣି ଦେଇଥାଏ; କିନ୍ତୁ ସେ ବେଦନାର ସୁଖ ଅମୃତର ସ୍ୱାଦୁକୁ ବଳି ଯାଇଥାଏ । ପୁଣି ରାଧା କୃଷ୍ଣନ୍‌ଙ୍କ ଭାଷାରେ

> It is life's supreme blessing, however bitter its afflications may be, however lamentable its defects, (୨୨)

ରାମାୟଣୀୟ ସମାଜରେ ଆଦର୍ଶ ପତ୍ନୀ ଅନୁରୂପ ଶାଶ୍ୱତ ପ୍ରେମର ଅଧିକାରିଣୀ ଥିଲେ ।

ସୀତାଙ୍କୁ ଉଦାହରଣ ସ୍ୱରୂପ ନିଆଯାଉ । ରାବଣ ତାଙ୍କୁ ଅପହରଣ କରି ନେଇ ଅଶୋକବନରେ ରଖାଇଛି । ତା'କୁ ପତି ରୂପରେ ବରଣ କରିବା ପାଇଁ ସେ ତାଙ୍କୁ ନାନା ପ୍ରକାର ପ୍ରଲୋଭନ ଓ ଭୟ ଦେଖାଇଛି । ସେଥିରେ ସୀତା ଆଦୌ ବିଚଳିତା ହୋଇ ନାହାନ୍ତି । ସେ ପାଷାଣ ଭଳି ତାଙ୍କ ପତିବ୍ରତରେ ରହିଛନ୍ତି ଅଚଳା । ସୀତାଙ୍କୁ ଘେରି ରହିଥିବା ରାକ୍ଷସୀମାନେ ରାମ ଓ ରାବଣଙ୍କ ମଧ୍ୟରେ ଥିବା ଐଶ୍ୱର୍ଯ୍ୟର ତୁଳନାତ୍ମକ ବିଚାର କରି ରାବଣଙ୍କୁ ବିବାହ କଲେ ସୀତା କିଭଳି ସୁଖରେ ରହିବେ ତାହା ବୁଝାଇଛନ୍ତି । ସୀତା ଏହାର ଉତ୍ତରରେ କହିଛନ୍ତି

> ଦୀନୋ ବା ରାଜ୍ୟହୀନୋ ବା ଯୋ ମେ ଭର୍ତ୍ତା ସ ମେ ଗୁରୁଃ ।
> ତଂ ନିତ୍ୟମନୁରକ୍ତାସ୍ମି ଯଥା ସୂର୍ଯ୍ୟଂ ସୁବର୍ଚ୍ଚଳା ।। (୨୮)

ଅର୍ଥାତ୍ ମୋର ସ୍ୱାମୀ ଦୀନ ହୁଅନ୍ତୁ କିମ୍ବା ରାଜ୍ୟଭ୍ରଷ୍ଟ ହୁଅନ୍ତୁ, ସେ ହେଉଛନ୍ତି ମୋ'ପାଇଁ ଗୁରୁ ସମାନ । ସୁବର୍ଚ୍ଚଳା ସୂର୍ଯ୍ୟଙ୍କଠାରେ ଚିର ଅନୁରକ୍ତା ଥିଲା ଭଳି ମୁଁ ତାଙ୍କ ଠାରେ ଚିର ଅନୁରକ୍ତା । ତାହା ପରେ ପରେ (୫।୨୪।୧୦-୧୨) ଇନ୍ଦ୍ର ଓ ଶଚୀ, ବଶିଷ୍ଠ ଓ ଅରୁନ୍ଧତୀ ଆଦିଙ୍କର ଚିରନ୍ତନ ସମ୍ପର୍କ କଥା ସେ ଉଲ୍ଲେଖ କରି କହିଛନ୍ତି ଯେ ତାଙ୍କର ରାମଙ୍କ ସହିତ ଥିବା ସମ୍ପର୍କ ହେଉଛି ଅନୁରୂପ । ସେ ପୁଣି ରାକ୍ଷସୀମାନଙ୍କୁ କହିଛନ୍ତି (୫।୨୪।୮) "ତୁମ୍ଭମାନଙ୍କର ଇଚ୍ଛା ହେଲେ ମୋତେ ଖାଇ ଯାଇପାର; କିନ୍ତୁ ମୁଁ ତୁମ କଥା ଅନୁସାରେ କାମ କରିବି ନାହିଁ ।" ସୁନ୍ଦର କାଣ୍ଡର ୨୭ଶ ସର୍ଗରେ ସୀତାଙ୍କ କରୁଣ ବିଳାପ ଓ ସ୍ୱାମୀଙ୍କ ବିରହରେ ପ୍ରାଣତ୍ୟାଗ କରିବା ପାଇଁ ଇଚ୍ଛାପ୍ରକାଶ ବର୍ଣ୍ଣିତ । ପରେ ଅବଶ୍ୟ ତ୍ରିଜଟାଙ୍କର ଶୁଭ ଶକୁନ ସମ୍ପର୍କରେ ଜାଣିପାରି ଏବଂ

ତାଙ୍କଠାରୁ ଆଶ୍ୱାସନା ପାଇ ସେ ପ୍ରାଣତ୍ୟାଗର ଉଦ୍ୟମରୁ ବିରତ ହୋଇଥିଲେ । ଯେ ନେଇଁ ପ୍ରେମ ପାଇଁ ଏତେ କଷଣ ସହିବାକୁ ପ୍ରସ୍ତୁତ ଥିଲେ ଏବଂ ନିଜ ଜୀବନକୁ ମଧ୍ୟ ତୁଚ୍ଛ ମଣିଥିଲେ ତାହା କ'ଣ କେବେହେଲେ ଦେହର ବଳୟରେ ସୀମିତ ଥିଲା ? ତାହା କ'ଣ କେବେହେଲେ କାମନା ଜର୍ଜର ଥିଲା ? ଏହାର ଉତ୍ତର ନିଶ୍ଚିତ ଭାବରେ ଏକ ଦୃଢ଼ 'ନା' ହେବ ।

ସୀତାଙ୍କର ମାନସିକ ସ୍ଥିତି କିଭଳି ଉଚ୍ଚତମ ସ୍ତରରେ ଥିଲା ସେ ବିଷୟରେ ପରବର୍ତ୍ତୀ କାଳର କବି କାଳିଦାସ ତାଙ୍କ କବିସୁଲଭ ଅନ୍ତର୍ଦୃଷ୍ଟି ସାହାଯ୍ୟରେ ଦେଖିପାରିଛନ୍ତି । ଗର୍ଭିଣୀ ଅବସ୍ଥାରେ ସୀତା ରାମଙ୍କ ଦ୍ୱାରା ନିର୍ବାସିତା ହେବା ପରେ ମଧ୍ୟ ସେ (ସୀତା) ରାମଙ୍କ ଉଦ୍ଦେଶ୍ୟରେ କହୁଛନ୍ତି

> ସାହଂ ତପଃ ସୂର୍ଯ୍ୟନିବିଷ୍ଟଦୃଷ୍ଟିରୂର୍ଦ୍ଧ୍ୱଂ ପ୍ରସୂତେଶ୍ଚରିତୁଂ ଯତିଷ୍ୟେ ।
> ଭୂୟୋ ଯଥା ମେ ଜନନାନ୍ତରେଽପି ତ୍ୱମେବ ଭର୍ତ୍ତା ନ ଚ ବିପ୍ରୟୋଗଃ ।। (୨୧)

ଅର୍ଥାତ୍ ସନ୍ତାନ ଜନ୍ମ ପରେ ମୁଁ ସୂର୍ଯ୍ୟଙ୍କଠାରେ ଦୃଷ୍ଟି ନିବଦ୍ଧ ରଖି ଏଭଳି ତପସ୍ୟା କରିବି ଯାହା ଫଳରେ କି ମୁଁ ତୁମଠାରୁ ବିଯୁକ୍ତ ନ ହୋଇ ତୁମଙ୍କୁ ହିଁ ପୁନର୍ଜନ୍ମରେ ପତି ରୂପରେ ପାଇ ପାରିବି । ଏ ପ୍ରେମର କେତେ ଯେ ନିଷ୍ଠା ! ଏତେ କଷ୍ଟ, ଏତେ ଅପମାନ ପାଇ ମଧ୍ୟ ସୀତା ଜନ୍ମ ଜନ୍ମାନ୍ତରେ ସେହି ରାମଙ୍କୁ ହିଁ ପତି-ରୂପରେ ପାଇବା ପାଇଁ ଚାହୁଁଛନ୍ତି

ରାମାୟଣୀୟ ସମାଜରେ ଜଣେ ଆଦର୍ଶ ପତ୍ନୀଙ୍କର ପତିପ୍ରେମ ଯେ ଥିଲା ଈଶ୍ୱରୀୟ ଓ ଚିରନ୍ତନ ସମ୍ପୂର୍ଣ୍ଣ କାମବିବର୍ଜିତ, ଏହି ସୂଚନା ଆମେ ଏଥିରୁ ପାଇପାରିବା । ସେଥିପାଇଁ ତ ଯୁଗ ଯୁଗ ଧରି ଏହି ପ୍ରେମ ପ୍ରତ୍ୟେକ ନାରୀ ପାଇଁ ଆଦର୍ଶ ହୋଇ ରହିଆସିଛି

ଏ ତ ଗଲା ନାରୀର ପତ୍ନୀ-ସ୍ୱଭାବ ସମ୍ପର୍କରେ କେତେକ ଆଲୋଚନା । ନାରୀର ବହୁମୁଖୀ ସ୍ୱରୂପର ଆଉ ଏକ ରୂପ ମାତୃରୂପ କିପରି ଭାବରେ ରାମାୟଣରେ ଚର୍ଚ୍ଚିତ, ସେ କଥା ବର୍ତ୍ତମାନ ବିଚାର୍ଯ୍ୟ ।

**ମାତା :**

ନାରୀଜୀବନର ଚରମ ସୌଭାଗ୍ୟ ହେଉଛି ମାତୃତ୍ୱ । ଏହି ସୌଭାଗ୍ୟର ଅଧିକାରିଣୀ ହେବା ପାଇଁ ପ୍ରତ୍ୟେକ ନାରୀର ଦୁର୍ବାର କାମନା ଥାଏ । ପ୍ରସବ-ବେଦନା ଯେ ଦୁର୍ବିଷହ, ତାହା ପ୍ରତ୍ୟେକ ନାରୀ ଜାଣିଥାଏ । କିନ୍ତୁ ପ୍ରଥମ ସନ୍ତାନର ଜନନୀ ହେବାପରେ ସେ ଆଉ ଗୋଟିଏ ସନ୍ତାନର ଜନନୀ ହେବାକୁ ଚାହିଁଥାଏ । ମନୁଙ୍କ (୯।୮) କହିବା ଅନୁସାରେ ପତି ପତ୍ନୀର ଗର୍ଭରେ ପ୍ରବେଶ

କରି ପୁନର୍ବାର ସନ୍ତାନ ରୂପରେ ଜନ୍ମଲାଭ କରିଥାନ୍ତି ବୋଲି ତା'ର (ପତ୍ନୀର) ଅନ୍ୟ ନାମ ହେଉଛି ଜାୟା । ଶର୍ମା ସେଥିପାଇଁ ଯଥାର୍ଥରେ କହିଛନ୍ତି

> Motherhood is therefore, the cherished ideal of a Hindu woman and childlessness her worst misfortune. (୩୦)

ଯୁଗେ ଯୁଗେ ମାତୃତ୍ୱ ପ୍ରତି ଏହି ସମ୍ମାନ ଦିଆଯାଇ ଆସିଛି । ଉପନିଷଦୀୟ ଋଷି ଶିଷ୍ୟଙ୍କୁ ଶିକ୍ଷା ଦେବା ଅବସରରେ କହିଥାନ୍ତି :

> ମାତୃଦେବୋ ଭବ ପିତୃଦେବୋ ଭବ ଆଚାର୍ଯ୍ୟଦେବୋ ଭବ ଅତିଥିଦେବୋ ଭବ ।

ଅର୍ଥାତ୍ ତୁମେ ମାଆଙ୍କୁ ଦେବତା ବୋଲି ଜ୍ଞାନ କର, ବାପାଙ୍କୁ ଦେବତା ବୋଲି ଜ୍ଞାନ କର; ଗୁରୁଙ୍କୁ ଦେବତା ବୋଲି ଜ୍ଞାନ କର; ଅତିଥିଙ୍କୁ ଦେବତା ବୋଲି ଜ୍ଞାନ କର । ସମସ୍ତଙ୍କ ପୂର୍ବରୁ ଯେ ମାତୃଦେବତାଙ୍କ ନାମ ନିଆଯାଇଛି, ତହିଁରୁ ଜାଣି ହେବ କିପରି ସମାଜରେ ମାତାଙ୍କୁ ପ୍ରାଚୀନ ବୈଦିକ କାଳରୁ ହିଁ ପ୍ରାଥମିକତା ଦିଆ ହୋଇ ଆସିଛି । ବାପା ଓ ମାଆଙ୍କୁ ସଂସ୍କୃତରେ କୁହାଯାଏ 'ମାତାପିତରୌ', 'ପିତାମାତରୌ' କିନ୍ତୁ ନୁହେଁ । ପାଲିରେ ମଧ୍ୟ ଠିକ୍ ସେମିତି କୁହାଯାଏ 'ମାତାପିତରେ' । ସଂଯୁକ୍ତ ନିକାୟ (୧।୫।୧୦) ଅନୁସାରେ ଦେବ ପଟ୍ଟୀକାର କହିଛନ୍ତି "ମାତାପେତ୍ତିଭରେ ଅସିମ୍" । ଅର୍ଥାତ୍ ମୁଁ ମାଆ ଓ ବାପାଙ୍କୁ ଭରଣପୋଷଣ କରୁଛି । ଯେତେବେଳେ ବାପା ଓ ମାଆଙ୍କ ନାମ ଉଠେ, ସେତେବେଳେ ମାଆଙ୍କ ନାମ ପ୍ରଥମେ ଆସିଥାଏ । ଈସ୍‌ସା ଗୋତମୀ ଥେରୀଗାଥାରେ (୬୩ତମ ଗାଥା) ନିଜ ସଂପର୍କରେ କହିଛନ୍ତି ଯେ ସେ ଯେତେବେଳେ ବିବାହ କଲେ ସମସ୍ତେ ତାଙ୍କୁ ନିନ୍ଦା କରୁଥିଲେ; କାରଣ ତାଙ୍କର ପିତୃତ୍ୱ ଥିଲି ଅନିର୍ଣ୍ଣିତ । କିନ୍ତୁ ସେ ଯେତେବେଳେ ସନ୍ତାନର ଜନନୀ ହେଲେ, ସମସ୍ତେ ତାଙ୍କୁ ପ୍ରଶଂସା କରିବାକୁ ଲାଗିଲେ । ଆମେ ବୌଦ୍ଧଗ୍ରନ୍ଥ ମଜ୍‌ଝିମ ନିକାୟରେ (୨।୧୦୮) ମାତୃହୀନା ଜଣେ କନ୍ୟାକୁ ପାଗଳିନୀ ଭଳି ଶ୍ରାବସ୍ତୀର ଗଳି, ଉପଗଳିମାନଙ୍କରେ ଚିତ୍କାର କରି କରି ଧାଉଁଥିବାର ଦେଖୁ । 'ତୁମେ ମୋ' ମାଆଙ୍କୁ ଦେଖିଛ କି ? ତୁମେ ମୋ' ମାଆଙ୍କୁ ଦେଖିଛ କି ?' ଥିଲା ତାର ଚିତ୍କାର । ଜନନୀ ହେବାପରେ ନାରୀ ଏଭଳି ଆତ୍ମବିସ୍ମୃତ ହୋଇଯାଏ ଯେ ସେ ସନ୍ତାନର ସୁଖସୁବିଧା ଲାଗି ନିଜର ଯାବତୀୟ ସୁଖକୁ ଉତ୍ସର୍ଗ କରିଥାଏ । ଯୌବନାବସ୍ଥାରେ ମଧ୍ୟ ସେ ନିଜର ବସନ, ପ୍ରସାଧନ, ରୂପସଜ୍ଜା ଆଦି ପ୍ରତି ଦୃଷ୍ଟି ନଦେଇ ସନ୍ତାନର ଲାଳନପାଳନ ପାଇଁ ଲାଗିଥାଏ । ସନ୍ତାନକୁ ରକ୍ଷା କରିବାକୁ

ଯାଇ ସେ ନିଜକୁ ଅରକ୍ଷିତା କରି ପକାଇଥାଏ; ନାନା ପ୍ରକାର ବିପଦର ସମ୍ମୁଖୀନା ହୋଇଥାଏ । ହର୍ଣ୍ଣର୍‌ଙ୍କ (Horner) ଭାଷାରେ

The mother, facing dangers for her children, was taken as the heroic self-sacrificing type of Indian womanhood. (୩୯)

ବାଲ୍ମୀକିଙ୍କ ରାମାୟଣ ରଚନାର ଏହା ହେଉଛି ପାଖାପାଖି ସମୟ । ତେଣୁ ତତ୍‌କାଳୀନ ସମାଜରେ ମାତାଙ୍କର ଯେଉଁ ଭାବମୂର୍ତ୍ତି ଥିଲା, ତାହା ତାଙ୍କ ଗ୍ରନ୍ଥର ପ୍ରତିଫଳିତ ହେବା ସ୍ୱାଭାବିକ । ଏହା ବ୍ୟତୀତ ତ ପୁଣି ବୈଦିକ ପରମ୍ପରାର ପ୍ରଭାବ ମଧ୍ୟ ରହିଅଛି । ସେଥିପାଇଁ ଖାଲି ତ ଭାରତୀୟ ସାହିତ୍ୟରେ ନୁହେଁ, ପୃଥିବୀର ସକଳ ସାହିତ୍ୟରେ ଜନନୀକୁ ଖୁବ୍ ମାନ୍ୟତା ଦିଆହୋଇ ଆସିଛି । ରାମାୟଣୀୟ ସମାଜରେ ମଧ୍ୟ ତାକୁ ସେହିଭଳି ମାନ୍ୟତା ଦିଆଯାଉଥିଲା । ସେତେବେଳେ ସମାଜ ପିତୃକୈନ୍ଦ୍ରିକ ଥିଲେ ମଧ୍ୟ ଏବଂ ପୁତ୍ର ପିତାଙ୍କ ଗୋତ୍ର ଗ୍ରହଣ କରୁଥିଲେ ମଧ୍ୟ ଅନେକ ସ୍ଥାନରେ ତାକୁ ଅମୁକ ମାତାଙ୍କ ପୁତ୍ର ହିସାବରେ ଉପସ୍ଥାପିତ କରାଯାଇଛି । ରାମଙ୍କୁ କୌଶଲ୍ୟାନନ୍ଦନ ବୋଲି କୁହାଯାଇଛି । ସେହିପରି ଲକ୍ଷ୍ମଣଙ୍କୁ କୁହାଯାଇଛି ସୁମିତ୍ରାପୁତ୍ର । ଏହିପରି ଆହୁରି ଅନେକ ଉଦାହରଣ ରାମାୟଣରେ ବିଦ୍ୟମାନ । ରାମାୟଣକାଳୀନ ସମାଜରେ ମାତୃତ୍ୱ ପ୍ରତି ସମ୍ମାନ ପ୍ରଦର୍ଶନ କରାଯାଉଥିବାର ଏହା ନିଦର୍ଶନ ।

ସନ୍ତାନଟିଏ ପାଇବା ପାଇଁ ପିତାଙ୍କ ଅପେକ୍ଷା ମାତାଙ୍କର ବ୍ୟାକୁଳତା ବେଶି । ନିଜ ରକ୍ତମାଂସର ପିଣ୍ଡୁଳାଟିକୁ ଗର୍ଭରେ ଧାରଣ କରିବା, ତାହାକୁ ଜନ୍ମ ଦେବା, ନିଜର ସ୍ତନ୍ୟ ଦେଇ ତାହାକୁ ପୋଷଣ କରିବା ଏବଂ ନିଜ ଆଖି ଆଗରେ ତାହାକୁ କ୍ରମେ ବଡ଼ ଉଠି ଯୁବକ କିମ୍ବା ଯୁବତୀ ରୂପରେ ପରିଣତ ହୋଇଥିବାର ଦେଖିବା ତାଙ୍କର ସୁଖରେ ମାଆ ଆନନ୍ଦରେ ଅଭିଭୂତା ହୋଇଥାନ୍ତି । ବାଲ୍ମୀକି ଏହି ମାତୃମନସ୍ତତ୍ତ୍ୱଟିକୁ ଗଭୀର ଭାବରେ ଉପଲବ୍‌ଧି କରିଥିବାର ମନେହୁଏ । ସେଥିପାଇଁ ମାଆ ସନ୍ତାନ-କାମନାରେ ପରିବରଣ କରିବାର ଅନେକ ଉଦାହରଣ ସେ ଦେଖାଇଛନ୍ତି । ରାବଣ, ବିଭୀଷଣାଦିଙ୍କ ମାତା କୈକସୀଙ୍କୁ ଏଠାରେ ଗୋଟିଏ ଉଦାହରଣ ହିସାବରେ ନିଆଯାଇ ପାରେ । ସେ କେବଳ ସନ୍ତାନ-କାମନାରେ ହିଁ ବିଶ୍ରବା ଋଷିଙ୍କ ପାଖକୁ ଯାଇ ତାଙ୍କର ପତିତ୍ୱ ଭିକ୍ଷା କରିଥିଲେ । ସେତେବେଳେ ସମୟ ଥିଲା ସାୟଂକାଳ ଏବଂ ବିଶ୍ରବା ଋଷି ଥିଲେ ଅଗ୍ନିହୋତ୍ରରେ ଲଗ୍ନ । ପତି ସାହଚର୍ଯ୍ୟ ପାଇଁ ଏହା ଥିଲା ଏକ ଦାରୁଣ ବେଳା । ସେ କଥା ମଧ୍ୟ ବିଶ୍ରବା ଋଷି ତାଙ୍କୁ ସୂଚାଇ ଦେଇଥିଲେ ଏବଂ କହିଥିଲେ ଯେ

ସେତେବେଳର ପତି-ସାହଚର୍ଯ୍ୟ ଫଳରେ ଯେଉଁ ସନ୍ତାନ ଜନ୍ମିବେ ସେମାନେ ହେବେ ଅତି ନିଷ୍ଠୁର ପ୍ରକୃତିର । ତାହା ସତ୍ତ୍ୱେ କୈକସୀ ତାଙ୍କ ଇଚ୍ଛାରୁ ଟଳିନଥିଲେ । ତାଙ୍କର ଦରକାର ଥିଲା ସନ୍ତାନ, ନିଜ ରକ୍ତମାଂସରେ ଗଢ଼ା ଏକ ପିଲା । ସେ ଭଲ ହେଉ ବା ମନ୍ଦ ହେଉ ସେଥିରେ ତାଙ୍କର କ'ଣ ବା ଯାଏ ଆସେ ? ଅବଶ୍ୟ ପରେ ତାଙ୍କ ଅନୁରୋଧରେ ତାଙ୍କ କନିଷ୍ଠ ପୁତ୍ରଟି ଜଣେ ଧର୍ମାତ୍ମା ପୁରୁଷ ହେବ ବୋଲି ବିଶ୍ରବା ଋଷି ବର ଦେଇଥିଲେ । ଏହି କନିଷ୍ଠ ପୁତ୍ର ଜଣକ ବିଭୀଷଣ ନାମରେ ଖ୍ୟାତ । ଏହି କାହାଣୀଟି ଅତି ରୋଚକ ଭାବରେ ରାମାୟଣରେ (୭।୯।୧୫-୨୭) ବର୍ଣ୍ଣିତ । ସେହିପରି ସୋମପା ଦେବୀ ହେଉଛନ୍ତି ଆଉ ଜଣେ ନାରୀ ଯେ କି ପୁତ୍ରକାମନାରେ ମୁନି ଶୂଳୀଙ୍କର ସେବା କରିଥିଲେ, ଯାହା ରାମାୟଣର ବାଲକାଣ୍ଡରେ ବର୍ଣ୍ଣିତ । ସନ୍ତାନ ଲାଗି ମାତାମାନଙ୍କୁ ତପସ୍ୟା କରିବାକୁ ପଡ଼ୁଥିଲା ଏବଂ ଉପବାସ-ବ୍ରତ କରିବାକୁ ପଡ଼ୁଥିଲା । ଦଶରଥ ଯେତେବେଳେ ପୁତ୍ରକାମନାରେ ଅଶ୍ୱମେଧ ଯଜ୍ଞ କରୁଥିଲେ, ସେତେବେଳେ ତାଙ୍କ ରାଣୀମାନେ ଅତି ନିଷ୍ଠାର ସହିତ କିପରି ଉପବାସ-ବ୍ରତ ଅବଲମ୍ବନ କରି ରହିଥିଲେ ତାହାର ବର୍ଣ୍ଣନା ଆମେ ରାମାୟଣସ୍ଥ ଅଯୋଧ୍ୟାକାଣ୍ଡରେ ପାଇଥାଉଁ । ମାତୃତ୍ୱ ଯେ ନାରୀର ସହଜାତ ପ୍ରବୃତ୍ତି ଏବଂ ଏହାକୁ ପାଇବାରେ ଯେ ତା' ଜୀବନର ଚରମ ଉତ୍କର୍ଷ ସାଧିତ ହୋଇଥାଏ, ଏହି କଥାଟି ଉପରେ ବାଲ୍ମୀକି ବାରମ୍ବାର ଗୁରୁତ୍ୱ ଦେଇ ଆସିଛନ୍ତି । ଶଙ୍କରାଚାର୍ଯ୍ୟଙ୍କ (ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀ) ଭାଷାରେ

କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି ।

ଅର୍ଥାତ୍ କୁପୁତ୍ର ଜନ୍ମ ହୋଇପାରେ; କିନ୍ତୁ ମାତା କେବେହେଲେ କୁମାତା ହେବେ ନାହିଁ । ମାତା ହିଁ ସବୁବେଳେ ସୁମାତା ହୋଇ ଆସିଛନ୍ତି । ଏହା କୌଣସି ଏକ ନିର୍ଦ୍ଦିଷ୍ଟ ଯୁଗକେନ୍ଦ୍ରିକ ନୁହେଁ । ଏହା ଏକ ଚିରନ୍ତନ ପ୍ରବୃତ୍ତିର ଅଭିପ୍ରକାଶ ଯାହାକି ସବୁ ଯୁଗରେ ହୋଇଆସିଛି । ମାତୃତ୍ୱର ଏହି କମନୀୟ ରୂପଟିକୁ ବାଲ୍ମୀକି ଅତି ନିଖୁଣ ଭାବରେ ଚିତ୍ରିତ କରିଛନ୍ତି ।

ମାତୃତ୍ୱରୁ ବଞ୍ଚିତା ହେଲେ ଦେବୀ ବି କିପରି କ୍ରୋଧଜର୍ଜରିତ ହୋଇ ଉଠନ୍ତି ତାହାର ଏକ ରୋଚକ ବର୍ଣ୍ଣନା ଆମେ ରାମାୟଣରେ ଦେଖିବାକୁ ପାଇଥାଉଁ । ଉମା ଶିବଙ୍କ ସହିତ ପୁତ୍ର-ପ୍ରାପ୍ତି ଆଶାରେ ମିଳିତା ହୋଇଥିଲେ । ଏହି ମିଳନ ଶହେଟି ଦିବ୍ୟ ବର୍ଷ ପରେ ମଧ୍ୟ ପରିସମାପ୍ତ ହେଲା ନାହିଁ । ଶିବ-ପାର୍ବତୀଙ୍କ ଏହି ଦୀର୍ଘ ମିଳନ ଫଳରେ ଯେଉଁ ତେଜଃ ବାହାରିବ ତାହାକୁ କିଏ ଧାରଣ କରିବ ବୋଲି ଦେବତାମାନଙ୍କ ମଧ୍ୟରେ ଭାବନା ପଡ଼ିଲା । ସେମାନେ ଯାଇ ଶିବଙ୍କୁ ପ୍ରାର୍ଥନା କରି କହିଲେ "ଆପଣ ନିଜ ତେଜଃକୁ ନିଜେ

ଧରି ରଖନ୍ତୁ । ତାହା ନହେଲେ ତ୍ରିଲୋକ ଧ୍ୱଂସ ପାଇଯିବ ।" ଶିବ ଏଥିରେ ରାଜି ହୋଇ ଉମାଙ୍କ ସହିତ ମିଳନ ବନ୍ଦ କରିବେ ବୋଲି କହିଲେ । ତେବେ ସେ ଦେବତାମାନଙ୍କୁ ପ୍ରଶ୍ନ କଲେ, ଏତେ ଦିନର ମିଳନଫଳରେ ବର୍ତ୍ତମାନ ତାଙ୍କଠାରୁ ଯେଉଁ ତେଜଃ ବାହାରିବ ତାହାକୁ କିଏ ଧାରଣ କରିବ ? ପୃଥିବୀ ତାହାକୁ ଧାରଣ କରିବ ବୋଲି ଦେବତାମାନେ ଠିକଣା କଲେ । ଏହା ଫଳରେ ଶିବ ଉମାଙ୍କ ସହିତ ସଙ୍ଗମରୁ ନିବୃତ୍ତ ହେଲେ ଏବଂ ଯେଉଁ ତେଜଃ ତ୍ୟାଗକଲେ ତାହା ପୃଥିବୀ ଧାରଣ କଲା । ସେଥିରୁ ବିରାଟ୍ ଶରବଣର ଉତ୍ପତ୍ତି ହେଲା ଏବଂ ଏହି ଶରବଣରେ କାର୍ତ୍ତିକେୟଙ୍କର ଜନ୍ମ ହେଲା । ଉମା ଏଥିରେ ଖୁବ୍ ରାଗିଗଲେ । ତାଙ୍କର ଦେବତାମାନଙ୍କ ପ୍ରତି ଦେଇଥିବା ଅଭିଶାପ ବିଷୟ ବର୍ଣ୍ଣନା କରିବାକୁ ଯାଇ ବାଲ୍ମୀକି ଲେଖିଛନ୍ତି :

ଯସ୍ମାନ୍ନିବାରିତା ଚାହଂ ସଙ୍ଗତା ପୁତ୍ରକାମ୍ୟା
ଅପତ୍ୟଂ ସ୍ୱେଷୁ ଦାରେଷୁ ନୋତ୍ପାଦୟିତୁମର୍ହଥ ।
ଅଦ୍ୟ ପ୍ରଭୃତି ଯୁଷ୍ମାକମ ପ୍ରଜାଃ ସନ୍ତୁ ପତ୍ନୟଃ ॥ (୩୧-କ)

ଅର୍ଥାତ୍ ହେ ଦେବତାମାନେ ! ମୁଁ ପୁତ୍ରକାମନା କରି ମୋ' ସ୍ୱାମୀଙ୍କ ସହିତ ମିଳିତା ହୋଇଥିଲି । ତୁମ୍ଭେମାନେ ମଝେ ସେଥିରେ ବାଧା ଦେଲ । ତେଣୁ ମୋ' ଅଭିଶାପରେ ତୁମ୍ଭେମାନେ ଆଉ ଏଣିକି ନିଜ ସ୍ତ୍ରୀମାନଙ୍କଠାରେ ସନ୍ତାନ ଉତ୍ପାଦନ କରିବାକୁ ସମର୍ଥ ହୋଇପାରିବ ନାହିଁ । ତୁମ୍ଭମାନଙ୍କ ସ୍ତ୍ରୀମାନେ ଏଣିକି ହେବେ ନିଃସନ୍ତାନ । ଖାଲି ସେତିକି ନୁହେଁ, ସେ ମଧ୍ୟ ପୃଥିବୀକୁ ଅଭିଶାପ ଦେଇ କହିଲେ (୨।୩୭।୨୩), "ତୁମର ଅନେକ ରୂପ ହେବ ଏବଂ ବହୁ ଲୋକ ତୁମର ସ୍ୱାମୀ ହେବେ ।" ନାରୀର ପୁତ୍ର ଲାଗି କିଭଳି ଉଦଗ୍ର କାମନା ଥାଏ, ତାହା ଯଥାର୍ଥ ଭାବରେ ବାଲ୍ମୀକି ଏଠାରେ ପ୍ରତିପାଦିତ କରିଛନ୍ତି । ବର୍ତ୍ତମାନର ବୈବାହିକ ଯୁଗରେ ଏହି ଘଟଣାର ସତ୍ୟତା ଉପରେ ହୁଏତ ସନ୍ଦେହ ଆସିପାରେ । କିନ୍ତୁ ଏଥି ସହିତ ମାଆଙ୍କର ସନ୍ତାନ-କାମନାର ଯେଉଁ ଚିରନ୍ତନ ସତ୍ୟ ନିହିତ ଅଛି ସେଥିରେ କାହାରି ସନ୍ଦେହ ରହିବନାହିଁ ।

ମାତା ପୁତ୍ରର ସୁଖ ଲାଗି କିପରି ପତି-ସୁଖ ତ୍ୟାଗ କରି ପାରନ୍ତି ତାହାର ଏକ ଜୀବନ୍ତ ନିଦର୍ଶନ ହେଲେ କୈକେୟୀ । ରାମ ବନବାସ କଲେ ତାଙ୍କ ସ୍ୱାମୀ ଦଶରଥଙ୍କୁ କିଭଳି ଦୁଃଖ ହେବ ଏବଂ ତାଙ୍କ ହୃଦୟରେ କିଭଳି ଚୋଟର ଆଘାତ ଲାଗିବ ତାହା ସେ ଭଲ ଭାବରେ ବୁଝି ପାରିଥିଲେ । ସ୍ୱୟଂ ଦଶରଥ ମଧ୍ୟ ତାଙ୍କୁ ସ୍ପଷ୍ଟ ଭାବରେ ସୂଚାଇ ଦେଇଥିଲେ ଯେ ରାମଙ୍କ ବିରହରେ ତାଙ୍କ ମୃତ୍ୟୁ ଅନିବାର୍ଯ୍ୟ । କିନ୍ତୁ ସେଥିରେ କୈକେୟୀ ଟଳିନଥିଲେ ଶେଷରେ ତାଙ୍କୁ

ଦଶରଥ ପରିତ୍ୟାଗ କଲେ ବୋଲି କହିଥିଲେ । ପତ୍ନୀ ପକ୍ଷରେ ଏହାଠାରୁ ଆଉ ଅଧିକତର ଅପମାନ ଜନକ କଥା କ'ଣ ବା ହୋଇପାରେ ? ତଥାପି ତାଙ୍କର କିଛି ପରିବର୍ତ୍ତନ ହେଲା ନାହିଁ । ସେ ପୂର୍ବଭଳି ତାଙ୍କ କଥାରେ ଅଟଳ ରହିଥିଲେ । ସ୍ତ୍ରୀ ହିସାବରେ ତାଙ୍କର ଧର୍ମ ଥିଲା ସ୍ୱାମୀଙ୍କୁ ରାଜଧର୍ମ ପାଳନ କରିବାରେ ସାହାଯ୍ୟ କରିବା । ଜ୍ୟେଷ୍ଠ ପୁତ୍ର ପିତାଙ୍କ ପରେ ରାଜା ହେବା ଥିଲା ସେତେବେଳର ରାଜଧର୍ମ । ସେ ଦଶରଥଙ୍କୁ ଏହି ଧର୍ମପାଳନ କରିବାରେ ବାଧା ଦେବା ଦ୍ୱାରା ନିଶ୍ଚିତ ଭାବରେ ନିଜର ସ୍ତ୍ରୀଧର୍ମ ପାଳନରେ ଅବହେଳା କରିଥିଲେ । ଏହି ନିନ୍ଦାକୁ ସହିଯିବା ପାଇଁ ସେ ପୂରାପୂରି ପ୍ରସ୍ତୁତ ଥିଲା ଭଳି ଜଣାପଡ଼େ । ତାଙ୍କର ଉଦ୍ଦେଶ୍ୟ ଥିଲା କିପରି ତାଙ୍କ ପୁତ୍ର ଭରତ ଅଯୋଧ୍ୟାରେ ନିଷ୍କଣ୍ଟକ ରାଜା ହେବେ । ଦଶରଥଙ୍କ ମୃତ୍ୟୁ ପରେ କୌଶଲ୍ୟା ତାଙ୍କୁ ଯେପରି ଗାଳି ଦେଉଥିଲେ ତାହାକୁ ମଧ୍ୟ ସେ ସହି ଯାଇଥିଲେ । କୌଶଲ୍ୟା କହିଥିଲେ

ସକାମା ଭବ କୈକେୟୀ ଭୁଙ୍କ୍ଷ୍ୱ ରାଜ୍ୟମକଣ୍ଟକମ୍ ।
ତ୍ୟକ୍ତ୍ୱା ରାଜାନମେକାଗ୍ରା ନୃଶଂସେ ଦୁଷ୍ଟଚାରିଣି ।। (୩୨)

ଅର୍ଥାତ୍ ଆଲୋ ଦୁରାଚାରିଣୀ ନିଷ୍ଠୁରା କୈକେୟୀ ! ଏବେ ତ ତୋ'ର ମନସ୍କାମନା ପୂରିଲା । ଏବେ ତ ରାଜାଙ୍କୁ ଗ୍ରାସିଲୁଣି । ତେଣୁ ଏଣିକି ତୁ ନିଷ୍କଣ୍ଟକ ରାଜ୍ୟ ଭୋଗ କର୍ । ସେ ଗାଳି-ଅପମାନକୁ ବି କୈକେୟୀ ସହି ଯାଇଥିଲେ । ତାଙ୍କ ଭଳି ପତିଙ୍କର ସବୁଠାରୁ ପ୍ରିୟତମା ଗର୍ବିତା ନାରୀଙ୍କ ପକ୍ଷରେ ଏହା କିଛି କମ୍ ତ୍ୟାଗ ଓ ସହନଶୀଳତାର ନିଦର୍ଶନ ନୁହେଁ । କୈକେୟୀଙ୍କ ଚରିତ୍ର ଅନୁଧ୍ୟାନ କଲେ ଆମେ ଦେଖିବା ଯେ ସେ ପୁତ୍ରର ସୁଖକାମନା କରି ହିଁ ନିଜର ନିମ୍ନଲିଖିତ ସ୍ୱାର୍ଥମାନ ସେ ତ୍ୟାଗ କରିଥିଲେ ଓ ନିନ୍ଦା ଅପମାନ ସହିଥିଲେ :

କ) ସେ ନିଜ ପତିଙ୍କୁ ରାଜଧର୍ମ ପାଳନ କରିବାରେ ସହାୟତା ଦେବା ଦୂରେ ଥାଉ ବରଂ ସେଥିରେ ବିଘ୍ନ ଉପୁଜାଇବାରୁ ଲୋକନିନ୍ଦାର ଶରବ୍ୟା ହୋଇଥିଲେ ।

ଖ) ରାମ ତାଙ୍କୁ ନିଜ ମାଆଙ୍କଠାରୁ ଅଧିକ ଭକ୍ତି କରୁଥିଲେ । ତାଙ୍କ ପ୍ରତି ଏଭଳି ନିଷ୍ଠୁର ଆଚରଣ ପ୍ରଦର୍ଶନ କରିବା ଦ୍ୱାରା ସେ ନିନ୍ଦିତା ହୋଇଥିଲେ ।

ଗ) ସେ ସ୍ୱାମୀଙ୍କ ଦ୍ୱାରା ପରିତ୍ୟକ୍ତା ହୋଇଥିଲେ ।

ଘ) ଶେଷକୁ ସେ ବିଧବା ହୋଇଥିଲେ ।

ଙ) ସ୍ୱାମୀଙ୍କ ମୃତ୍ୟୁର ସେ ହିଁ ଯେ ଏକମାତ୍ର କାରଣ, ଏହି ଲୋକନିନ୍ଦା ତାଙ୍କୁ ସହିବାକୁ ପଡ଼ିଥିଲା ।

ତେବେ ଏତେ ସ୍ୱାର୍ଥତ୍ୟାଗ ସେ କାହିଁକି କଲେ ? ଦେବତା ଭଳି ଜ୍ଞାନ କରୁଥିବା ସ୍ୱାମୀଙ୍କୁ ସେ ଜାଣିଶୁଣି କାହିଁକି ହରାଇଲେ ? ଏଭଳି ଲୋକନିନ୍ଦା ସେ କାହିଁକି ସହିବା ପାଇଁ ଆଗେଇ ଆସିଲେ ? ଏହାର ଏକମାତ୍ର ଉତ୍ତର ହେଲା, ସେ ଥିଲେ ପୁତ୍ର-ସ୍ନେହରେ ଅନ୍ଧୁଣୀ । ପୁତ୍ର-ସୁଖ ଲାଗି ମାଆଙ୍କଠାରେ ଯେଉଁ ସହଜାତ ପ୍ରବୃତ୍ତି ଥାଏ, ସେ ଥିଲେ ତାହାର ଏକ ଜୀବନ୍ତ ପ୍ରତିମୂର୍ତ୍ତି । ନିଜର ଜୀବନକୁ ତିଳ ତିଳ କରି ଜାଳିଦେଇ ପୁତ୍ର-ସୁଖ ଲାଗି ଏକ ଦୀପ୍ତ ଶିଖା ହୋଇ ଉଜଳି ଉଠିବା ଥିଲା ତାଙ୍କ ଜୀବନର ପରମ ଓ ଚରମ ଲକ୍ଷ୍ୟ । ଏହି ପଥରେ ଯେତେ ଯାହା ବାଧା-ବିଘ୍ନ ଆସିଥିଲା, ତାହାକୁ ସେ ଜାଳିପୋଡ଼ି ଭସ୍ମ କରିଦେବା ପାଇଁ ପ୍ରସ୍ତୁତ ଥିଲେ । ଏପରି କି ନିଜ ସ୍ୱାମୀ ମଧ୍ୟ ସେଥିରୁ ବାଦ ପଡ଼ି ନଥିଲେ । ସେ ପତିଙ୍କ ମୃତ୍ୟୁର କାରଣ ହୋଇଥିବାରୁ ତାଙ୍କୁ କୁପତ୍ନୀ ବୋଲି କୁହାଯାଇପାରେ; ସେ କିନ୍ତୁ 'କୁମାତା' ନଥିଲେ, ଯାହାକି ଶଙ୍କରାଚାର୍ଯ୍ୟଙ୍କ ଉପରୋକ୍ତ ମତ ଅନୁସାରେ ଅସମ୍ଭବ । କୈକେୟୀଚରିତ୍ରର ଏହି ଦିଗଟି ପ୍ରତି ଦୃଷ୍ଟି ନଦେବାର ଅର୍ଥ, ଆମର ତାଙ୍କ ପ୍ରତି ଅନ୍ୟାୟ କରିବା । ପୁତ୍ର ପ୍ରତି ଏଭଳି ଅନନ୍ୟ ପ୍ରେମ ଅନ୍ୟତ୍ର ଦୁର୍ଲଭ ।

ମାଆ ହେଉଛନ୍ତି ପୁତ୍ର ପାଇଁ ସଦା ମଙ୍ଗଳମୟୀ । ସେ ସ୍ୱପ୍ନରେ ସୁଦ୍ଧା ସନ୍ତାନର ଅମଙ୍ଗଳ ଚିନ୍ତା କରନ୍ତି ନାହିଁ । ତାଙ୍କ ମୁଖରୁ ସନ୍ତାନ ଉଦ୍ଦେଶ୍ୟରେ ଯାହା ବାହାରେ, ତାହା ମଙ୍ଗଳମୟ । ମାଆ କେବେହେଲେ ଅଭିଶାପ ଦେଇପାରନ୍ତି ନାହିଁ । ତାଙ୍କ ଅଭିଶାପ ଆଶୀର୍ବାଦ ପାଲଟିଯାଏ । ସେଥିପାଇଁ ସନ୍ତାନର ସ୍ୱସ୍ତ୍ୟୟନ-କର୍ମର ଦାୟିତ୍ୱ ସର୍ବଦା ମାଆଙ୍କ ଉପରେ ଥାଏ । ପୁଅକୁ ବାହା ହେବା ପାଇଁ ପଠାଇବାରେ ଏବଂ ପୁଅ-ବୋହୂଙ୍କୁ ଘରକୁ ପାଛୋଟି ଆଣିବାରେ ଯେଉଁ ସ୍ୱସ୍ତ୍ୟୟନ କର୍ମ କରାଯାଏ, ତହିଁରେ ଭୂମିକା ଥାଏ ମାଆଙ୍କର । ବାଲ୍ମୀକି ଏ କଥା ସଂପୂର୍ଣ୍ଣ ଭାବରେ ଅବହିତ ଥିଲେ । ରାମଙ୍କ ବନବାସକୁ ଯିବାର ଅବ୍ୟବହିତ ପୂର୍ବରୁ ସେ ତାଙ୍କ ଲାଗି ସ୍ୱସ୍ତ୍ୟୟନ କର୍ମ କରିଥିଲେ । ତାଙ୍କ ବର୍ଣ୍ଣିତ ଗୋଟିଏ ପଙ୍କ୍ତି ଏଠାରେ ଉଦ୍ଧାର କରାଯାଇପାରେ । ସେ କହିଥିଲେ

ଯନ୍ମଙ୍ଗଳଂ ସୁପର୍ଣ୍ଣସ୍ୟ ବିନତାକଲ୍ପୟତ୍ ପୁରା ।।
ଅମୃତଂ ପ୍ରାର୍ଥୟାନସ୍ୟ ତତ୍ତେ ଭବତୁ ମଙ୍ଗଳଂ ।। (୩୨-କ)

ଅର୍ଥାତ୍ ପୂର୍ବେ ଅମୃତ ଆଣିବାକୁ ଚାହୁଁଥିବା ନିଜ ପୁଅ ଗରୁଡ଼ଙ୍କ ଲାଗି ବିନତା ଦେବୀ ଯେଉଁ ମଙ୍ଗଳ ଚାହିଁଥିଲେ, ତୁମର ସେହି ମଙ୍ଗଳ ହେଉ । କୌଶଲ୍ୟା ଏହା କହି ପୂର୍ବେ କେଉଁ କେଉଁ ମାଆମାନେ ସେମାନଙ୍କ ପୁତ୍ରମାନଙ୍କ ଲାଗି ମଙ୍ଗଳ ଚାହିଁଥିଲେ ସେମାନଙ୍କର ନାମୋଲ୍ଲେଖ କରିଛନ୍ତି ଏବଂ ସେହି ପ୍ରକାର ମଙ୍ଗଳ ରାମଙ୍କୁ ମିଳୁ ବୋଲି କାମନା କରିଛନ୍ତି । ସନ୍ତାନ ଲାଗି ମାଆଙ୍କର

ଏହି ମଙ୍ଗଳମୟ ମୂର୍ତ୍ତିଟିକୁ ବାଲ୍ମୀକି ଅତି ରୋଚକ ଭାବରେ ରାମାୟଣରେ ବର୍ଣ୍ଣନା କରିଛନ୍ତି । ମାତୃତ୍ୱର ଗୌରବରେ ମଣ୍ଡିତା ହେଲେ ନାରୀର ଜୀବନ-କୁସୁମଟି ପୂର୍ଣ୍ଣ ଭାବରେ ଫୁଟି ଉଠିଥାଏ ଏବଂ ସନ୍ତାନର ମଙ୍ଗଳକାମନା ଦ୍ୱାରା ତାହା ଗୌରବାନ୍ୱିତ ହୋଇଥାଏ । ରାମାୟଣରେ ସର୍ବତ୍ର ଆମେ ମାତୃତ୍ୱର ଏହି ମଙ୍ଗଳମୟ ଆଲିଙ୍ଗନର ସ୍ପର୍ଶ ପାଇଥାଉଁ ।

କୌଶଲ୍ୟାଙ୍କ ଠାରେ ମଧ୍ୟ ପୁତ୍ର-ପ୍ରେମ ଏବଂ ପୁତ୍ର-ସୁଖ ଲାଗି ସ୍ୱାର୍ଥତ୍ୟାଗ ସମଧିକ ପ୍ରକଟିତ । ରାମଙ୍କୁ ରାମାୟଣରେ (୧।୧।୧୭) କୁହାଯାଇଛି, 'କୌଶଲ୍ୟାନନ୍ଦବର୍ଦ୍ଧନଃ' ବା କୌଶଲ୍ୟାଙ୍କ ଆନନ୍ଦବର୍ଦ୍ଧନକାରୀ । ରାମଙ୍କର ବନକୁ ଯିବାରେ କୌଶଲ୍ୟା ଏତେ ଦୂର ବ୍ୟଥିତା ଓ କ୍ଷୁବ୍ଧା ହୋଇଯାଇଥିଲେ ଯେ ଦଶରଥ ଯେତେବେଳେ ତାଙ୍କୁ ସାକ୍ଷାତ୍ କଲେ, ସେତେବେଳେ ସେ ତାଙ୍କୁ ନାନା ପ୍ରକାର କର୍କଶ କଥା କହିଲେ । ସେ ତାଙ୍କୁ ଜଣେ ରାଷ୍ଟ୍ରନାଶକାରୀ ରାଜା ବୋଲି ବି କହିଲେ । ତାଙ୍କ ଭାଷାରେ (୨।୬୧।୨୬)

ହତଂ ତ୍ୱୟା ରାଷ୍ଟ୍ରମିଦଂ ସରାଜ୍ୟଂ
ହତାଃ ସ୍ମ ସର୍ବାଃ ସହ ମନ୍ତ୍ରିଭିଶ୍ଚ ।।

ଅର୍ଥାତ୍ ହେ ରାଜନ୍ ଆପଣ ରାଜ୍ୟ ସହିତ ରାଷ୍ଟ୍ରକୁ ନଷ୍ଟ କଲେ । ମନ୍ତ୍ରୀମାନଙ୍କ ସହିତ ସାରା ପ୍ରଜାସମାଜକୁ ନଷ୍ଟ କଲେ । ଯେଉଁ ପତି ତାଙ୍କ ପାଖରେ ଥିଲେ ଦେବତା ତୁଲ୍ୟ, ସେ ତାଙ୍କ ପ୍ରତି ଏଭଳି ଆପମାନଜନକ ପୌରୁଷ ବାଣୀ ପ୍ରୟୋଗ କଲେ ବା କିପରି ? ଦଶରଥ ତାଙ୍କୁ ବୁଝାଇବାରେ ସେ ପରେ ସବୁ କଥା ବୁଝିପାରିଲେ ଏବଂ ଭାବପ୍ରବଣା ହୋଇ ଏଭଳି କହି ପକାଇଛନ୍ତି ବୋଲି ସ୍ୱୀକାର କଲେ । ସେ କହିଲେ

ତଂ ହି ଚନ୍ତୟମାନସ୍ୟାଃ ଶୋକୋଽୟଂ ହୃଦି ବର୍ଦ୍ଧତେ ।
ନଦୀନାମିବ ବେଗେନ ସମୁଦ୍ରସଲିଲଂ ମହତ୍ ।। (୩୬)

ଅର୍ଥାତ୍ ନଦୀମାନଙ୍କର ସବେଗ ପ୍ରବାହ ଦ୍ୱାରା ସମୁଦ୍ରର ଜଳ ବଢୁଥିବା ପରିମାଣରେ ବଢ଼ିଗଲା ଭଳି ତାଙ୍କ (ରାମଙ୍କର) ବିଷୟ ଭାବି ଭାବି ମୋ' ହୃଦୟରେ ଶୋକ ବଢ଼ି ଉଠୁଛି । ଏହି ଶୋକାପନ୍ନା ଅବସ୍ଥାରେ ପତିଙ୍କ ପ୍ରତି ସେ ଯେଉଁ କର୍କଶ ବଚନ ପ୍ରୟୋଗ କରିଥିଲେ, ସେଥିପାଇଁ ତାଙ୍କ ପାଖରେ କ୍ଷମା ମାଗିଥିଲେ । ତେବେ ଏଭଳି ଘଟିଥିଲା କାହିଁକି ? ଏହା କ'ଣ ଯଥେଷ୍ଟ ପ୍ରମାଣ ଦେଉନାହିଁ କୌଶଲ୍ୟାଙ୍କର ପୁତ୍ର ରାମଙ୍କ ପ୍ରତି ସ୍ନେହ ଥିଲା କେତେ ଗଭୀର ? ଏହା କ'ଣ ସୂଚନା ଦେଉନାହିଁ ଯେ ସେହି ପ୍ରେମ ପତି-ଭକ୍ତିଠାରୁ ଥିଲା ଢେର ବଳିଷ୍ଠ ? ନାରୀ ପ୍ରଥମେ ପତ୍ନୀ ହୁଏ ଏବଂ ତା'ପରେ ହୁଏ ମାଆ । କିନ୍ତୁ ତା' ପାଖରେ

ପତ୍ନୀତ୍ୱ ଅପେକ୍ଷା ମାତୃତ୍ୱ ଅଧିକ ପ୍ରାଥମିକତା ପାଇଥାଏ । ସନ୍ତାନ-ପ୍ରେମ ପତି-ପ୍ରେମକୁ ବଳି ଯାଇଥାଏ । ମାତୃତ୍ୱ ଲାଗି ପତ୍ନୀତ୍ୱ ଏକ ସାଧନ ମାତ୍ର । ଏହି ସତ୍ୟଟି ରାମାୟଣରେ ଅତି କମନୀୟ ଭାବରେ ବାଲ୍ମୀକିଙ୍କ ଦ୍ୱାରା ପରିସ୍ଫୁଟିତ ।

କୌଶଲ୍ୟା ରାଣୀମହଲର ସକଳ ସୁଖସୁବିଧା ଓ ଉପଭୋଗକୁ ଜଳାଞ୍ଜଳି ଦେଇ ରାମଙ୍କ ସହିତ ବନଗମନ କରିବାକୁ ପ୍ରସ୍ତୁତ ଥିଲେ ଏବଂ ସେଥିପାଇଁ ଏକ ପ୍ରକାର ଜିଦ୍ ଧରିଥିଲେ । ସେ କହିଥିଲେ (୨।୨୦।୪)

କଥଂ ହି ଧେନୁଃ ସ୍ୱଂ ବତ୍ସଂ ଗଚ୍ଛନ୍ତମନୁଗଚ୍ଛତି ।
ଅହଂ ତ୍ୱାନୁଗମିଷ୍ୟାମି ଯତ୍ର ବତ୍ସ ଗମିଷ୍ୟସି ॥

ଅର୍ଥାତ୍ ଆରେ ବାପା ! ନିଜ ବାଛୁରୀଟି ଯେଉଁଆଡ଼େ ବୁଲିଥାଏ, ଗାଈଟି ଯେମିତି ତାହାର ପଛେ ପଛେ ଯାଏ, ମୁଁ ଠିକ୍ ସେମିତି ତୁମେ ଯେଉଁଠିକୁ ଯିବ, ସେଠିକୁ ତୁମ ପଛେ ପଛେ ଯିବି । ଏହି ପଙ୍କ୍ତିରେ ଯୁକ୍ତିଯୁକ୍ତତା ଯେତିକି ଅଛି ତାହାଠାରୁ ଅଧିକ ଅଛି ପୁତ୍ର ପାଇଁ ମାତାଙ୍କର ଉଚ୍ଛଳ ସ୍ୱଚ୍ଛ ପ୍ରେମ-ଧାରାର ଅଫୁରନ୍ତ ଅଭିପ୍ରକାଶ—ପୁତ୍ର ପାଇଁ ସ୍ୱାର୍ଥତ୍ୟାଗ କରିବାର ଏକ ସ୍ୱତଃପ୍ରବୃତ୍ତ ଅଭୀପ୍ସା । ପୁତ୍ର ପାଇଁ କଷ୍ଟ ସହି ତା'ର ଜୀବନକୁ ଆନନ୍ଦମୟ କରାଇବାର ଏକ ନିଃସ୍ୱାର୍ଥପର ଅଭିବ୍ୟକ୍ତି ! ରାମାୟଣୀୟ ଭାଷାରେ (୨।୨୪।୧୨)

ଭର୍ତ୍ତୁଃ କିଲ ପରିତ୍ୟାଗୋ ନୃଶଂସଃ କେବଲଂ ସ୍ତ୍ରିୟାଃ ।

ଅର୍ଥାତ୍ ସ୍ୱାମୀଙ୍କୁ ତ୍ୟାଗ କରିବା ସ୍ତ୍ରୀଙ୍କ ପକ୍ଷରେ ଅତ୍ୟନ୍ତ ନିଷ୍ଠୁର କର୍ମ । ସ୍ତ୍ରୀଧର୍ମ ବିଷୟରେ କୌଶଲ୍ୟା ସମ୍ପୂର୍ଣ୍ଣ ରୂପେ ଅବହିତା ଥିଲେ ମଧ୍ୟ ନିଜ ସ୍ୱାମୀଙ୍କୁ ଛାଡ଼ି ପୁତ୍ର ରାମଙ୍କ ସହିତ ବନଗମନ କରିବାକୁ ସେ ଯେଉଁ ଅଭୀପ୍ସା ପ୍ରକାଶ କରିଥିଲେ ସେଥିରୁ ତାଙ୍କର ପୁତ୍ର ଲାଗି ସ୍ୱାର୍ଥତ୍ୟାଗର ଯଥାର୍ଥ ପରିଚୟ ମିଳିଥାଏ । ଅବଶ୍ୟ ଏ କ୍ଷେତ୍ରରେ ରାମ ତାଙ୍କୁ ବୁଝାଇ କହିଥିଲେ ଯେ ତାଙ୍କ ପିତା ବିମାତା କୈକେୟୀଙ୍କ ସ୍ନେହ-ସହାନୁଭୂତିରୁ ବଞ୍ଚିତ । ଏପରି ସ୍ଥାନରେ କୌଶଲ୍ୟାଙ୍କର ଅଯୋଧ୍ୟାରେ ଥାଇ ପତିସେବା କରିବା ନିତାନ୍ତ ଆବଶ୍ୟକ । କୌଶଲ୍ୟା ରାମଙ୍କର ଏହି ସଦୁପଦେଶକୁ ଗ୍ରହଣ କରିଥିଲେ । କୌଶଲ୍ୟାଙ୍କର ପୁତ୍ର-ପ୍ରେମ ଓ ପତି-ପ୍ରେମକୁ ଯଦି ତୁଳନାତ୍ମକ ଭାବରେ ବିଚାର କରିବା, ତାହେଲେ ଆମେ ଦେଖିବା ଯେ ତାଙ୍କର ପୁତ୍ର-ପ୍ରେମ ଥିଲା ମହତ୍ତର; ପତ୍ନୀତ୍ୱ ଅପେକ୍ଷା ମାତୃତ୍ୱକୁ ସେ ଅଧିକତର ପ୍ରାଥମିକତା ଦେଉଥିଲେ ।

କୌଶଲ୍ୟାଙ୍କର ରାମଙ୍କ ପ୍ରତି ଥିବା ପ୍ରେମ ଏବଂ ତାଙ୍କର ମଙ୍ଗଳ ପାଇଁ ସର୍ବଦା କରୁଥିବା ଚିନ୍ତା ବିଷୟରେ ମନ୍ତବ୍ୟ ଦେବାକୁ ଯାଇ ଶର୍ମା ଯଥାର୍ଥରେ କହନ୍ତି

She earnestly prayed for his welfare. In the Ayodhya-Kanda, specially she is frequently seen engaged in various types of puja and archana for his prosperity. The news of Rama's prospective coronation filled her with extreme joy and she liberally distributed wealth among the poor. But when suddenly the tables were turned and she learnt that instead of being installed as Yuvaraja Rama was required to go to the forest for a long period of fourteen years she instantaniously fell on the ground like a stem of a plantain tree cut asunder by an axe. (୩୪)

ରାମଙ୍କ ବନବାସ-ଜୀବନ ଯେପରି କିଛିଟା ପରିମାଣରେ ସୁଖକର ହୁଏ, ସେଥିପାଇଁ ସେ ଖୁବ୍ ସଜାଗ ଥିଲେ । ସୀତା ଯେତେବେଳେ ତାଙ୍କ ପାଖରୁ ବିଦାୟ ନେବାକୁ ଆସିଥିଲେ, ସେ ତାଙ୍କୁ କେତେକ ଉପଦେଶ-ବାଣୀ ଶୁଣାଇଥିଲେ । ତାହାକୁ ଅନୁଧ୍ୟାନ କଲେ ଆମେ ଦେଖିପାରିବା ତାଙ୍କର ରାମଙ୍କ ପ୍ରତି ଖୁବ୍ ସ୍ନେହ ଓ ଦରଦ ଥିଲା । ସେ କହିଥିଲେ (୨।୩୯।୨୫)

ନ ତ୍ୱୟା ନାବମନ୍ତବ୍ୟଃ ପୁତ୍ରଃ ପ୍ରବ୍ରାଜିତୋ ବନମ୍ ।
ତବ ଦେବ ସମସ୍ତ୍ୱେଷଃ ନିର୍ଧନଃ ସଧନୋଽପି ବା ।

ଅର୍ଥାତ୍ ମୋ'ର ପୁଅ ବନବାସୀ ହୋଇ ଯାଇଛନ୍ତି ବୋଲି ତୁ ତାଙ୍କୁ ଅବଜ୍ଞା କରିବୁ ନାହିଁ । ସ୍ୱାମୀ ନିର୍ଦ୍ଧନ ହୁଅନ୍ତୁ ଅଥବା ଧନବାନ୍ ହୁଅନ୍ତୁ, ସେ ସବୁବେଳେ ତୋ'ର ଦେବତା ସମାନ । ଖାଲି ସେତିକି ନୁହେଁ, କୌଶଲ୍ୟା ଲକ୍ଷ୍ମଣଙ୍କୁ ମଧ୍ୟ ବଡ଼ ଭାଇ ରାମଙ୍କର ଭଲ ଯତ୍ନ ନେବାପାଇଁ ପରାମର୍ଶ ଦେବାକୁ ଭୁଲି ନଥିଲେ । ଲକ୍ଷ୍ମଣଙ୍କୁ ବିଦାୟ ଦେବା ସମୟରେ ସେ ତାଙ୍କୁ କହିଥିଲେ (୨।୪୦।୫)

ରାମେ ପ୍ରମାଦଂ ମା କାର୍ଷୀଃ ପୁତ୍ର ଭ୍ରାତରି ଗଚ୍ଛତି ।

ଅର୍ଥାତ୍ ଆରେ ପୁଅ ! ଭାଇ ବଣ ଭିତରେ ଏଣେ ତେଣେ ଯିବା ସମୟରେ ତୁମେ ଦେଖୁଥିବ, ତାଙ୍କୁ ଯେମିତି ବିପଦ ନପଡ଼େ । ଏହିପରି ସନ୍ତାନବାତ୍ସଲ୍ୟର ଆହୁରି ଅନେକ ନିଦର୍ଶନ ଆମେ ରାମାୟଣରେ ପାଇପାରିବା, ଯେଉଁଠି ମାତୃତ୍ୱର ମହନୀୟତା ଅତି ରୋଚକ ଭାବରେ ପରିସ୍ଫୁଟ ହୋଇଛି । ଉପରୋକ୍ତ ଆଲୋଚନାରୁ ତେଣୁ ଆମେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା

କ) ରାମାୟଣରେ ମାତୃତ୍ୱକୁ ନାରୀ-ଜୀବନର ଚରମ ସୌଭାଗ୍ୟ ବୋଲି ଧରି ଯାଇଛି;

ଖ) ପତ୍ନୀତ୍ୱ ଓ ମାତୃତ୍ୱ ମଧ୍ୟରେ ମାତୃତ୍ୱ ପ୍ରାଥମିକତା ପାଇଛି;

ଗ) ପତ୍ନୀତ୍ୱ ହେଉଛି ମାତୃତ୍ୱର ଏକ ସାଧନ ଏବଂ ମାତୃତ୍ୱ ହେଉଛି ପତ୍ନୀତ୍ୱର ଲକ୍ଷ୍ୟ;

ଘ) ସନ୍ତାନର ସୁଖ ଲାଗି ମାତା ସକଳ ପ୍ରକାର ଦୁଃଖ-ଯନ୍ତ୍ରଣା, ନିନ୍ଦା-ଅପମାନ ସହିବାକୁ ପ୍ରସ୍ତୁତ; ଏବଂ

ଙ) ସନ୍ତାନବାତ୍ସଲ୍ୟ ଓ ପତିପ୍ରେମ ତଥା ପତିଭକ୍ତି ମଧ୍ୟରେ ସନ୍ତାନବାତ୍ସଲ୍ୟକୁ ପ୍ରାଥମିକତା ଦିଆ ହୋଇଛି ।

ରାମାୟଣୀୟ ସମାଜରେ ମାତୃମୂର୍ତ୍ତିର ଏହା ହେଲି କେତେକ ପ୍ରଧାନ ପ୍ରଧାନ ସ୍ୱରୂପ ।

**ବିଧବା**

ନାରୀ ଜୀବନରେ ବୈଧବ୍ୟଠାରୁ ଆଉ ବଳି ଦୁଃଖଦ ସ୍ଥିତି କିଛି ନାହିଁ । ବିଶେଷ କରି ଯେଉଁ ସମାଜରେ ନାରୀ ପୁରୁଷ ଉପରେ ବହୁ ବିଷୟରେ ନିର୍ଭରଶୀଳା, ତହିଁରେ ଏହି ଦୁଃଖର ପରିମାଣ ଅଧିକ । ବୈଦିକ ଯୁଗରୁ ଆରମ୍ଭ କରି ରାମାୟଣ ଯୁଗ ପର୍ଯ୍ୟନ୍ତ କିପରି ବିଧବା-ବିବାହ ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରଚଳିତ ଥିଲି ସେ ବିଷୟରେ ଏହି ପୁସ୍ତକର 'ରାମାୟଣରେ ବିବାହ' ଶୀର୍ଷକ ପରିଚ୍ଛେଦରେ ବିଶଦ ଭାବରେ ଆଲୋଚନା କରାଯାଇଛି । ରାଧାକୃଷ୍ଣନ୍ ମଧ୍ୟ ମହାକାବ୍ୟ ଯୁଗରେ ଓ ବୌଦ୍ଧ ଯୁଗରେ କିପରି ବିଧବା-ବିବାହ ପ୍ରଚଳିତ ଥିଲି, ତାହାର କେତେକ ନିଦର୍ଶନ ଦର୍ଶାଇଛନ୍ତି । ତାଙ୍କ ଭାଷାରେ

> Trishanku married the wife of a king whom he killed, and had by her a son. Satyavati was sought in by king Ugrayudha shortly after the death of her husband. Arjuna accepted as wife the widowed daughter of Airavata the Naga king and had by her a son. The jatakas also contain reference to this custom. A king of Koshala killed the king of Benares and made the widowed queen, who was already a mother, his wife. In the Uchhanga jataka a woman prays for the

release of her brother, who alongwith her husband and son has been sentenced to death, saying that of those three she can get a new husband, and a new son, but not a new brother whatever she may do. (୩୫)

ପୁନର୍ବିବାହର ଏଭଳି ସୁବିଧାସୁଯୋଗ ଥିଲେ ମଧ୍ୟ ବୈଧବ୍ୟ-ଜୀବନକୁ ବର୍ତ୍ତମାନ ଭଳି ପୂର୍ବକାଳରେ ସାଧାରଣତଃ ଦୁଃଖଦ ଓ ଯନ୍ତ୍ରଣାଦାୟକ ବୋଲି ଧରି ଯାଉଥିଲା । ରାମାୟଣ-ଯୁଗରେ ମଧ୍ୟ ଠିକ୍ ସେହିଭଳି ସ୍ଥିତି ଥିଲା ।

ରାମାୟଣ-ଯୁଗରେ ବିଧବାମାନଙ୍କର ସ୍ଥିତି କଭଳି ଦୟନୀୟ ଥିଲା ତାହାର ସମ୍ୟକ୍ ସୂଚନା ଆମେ ବାଲୀଙ୍କ ମୃତ୍ୟୁ ପରେ ତାଙ୍କ ପତ୍ନୀ ତାରାଙ୍କ ବିଳାପ-ବାଣୀରୁ ପାଇଥାଉଁ । ସେ ଗୋଟିଏ ସ୍ଥାନରେ କହିଛନ୍ତି :

ପତିହୀନା ତୁ ଯା ନାରୀ କାମଂ ଭବତୁ ପୁତ୍ରିଣୀ ।
ଧନଧାନ୍ୟସମୃଦ୍ଧାପି ବିଧବେତ୍ୟୁଚ୍ୟତେ ଜନୈଃ । (୩୬)

ଅର୍ଥାତ୍ ପତିହୀନା ନାରୀର ଧନ-ଧାନ୍ୟର ସମୃଦ୍ଧି ଥାଉ ଅଥବା ସେ ପୁତ୍ରବତୀ ହୋଇଥାଉ ପଛକେ, ଲୋକମାନେ କିନ୍ତୁ ତା'କୁ ବିଧବା ବୋଲି କହିଥାନ୍ତି । ଏହାର ତାତ୍ପର୍ଯ୍ୟ ହେଲା, ଯେତେ ଯାହା ଧନ-ସମ୍ପତ୍ତି, ପୁତ୍ର, କନ୍ୟା ଅଥବା ବନ୍ଧୁ-ବାନ୍ଧବ ଆଦି ଥାଆନ୍ତୁ ପଛକେ, ନାରୀର ଯଦି ସ୍ୱାମୀ ନାହାନ୍ତି, ତା'ର କିଛି ନାହିଁ ବୋଲି ଧରିବାକୁ ହେବ । ଲୋକେ ତା'କୁ ଯେଉଁ ବିଧବା ବୋଲି କହୁଥିବେ, ତାହା ଥିବ ତା' ପକ୍ଷରେ ଅସହ୍ୟ ଯନ୍ତ୍ରଣା । ସ୍ୱାମୀରୂପୀ ସମ୍ପତ୍ତିର ଶୂନ୍ୟ ସ୍ଥାନଟି ଆଉ କୌଣସି ସମ୍ପତ୍ତି ତା' ପାଇଁ ପୂରଣ କରି ପାରିବ ନାହିଁ । ପ୍ରଶ୍ନ ହୋଇପାରେ, ଲୋକେ ନାରୀକୁ ବିଧବା କହିଦେଲେ ଦୁଃଖର ଅବକାଶ ରହିଲା କେଉଁଠି ? ତା'ର ତ ପୁତ୍ର, କନ୍ୟା ପୁତ୍ରବଧୂ ଆଦି ଅଛନ୍ତି ଏବଂ ସୁଖରେ ଚଳିବା ପାଇଁ ଅନ୍ୟାନ୍ୟ ସମ୍ପତ୍ତି ବି ଅଛି । ତା'ହେଲେ ସେ ଦୁଃଖ କରିବ କାହିଁକି ? ସେ ଏଇଥି ପାଇଁ ଦୁଃଖ କରିବ ଯେ ତା'କୁ ଆଧ୍ୟାତ୍ମିକ ସିଦ୍ଧି ଲାଗି, ପୁଷ୍ଟି ଅଭ୍ୟୁଦୟ ଲାଗି ସୁବିଧା-ସୁଯୋଗ ମିଳିବ ନାହିଁ । ଯେଉଁ ସମ୍ପତ୍ତି ଅକ୍ଷର ଓ ଅମର ତାହା ସେ ପାଇ ପାରିବ ନାହିଁ । ଏ ପ୍ରକାର ସମ୍ପତ୍ତି କେବଳ ପତିପତ୍ନୀ ଦୁହେଁ ମିଳିତ ଭାବରେ ଅର୍ଜନ କରି ପାରିଥାନ୍ତି । ପତିହୀନା ନାରୀ ପକ୍ଷରେ ଏହା ଅର୍ଜନ କରିବା ଅସମ୍ଭବ । ସେଥିପାଇଁ ତ ରାମାୟଣ-ଯୁଗୀୟ ବୈବାହିକ ସ୍ଥିତି କଥା ବର୍ଣ୍ଣନା କରିବାକୁ ଯାଇ ସ୍ୱାମୀ ନିଃଶ୍ରେୟସାନନ୍ଦ କହନ୍ତି

Whatever the husband did for the acquisition of merit or spiritual evolution was to be fully shared by the wife who was usually to sit by his side during ceremonies. (୬୭)

ଏହି ଧର୍ମ-ସାଧନ ପାଇଁ ପତ୍ନୀଙ୍କର ଯେପରି ପତି ଆବଶ୍ୟକ ପଡ଼ୁଥାନ୍ତି, ପତିଙ୍କର ମଧ୍ୟ ସେହିପରି ଅନୁରୂପ ଭାବରେ ପତ୍ନୀ ଆବଶ୍ୟକ ପଡ଼ୁଥାନ୍ତି । ସେଥିପାଇଁ ତ ସୀତାଙ୍କ ଅବର୍ତ୍ତମାନତାରେ ରାମଙ୍କୁ ଯଜ୍ଞାନୁଷ୍ଠାନ କରିବା ଅବସରରେ ସୀତାଙ୍କ କୁଶ ପ୍ରତିମାଟିଏ ଗଢ଼ାଇ ତାହାକୁ ଯଜ୍ଞ-ବେଦୀରେ ସମାସୀନ କରାଇବାକୁ ପଡ଼ିଥିଲା । ଏହି ଦୃଷ୍ଟିରୁ ବିଚାର କଲେ ପତିହୀନା ନାରୀ ପକ୍ଷରେ ଧର୍ମାର୍ଜନ ଅସମ୍ଭବ ହୋଇ ପଡ଼ୁଥାଏ । ସେ ଶ୍ରୀହୀନା ହୋଇ ଯାଇଥାଏ । ଯେ କିଛି ଦିନ ପୂର୍ବରୁ ଥିଲା ମଙ୍ଗଳମୟୀ । ଅଥଚ ସେ ଏବେ ଅଶୁଭର ସଙ୍କେତ ହୋଇ ଉଠିଥାଏ । କୌଣସି ଶୁଭ-କର୍ମରେ ତା'ର ଉପସ୍ଥିତି ସ୍ୱାଗତଯୋଗ୍ୟ ହୋଇନଥାଏ ।

ପତିଙ୍କ ବିନା ନାରୀ କିଭଳି ଅନାଥିନୀ ଭଳି କାଳ କାଟିଥାଏ, କିଭଳି ଅତି ଦୟନୀୟ ଭାବରେ ତା'ର ଦିନଗୁଡ଼ିକ ଅତିବାହିତ ହୋଇଥାଏ, ତାହାର ଆଉ ଏକ ନିଦର୍ଶନ ଆମେ ତାରାଙ୍କ ବିଳାପ-ବାଣୀରୁ ଅନ୍ୟତ୍ର ପାଇଥାଉଁ । ସେ କହିଛନ୍ତି

ବୈଧବ୍ୟଂ ଶୋକସନ୍ତାପଂ କୃପଣାକୃପଣା ସତୀ ।
ଅଦୁଃଖୋପଚିତା ପୂର୍ବଂ ବର୍ତ୍ତୟିଷ୍ୟାମ୍ୟନାଥବତ୍ ।

ଅର୍ଥାତ୍ ମୁଁ କେବେହେଲେ ଦୀନ-ହୀନ ଜୀବନ ବିତାଇ ନାହିଁ । ଏଭଳି ବଡ଼ ଦୁଃଖକୁ ମୁଁ କେବେହେଲେ ସାମନା-ସାମନି କରିନଥିଲି । ଆଜି କିନ୍ତୁ ମୁଁ ଦୀନା ହୋଇଗଲି । ମତେ ଆଜି ଶୋକସନ୍ତାପରେ ପରିପୂର୍ଣ୍ଣ ବୈଧବ୍ୟ-ଜୀବନ ବିତାଇବାକୁ ହେବ । ତାରାଙ୍କର ଏହି ଯେଉଁ ମାନସିକ ଅବସ୍ଥା, ଠିକ୍ ଅନୁରୂପ ମାନସିକ ଅବସ୍ଥା ଥିଲା ମନ୍ଦୋଦରୀଙ୍କର, ସେ ଯେତେବେଳେ ତାଙ୍କ ସ୍ୱାମୀଙ୍କ ମୃତ ଶରୀରକୁ ଦେଖିବାକୁ ପାଇଥିଲେ । ଦଶରଥ-ପତ୍ନୀ କୌଶଲ୍ୟାଙ୍କର ମଧ୍ୟ ତାଙ୍କ ପତିଙ୍କ ମୃତ୍ୟୁରେ ଅନୁରୂପ ଦଶା ହୋଇଥିଲା । ତାରାଙ୍କ ଭଳି ସେ ମଧ୍ୟ ପତିଙ୍କ ଚିତାରେ ଆତ୍ମାହୁତି ଦେବାପାଇଁ ବିଚାର କରିଥିଲେ । ଅବଶ୍ୟ ହିତକାମୀ ବ୍ୟକ୍ତିମାନଙ୍କ ଉପଦେଶ ଅନୁସାରେ ସେମାନେ ଆତ୍ମାହୁତି ଦେବା କର୍ମରୁ ବିରତ ହୋଇଥିଲେ । ତେବେ ସେମାନେ ଆତ୍ମାହୁତି ଦେବାର ଯେଉଁ ସଂକଳ୍ପ ପ୍ରକାଶ କରିଥିଲେ, ତହିଁରୁ ଆମେ ବୁଝିପାରିବା, ସେମାନେ କେତେ ଦୂର ମାନସିକ ଶାନ୍ତି ଓ ଶାରୀରିକ ସ୍ୱାସ୍ଥ୍ୟ ହରାଇ ବସିଥିଲେ । ସେମାନଙ୍କ ପାଖରେ ସବୁ

ଥିଲା, ଅଥଚ କିଛି ନଥିବା ଭଳି ବୋଧ ହେଉଥିଲା । ବୈଧବ୍ୟ-ଜୀବନ ଯେ କେତେ ଦୂର ମର୍ମନ୍ତୁଦ ଥିଲା, ତାହାର ସୂଚନା ଏଥିରୁ ମିଳିଥାଏ ।

ସତୀଦାହ ପ୍ରଥା ରାମାୟଣ-ଯୁଗରେ ଥିଲା କି ନାହିଁ ସେ କଥା ବର୍ତ୍ତମାନ ବିଚାର୍ଯ୍ୟ । ରାମାୟଣୀୟ ପରଂପରା ତ ବୈଦିକ ପରଂପରାର ଉତ୍ତରଦାୟାଦ । ତେଣୁ ବୈଦିକ ଯୁଗରେ ଏହି ପ୍ରଥା ଥିଲା କି ନାହିଁ ସେ ବିଷୟରେ କିଛିଟା ପର୍ଯ୍ୟାଲୋଚନା କରିବା ଆବଶ୍ୟକ । ନାରୀ ବିଧବା ହେଲେ ଯେ ତା'କୁ ବାଧ୍ୟ ହୋଇ ଆଉ ଜଣଙ୍କୁ ପତିସ୍ୱରୂପ ଗ୍ରହଣ କରିବାକୁ ହେବ ସେଭଳି କିଛି ବ୍ୟବସ୍ଥା ନଥିଲା । ଯେ ଚାହୁଁ ଥିଲା, ସେ ପୁନର୍ବିବାହ କରି ପାରୁଥିଲା । ସାଧାରଣତଃ ନାରୀ ଦେବରଙ୍କୁ ପତି ରୂପରେ ବରଣ କରୁଥିଲା । ଦେବରଙ୍କୁ ସେଥିପାଇଁ କୁହାଯାଉଥିଲା 'ଦ୍ୱିତୀୟ ବର' (ଦେବରୋ ଦ୍ୱିତୀୟଃ ବରଃ) ବୋଲି । ଜଣେ ପୁରୁଷଙ୍କର ଏକାଧିକ ସ୍ତ୍ରୀ ଥିବାରେ କିଛି ଆପତ୍ତି ନଥିଲା । ତେଣୁ ଦେବର ବିବାହିତ ଥିଲେ ମଧ୍ୟ ଭ୍ରାତୃଜାୟାଙ୍କୁ ଆଉ ଜଣେ ସ୍ତ୍ରୀ ଭାବରେ ଗ୍ରହଣ କରିବାରେ କିଛି ସାମାଜିକ ବାଧା ନଥିଲା । ଶ୍ମଶାନ-ଭୂମିରୁ ବିଧବା ସ୍ତ୍ରୀମାନଙ୍କ ପ୍ରତି ଲକ୍ଷ୍ୟ କରି ଗୋଟିଏ ମନ୍ତ୍ର କୁହାଯାଇଛି । ତାହା ହେଲା

ଇମା ନାରୀରବିଧବା ସୁପତ୍ନୀରଞ୍ଜନେନ ସର୍ପିଷା ସଂବିଶନ୍ତୁ
ଅନଶ୍ରବୋ ନମୀବାଃ ସୁରତ୍ନା ଆରୋହନ୍ତୁ ଜନୟୋ ଯୋନିଂ ଅଗ୍ରେ । (୩୮)

ଅର୍ଥାତ୍ ଏହି ଅବିଧବା ନାରୀମାନେ, ଯେଉଁମାନଙ୍କର ସୁନ୍ଦର ସ୍ୱାମୀ ଅଛନ୍ତି, ସେମାନେ ସେମାନଙ୍କ ଆଖିରେ କଜଳ ଲଗାଇ ପ୍ରବେଶ କରନ୍ତୁ; ବିନା ଲୋତକରେ, ବିନା ରୋଗରେ, ଏବଂ ଅଳଙ୍କାର ପନ୍ଧରେ ଭରି ହୋଇ ସେମାନେ ଆଗେ ଆଗେ ଘରକୁ ଯାଆନ୍ତୁ । କିନ୍ତୁ ପରେ ଏହି ବେଦ-ମନ୍ତ୍ରରେ ବ୍ୟାଖ୍ୟାକାରମାନେ ସେମାନଙ୍କ ନ୍ୟସ୍ତସ୍ୱାର୍ଥ ଚିନ୍ତାଧାରାକୁ ସୁହାଇଲା ଭଳି ମନ୍ତ୍ରଟିର 'ଅଗ୍ରେ' ଶବ୍ଦକୁ ବଦଳାଇ ଦେଇ 'ଅଗ୍ନେଃ' ବୋଲି ରଖିଦେଲେ ଏବଂ ଏହାକୁ ଅର୍ଥ କରିବାକୁ ଲାଗିଲେ ବିଧବା ସ୍ତ୍ରୀମାନଙ୍କୁ କଜ୍ଜ୍ୱଳ-ସିନ୍ଦୂର ଇତ୍ୟାଦି ଲଗାଇ ପତିଙ୍କ ସହିତ ଅଗ୍ନିରେ ପ୍ରବେଶ କରିବାକୁ ହେବ । ମନ୍ତ୍ରଟିକୁ ଠିକ୍ ଭାବରେ ଅନୁଶୀଳନ କଲେ ଆମେ ବୁଝିପାରିବା ଯେ ଏଥିରେ ବିଧବା ସ୍ତ୍ରୀମାନଙ୍କୁ 'ଅବିଧବା' ବୋଲି କୁହା ଯାଇଛି । ଏହାର ତାତ୍ପର୍ଯ୍ୟ ତେବେ କ'ଣ ? ଏହାର ଏକମାତ୍ର ତାତ୍ପର୍ଯ୍ୟ ହେଲା, ବିଧବାମାନଙ୍କୁ ସଧବା ସ୍ତ୍ରୀମାନଙ୍କ ଭଳି ଜୀବନ-ନିର୍ବାହ କରିବା ପାଇଁ ପରାମର୍ଶ ଦିଆଯାଇଛି । ଏ ବିଧବା ହୋଇ ମଧ୍ୟ ଅବିଧବା; କାରଣ ସ୍ତ୍ରୀଙ୍କର ପୁନର୍ବିବାହର ଅବକାଶ ଅଛି, ଯାହାକି ସ୍ତ୍ରୀଙ୍କ ଇଚ୍ଛା ଉପରେ ନିର୍ଭରଶୀଳ । ଅତଏବ, ବୈଦିକ-ଯୁଗରେ ସତୀ-ଦାହ ପ୍ରଥା ଆଦୌ ନଥିଲା

ବୋଲି ଆମକୁ ଗ୍ରହଣ କରିବାକୁ ହେବ । ଉପନିଷଦ ଓ ସୂତ୍ର-ଯୁଗରେ ମଧ୍ୟ ଅବସ୍ଥା ଅନୁରୂପ ଥିଲା । ଧର୍ମସୂତ୍ରମାନଙ୍କରେ ବିଧବା ସ୍ତ୍ରୀର ସମ୍ପତ୍ତି ଉପରେ ଅଧିକାର ଥିବା କଥା ଉଦ୍‌ଘୋଷିତ ହୋଇଛି । ଯଦି ସତୀ-ଦାହ ପ୍ରଥା ଥାଆନ୍ତା, ତେବେ ବିଧବାମାନଙ୍କର ସମ୍ପତ୍ତିରେ ଅଧିକାର ବିଷୟ ଉଠିଥାନ୍ତା ବା କିପରି ? ବୈଦିକ ଓ ସୂତ୍ରଯୁଗରେ ତାଙ୍କର ସତୀଦାହ ପ୍ରଥାର ଅବର୍ତ୍ତିମାନତା ସମ୍ପର୍କରେ ରାଧାକୃଷ୍ଣନ୍ ମଧ୍ୟ ସ୍ପଷ୍ଟ ମତ ପ୍ରକାଶିତ କରନ୍ତି । ତାଙ୍କ ବକ୍ତବ୍ୟ ହେଲା

> Regarding the practice of Sati, or self-immolation there is no direct reference to it in the Vedic literature; Grihya Sutras which describe in detail important ceremonies of domestic life, including the cremation ceremony, are silent about it. (୩୯)

ତେବେ ଏହି ପ୍ରଥା ଭାରତକୁ ଆସିଲା କିପରି ? ସ୍କିଥିଆନ୍-ଟାର୍ଟାରମାନଙ୍କ ମଧ୍ୟରେ ଏହି ପ୍ରଥା ପ୍ରଚଳିତ ଥିଲା । ସେମାନଙ୍କ ମୃତ୍ୟୁରେ ସେମାନଙ୍କ ସ୍ତ୍ରୀମାନେ ଓ ଦାସଦାସୀମାନେ ତଥା ଅନ୍ୟାନ୍ୟ ନିର୍ଭରଶୀଳ ବ୍ୟକ୍ତିମାନେ ଆତ୍ମହତ୍ୟା କରୁଥିଲେ । ହୁନ୍‌ମାନଙ୍କ ମଧ୍ୟରେ ବି ଏହି ପ୍ରଥା ପ୍ରଚଳିତ ଥିଲା । ସେମାନଙ୍କ ଦ୍ୱାରା ସମ୍ଭବତଃ ଭାରତଭୂମିକୁ ଏହି ପ୍ରଥା ଆଗତ ହୋଇଥିଲା । ଏଠାରେ ଲକ୍ଷ୍ୟ କରିବାର କଥା ଯେ ରାଜସ୍ଥାନର କ୍ଷତ୍ରିୟମାନଙ୍କୁ ହୁନ୍‌ମାନଙ୍କର ଉତ୍ତର-ଦାୟାଦ ବୋଲି ଧରା ଯାଇଥାଏ । ମଧ୍ୟଯୁଗ ପର୍ଯ୍ୟନ୍ତ ସେମାନଙ୍କ ମଧ୍ୟରେ ଏହି ପ୍ରଥା ବହୁଳ ଭାବରେ ପ୍ରଚଳିତ ଥିଲା । ଏବେ ମଧ୍ୟ ରାଜସ୍ଥାନରେ ସତୀପ୍ରଥାକୁ ସମର୍ଥନ କରିବାର ବ୍ୟକ୍ତି ଅନେକ ଅଛନ୍ତି । ଏହା ବର୍ତ୍ତମାନ ଆଇନସଙ୍ଗତ ନୁହେଁ ବୋଲି ପ୍ରତ୍ୟକ୍ଷ ଭାବରେ ଏହାକୁ ସମର୍ଥନ କରିବା ଅବଶ୍ୟ' ସେମାନଙ୍କ ପକ୍ଷରେ ଅସମ୍ଭବ ହୋଇଉଠିଛି । ସେ ଯାହାହେଉ, ବୈଦିକ ଯୁଗରେ ଯେ ସତୀପ୍ରଥା ନଥିଲା ଏବଂ ଏହା ଯେ ଭାରତକୁ ବହିର୍ଦ୍ଦେଶରୁ ଆଗତ, ଏ କଥା ନିଃସନ୍ଦେହ ରୂପେ କୁହାଯାଇପାରେ ।

ରାମାୟଣୀୟ ପରଂପରା ବୈଦିକ ପରମ୍ପରା ଉପରେ ଆଧାରିତ । ଅତଏବ, ଅନ୍ୟ କିଛି ବିରୋଧୀ ପ୍ରମାଣ ନମିଳିବା ପର୍ଯ୍ୟନ୍ତ ଆମକୁ ବିଶ୍ୱାସ କରିବାକୁ ହେବ ଯେ ରାମାୟଣ-ଯୁଗରେ ମଧ୍ୟ ସତୀ-ପ୍ରଥା ନଥିଲା । ରାମାୟଣରେ କିନ୍ତୁ ଗୋଟିଏ ସ୍ଥାନରେ ଆମେ ସତୀ-ପ୍ରଥା ପ୍ରଚଳିତ ଥିବାର ଉଲ୍ଲେଖ ଦେଖିଥାଉଁ । ଏହା ରାବଣ ଓ ବେଦବତୀ ଦୁହିଁଙ୍କ ମଧ୍ୟରେ ହୋଇଥିବା କଥୋପକଥନ ଅବସରର କଥା । ବେଦବତୀ ନିଜର ପରିଚୟ ଦେବାକୁ ଯାଇ କହୁଛନ୍ତି ଯେ ସେ ହେଉଛନ୍ତି ବ୍ରହ୍ମର୍ଷି

କୁଶଧ୍ୱଜଙ୍କ କନ୍ୟା । କୁଶଧ୍ୱଜଙ୍କର ଇଚ୍ଛା ଥିଲା ତାଙ୍କୁ ବିଷ୍ଣୁଙ୍କ ହସ୍ତରେ ସମର୍ପଣ କରିବେ । ତେଣୁ ଅନେକ ଦେବତା, ଗନ୍ଧର୍ବ, ରାକ୍ଷସଙ୍କ ନିକଟରୁ କନ୍ୟାଙ୍କ ପାଣିଗ୍ରହଣ ଲାଗି ପ୍ରସ୍ତାବ ଆସିବାରୁ ସେ ତାହାଙ୍କୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ । ଏଥିରେ କ୍ରୋଧପରବଶ ହୋଇ ରାକ୍ଷସରାଜ ଶମ୍ଭୁ ତାଙ୍କୁ ରାତିରେ ନିଦ୍ରିତାବସ୍ଥାରେ ହତ୍ୟା କଲା । ଏହା ଫଳରେ ଦୁଃଖାଭିଭୂତା ହୋଇ ତାଙ୍କ ସ୍ତ୍ରୀ ପତିଙ୍କ ଚିତାଗ୍ନିରେ ଝାସ ଦେଲେ । ବେଦବତୀଙ୍କ ବକ୍ତବ୍ୟ ହେଲା

ତତୋ ମେ ଜନନୀ ଦୀନା ତଚ୍ଛରୀରଂ ପିତୁଃ ମମ ।
ପରିଷ୍ୱଜ୍ୟ ମହାଭାଗା ପ୍ରବିଷ୍ଟା ହବ୍ୟବାହନମ୍ । (୪୦)

ଅର୍ଥାତ୍ ଏଥିରେ ମୋ'ର ମହାଭାଗା ମାତା ଖୁବ୍ ଦୀନାହୀନା ହୋଇ ଉଠିଲେ ଏବଂ ପିତାଙ୍କ ଶବକୁ ହୃଦୟରେ ଆଲିଙ୍ଗନ କରି ଚିତାଗ୍ନିରେ ପ୍ରବେଶ କଲେ । ଏହି ଗୋଟିଏ ମାତ୍ର ଉଦାହରଣକୁ ଛାଡ଼ି ଦେଲେ ରାମାୟଣରେ ଅନ୍ୟ କୁତ୍ରାପି ପତିଙ୍କ ଚିତାଗ୍ନିରେ ବିଧବା ନାରୀ ଆତ୍ମାହୁତି ଦେବାର ଉଲ୍ଲେଖ ନାହିଁ । ଏହାର ଦୁଇଟି କାରଣ ଥାଇପାରେ । ଏହି ଆତ୍ମାହୁତି ସ୍ୱେଚ୍ଛାକୃତ ହୋଇଥାଇ ପାରେ । ଅଥବା ଏହି ପଙ୍କ୍ତିଟି ପରବର୍ତ୍ତୀ କାଳରେ ପ୍ରକ୍ଷେପ ହିସାବରେ ମୂଳ ରାମାୟଣରେ ପ୍ରବେଶ କରିଥାଇ ପାରେ । ବାସ୍ତବିକ ବ୍ରକିଙ୍ଗ୍‌ଟନ୍‌ଙ୍କ ଭଳି ପଣ୍ଡିତଙ୍କ ମତ ହେଲା, ଏହି ସତୀ-ପ୍ରଥାର ଉଲ୍ଲେଖ ରାମାୟଣରେ ଏକ ପ୍ରକ୍ଷିପ୍ତ ଶ୍ଳୋକ ଭାବରେ ପରେ ଅନୁପ୍ରବେଶ କରିଛି । ସେ ସ୍ପଷ୍ଟ ଭାବରେ କୁହନ୍ତି

Even dearer is the absence of any reference to the custom of Sati, of the wife burning herself on her husband's pyre, until the third stage when Vedabati's is mother immolates herself on Kusadhvaja's death. (୪୧)

ତାଙ୍କ ମତରେ ତୃତୀୟ ପର୍ଯ୍ୟାୟର ପ୍ରକ୍ଷେପଗୁଡ଼ିକ ରାମାୟଣରେ ଅନୁପ୍ରବିଷ୍ଟ ହୋଇଥିଲା ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ । ତାଙ୍କର ଏହି ଯୁକ୍ତି ଖୁବ୍ ବଳିଷ୍ଠ ଭଳି ମନେହୁଏ । ଏହି ଗୋଟିଏ ନିଦର୍ଶନରୁ କିନ୍ତୁ ଆମେ ସତୀପ୍ରଥାର ସାଧାରଣ ପ୍ରଚଳନ ସମ୍ପର୍କରେ ସ୍ଥିରନିଶ୍ଚୟ ହୋଇ ପାରିବା ନାହିଁ । ରାମାୟଣଯୁଗୀୟ ଅନ୍ୟ ବିଧବା ନାରୀମାନେ କିପରି ଆଚରଣ ପ୍ରଦର୍ଶନ କରିଥିଲେ ତାହା ମଧ୍ୟ ଅନୁଧ୍ୟାନର ଯୋଗ୍ୟ ।

ବାଲୀ-ପତ୍ନୀ ତାରାଙ୍କ କଥା ବିଚାର କରାଯାଉ । ନିଜ ସ୍ୱାମୀଙ୍କ ମୃତ୍ୟୁ-ସମ୍ବାଦ ପାଇ ସେ ମ୍ରିୟମାଣା ହୋଇ ଉଠିଛନ୍ତି ଏବଂ ତାଙ୍କ ଶବକୁ ଆଲିଙ୍ଗନ

କରି ବାରମ୍ବାର ଆକୁଳ କ୍ରନ୍ଦନ କରୁଛନ୍ତି । ହିତକାମୀ ବ୍ୟକ୍ତିମାନଙ୍କର ପ୍ରବୋଧନ ତାଙ୍କୁ ଶାନ୍ତ କରାଇପାରୁ ନାହିଁ । ସେ ଆକୁଳ କଣ୍ଠରେ ହନୁମାନଙ୍କୁ କହୁଛନ୍ତି

"ନହି ମମ ହରିରାଜସଂଶ୍ରୟାତ୍
କ୍ଷମତରମସ୍ତି ପରତ୍ର ଚେହ ବା ।
ଅଭିମୁଖ ହତବୀର ସେବତଂ
ଶୟନମିଦଂ ମମ ସେବିତୁଂ କ୍ଷମମ୍ ।। (୪୨)

ଅର୍ଥାତ୍ ମୋ' ପାଇଁ ବାନରରାଜ ବାଳୀଙ୍କ ଅନୁଗମନ କରିବାଠାରୁ ବଳି କରି ଇହଲୋକରେ ଓ ପରଲୋକରେ କୌଣସି ବି କାର୍ଯ୍ୟ ଉଚିତ ନୁହେଁ । ମୋ'ର ବୀର ସ୍ୱାମୀ ଶତ୍ରୁ ସହିତ ଲଢ଼ି ମରଣମୁଖରେ ପଡ଼ିଛନ୍ତି । ତାଙ୍କ ଦ୍ୱାରା ସେବିତ ଚିତାରେ ଶୟନ କରିବା ମୋ' ପକ୍ଷରେ ସର୍ବଥା ଯୋଗ୍ୟ । ଯେଉଁ କଥା ତାରା କହିଛନ୍ତି ତାହା ଜଣେ ପତି-ସୋହାଗିନୀ ସାଧାରଣ ହିନ୍ଦୁ ନାରୀ ଆବେଗୋଚ୍ଛ୍ୱାସର ବଶବର୍ତ୍ତିନୀ ହୋଇ ସଦ୍ୟ ବିଧବା ହେବା ଅବସରରେ ଏବେ ମଧ୍ୟ କହିଥାଏ । କିନ୍ତୁ କାର୍ଯ୍ୟତଃ ସେ ତାହା କରି ନଥାଏ କିମ୍ବା ତା'ର ହିତକାମୀ ବ୍ୟକ୍ତିମାନେ ତାହା କରିବାକୁ ଦେଇ ନଥାନ୍ତି । ତାରାଙ୍କର ଏହି ଉକ୍ତିକୁ ସେହି ଦୃଷ୍ଟିକୋଣରୁ ବିଚାର କରିବା ସମୀଚୀନ ହେବ । ପ୍ରକୃତରେ ହନୁମାନ୍ ତାଙ୍କୁ ବହୁତ ପ୍ରବୋଧନା ଦେଲେ । ରାମ ମଧ୍ୟ ଅନେକ ଆଶ୍ୱାସନା ଦେଲେ । ଫଳରେ ସେ ଆଶ୍ୱସ୍ତା ହେଲେ ଏବଂ ପତିଙ୍କ ଚିତାଗ୍ନିରେ ଝାସ ଦେବା ସଂକଳ୍ପକୁ ପରିତ୍ୟାଗ କଲେ । ଶେଷରେ ସେ ନିଜ ଦେବର ସୁଗ୍ରୀବଙ୍କୁ ପତି ସ୍ୱରୂପ ଗ୍ରହଣ କରି ସୁଖରେ ଦାମ୍ପତ୍ୟ-ଜୀବନ ଅତିବାହିତ କରିବାକୁ ଲାଗିଲେ । ଅତଏବ ତାରାଙ୍କର ଏହି ଉକ୍ତିରୁ ସେତେବେଳେ ସତୀଦାହପ୍ରଥା ପ୍ରଚଳିତ ଥିବାର କିଛି ସଙ୍କେତ ମିଳୁନାହିଁ । ଆଉ ଗୋଟିଏ ଦୃଷ୍ଟିରୁ ବିଚାର କଲେ ତାରା ଏ କଥା କହିଥିଲେ କି ନାହିଁ ତାହା ସନ୍ଦେହପୂର୍ଣ୍ଣ ବୋଧ ହେଉଛି । ସପୃକ୍ତ ଶ୍ଳୋକଟି ଯେଉଁ ସର୍ଗରେ ଅଛି ତାହା ଅନୁଷ୍ଟୁପ୍ ଛନ୍ଦରେ ସରଳ ଭାଷାରେ ଲିଖିତ । ସେଥିରେ ସର୍ବମୋଟ ୧୬ଟି ଶ୍ଳୋକ ଅଛି । ଏହି ଶେଷ ଶ୍ଳୋକଟି ହେଉଛି ତାରାଙ୍କର ଉପରୋକ୍ତ ଉକ୍ତି ଏବଂ ତାହା ଏକ ଦୀର୍ଘ ପଦମାଳାର ଛନ୍ଦ-ବିନ୍ୟାସ । ତହିଁରେ ପରି-ଯୁଗର ପ୍ରଭାବ ପଡ଼ିଥିବା ଭଳି ମନେହୁଏ । ଏଣୁ ସମ୍ଭବତଃ ଏହା ମୂଳ ବାଲ୍ମୀକି-ରାମାୟଣରେ ନଥିଲା । ସତୀପ୍ରଥା ଭାରତୀୟ ସମାଜରେ ବହିରାଗତ ହୋଇ ଅନୁପ୍ରବେଶ କରିବା ଉତ୍ତାରୁ କେହି ଜଣେ ଏହି ଶ୍ଳୋକଟିକୁ ପ୍ରକ୍ଷେପ ଆକାରରେ ଉକ୍ତ ସର୍ଗରେ ସନ୍ନିବେଶିତ କରି ଦେଇଛନ୍ତି । ସେ ଯାହାହେଉ, ତାରା ତ ବାସ୍ତବ କ୍ଷେତ୍ରରେ ଚିତାଗ୍ନିରେ ଝାସ ଦେଇନାହାନ୍ତି । ସେଣୁ ତାଙ୍କର ଏହି ଉକ୍ତିରୁ ସତୀ-ପ୍ରଥାର

ବର୍ତ୍ତମାନତାର କିଛି ହିଁ ସୂଚନା ମିଳୁନାହିଁ । ଖାଲି ତ ତାରାଙ୍କ କଥା ନୁହେଁ । ବାଳୀଙ୍କର ଅନେକ ପତ୍ନୀ ଥିଲେ । ସେମାନଙ୍କ ମଧ୍ୟରୁ କେହି ଜଣେ ହେଲେ ସ୍ୱାମୀଙ୍କ ଚିତାଗ୍ନିରେ ଝାସ ଦେଇଥିବାର ଦୃଷ୍ଟାନ୍ତ ରାମାୟଣରେ ମିଳେନାହିଁ । ଅତଏବ, ବାନର-ସମାଜରେ ଯେ ସତୀଦାହ-ପ୍ରଥା ପ୍ରଚଳିତ ନଥିଲା, ଏହା ଆମେ ଦୃଢ଼ତାର ସହିତ କହି ପାରିବା ।

ରାବଣ-ପତ୍ନୀ ମନ୍ଦୋଦରୀଙ୍କ ଦଶା ମଧ୍ୟ ଥିଲା ଅନୁରୂପ । ନିଜ ସ୍ୱାମୀଙ୍କ ମୃତ୍ୟୁରେ ସ୍ୱାଭାବିକ ଭାବରେ ଜଣେ ଉଦ୍ଭ୍ରାନ୍ତା ବିଧବା ନାରୀ ଭଳି ସେ ଆକୁଳ କ୍ରନ୍ଦନ କରିଥିଲେ । ତାଙ୍କର ଅନ୍ୟ ସପତ୍ନୀମାନେ ମଧ୍ୟ ସେହିଭଳି ଆକୁଳ କ୍ରନ୍ଦନ କରିଥିଲେ । କିନ୍ତୁ ସେମାନେ କେହି ପତିଙ୍କ ଚିତାଗ୍ନିରେ ଝାସ ଦେଇ ନଥିଲେ କିମ୍ବା ସେଥିପାଇଁ ଅଭିଳାଷ ବି ବ୍ୟକ୍ତ କରି ନଥିଲେ । ସୂର୍ପଣଖା ମଧ୍ୟ ବିଧବା ହୋଇଥିବା କଥା ଆମେ ରାମାୟଣରୁ ଜାଣିପାରୁ । ଏଭଳି ଦଶାରେ ହିଁ ସେ ରାମ ଓ ଲକ୍ଷ୍ମଣଙ୍କ ନିକଟରେ ପ୍ରଣୟ-ନିବେଦନ କରିବା ପାଇଁ ପଞ୍ଚବଟୀକୁ ଯାଇଥିଲା । ସେ ମଧ୍ୟ ନିଜ ପତିଙ୍କ ମୃତ୍ୟୁ ପରେ ତାଙ୍କ ଚିତାଗ୍ନିରେ ଝାସ ଦେଇ ନଥିଲା । ଏଥିରୁ ଏହି ସତ୍ୟ ନିଷ୍କାସିତ ହେବ ଯେ ରାକ୍ଷସ-ସମାଜରେ ମଧ୍ୟ ସତୀଦାହ ପ୍ରଥା ନଥିଲା ।

ଦଶରଥ ରାମଙ୍କ ବନବାସରେ ବ୍ୟାଥାତୁର ହୋଇ ପୂର୍ବେ ତାଙ୍କୁ ଅନ୍ଧମୁନି ଦେଇଥିବା ଶାପ କଥା ସ୍ମରଣ କରୁଛନ୍ତି ଏବଂ ସେହି କଥା ଅତି ଦୁଃଖରେ କୌଶଲ୍ୟାଙ୍କୁ କହୁଛନ୍ତି

ଏବଂ ଶାପଂ ମୟି ନ୍ୟସ୍ୟ ବିଲପ୍ୟ କରୁଣଂ ବହୁ ।
ଚିତାମାରୋପ୍ୟ ଦେହଂ ତନ୍ମିଥୁନଂ ସ୍ୱର୍ଗମଭ୍ୟଯାତ୍ ॥ (୪୭)

ଅର୍ଥାତ୍ ଏହିପରି ଭାବରେ ମତେ ଅଭିଶାପ ଦେଇ ସେ (ଅନ୍ଧମୁନି) ବହୁତ ସମୟ ପର୍ଯ୍ୟନ୍ତ କରୁଣ ଭାବରେ କାନ୍ଦିବାକୁ ଲାଗିଲେ । ତାହାପରେ ସେହି ପତି-ପତ୍ନୀ ଦୁହେଁ ନିଜ ଶରୀରକୁ ପ୍ରଜ୍ୱଳିତ ଅଗ୍ନିରେ ନିକ୍ଷେପ କରି ସ୍ୱର୍ଗକୁ ଚାଲିଗଲେ । ଏଠାରେ ଅବଶ୍ୟ ମୁନି-ପତ୍ନୀ ମୁନିଙ୍କ ସହିତ ଅଗ୍ନିରେ ଝାସ ଦେବା କଥାର ଉଲ୍ଲେଖ ଅଛି । କିନ୍ତୁ ଏହା ହେଉଛି ପିତା-ମାତାଙ୍କର ପୁତ୍ର-ଶୋକରେ ଅଧୀର ହୋଇ ଆତ୍ମାହୁତି ଦେବାର ଏକ ଦୃଷ୍ଟାନ୍ତ । ପତିଙ୍କ ଶବର ଚିତାଗ୍ନିରେ ପତ୍ନୀ ଝାସ ଦେବାର ଏହା ଆଦୌ ଦୃଷ୍ଟାନ୍ତ ନୁହେଁ । ତେଣୁ ଏଥିରୁ ଆର୍ଯ୍ୟ-ସମାଜରେ ସତୀ-ପ୍ରଥା ଚାଲୁଥିବାର କୌଣସି ପ୍ରମାଣ ମିଳୁନାହିଁ ।

ପୁନଶ୍ଚ ଦଶରଥଙ୍କ ନିଜ ପରିବାର କଥା ବିଗ୍ଭରକୁ ନେଲେ ଆମେ ଦେଖିବା ଯେ ତାଙ୍କ ମୃତ୍ୟୁ ପରେ ତାଙ୍କ ବିଧବା ତିନି ମୁଖ୍ୟରାଣୀ ତଥା ଅନ୍ୟାନ୍ୟ ରାଣୀମାନେ କେହି ତାଙ୍କ ଚିତାଗ୍ନିରେ ପ୍ରବେଶ କରି ନାହାନ୍ତି । ସମସ୍ତେ ଦୁଃଖରେ ଅଧୀର ହୋଇ ବିଳାପ କରିଛନ୍ତି । ଏପରିକି ଗୋଟିଏ ସ୍ଥାନରେ କୌଶଲ୍ୟା ସ୍ୱାମୀଙ୍କ ଚିତାଗ୍ନିରେ ଝାସ ଦେବାକୁ ଶ୍ରେୟସ୍କର ମଣି ତଦନୁଯାୟୀ ସଂକଳ୍ପ ମଧ୍ୟ ପ୍ରକାଶ କରିଛନ୍ତି । ସେ କହିଛନ୍ତି

ସାହମଦ୍ୟୈବ ଦଷ୍ଟାନ୍ତଂ ଗମିଷ୍ୟାମି ପତିବ୍ରତା ।
ଇଦଂ ଶରୀର ମାଲିଙ୍ଗ୍ୟ ପ୍ରବେକ୍ଷ୍ୟାମି ହୁତାସନମ୍ ।।

ଅର୍ଥାତ୍ ମୁଁ ସେହି (କୌଶଲ୍ୟା) ହେଉଛି ପତିବ୍ରତା ନାରୀ । ମୁଁ ଆଜି ଏହି ଶରୀରକୁ (ଦଶରଥଙ୍କ ଶବକୁ) ଆଲିଙ୍ଗନ କରି ଅଗ୍ନିରେ ପ୍ରବେଶ କରିବି । ଏହାର ତାତ୍ପର୍ଯ୍ୟ ହେଲା ପତିବ୍ରତା ନାରୀର କର୍ତ୍ତବ୍ୟ ହେଉଛି ସ୍ୱାମୀଙ୍କ ମୃତ୍ୟୁ ପରେ ସେ ତାଙ୍କ ଚିତାଗ୍ନିରେ ଆତ୍ମାହୁତି ଦେବ । କିନ୍ତୁ କୌଶଲ୍ୟାଙ୍କ କ୍ଷେତ୍ରରେ ସ୍ୱାମୀଙ୍କ ଚିତାଗ୍ନିରେ ଝାସ ଦେବା କେବଳ ସଂକଳ୍ପ-ପ୍ରକାଶର ସ୍ତରରେ ହିଁ ରହିଯାଇଛି । ସେ ଚିତାଗ୍ନିରେ ଆଦୌ ଝାସ ଦେଇ ନାହାନ୍ତି । ଅନ୍ୟ ପକ୍ଷରେ ସେ ଆଶାୟୀ ହୋଇ ରାମଙ୍କ ବନବାସ ପରେ ତାଙ୍କ ଫେରିବା ବାଟକୁ ଗୃହିଁ ରହିଛନ୍ତି । ଉପରୋକ୍ତ ଆଲୋଚନା ଦୃଷ୍ଟେ ସ୍ପଷ୍ଟ ଭାବରେ ଜଣାପଡ଼ିବ ଯେ ରାମାୟଣ ଯୁଗରେ କି ଆର୍ଯ୍ୟ, କି ବାନର, କି ରାକ୍ଷସ କୌଣସି ସମ୍ପ୍ରଦାୟରେ ସତୀଦାହପ୍ରଥା ପ୍ରଚଳିତ ନଥିଲା । କିନ୍ତୁ ବିଧବାମାନେ ଦୁଃଖରେ ଜୀବନ-ଯାପନ କରୁଥିଲେ । ଅବଶ୍ୟ ପୁନର୍ବିବାହ କରିଥିବା ବିଧବାମାନଙ୍କ କଥା ଥିଲା ସ୍ୱତନ୍ତ୍ର । ସେମାନେ ସାଧାରଣ ବିବାହିତା ଜୀବନର ସୁଖ-ସ୍ୱାଛନ୍ଦ୍ୟ ଉପଭୋଗ କରିବାରେ କିଛି ବାଧା ନଥିଲା ।

## ବ୍ୟଭିଚାରିଣୀ

ରାମାୟଣକାଳୀନ ସତୀତ୍ୱକୁ ଖୁବ୍ ମର୍ଯ୍ୟାଦା ଦିଆ ଯାଉଥିଲା । ରାମାୟଣରେ (୭।୯।୪) 'ପରଦାରାଭିଗମନ'କୁ ଖୁବ୍ ନିନ୍ଦା କରାଯାଇଛି ଏବଂ ସୀତାଙ୍କ କଣ୍ଠରେ କୁହାଯାଇଛି ଯେ ରାମଙ୍କ ଭଳି ପତି ଏହା କଦାପି କରିବେ ନାହିଁ । ତାହାର ଅର୍ଥ ନୁହେଁ ଯେ ସବୁ ନାରୀ ସତୀ ଥିଲେ । କିମ୍ବା ସବୁ ପୁରୁଷ ନିଜ ସ୍ତ୍ରୀମାନଙ୍କ ପ୍ରତି ବିଶ୍ୱସ୍ତ ଓ ସତ୍ୟବଦ୍ଧ ଥିଲେ । ଇନ୍ଦ୍ର ଓ ଅହଲ୍ୟାଙ୍କ ପ୍ରେମୋପାଖ୍ୟାନକୁ ଏଠାରେ ଏକ ଉଦାହରଣସ୍ୱରୂପ ଗ୍ରହଣ କରାଯାଇପାରେ । ଗୌତମ-ପତ୍ନୀ ଅହଲ୍ୟାଙ୍କ ରୂପରେ ମୁଗ୍ଧ ହୋଇ ଇନ୍ଦ୍ର ତାଙ୍କ ସହିତ ରତିଲଗ୍ନ ହେବା ପାଇଁ ଗୃହିଁଥିଲେ । ସେ ଗୌତମଙ୍କ ଅନୁପସ୍ଥିତିରେ ତାଙ୍କ ରୂପ ଧରି ଆଶ୍ରମକୁ

ଆସିଥିଲେ । ଅହଲ୍ୟା ତାଙ୍କ ସହିତ ମିଳିତା ହେବା ପାଇଁ ସ୍ୱୀକୃତି ପ୍ରଦାନ କରିଥିଲେ ଏବଂ ପରେ ପରେ ଉଭୟ ରତିଲଗ୍ନ ହୋଇଥିଲେ । ଅହଲ୍ୟା ଯଦି ଭ୍ରମରେ ଇନ୍ଦ୍ରଙ୍କୁ ନିଜ ସ୍ୱାମୀ ବୋଲି ଭାବି ତାଙ୍କ ସହିତ ମିଳିତା ହୋଇଥାନ୍ତେ, ତେବେ ସେ ଭ୍ରଷ୍ଟା ହୋଇଗଲେ ବୋଲି କହିବାକୁ ଯୁକ୍ତି ନାହିଁ । କିନ୍ତୁ କଥାଟା ତାହା ନୁହେଁ । ସେ ଇନ୍ଦ୍ରଙ୍କୁ ଚିହ୍ନି ପାରିଥିଲେ । ଦେବରାଜ ଇନ୍ଦ୍ର ତାଙ୍କ ସହିତ ମିଳିତ ହେବାକୁ ଚାହୁଁଛନ୍ତି ବୋଲି ଭାବି ସେ ନିଜକୁ ଗର୍ବିତା ମନେ କରୁଥିଲେ । ଏହି କୌତୁହଳ ନେଇ ସେ ଇନ୍ଦ୍ରଙ୍କ ସହିତ ମିଳିତା ହୋଇଥିଲେ । ସଙ୍ଗମ ଶେଷ ହେଲା ଉତ୍ତାରୁ ସେ ଇନ୍ଦ୍ରଙ୍କୁ ସେଠାରୁ ଶୀଘ୍ର ଚାଲିଯିବା ପାଇଁ ଅନୁରୋଧ କରିଥିଲେ । ଏହାର ଉଦ୍ଦେଶ୍ୟ ଥିଲା, ନିଜକୁ ଏବଂ ତାଙ୍କ ପ୍ରଣୟୀ ଇନ୍ଦ୍ରଙ୍କୁ ମୁନିଙ୍କ କୋପରୁ ରକ୍ଷା କରିବା । ରାମାୟଣର ନିମ୍ନୋକ୍ତ ପଙ୍କ୍ତି (୧।୪୮।୨୦-୨୧) ଏ ସଂପର୍କରେ ଦର୍ଶନୀୟ । ଅହଲ୍ୟା ସଙ୍ଗମ ଶେଷରେ ଇନ୍ଦ୍ରଙ୍କୁ କହିଥିଲେ :

× × ×

କୃତାର୍ଥାସ୍ମି ସୁରଶ୍ରେଷ୍ଠ ଗଚ୍ଛ ଶୀଘ୍ରମିତଃ ପ୍ରଭୋ ।
ଆତ୍ମାନଂ ମାଂ ଚ ଦେବେଶ ସର୍ବଥା ରକ୍ଷ ଗୌତମାତ୍ ।

× × ×

ଅର୍ଥାତ୍ ହେ ଦେବରାଜ ! ମୁଁ ଆପଣଙ୍କ ସହିତ ମିଳିତା ହୋଇ ଆଜି ନିଜକୁ ଖୁବ୍ କୃତାର୍ଥ ମନେକରୁଛି । ଆପଣ ଏଠାରୁ ଶୀଘ୍ର ପଳାଇ ଯାଆନ୍ତୁ । ଗୌତମଙ୍କଠାରୁ ଆପଣ ନିଜକୁ ଓ ମତେ ସବୁଆଡ଼ୁ ରକ୍ଷା କରନ୍ତୁ । ଏଥିରୁ ଅହଲ୍ୟାଙ୍କର ନିମ୍ନଲିଖିତ ଆଚରଣର ସୂଚନା ମିଳିଥାଏ

କ) ତାଙ୍କର ଋଷି ଗୌତମଙ୍କ ପ୍ରତି ପତ୍ନୀ ଭାବରେ ଯେଉଁ ଏକନିଷ୍ଠ ପ୍ରେମ ରହିବାର କଥା, ତାହା ନଥିଲା;

ଖ) ସେ ଗୌତମ-ବେଶଧାରୀ ଇନ୍ଦ୍ରଙ୍କୁ ଚିହ୍ନି ପାରିଥିଲେ ମଧ୍ୟ ତାଙ୍କ ସହିତ ଜାଣିଶୁଣି ମିଳିତା ହୋଇଥିଲେ ।

ଗ) ସଙ୍ଗମ ଶେଷରେ ସେ ନିଜ ପ୍ରଣୟୀଙ୍କୁ ଓ ନିଜକୁ ଗୌତମଙ୍କ କ୍ରୋଧରୁ ବଞ୍ଚାଇବାକୁ ଚାହିଁ ତାଙ୍କୁ ଶୀଘ୍ର ଆଶ୍ରମ ଛାଡ଼ି ଚାଲିଯିବା ପାଇଁ ଅନୁରୋଧ କରିଥିଲେ । ଉଭୟ ବଞ୍ଚି ରହିଲେ ଭବିଷ୍ୟତରେ ପୁନର୍ମିଳନର ସମ୍ଭାବନା ଅଛି, ଏହି ଆଶା ତାଙ୍କୁ ଏଭଳି କରିବା ପାଇଁ ହୁଏତ ଅନୁପ୍ରେରିତ କରିଥିବ; ଏବଂ

ଘ) ସେ ନିଜ ପତିଙ୍କଠାରୁ ଏହି ପାପକୁ ଗୋପନ ରଖିବାକୁ ଚାହିଁଥିଲେ ।

ଏଥିରୁ ସ୍ପଷ୍ଟ ଭାବରେ ଜଣାପଡ଼ୁଛି ଯେ ନୀତି ଦୃଷ୍ଟିରୁ ଅହଲ୍ୟା ଥିଲେ କୁଳଟା । ବାଲ୍ମୀକି କିନ୍ତୁ ଏହି କୁଳଟା-କର୍ମକୁ କ୍ଷମା ଦେଇନାହାନ୍ତି କିମ୍ବା ପ୍ରୋତ୍ସାହିତ କରିନାହାନ୍ତି । ଏହାର ଦଣ୍ଡସ୍ୱରୂପ ଗୌତମଙ୍କ ଅଭିଶାପରେ ତାଙ୍କୁ ଆଶ୍ରମରେ ଭୋକଉପାସରେ ସମସ୍ତଙ୍କ ଅଦୃଶ୍ୟରେ ଭସ୍ମଶାୟିନୀ ହୋଇ କଷ୍ଟ ଭୋଗ କରିବାକୁ ପଡ଼ିଥିଲା । ଏହାର ତାତ୍ପର୍ଯ୍ୟ ହେଲା, ଭ୍ରଷ୍ଟା ପତ୍ନୀ ସମାଜରେ ଖୁବ୍ କଷ୍ଟ ପାଉଥିଲେ । ତାଙ୍କୁ ଭୋକ-ଉପାସରେ ରହିବାକୁ ପଡ଼ୁଥିଲା । ତାଙ୍କୁ ନିଜ ସ୍ୱାମୀ ତ ଗ୍ରହୁଁ ନଥିଲେ, ତାଙ୍କ ବ୍ୟତୀତ ଅନ୍ୟ କେହି ମଧ୍ୟ ତାଙ୍କ ଆଡ଼କୁ ଗ୍ରହୁଁ ନଥିଲେ । ସେ ଏକ ପ୍ରକାର ସାମାଜିକ ନିର୍ବାସନ ଅବସ୍ଥାରେ ଥାଇ ବିକଳ ଜୀବନ ବିତାଉଥିଲେ । ଇନ୍ଦ୍ର ମଧ୍ୟ ଦଣ୍ଡରୁ ବାଦ ପଡ଼ି ନଥିଲେ । ମୁନିଙ୍କ ଅଭିଶାପରେ ତାଙ୍କ ଅଣ୍ଡକୋଷ ଦୁଇଟି ଛିଣ୍ଡି ପଡ଼ିଥିଲା । ଏଥିରୁ ଏହି ସୂଚନା ମିଳୁଛି ଯେ ରାମାୟଣକାଳୀନ ସମାଜରେ ପରସ୍ତ୍ରୀଗମନ ଭଳି ଯୌନ ବ୍ୟଭିଚାର ଥିଲା । କିନ୍ତୁ ତାହା ସମାଜ ଦ୍ୱାରା ସର୍ବଥା ନିନ୍ଦିତ ହେଉଥିଲା । ଏଥିପାଇଁ ପୁରୁଷ ଓ ସ୍ତ୍ରୀ ଉଭୟଙ୍କୁ ଦଣ୍ଡ ମିଳୁଥିଲା ।

**ଯୌନଜୀବନ :**

ଏହି ପୁସ୍ତକର ଅନ୍ୟତ୍ର (ପ୍ରଥମ ଭାଗ ତୃତୀୟ ପରିଚ୍ଛେଦ) ଆମେ ଆଲୋଚନା କରିଛୁ କିପରି ରାମାୟଣରେ ବାଲ୍ମୀକି 'ତ୍ରିବର୍ଗ ଫଳ' ଉପରେ ଗୁରୁତ୍ୱ ଦେଇଛନ୍ତି ଏବଂ କହିଛନ୍ତି ଯେ ସାଧାରଣ ସୁଖୀ ଜୀବନ ଯାପନ କରିବାକୁ ଗଲେ 'ତ୍ରିବର୍ଗ'ର ଆବଶ୍ୟକତା ଅଛି । ତାହି ହେଲା ଧର୍ମ, ଅର୍ଥ ଓ କାମ । କାମ ଅର୍ଥ ଆମେ ସାଧାରଣତଃ ବୁଝିଥାଉ ଇଚ୍ଛା ବା କାମନା । ଏହାକୁ ଯୌନେଚ୍ଛା ସହିତ ମଧ୍ୟ ସଂଯୁକ୍ତ କରାଯାଇଥାଏ । ଯୌନେଚ୍ଛାର ଜାଗୃତି ଲାଗି ଯେଉଁ ଦେବତା ଦାୟୀ ତାଙ୍କୁ ମଧ୍ୟ କୁହାଯାଇଥାଏ କାମ । ପୁରୁଷ ଓ ସ୍ତ୍ରୀ ମଧ୍ୟରେ ଯେଉଁ କାମସୁଖ ମିଳିଥାଏ, ତାହାକୁ ନିନ୍ଦା କରିବାର ନୁହେଁ । କିନ୍ତୁ ତାହା ଯଦି ବିଶୃଙ୍ଖଳ ହେଲା, ଯଦି ନୀତିବିରୁଦ୍ଧ ହେଲା, ତେବେ ଯାଇ ତାହା ନିନ୍ଦନୀୟ ହୋଇଥାଏ । କାମସୁଖ ଯେ ହେଉଛି ସର୍ବୋତ୍ତମ ସୁଖ ଏ କଥା ଭାରତୀୟ ଶାସ୍ତ୍ରକାରମାନେ ଯୁଗେ ଯୁଗେ କହି ଆସିଛନ୍ତି । କାମୋପଭୋଗରେ କିପରି ଚରମ ସୁଖ ମିଳିପାରିବ, ତାହାର ସୂତ୍ର ଆବିଷ୍କାର କରିବାକୁ ଯାଇ ଶାସ୍ତ୍ରକାରମାନେ କାମସୂତ୍ର, ଶୃଙ୍ଗାରତିଳକ ଆଦି ବହୁ ଗ୍ରନ୍ଥ ରଚନା କରିଛନ୍ତି । ସେଥିପାଇଁ ଚଉଷଠି ପ୍ରକାର ରତି-ବନ୍ଧର ଆବିଷ୍କାର କରାଯାଇଛି । ବୌଦ୍ଧଧର୍ମର ତନ୍ତ୍ର-ଯାନରେ ଏହି କାମୋପଭୋଗକୁ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଛି । ମାଧ୍ୟମିକ ଦର୍ଶନର ପ୍ରବକ୍ତା ବୌଦ୍ଧ ଦାର୍ଶନିକ ତାଙ୍କ 'ମାଧ୍ୟମିକ କାରିକା' ଗ୍ରନ୍ଥରେ କୁହନ୍ତି

ସର୍ବକାମୋପ୍ଭୋଗେଭ୍ୟଃ ସେବ୍ୟମାନେଷ୍ୱପି ଚେହୁକ୍ୟା ।
ଅନେନ ଖଲୁ ଯୋଗେନ ଖଲ୍ ବୃଦ୍ଧିମାପ୍ନୁୟାତ୍ ॥

ଅର୍ଥାତ୍ ସକଳ କାମଭୋଗକୁ ମନ ଇଚ୍ଛା ସେବନ କରିବା ଦ୍ୱାରା ହେଉଁ ଯୋଗ ସାଧିତ ହୋଇଥାଏ, ମନୁଷ୍ୟର ତାହା ମାଧ୍ୟମରେ ଶୀଘ୍ର ବୃଦ୍ଧି ପାଇବା ଆବଶ୍ୟକ । ଏଥି ପ୍ରତି ଲକ୍ଷ୍ୟ କରି ବାସମ୍ ଯଥାର୍ଥରେ କୁହନ୍ତି

Of all legitimate pleasures sexual pleasure was thought to be the best. The literature of Hindu India, both religious and secular, is full of sexual allusions, sexual symbolism, and passages of rank eroticism···sexual activity was indeed a positive religious duty, for the husband was told to have intercouse with his wife within a period of eight days at the close of every menstruation. (୪୪)

ସ୍ୱାମୀ-ସ୍ତ୍ରୀଙ୍କର ମିଳନକୁ ଏକ ପବିତ୍ର ଓ ଧର୍ମସମ୍ମିଳିତ ମିଳନ ବୋଲି ଧରାଯାଏ । ଏହା ଅତି ପ୍ରାଚୀନ ପରମ୍ପରା ଉପରେ ଅଧିଷ୍ଠିତ । ଏହାର ନାହାକା ଚେରଟି ବୈଦିକ କାଳ ପର୍ଯ୍ୟନ୍ତ ବି ଗତି କରିଛି । ଏପରିକି ବିବାହ-ମନ୍ତ୍ରରେ ଗୋଟିଏ ସ୍ଥଳରେ ବର କନ୍ୟାକୁ ସର୍ବସମକ୍ଷରେ ନିଃସଙ୍କୋଚରେ କହିପାରେ :

ତ୍ୱାମହଂ ଶେଷଂ ପ୍ରହାରସ୍ୟାମି ।

ଅର୍ଥାତ୍ ମୁଁ ତୁମକୁ ମୋ' ଜନନେନ୍ଦ୍ରିୟଦ୍ୱାରା ପ୍ରହାର କରିବି । କନ୍ୟା ମଧ୍ୟ ଏହାକୁ ନିଃସଙ୍କୋଚରେ ଗ୍ରହଣ କରିଥାଏ । ଏହା ଥିଲା ବୈଦିକ ଯୁଗର କଥା । ରାମାୟଣ ଯୁଗରେ ମଧ୍ୟ ଯୌନ-ଜୀବନର ଏହି ପବିତ୍ରତା ଉପରେ ଗୁରୁତ୍ୱ ଆରୋପ କରି ଯାଉଥିଲା । ପବିତ୍ର ଯୌନ-ଜୀବନ ବିତାଉଥିବା ଦମ୍ପତିଙ୍କୁ ଆଦର୍ଶ ଦମ୍ପତି ବୋଲି କୁହାଯାଉଥିଲା । ସେହି ଅର୍ଥରେ ରାମ ଓ ସୀତା ଥିଲେ ଆଦର୍ଶ ଦମ୍ପତି । ସେହି ସମୟରେ ପୁରୁଷ ପକ୍ଷରେ ଅବଶ୍ୟ ବହୁ ପତ୍ନୀଗ୍ରହଣ ପ୍ରଥା ପ୍ରଚଳିତ ଥିଲା । ତେଣୁ ଏଭଳି ସ୍ଥିତିରେ ପୁରୁଷ ସବୁ ସ୍ତ୍ରୀଙ୍କ ପ୍ରତି ସମାନ ଦୃଷ୍ଟି ଦେବା ସମ୍ଭବପର ନଥିଲା । ସବୁ ସ୍ତ୍ରୀ ସମାନ ଭାବରେ ସୁଖୀ ନଥିଲେ । ପୁରୁଷର କୌଣସି ସ୍ତ୍ରୀ ପ୍ରତି ଅଧିକ ଆକର୍ଷଣ ଥିଲା ତ ଆଉ କୌଣସି ସ୍ତ୍ରୀ ପ୍ରତି କମ୍ ଆକର୍ଷଣ ଥିଲା । ସ୍ତ୍ରୀମାନଙ୍କ ପକ୍ଷରେ ପୁରୁଷକୁ ସ୍ୱବଶ କରି ରଖିବା ପାଇଁ ପ୍ରତିଯୋଗିତା ଚାଲୁଥିଲା । ଏହା ଫଳରେ ପାରିବାରିକ ସୁଖ-ଶାନ୍ତି ନଷ୍ଟ ହେଉଥିଲା । କୈକେୟୀଙ୍କ ପ୍ରତି ଅତ୍ୟଧିକ ଆକର୍ଷଣ ଥିବା ହେତୁ ବହୁଦାର

ରାଜା ଦଶରଥ ଙ୍କ ବିପଦର ଶରବ୍ୟ ହୋଇଥିଲେ ତାହା ତ ସମସ୍ତଙ୍କୁ ଜଣା । ତେଣୁ ଏକପତ୍ନୀବ୍ରତ ଓ ଏକପତିବ୍ରତ ଉପରେ ବାଲ୍ମୀକି ଗୁରୁତ୍ୱ ଦେଇଛନ୍ତି । ରାମ ଓ ସୀତା ଏହାର ନିଦର୍ଶନ । ଏହା ଫଳରେ ସୁଶୃଙ୍ଖଳିତ ଓ ପାରସ୍ପରିକ ଆନନ୍ଦଦାୟକ ଯୌନ-ଜୀବନ ସମ୍ଭବ ହେବା ସଙ୍ଗେ ସଙ୍ଗେ ପାରିବାରିକ ଅନ୍ୟାନ୍ୟ ସୁଖ-ଶାନ୍ତି ମଧ୍ୟ ସମ୍ଭବ ହୋଇପାରୁଥିଲା । ପତ୍ନୀକୁ କୁହାଯାଉଥିଲା ଧର୍ମପତ୍ନୀ । ସେ ଥାଉ ଥାଉ ଅନ୍ୟ ସ୍ତ୍ରୀ ସହିତ ଯୌନଚର୍ଯ୍ୟାରେ ମାତିବା ପୁରୁଷ ପକ୍ଷରେ ଥିଲା ପାପ । ସେଥିପାଇଁ ତ ରାମ ସୂର୍ପଣଖାର ପ୍ରଣୟନିବେଦନକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ଅତଏବ ବାଲ୍ମୀକିଙ୍କ ମତରେ ଦମ୍ପତିମାନଙ୍କର ଏହିଭଳି ସୁଶୃଙ୍ଖଳ ତଥା ପବିତ୍ର ଯୌନ-ଜୀବନ ହିଁ ଥିଲା ଧ୍ୟେୟ ।

ପରସ୍ତ୍ରୀ ସହିତ ଯୌନାଚାରରେ ରତ ହେବା ବଡ଼ ଦୋଷାବହ ଏବଂ ପାପର କଥା । ଗୁରୁ-ପତ୍ନୀ ଅଥବା ଗୁରୁଜନଙ୍କ ପତ୍ନୀଙ୍କ ସହିତ କାମାଚାର କରିବା ପ୍ରଶ୍ନ ତ ଜମା ଉଠୁ ନାହିଁ । ତାହା ଥିଲା ଅତି ଗୁରୁତର ଭାବରେ ଦୂଷଣୀୟ । ନିଜ ମାତା କୈକେୟୀଙ୍କ ଯୋଗରୁ ରାମଙ୍କ ବନବାସ ସଂଘଟିତ ହୋଇଥିବା କଥା ଭରତ କେକେୟ-ଦେଶରୁ ଫେରି ଜାଣିପାରିଛନ୍ତି । ସେ କୈକେୟୀଙ୍କୁ ନାନା ପ୍ରକାର ଶ୍ଳେଷପୂର୍ଣ୍ଣ ବାକ୍ୟ ଶୁଣାଇବା ପରେ କୌଶଲ୍ୟାଙ୍କ ପାଖକୁ ଯାଇଛନ୍ତି । ଯାହାଙ୍କ ପରାମର୍ଶରେ ରାମ ବନଗମନ କରିଛନ୍ତି ତାଙ୍କୁ ନାନା ପ୍ରକାର ପାପ ଲାଗୁ ବୋଲି ସେ ଶପଥ ଖାଇ କୌଶଲ୍ୟାଙ୍କ ଆଗରେ କହିଛନ୍ତି । ତାଙ୍କ ଭାଷାରେ

> ଯଦଗ୍ନିଦାୟକେ ପାପଂ ଯତ୍ପାପଂ ଗୁରୁତଲ୍ପଗେ ।
> ମିତ୍ରଦ୍ରୋହେ ଚ ଯତ୍ପାପଂ ତତ୍ ପାପଂ ପ୍ରତିପଦ୍ୟତାମ୍ ।। (୪୫)

ଅର୍ଥାତ୍ ନିଆଁ ଲଗାଇଥିବା ଲୋକକୁ ଯେଉଁ ପାପ ଲାଗେ, ଗୁରୁପତ୍ନୀଙ୍କ ପାଖକୁ ବ୍ୟଭିଚାର ପାଇଁ ଯିବା ଲୋକକୁ ଯେଉଁ ପାପ ଲାଗେ, ଏବଂ ମିତ୍ରଦ୍ରୋହୀକୁ ଯେଉଁ ପାପ ଲାଗେ, ତାକୁ (ଯାହାର ପରାମର୍ଶରେ ଭାଇ ରାମ ବଣକୁ ଯାଇଛନ୍ତି) ସେହି ପାପ ଲାଗୁ । ଗୁରୁପତ୍ନୀଙ୍କ ସହିତ ପାମାଚାରରେ ମାତିବା କେତେ ଦୂର ଗର୍ହିତ ଓ ଦୂଷଣୀୟ ତାହା ଏଥିରୁ ଜଣାପଡ଼ିବ । ଉକ୍ତ ସର୍ଗରେ ଅନ୍ୟତ୍ର ଭରତ ପରଦାରାଭିଗମନକୁ ମଧ୍ୟ ଗୋଟିଏ ବଡ଼ ପାପ ବୋଲି ଉଲ୍ଲେଖ କରିଛନ୍ତି । ସେ କୌଶଲ୍ୟାଙ୍କ ଆଗରେ ଶପଥ ଖାଇ କହୁଛନ୍ତି :

> "ଧର୍ମଦାରାନ୍ ପରିତ୍ୟଜ୍ୟ ପରଦାରାନ୍ ନିସେବତାମ୍ ।
> ତ୍ୟକ୍ତଧର୍ମରତି ମୂଢ଼ୋ ଯସ୍ୟାର୍ଯୋଽନୁମତେ ଗତଃ ।।" (୪୬)

ଅର୍ଥାତ୍ ଯେ ଆର୍ଯ୍ୟ ଶ୍ରୀରାମଙ୍କ ବନ ଗମନର ଅନୁମତି ଦେଇଛୁ, ସେହି ମୂଢ଼ ଧର୍ମ-ପତ୍ନୀକୁ ଛାଡ଼ି ପରସ୍ତ୍ରୀ ପାଖକୁ ଯାଉ ଏବଂ ଧର୍ମସମ୍ପର୍କୀୟ ଅନୁରାଗକୁ ତ୍ୟାଗ କରୁ । ଧର୍ମପତ୍ନୀକୁ ଛାଡ଼ି ଅନ୍ୟ ନାରୀ ସହିତ କାମାଚାରରେ ମାତିବା ଯେ ବଡ଼ ପାପର କଥା, ତାହାର ସୂଚନା ଏଥିରୁ ମିଳୁଛି । ବିଶୃଙ୍ଖଳ ଓ ମାତିଥିବା ଯୌନାଚାରର ପରିଣାମ ଯେ ଅତ୍ୟନ୍ତ ଦୁଃଖାବହ ଓ ବେଳେ ବେଳେ ମରଣାନ୍ତକ, ତାହାର ଭୂରି ଭୂରି ସୂଚନା ରାମାୟଣରେ ମିଳିଥାଏ । ଏହି ଦୋଷରୁ ସୂର୍ପଣଖାକୁ ନାକ-କାନ ହରାଇବାକୁ ପଡ଼ିଥିଲା । ସେ ସ୍ତ୍ରୀଟିଏ ବୋଲି ଯାହା ଜୀବନ ପାଇ ବର୍ତ୍ତିଗଲା । ନଚେତ୍ ପୁରୁଷ ହୋଇଥିଲେ ତା'କୁ ହୁଏତ ଜୀବନ ହରାଇବାକୁ ପଡ଼ିଥାନ୍ତା । ରାବଣ ସାରା ଜୀବନ ପରସ୍ତ୍ରୀଙ୍କ ଉପରେ ଅତ୍ୟାଚାର କରି ଆସିଲା । ଶେଷକୁ ସେ ସୀତାଙ୍କୁ ସ୍ତ୍ରୀ ଭାବରେ ଲାଭ କରିବା ଉଦ୍ଦେଶ୍ୟରେ ଅପହରଣ କରି ଆଣିଲା । ଏହାର ଫଳ ହେଲା କ'ଣ ? ଶେଷରେ ସେ ସବଂଶରେ ମଲା । ବିଶୃଙ୍ଖଳ ଯୌନ-ଜୀବନ ଯେ ବଂଶ-ନାଶର କାରଣ, ଏହା ବାଲ୍ମୀକି ତାଙ୍କ ରାମାୟଣରେ ପ୍ରତିପାଦିତ କରିଛନ୍ତି ଏବଂ ତଦ୍ଦ୍ୱାରା ସେ ସାରା ମାନବ-ସମାଜକୁ ଶୃଙ୍ଖଳିତ ଯୌନ-ବନ୍ଧନରେ ବାନ୍ଧି ହୋଇ ରହିବା ପାଇଁ ଉପଦେଶ ଦେଇଛନ୍ତି । ଏହି ଉପଦେଶ ଦେଶ, କାଳ ଓ ପାତ୍ରର ସୀମାକୁ ଅତିକ୍ରମ କରିଛି । ଏହା ସାରା ମାନବ-ସମାଜ ପାଇଁ ପ୍ରଯୁଜ୍ୟ । ଏବେ ମଧ୍ୟ ଏହାର ଉପାଦେୟତା ରହିଅଛି । ଏବେ ମଧ୍ୟ ମନୁଷ୍ୟର ପାରିବାରିକ ଅଶାନ୍ତି ଏବଂ ତଜ୍ଜନିତ ମଦ୍ୟପାନ, ଆତ୍ମହତ୍ୟା, ନରହତ୍ୟା ଆଦି ନାନା ପ୍ରକାର ଅପରାଧ ଏହି ବିଶୃଙ୍ଖଳ ଯୌନ-ଜୀବନ ଯୋଗରୁ ଘଟୁଛି । ଅତଏବ, ପାରିବାରିକ ସୁଖ-ଶାନ୍ତି ଓ ମାନସିକ ଭାରସାମ୍ୟ ରକ୍ଷା କରିବାକୁ ଗଲେ ଆମ ପାଇଁ ଶୃଙ୍ଖଳିତ ଯୌନ-ଜୀବନ ଯାପନ କରିବା ନିତାନ୍ତ ଅପରିହାର୍ଯ୍ୟ । ଆମକୁ ତେଣୁ ବାଲ୍ମୀକିବର୍ଣ୍ଣିତ ଆଦର୍ଶ ଯୌନ-ଜୀବନକୁ ଏହି ଦୃଷ୍ଟିରେ ବିଚାର କରିବାକୁ ହେବ ।

**ଗଣିକା**

ଗଣିକା-ବୃତ୍ତି ଅତି ପ୍ରାଚୀନ । ଏହା ବୈଦିକ କାଳରୁ ଚାଲିଆସୁଛି । ରାମାୟଣ ଯୁଗରେ ତେଣୁ ଏହା ଚାଲୁଥିବା ସ୍ୱାଭାବିକ କଥା । ବୌଦ୍ଧ ଯୁଗରେ (ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ) ମଧ୍ୟ ଏହି ପ୍ରଥା ଥିଲା । ବୁଦ୍ଧଙ୍କ ସମସାମୟିକ କେତେକ ଶ୍ରେଷ୍ଠ ଗଣିକା ହେଲେ ଅମ୍ବାପାଲି, ବିମଳା, ପଦ୍ମାବତୀ, ଓ ଅର୍ଦ୍ଧକାଶୀ । ରାମାୟଣରେ ଅବଶ୍ୟ କୌଣସି ଗଣିକାର ନାମୋଲ୍ଲେଖ ନାହିଁ । କିନ୍ତୁ ଅନେକାଂଶ 'ଗଣିକା' ଶବ୍ଦଟିର ପ୍ରୟୋଗ ସୂଚାଇ ଦେଉଛି ଯେ ଏହି ପ୍ରଥା ରାମାୟଣ-ଯୁଗରେ ମଧ୍ୟ ଚାଲୁଥିଲା ଏବଂ ତାହା ସମାଜ ଦ୍ୱାରା ସ୍ୱୀକୃତ ହୋଇଥିଲା । ଏହି ପ୍ରଥାର ପ୍ରାଚୀନତା ବିଷୟ ନେଇ ବାସମ୍ କୁହନ୍ତି

> Ancient India contained one class of women who were not bound by the rules and restrictions which limited the freedom of the high-caste wife. These were the prostitutes. (vesya, ganika) (୪୭)

ମନୁସ୍ମୃତିରେ (୪।୨୦୯) ଅବଶ୍ୟ ଗଣିକା-ପ୍ରଥାକୁ ନିନ୍ଦା କରାଯାଇଛି ଏବଂ ସମାଜ ଉପରେ ଏହାର ଦୁଷ୍ପ୍ରଭାବ ପଡ଼ୁଥିବା କଥା କୁହାଯାଇଛି । ବ୍ରାହ୍ମଣମାନଙ୍କୁ ଗଣିକାମାନଙ୍କ ହସ୍ତରୁ ଅନ୍ନ-ସ୍ପର୍ଶ ନକରିବା ପାଇଁ ଉପଦେଶ ଦିଆ ଯାଇଛି । ଅଶ୍ୱପତିଙ୍କ ରାଜ୍ୟକୁ ମହାଭାରତରେ ଆଦର୍ଶ ରାଜ୍ୟ ବୋଲି କୁହାଯାଇଛି; କାରଣ ଅନ୍ୟାନ୍ୟ ଜନପଦ ମଧ୍ୟରେ ତାହା ଥିଲା ଗଣିକାହୀନ ଏବଂ ସେଠାରେ କେହି ପରସ୍ତ୍ରୀ-ଅପହରଣ କରୁନଥିଲେ । ଏଥି ପ୍ରତି ଲକ୍ଷ୍ୟ କରି କିଥ୍ ଯେଉଁ ମନ୍ତବ୍ୟ ଦେଇଛନ୍ତି ତାହା ଏଠାରେ ଉଲ୍ଲେଖନୀୟ

> Asvapati, the prince, boasts that his kingdom has no thief, churl or drunkard, none who neglect the sacrifice or the sacred lore, no adulterer or courtesan. (୪୮)

ବୈଦିକ ବିବାହ-ବନ୍ଧନରେ ଏତେ ପ୍ରକାର ପବିତ୍ରତାର ପ୍ରଲେପ ଦିଆ ଯାଇଥିବା ସତ୍ତ୍ୱେ ଗଣିକା-ପ୍ରଥା ସମାଜରେ ପ୍ରଚଳିତ ହେଲା । ଖାଲି ସେତିକି ନୁହେଁ, ସମାଜତତ୍ତ୍ୱବିତ୍‌ମାନେ ସେମାନଙ୍କ କଳ୍ପନା-ସ୍ରୋତରେ ଭାସି ଯାଇ ଦେବତାମାନଙ୍କ ମଧ୍ୟରେ ବି ଏହିଭଳି ଗଣିକାବୃତ୍ତି ପ୍ରଚଳିତ ଅଛି ବୋଲି କହିବାକୁ ଲାଗିଲେ । ସେହି ସ୍ତ୍ରୀମାନଙ୍କୁ କୁହାଗଲା ଅପ୍‌ସରା । ସେମାନେ ହେଲେ ସ୍ୱର୍ଗର ଗଣିକା ବା ସ୍ୱର୍ବେଶ୍ୟା । ଗଣିକାମାନଙ୍କୁ ସାଧାରଣ ରୂପଜୀବିନୀ ସ୍ତ୍ରୀ ବୋଲି ଧରିବାକୁ ହେବନାହିଁ । ସେମାନେ ଥିଲେ ରୂପବତୀ, ଗୁଣବତୀ ଓ ଧନଶାଳିନୀ । ସେମାନେ ଥିଲେ ଚଉଷଠି କଳାରେ ପ୍ରବୀଣା । କାମସୂତ୍ରରେ (୧।୩) ଗଣିକା ସମ୍ପର୍କରେ କୁହାଯାଇଛି ଯେ ସେ ଥିବେ ମଧୁର ସ୍ୱଭାବସମ୍ପନ୍ନା, ସୁନ୍ଦରୀ ଓ ସବୁ ପ୍ରକାର ଆକର୍ଷଣୀୟା । ସେ ସବୁ କଳାରେ ପ୍ରବୀଣତା ହାସଲ କରିଥିବେ । ତାଙ୍କର ପୁରୁଷମାନଙ୍କ ସାଥିରେ ବସି ମାନ୍ୟତା ପାଇବାର ଅଧିକାର ଅଛି । ସେ ରାଜାଙ୍କ ଦ୍ୱାରା ସମ୍ମାନିତା ହେବେ ଏବଂ ବିଦ୍ୱାନ୍‌ମାନଙ୍କ ଦ୍ୱାରା ପ୍ରଶଂସିତା ହେବେ । ସମସ୍ତେ କିପରି ତାଙ୍କର ପ୍ରସାଦ ପାଇବେ, ସେଥିପାଇଁ ଚେଷ୍ଟିତ ଥିବେ । ପ୍ରାଚୀନ ଭାରତୀୟ ଗଣିକାମାନଙ୍କର ଏହା ହେଲା ସ୍ୱରୂପ । ସେମାନେ କେବଳ ଭୋଗ୍ୟ ନଥିଲେ; ସେମାନେ ମଧ୍ୟ ଥିଲେ ଭୋଗ୍ୟା । ପ୍ରାଚୀନ ଗ୍ରୀସ୍‌ରେ

ଆସ୍‌ପାସିଆସ୍ (Aspasias) ନାମକ ଯେଉଁ ଗଣିକା-ଗୋଷ୍ଠୀ ଥିଲ ଭାରତୀୟ ଗଣିକାମାନେ ଥିଲେ ସେମାନଙ୍କର ସମକକ୍ଷ । ଏହି ଗ୍ରୀକ୍ ଶବ୍ଦଟିର ସଂସ୍କୃତ ଶବ୍ଦ 'ଅପ୍‌ସରସ୍' (ଅପ୍‌ସରା) ସହିତ ସୌସାଦୃଶ୍ୟ ଥିବାର ମନେହୁଏ । ଅପ୍‌ସରାମାନେ ମାଆ ହେଉନଥିଲେ । ଠିକ୍ ସେମିତି ଗଣିକାମାନେ ମଧ୍ୟ ମାଆ ହେଉନଥିଲେ । ବୌଦ୍ଧ ଯୁଗରେ (ଖ୍ରୀ: ପୂ. ୬ଷ୍ଠ ଶତାବ୍ଦୀ) ଶାଲବତୀ ନାମ୍ନୀ ଜଣେ ଗଣିକା ଗର୍ଭବତୀ ହୋଇଯିବା ଦ୍ୱାରୁ ସେ ସମସ୍ତଙ୍କ ଦ୍ୱାରା ଅନାଦୃତା ହେବାର ଆଶଙ୍କା କରି ମନେ ମନେ ଘୋର ଦୁଃଖ କରୁଥିବା କଥା ମହାବଗ୍‌ଗ ଗ୍ରନ୍ଥରେ (୮।୧।୨-୪) ଉଲ୍ଲେଖ ଅଛି । ଗଣିକାମାନେ କିପରି ସେମାନଙ୍କର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟକୁ ଅତୁଟ ରଖିବା ପାଇଁ ଯତ୍ନଶୀଳା ଥିଲେ ତାହାର ସୂଚନା ଏଥିରୁ ମିଳୁଛି ।

ଏହି ପୃଷ୍ଠଭୂମିକୁ ଦୃଷ୍ଟିରେ ରଖି ଆମକୁ ରାମାୟଣକାଳୀନ ଗଣିକା-ପ୍ରଥା ବିଷୟରେ ବିସ୍ତୃତ-ଆଲୋଚନା କରିବାକୁ ହେବ । କାରଣ ବାଲ୍ମୀକିଙ୍କ ଦ୍ୱାରା ରାମାୟଣ ରଚିତ ହୋଇଥିବା ସମୟରେ (ଖ୍ରୀ: ପୂ: ୫ମ-୬ଷ୍ଠ ଶତାବ୍ଦୀ) ସମାଜରେ ଯେଉଁଲି ଭାବରେ ଗଣିକା-ପ୍ରଥା ଚାଲୁଥିଲା କିମ୍ବା ତାହାକୁ ଯେଉଁଲି ଭାବରେ ସ୍ୱୀକୃତି ଅଥବା ମାନ୍ୟତା ଦିଆ ଯାଉଥିଲା, ତାହାର ପ୍ରଭାବ ନିଶ୍ଚିତ ଭାବରେ ତାଙ୍କ ଉପରେ ପଡ଼ିଥିବ । ଗଣିକା ଶବ୍ଦର ପ୍ରୟୋଗ ଆମେ ରାମାୟଣରେ ବାଲକାଣ୍ଡସ୍ଥ ଦଶମ ସର୍ଗରେ ଠାଏ ଦେଖିବାକୁ ପାଇଥାଉଁ । ସୁମନ୍ତ୍ର ରାଜା ଦଶରଥଙ୍କୁ ଋଷ୍ୟଶୃଙ୍ଗଙ୍କ ଚରିତ ଶୁଣାଉଛନ୍ତି । କେଉଁ କୌଶଳ ଅବଲମ୍ବନ କରି ଅଙ୍ଗରାଜ ରୋମପାଦ ଋଷ୍ୟଶୃଙ୍ଗଙ୍କୁ ବନାଶ୍ରମରୁ ତାଙ୍କ ଦେଶକୁ ଅଣାଇ ପାରିଥିଲେ ତାହାର ବର୍ଣ୍ଣନା ସେ କରୁଛନ୍ତି । ମନ୍ତ୍ରୀମାନେ ରୋମପାଦଙ୍କୁ ଉପଦେଶ ଦେଇ କହିଥିଲେ ଯେ ଗଣିକାମାନଙ୍କୁ ବନାଶ୍ରମକୁ ପଠାଇ ଋଷ୍ୟଶୃଙ୍ଗଙ୍କ ମନୋହରଣ କରାଇବାକୁ ହେବ । ସେହି ଗଣିକାମାନେ ହିଁ ତାଙ୍କୁ ଅଙ୍ଗଦେଶର ରାଜଧାନୀକୁ ଅଣାଇ ପାରିବେ । ମନ୍ତ୍ରୀମାନଙ୍କର ରାଜାଙ୍କ ପ୍ରତି ବକ୍ତବ୍ୟ ଥିଲା

"ଗଣିକାସ୍ତତ୍ର ଗଚ୍ଛନ୍ତୁ ରୂପବତ୍ୟଃ ସ୍ୱଲଙ୍କୃତାଃ
ପ୍ରଲୋଭ୍ୟ ବିବିଧୋପାୟୈରାନେଷ୍ୟନ୍ତୀହ ସତ୍କୃତାଃ । (୪୧)

ଅର୍ଥାତ୍ ସୁନ୍ଦର ଆଭୂଷଣ ଆଦି ଦ୍ୱାରା ବିଭୂଷିତ ହୋଇ ରୂପବତୀ ବେଶ୍ୟାମାନେ ଏଠାରୁ ଯାଆନ୍ତୁ । ସେମାନେ ନାନା ପ୍ରକାର ଉପାୟରେ ତାଙ୍କୁ (ଋଷ୍ୟଶୃଙ୍ଗଙ୍କୁ) ଭୁଲାଇ କରି ଏହି ନଗରୀକୁ ନେଇ ଆସିପାରିବେ । ତେଣୁ ସେମାନଙ୍କୁ ସତ୍କାର ପୂର୍ବକ ପଠାଇବା ଉଚିତ । ଗଣିକାମାନଙ୍କ ବିଷୟରେ ଏହି ଯେଉଁ ବର୍ଣ୍ଣନା

ଦିଆଯାଇଛି ତହିଁରୁ ସେମାନଙ୍କ ସ୍ୱରୂପ ତଥା ସାମାଜିକ ସ୍ଥିତି ବିଷୟରେ କିଛିଟା ସୂଚନା ମିଳୁଛି । ସେମାନେ ଥିଲେ ରୂପବତୀ । ସେମାନଙ୍କଠାରେ ପୁରୁଷକୁ ପ୍ରଲୋଭିତ କରିବାର ପ୍ରବଳ ଶକ୍ତି ଥିଲା । ଅତଏବ ପ୍ରଲୋଭନର କଳା ବିଷୟରେ ସେମାନେ ନିଶ୍ଚିତ ଭାବରେ ପ୍ରବୀଣା ଥିଲେ । ସେମାନେ ନିଶ୍ଚିତ ଭାବରେ ମଧ୍ୟ ଧନଶାଳିନୀ ଥିଲେ । ତାହା ନ ହୋଇଥିଲେ ସେମାନେ ବିଭିନ୍ନ ବହୁମୂଲ୍ୟ ବସନ-ଭୂଷଣରେ କିପରି ବା ମଣ୍ଡିତା ହୋଇ ପାରୁଥାନ୍ତେ ? ସାଧାରଣ ରୂପଜୀବିନୀ ଦରିଦ୍ର ନାରୀ ପକ୍ଷରେ ଏହା କଦାପି ସମ୍ଭବ ନୁହେଁ । ସେମାନଙ୍କର ସାମାଜିକ ସ୍ଥିତି ଥିଲା ଖୁବ୍ ଉଚ୍ଚରେ । ତାହା ନ ହୋଇଥିଲେ ସେମାନଙ୍କୁ ରାଜାଙ୍କ ସତ୍କାରର ପାତ୍ରୀ ବୋଲି ବିବେଚନା କରାଯାଇ ନଥାନ୍ତା । ବୁଦ୍ଧଙ୍କ ସମସାମୟିକ ବୈଶାଳୀର ନଗରବଧୂ ଅମ୍ବାପାଲି ଥିଲେ ଠିକ୍ ଏହିପରି ଜଣେ ଗଣିକା । ତାଙ୍କ ସମ୍ପର୍କରେ ବାସମ୍ ଯାହା କହିଛନ୍ତି, ତାହା ଏଠାରେ ପ୍ରଣିଧାନ-ଯୋଗ୍ୟ

> Much that is said of this lady is certainly legendary, but it gives a significant indication of the status of the better type of courtesan in ancient India. Ambapali was immensely wealthy, highly intelligent, and famous throughout the civilized portion of India. She was one of the most treasured possessions of her city, and mixed on equal terms with princes. (୫୦)

ଏହି ଦୃଷ୍ଟିରୁ ବିଚାର କଲେ ରାମାୟଣର ଗଣିକାମାନଙ୍କର ସାମାଜିକ ସ୍ଥିତି ଥିଲା ଖୁବ୍ ମାନ୍ୟତାପୂର୍ଣ୍ଣ । ରାଜାମାନେ ମଧ୍ୟ ସେମାନଙ୍କୁ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ଏ ତ ଗଲା ସାଧାରଣ ମାନବଦେହଧାରିଣୀ ଗଣିକାମାନଙ୍କ କଥା । ବିଶ୍ୱାମିତ୍ରଙ୍କ ତପୋଭଙ୍ଗ କରିବା ପାଇଁ ଇନ୍ଦ୍ର ପର୍ଯ୍ୟାୟକ୍ରମେ ମେନକା ଓ ରମ୍ଭା ନାମ୍ନୀ ଦୁଇ ଜଣ ସ୍ୱର୍ବେଶ୍ୟାଙ୍କୁ ପଠାଇଥିଲେ । ଏହି କଥା ମଧ୍ୟ ରାମାୟଣରେ (୧।୬୩, ୧।୬୪) ବର୍ଣ୍ଣିତ । ଏଥିରୁ ଏହି ସୂଚନା ମିଳୁଛି ଯେ କାହାକୁ ପ୍ରଲୋଭିତ କରି ନିଜର ବଶକୁ ଆଣିବାକୁ ହେଲେ ଗଣିକାମାନଙ୍କୁ ଉପଯୋଗ କରାଯାଉଥିଲା । ରାମାୟଣୋତ୍ତର ଯୁଗରେ ଗଣିକାମାନଙ୍କୁ ଏହି କର୍ମସମ୍ପାଦନ କ୍ରମେ ଗୁପ୍ତଚର-ବୃତ୍ତି କରୁଥିବାର ବହୁଳ ପ୍ରମାଣ ଆମେ ଅର୍ଥଶାସ୍ତ୍ରରେ ମଧ୍ୟ (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) ପାଇଥାଉଁ ।

ଗଣିକାମାନଙ୍କୁ ଶୁଭଙ୍କରୀ ବୋଲି ବିଚାର କରାଯାଉଥିଲା । ରାଜ୍ୟାଭିଷେକ ଭଳି ଶୁଭ କର୍ମରେ ସେମାନଙ୍କର ଉପସ୍ଥିତି ସ୍ପୃହଣୀୟ ଥିଲା । ରାଜା ଦଶରଥଙ୍କ ଅନୁରୋଧ କ୍ରମେ ରାଜପୁରୋଧା ବଶିଷ୍ଠ ରାମଙ୍କ ଯୌବରାଜ୍ୟର ଅଭିଷେକ ଲାଗି ସମସ୍ତ ବ୍ୟବସ୍ଥା କରିବାରେ ଲାଗି ପଡ଼ିଛନ୍ତି । ସବୁ ଜିନଷ ଠିକ୍ ଠିକ୍ ଭାବରେ ଯୋଗାଡ଼ କରିବା ପାଇଁ ସେ କର୍ମଚାରୀମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଏହି ବ୍ୟବସ୍ଥା ମଧ୍ୟରେ ଅଛି ରାଜମହଲର ଦ୍ୱିତୀୟ କକ୍ଷରେ ସୁନ୍ଦର ବେଶଭୂଷାରେ ସଜ୍ଜିତ ହୋଇ ଗଣିକାମାନଙ୍କର ଉପସ୍ଥିତି (ଗଣିକାଶ୍ଚ ସ୍ୱଲଂକୃତାଃ) । (୫୧) ଗଣିକାମାନେ ଯେ ଶୁଭଙ୍କରୀ ଏବଂ ଉତ୍ସବାଦି ଶୁଭ କର୍ମରେ ଯେ ସେମାନଙ୍କ ଉପସ୍ଥିତି ବାଞ୍ଛନୀୟ ଏହି ଧାରଣା କେବଳ ରାମାୟଣ-ଯୁଗରେ ନୁହେଁ, ତତ୍ପୂର୍ବରୁ ମଧ୍ୟ ଏ ଦେଶରେ ରହି ଆସିଛି । ସେଥିପାଇଁ ସ୍ୱର୍ଗରେ ଗଣିକା ଅପ୍ସରାମାନଙ୍କଠାରେ ଦେବତ୍ୱ ଆରୋପ କରାଯାଇଛି । ରାମାୟଣକାଳୀନ ସମାଜରେ ପୂର୍ବରୁ ଚଳି ଆସୁଥିବା ପରମ୍ପରା ଅନୁଯାୟୀ କିପରି ଗଣିକାମାନଙ୍କୁ ଶୁଭସୂଚକ ଭାବରେ ଦେଖା ଯାଉଥିଲା, ତତ୍‌ସମ୍ପର୍କରେ ବ୍ରକିଙ୍ଗ୍‌ଟନ୍‌ଙ୍କ ଏହି ମନ୍ତବ୍ୟ ଉଲ୍ଲେଖନୀୟ

> The concept of prostitutes as auspicious seems to be relatively early feature in Indian society, and is attested also, for instance, in some of the older parts of the pali canon. (୫୨)

ରାମାୟଣକାଳୀନ ସମାଜରେ ଗଣିକାମାନଙ୍କଠାରୁ ନିମ୍ନସ୍ତରର ଆଉ ଗୋଟିଏ ପ୍ରକାର ବେଶ୍ୟା ଥିଲେ । ସେମାନଙ୍କୁ କୁହାଯାଉଥିଲା 'ରୂପାଜୀବା' । ଦେହ ଥିଲା ସେମାନଙ୍କର ବ୍ୟବସାୟ । ଦେହ ବିକି ସେମାନେ ଜୀବନଧାରଣ କରୁଥିଲେ । ଗଣିକାମାନଙ୍କ ଭଳି ସେମାନେ ଚଉଷଠି କଳାର ପ୍ରବୀଣା ନ ଥିଲେ କିମ୍ବା ସେମାନଙ୍କ ପରି ରୂପବତୀ ଅଥବା ଧନଶାଳିନୀ ନ ଥିଲେ । ସେମାନେ ସେନାବାହିନୀର ସାଥେ ସାଥେ ଯାଉଥିଲେ । ଏହାର ଉଦ୍ଦେଶ୍ୟ ଥିଲା ସେନା-ବାହିନୀର ମନୋରଞ୍ଜନ କରିବା । ରାମ ଯେତେବେଳେ ବନବାସ କରି ଯାଉଛନ୍ତି, ଦଶରଥ ସେତେବେଳେ ତାଙ୍କ ସହିତ ସେନାବାହିନୀକୁ ପଠାଇବା ପାଇଁ ସୂତ ସୁମନ୍ତ୍ରଙ୍କୁ ଆଦେଶ ଦେଉଛନ୍ତି । ସେ କହୁଛନ୍ତି

> "ରୂପାଜୀବାଶ୍ଚ ବାଦିନ୍ୟୋ ବଣିଜଶ୍ଚ ମହାଧନାଃ
> ଶୋଭୟନ୍ତୁ କୁମାରସ୍ୟ ବାହିନୀଃ ସୁପ୍ରସାରିତାଃ ।" (୫୩)

ଅର୍ଥାତ୍ ରୂପକୁ ଜୀବିକା ସ୍ୱରୂପ ଗ୍ରହଣ କରିଥିବା ସ୍ତ୍ରୀମାନେ ଏବଂ ବିକ୍ରୟଯୋଗ୍ୟ ଦ୍ରବ୍ୟଗୁଡ଼ିକୁ ପ୍ରସାରିତ କରିବାରେ କୁଶଳ ବ୍ୟବସାୟୀମାନେ ରାଜକୁମାରଙ୍କ ସେନାବାହିନୀକୁ ସୁଶୋଭିତ କରନ୍ତୁ । ଏଭଳି ବେଶ୍ୟାମାନେ ବାସ୍ତବିକ ବଡ଼ ଦୟନୀୟ ଜୀବନ ଯାପନ କରୁଥିଲେ ।

ବାଲ୍ମୀକି ସହରର ବର୍ଣ୍ଣନା ଅଥବା ରାସ୍ତାଘାଟର ବର୍ଣ୍ଣନା ଯେଉଁଠି କରିଛନ୍ତି ସେଠି ଗଣିକା ଅଥବା ରୂପାଜୀବାଙ୍କ ନାମୋଲ୍ଲେଖ କରିବାକୁ ଭୁଲି ଯାଇନାହାନ୍ତି । ଏଥିରୁ ଜଣାପଡ଼ୁଛି ଯେ ସହରମାନଙ୍କରେ ଏମାନେ ଭରପୂର ଥିଲେ ଏବଂ ଏହି ପ୍ରଥାଟି ଯୌନଚର୍ଯ୍ୟାର ଏକ ସ୍ୱାଭାବିକ ତଥା ନୀତି-ଅନୁମୋଦିତ ସାଧନ ବୋଲି ଗଣାଯାଉଥିଲା । ଏ ସମ୍ପର୍କରେ ଶର୍ମା ଯଥାର୍ଥରେ କହନ୍ତି

> One is betaken with surprise to notice that Valmiki is almost incapable of conceiving a town without prostitutes. He evens accords them state recognition and state employment. Prostitutes were employed by king Romapada to entice Rishyasringa whose visit alone to the Angadesa, it was declared could avert famine in the kingdom. Prostitutes were also invited by kings to join the reception of a royal visitor, and to be pressent on ceremonial occasions. They were invited to the palace to entertain by their performance the kings and princes. (୫୦)

ଉପରୋକ୍ତ ଆଲୋଚନାରୁ ଗଣିକାମାନେ କିପରି ରାମାୟଣୀୟ ସମାଜରେ ଏକ ସମ୍ମାନଜନକ ସ୍ଥିତି ବଜାୟ ରଖିପାରିଥିଲେ, ତାହାର ସୂଚନା ଆମେ ପାଇଥାଉଁ ।

ଏହିସବୁ ଆଲୋଚନାରୁ ଆମେ ଦେଖି ପାରିବା ଯେ ରାମାୟଣ-ଯୁଗର ନାରୀମାନେ ପରିବାରରେ ଓ ସମାଜରେ ଯଥେଷ୍ଟ ସମ୍ମାନ ଓ ମର୍ଯ୍ୟାଦାର ପାତ୍ରୀ ହୋଇ ପାରିଥିଲେ । କନ୍ୟା, ପତ୍ନୀ, ମାତା ଆଦି ନାରୀର ବିଭିନ୍ନ ବିଭବଗୁଡ଼ିକୁ ବାଲ୍ମୀକି ତାଙ୍କ ଲେଖନୀରେ ଅତି ସଫଳ ଭାବରେ ଚର୍ଚ୍ଚିତ କରି ପାରିଛନ୍ତି । କେତେକ ସ୍ଥଳରେ ଅବଶ୍ୟ ନାରୀ-ଚରିତ୍ରରେ ହିଂସା, ଦ୍ୱେଷ, ପରଶ୍ରୀକାତରତା,

ସ୍ୱାର୍ଥପରତା ଆଦି ଦୋଷ-ଦୁର୍ବଳତାର ଚିତ୍ରଣ କରାଯାଇଛି । କିନ୍ତୁ ଏହା କରାଯିବା ଫଳରେ ନାରୀଚରିତ୍ରର ଅପର ଆଲୋକମୟ ଦିଗଟି ଅଧିକତର ଜାଜ୍ୱଲ୍ୟମାନ ହୋଇ ଉଠିଛି । ଆର୍ଯ୍ୟସମାଜ ହେଉ, ବାନରସମାଜ ହେଉ ଅଥବା ରାକ୍ଷସସମାଜ ହେଉ, ସର୍ବତ୍ର ରାମାୟଣରେ ନାରୀ ପୁରୁଷର ସହକର୍ମିଣୀ ଓ ସହଧର୍ମିଣୀ ରୂପେ ପ୍ରତିପାଦିତ ହୋଇ ଆସିଛି । ଆର୍ଯ୍ୟ ନାରୀ ସୀତା, ବାନର ନାରୀ ତାରା ଓ ରାକ୍ଷସ ନାରୀ ମନ୍ଦୋଦରୀ ଏହି ଆଦର୍ଶ ନାରୀଚରିତ୍ରର ଗୋଟିଏ ଗୋଟିଏ ନିଦର୍ଶନ ।

## ଟିପ୍ପଣୀ

(୧) S. Radhakrishnan, Religion and Society, p. 139.

(୧-କ) ବୃହଦାରଣ୍ୟକ ଉପନିଷଦ, ୩।୬-୮ ।

(୧-ଖ) ଋଗ୍‌ବେଦ, ୧।୧୧୨।୧୦ ।

(୨) Balsastri Hardas, (English translation by S. S. Apte), Glimpses of the Vedic Nation, p. 298.

(୨-କ) ଶତପଥ ବ୍ରାହ୍ମଣ, ୫।୧।୬।୧୦ ; ତୈତ୍ତିରୀୟ ବ୍ରାହ୍ମଣ, ୨।୨।୨।୬ ।

(୩) S. Radhakrishnan, op. cit., p. 140.

(୩-କ) ରାମାୟଣ, ୨।୩୦।୨୪ ।

(୪) I. B. Horner, Woman under the Primitive Budhism Motilal Banarasidass (1975 Reprint), p. 19.

(୪-କ) ରାମାୟଣ, ୨।୧୧୮।୩୨ ।

(୫) ତତ୍ରୈବ, ୧।୬୭।୧୪ ।

(୬) ଗଙ୍ଗାଧର ମିଶ୍ର, ବୈଦିକ ଓ ବେଦୋତ୍ତର ଭାରତୀୟ ସଂସ୍କୃତି (ହିନ୍ଦୀ), ଚୌଖମ୍ବା ସୁରଭାରତୀ ପ୍ରକାଶନ, ପୃ. ୨୩୨ ।

(୭) ରାମାୟଣ, ୧।୩୩।୩ ।

(୮) R. Sharma A Socio-Political Study of the Valmiki Ramayana, Motilal Banarasidass (1986) p. 68.

(୯) ରାମାୟଣ, ୨।୬୨।୧୭ ।

(୧୦) P. V. Kane, History of Dharmasastra, Vol II, Part-I, p. 295.

(୧୧) S. Radhakrishnan, op. cit. p. 140.

(୧୨) ଋଗ୍‌ବେଦ, ୮।୧୧୨।୧୦; ୧୦।୧୦୨।୨ ।

(୧୩) R. Shrma, op. cic, p. 73.

(୧୩-କ) Benjamin Khan, The Concept of Dharma in Valmiki Ramayana, Munshiram Manoharlal (2nd Edition, 1983), p. 168.

(୧୪) ରାମାୟଣ, ୨।୩୯।୨୬ ।

(୧୪-କ) Benjamin Khan, op. cit, p. 168.

(୧୫) ରାମାୟଣ, ୩।୯।୨୪ ।

(୧୬) ଋଗ୍ବେଦ, ୩।୯।୩୩ ।

(୧୭) Benjamin Khan, op. cit, p. 167.

(୧୮) R. Sharma, op. cit, p. 77.

(୧୯) ରାମାୟଣ, ୭।୬୬।୩୦ । ଏଠାରେ ପ୍ରତିଶାପ କଥାର ଯେଉଁ ଉଲ୍ଲେଖ ଅଛି ତାହାର ପୃଷ୍ଠଭୂମି ହେଲା ଏହି ରାଜା ସୌଦାସ ଗୋଟିଏ ବଡ଼ ଯଜ୍ଞ କରୁଥିଲେ । ବଶିଷ୍ଠ ଏହାର ପୌରୋହିତ୍ୟ କରୁଥିଲେ । ଜଣେ ରାକ୍ଷସ ସୌଦାସଙ୍କୁ ଅସୁବିଧାରେ ପକାଇବା ପାଇଁ ପୂର୍ବୋକ୍ତ ଦିନ ବଶିଷ୍ଠଙ୍କ ବେଶ ଧରି ନରମାଂସ ଆଣି ରାଜାଙ୍କୁ ଦେଲା ଏବଂ ତାହାକୁ ରାଣୀ ମଦୟନ୍ତୀଙ୍କ ଦ୍ୱାରା ପାକ କରାଇ ତା'କୁ ଖାଇବାକୁ ଦେବାପାଇଁ କହିଲା । ରାଜା ତାହା ହିଁ କରାଇଲେ । କିଛି ସମୟ ପରେ ପ୍ରକୃତ ବଶିଷ୍ଠ ମୁନି ଆସିଲେ । ରାଜା ତାଙ୍କ ପାଇଁ ମଣିଷମାଂସର ତରକାରୀ ବାଢ଼ିଦେଲେ । ବଶିଷ୍ଠ ଏଥିରେ ରାଗିଯାଇ ଅଭିଶାପ ଦେଇ କହିଲେ, 'ଆରେ ମୂର୍ଖ ରାଜା ! ତୁ ଆଜି ଯେଉଁ ମଣିଷମାଂସ ମୋତେ ଖାଇବାକୁ ଦେଉଛୁ, ଏଣିକି ସେହି ମାଂସ ହିଁ ତୋ'ର ଖାଦ୍ୟ ହେବ ।" ଏହା ଶୁଣି ସୌଦାସ ବଶିଷ୍ଠଙ୍କୁ ପ୍ରତିଶାପ ଦେବାପାଇଁ ବସିଥିଲେ । କିନ୍ତୁ ତାଙ୍କ ରାଣୀଙ୍କ ଅନୁରୋଧ କ୍ରମେ ସେ ତହିଁରୁ ନିବୃତ୍ତ ହୋଇଥିଲେ । ଏହି ରାଜା ବଶିଷ୍ଠଙ୍କ ଅଭିଶାପ ଫଳରେ ହୋଇଥିଲେ ନରମାଂସଭୋଜୀ କଲ୍ମାଷପାଦ ନାମରେ ପରିଚିତ । ଗୋଟିଏ ବୌଦ୍ଧଜାତକ ଗଳ୍ପରେ

(ମହାସୁତସୋମ ଜାତକ) ମଧ୍ୟ ଏହିଭଳି କଲ୍ମାଷପାଦ ନାମକ ଜଣେ ନରମାଂସଭୋଜୀ ରାଜାଙ୍କ ନାମର ଉଲ୍ଲେଖ ଅଛି ।

(୨୦) R. Sharma, op. cit, p. 48.

(୨୦-କ) Ibid, p. 111.

(୨୧) A. L. Basham, The Wonder that was India, p. 174.

(୨୧-କ) ଗଙ୍ଗାଧର ମିଶ୍ର, ବୈଦିକ ଔର୍ ବେଦୋତ୍ତର ଭାରତୀୟ ସଂସ୍କୃତି (ହିନ୍ଦୀ), ପୃ. ୨୩୭ ।

(୨୨) ରାମାୟଣ, ୨।୨୦।୩୮ ।

(୨୩) A. L. Basham, op. cit, p. 172.

(୨୪) ରାମାୟଣ, ୧।୬।୯ ।

(୨୫) R. Sharma, op. cit, p. 84.

(୨୬) S. Rdhakrishnan op. cit, p. 34.

(୨୭) Ibid, p. 155.

(୨୮) ରାମାୟଣ, ୫।୨୪।୯ ।

(୨୯) କାଳିଦାସ, ରଘୁବଂଶ, ୧୪।୬୭ ।

(୩୦) R. Sharma, op. cit, p. 91.

(୩୧) I. B. Horner, op. cit, p. 14.

(୩୧-କ) ରାମାୟଣ, ୧।୩୬।୨୧-୨୨ ।

(୩୨) ଋଗ୍ବେଦ, ୨।୬୬।୩ ।

(୩୨-କ) ଋଗ୍ବେଦ, ୨।୨୫।୩୩ ।

(୩୩) ଋଗ୍ବେଦ, ୨।୬୨।୧୮ ।

(୩୪) R. Sharma, op. cit, pp. 92-93.

(୩୫) S. Radhakrishnan, op. cit., p. 176.

(୩୬) ରାମାୟଣ, ४।୨୩।୧୨ ।

(୩୭) The Cultural Heritage of India, Vol. II, Swami Nihsreyasananda, "The Culture of the Ramayana", p. 13.

(୩୮) ଋଗ୍‌ବେଦ, ୧୦।୧୮।୭ ।

(୩୯) S. Radhakrishnan, op. cit, p. 139.

(୪୦) ରାମାୟଣ, ୬।୧୬।୧୫ ।

(୪୧) J. L. Brockington, Righteous Rama—The Evolution of an Epic (1984), p. 178.

(୪୨) ରାମାୟଣ, ୪।୨୧।୧୬ ।

(୪୩) ରାମାୟଣ, ୨।୬୪।୫୭ ।

(୪୪) A.L. Basham, op. cit, p. 172.

(୪୫) ରାମାୟଣ, ୨।୭୫।୪୫ ।

(୪୬) ଉତ୍ତରେବ, ୨।୬୫।୫୫ ।

(୪୭) A. L. Basham, op. cit, p. 184.

(୪୮) A. B. Keith, Religion and Philosophy of the Upanishads, p. 585.

(୪୯) ରାମାୟଣ, ୧।୧୦।୫ ।

(୫୦) A. L. Basham, op. cit, p. 185.

(୫୧) ରାମାୟଣ, ୧।୩।୧୭ ।

(୫୨) J. L. Brockington, op. cit, p. 178.

(୫୩) ରାମାୟଣ, ୨।୩୬।୩ ।

(୫୪) R. Sharma, op. cit, pp. 106-107.

—o—

## ପଞ୍ଚମ ପରିଚ୍ଛେଦ

# ଆଶ୍ରମଜୀବନ

'ଆର୍ଷ ଦର୍ଶନେ' ଏଇଥିରୁ ଋଷି ଶବ୍ଦର ସୃଷ୍ଟି । ଏହାର ତାତ୍ପର୍ଯ୍ୟ ହେଲା ଯେ ଦେଖିପାରନ୍ତି ସେ ହେଉଛନ୍ତି ଋଷି । ସବୁ ମଣିଷ, ପଶୁ, ପକ୍ଷୀ ତ ଦେଖିପାରନ୍ତି । ସେମାନେ ତେବେ କ'ଣ ଋଷି ? ନା, କଦାପି ନୁହେଁ । ଏଠାରେ ଋଷିଙ୍କ ଦୃଷ୍ଟିକୁ ଅନ୍ତର୍ଦୃଷ୍ଟି ଅର୍ଥରେ ଗ୍ରହଣ କରିବାକୁ ହେବ । ବାହାରକୁ ଅନ୍ଧ ଥିଲେ ମଧ୍ୟ ଅନ୍ତର୍ଦୃଷ୍ଟି ବଳରେ ଜଣେ ଋଷି ହୋଇ ପାରିବେ, ଯେମିତି ରାମାୟଣରେ ଅନ୍ଧମୁନିଙ୍କର ଏବଂ ଋଗ୍‌ବେଦରେ ଦୀର୍ଘତମା ଋଷିଙ୍କର ବର୍ଣ୍ଣନା ଅଛି । ଯାସ୍କ ତେଣୁ ତାଙ୍କ ନିରୁକ୍ତରେ ଋଷି ଶବ୍ଦର ବ୍ୟାଖ୍ୟା କରିବାକୁ ଯାଇ ଯଥାର୍ଥରେ କହନ୍ତି, 'ଋଷୟଃ ମନ୍ତ୍ରଦ୍ରଷ୍ଟାରଃ,' ଅର୍ଥାତ୍ ଋଷିମାନେ ହେଉଛନ୍ତି ମନ୍ତ୍ରଦ୍ରଷ୍ଟା । ସେମାନେ ବେଦମନ୍ତ୍ରଗୁଡ଼ିକର ଅନ୍ତର୍ନିହିତ ଅର୍ଥକୁ ଭଲ ଭାବରେ ବୁଝି ପାରିଥିଲେ । ବୈଦିକ କାଳରେ ଏହି ଋଷିମାନେ ଥିଲେ ପୁରୋହିତ ନାମରେ ଖ୍ୟାତ । ସେମାନେ ଥିଲେ ସଂସ୍କୃତିର ଜାଗ୍ରତ ପ୍ରହରୀ ଭଳି । ସାରା ସମାଜ ଶୋଇ ପଡ଼ିପାରେ । ସଂସ୍କୃତିର ରକ୍ଷକ ବୋଲି ଦାବି କରୁଥିବା ରାଜା ମଧ୍ୟ ଶୋଇ ପଡ଼ିପାରନ୍ତି । କିନ୍ତୁ ପୁରୋହିତ କଦାପି ଶୋଇପାରିବେ ନାହିଁ । ସେଥିପାଇଁ ତ ଅଥର୍ବ ବେଦର ଋଷି ଆବେଗଭରା କଣ୍ଠରେ କହିଛନ୍ତି, "ବୟଂ ରାଷ୍ଟ୍ରେ ଜାଗୃୟାମଃ ପୁରୋହିତାଃ" ।

ଅର୍ଥାତ୍ ଆମେ ପୁରୋହିତମାନେ ରାଷ୍ଟ୍ରରେ ଜାଗ୍ରତ ହୋଇ ରହିଅଛୁ ।

ବୈଦିକ ସାହିତ୍ୟରେ ଦୁଇ ପ୍ରକାର ଋଷିଙ୍କର ନାମୋଲ୍ଲେଖ ଦେଖାଯାଏ, ଯଥା, ମୁନି ଓ ବ୍ରାତ୍ୟ । ଋଗ୍‌ବେଦରେ (୧୦।୧୨୬) ଆମେ ମୁନି ନାମର ଉଲ୍ଲେଖ ପାଇଥାଉଁ । ସେହିପରି ଅଥର୍ବବେଦରେ (୧୫) ଆମେ ବ୍ରାତ୍ୟ ନାମର ଉଲ୍ଲେଖ ପାଇଥାଉଁ । ବ୍ରାତ୍ୟମାନେ ବୁଲି ବୁଲି ସଂସ୍କୃତିର ପ୍ରଚାର କରୁଥିଲେ । ବୌଦ୍ଧ-ଯୁଗର ପରିବ୍ରାଜକମାନଙ୍କ ସହିତ ସେମାନେ ତୁଳନୀୟ । ସେମାନଙ୍କର ଆର୍ଯ୍ୟ-ନୀତିଠାରୁ ନୀତିଗତ ପାର୍ଥକ୍ୟ ଥିଲା । ତେଣୁ ସେମାନଙ୍କୁ ଆର୍ଯ୍ୟମାନେ ବ୍ରାତ୍ୟ ବା ପତିତ ଆର୍ଯ୍ୟ ନାମରେ ଡ଼ାକୁଥିଲେ । ସେ ଯାହା ହେଉ, ସେମାନେ ମଧ୍ୟ ଥିଲେ ସଂସ୍କୃତିର ବାହକ । ଏହିପରି ଭାବରେ ଭାରତୀୟ ସଂସ୍କୃତି ଅରଣ୍ୟ ମଧ୍ୟରେ ସୁରକ୍ଷିତ ରହିଥିଲା । ଅରଣ୍ୟସ୍ଥ ମୁନି-ଆଶ୍ରମଗୁଡ଼ିକ ଥିଲା ଶିକ୍ଷାର

କେନ୍ଦ୍ରବିନ୍ଦୁ ଏବଂ ଭାରତୀୟ ସାଂସ୍କୃତିକ ହୃଦୟର ସ୍ପନ୍ଦନ ଅରଣ୍ୟରୁ ମୁନିଆଶ୍ରମ ଗୁଡ଼ିକରୁ ସଂସ୍କୃତିର ପ୍ରବାହ ନଗରାଭିମୁଖୀ ହୋଇଥିଲା । ପୃଥିବୀର ସାଂସ୍କୃତିକ ଇତିହାସ ପର୍ଯ୍ୟାଲୋଚନା କଲେ ଆମେ ଦେଖିବା ଯେ ଭାରତର ଏହି ସ୍ଥିତି ଥିଲା ଅନନ୍ୟ । ରବୀନ୍ଦ୍ରନାଥ ଠାକୁର ଭାରତୀୟ ସଂସ୍କୃତିର ଅରଣ୍ୟରୁ ନଗରାଭିମୁଖୀ ପ୍ରବାହ ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ଯାହା କହିଛନ୍ତି, ତାହା ଏଠାରେ ଉଲ୍ଲେଖନୀୟ

> A most wonderful thing we notice in India is that here the forest, not the town is the fountain-head of all its civilization. Wherever in India its earliest and most wonderful manifestations are noticed, we find that men have not come into such close contact as to be rolled or fused into a compact mass. There trees and plants, rivers and lakes had ample opportunity to live in close relationship with men. In these forests though there was human society, there was enough of open space, of aloofness, there was no jostling. Still this aloofness did not act as an intertia in the Indian mind, rather it rendered it all the brighter. It is the forest that has nurtured the two great ancient ages of India, the Vedic and the Budhist. As did the Vedic rishis, Lord Budha also showed his teaching in the many woods of India. The current of civilization that flowed from the forest inundated the whole of India. (୧)

ରାମାୟଣ-ଯୁଗରେ ଅଳ୍ପ-ବହୁତ ଏହି ସ୍ଥିତିହିଁ ଥିଲା । ମୁନିଆଶ୍ରମଗୁଡ଼ିକ ଉପରେ ଯେତେବେଳେ ବିପଦ ପଡ଼ୁଥିଲା ସେତେବେଳେ ରାଜାମାନେ ସେଗୁଡ଼ିକୁ ରକ୍ଷା କରିବାପାଇଁ ଆଗେଇ ଆସୁଥିଲେ । କ୍ଷତ୍ରିୟ ଓ ବ୍ରାହ୍ମଣଙ୍କ ପାରସ୍ପରିକ ସହଯୋଗରେ ଭାରତୀୟ ସଂସ୍କୃତି ସୁରକ୍ଷିତ ହୋଇଥିଲା । ରାମ-ଲକ୍ଷ୍ମଣଙ୍କର ବିଶ୍ୱାମିତ୍ରଙ୍କ ଆଶ୍ରମକୁ ରକ୍ଷା କରିବା ଏବଂ ବନବାସ କାଳରେ ଦଣ୍ଡକାରଣ୍ୟସ୍ଥ

ଅନ୍ୟାନ୍ୟ ମୁନିଆଶ୍ରମଗୁଡ଼ିକୁ ରାକ୍ଷସମାନଙ୍କ ଦୌରାତ୍ମ୍ୟରୁ ମୁକ୍ତ କରିବା ଏହାର ନିଦର୍ଶନ । ଭରଦ୍ୱାଜ, ଅତ୍ରି, ଅଗସ୍ତ୍ୟ ଆଦି ମୁନିଙ୍କର ଆଶ୍ରମମାନ କିପରି ଭାବରେ ସଂସ୍କୃତିର ପ୍ରାଣ-କେନ୍ଦ୍ର ରୂପରେ କାର୍ଯ୍ୟ କରୁଥିଲା, ତାହାର ଭୂରି ଭୂରି ବର୍ଣ୍ଣନା ଆମେ ରାମାୟଣରେ ଦେଖିବାକୁ ପାଇଥାଉଁ । ଅତଏବ, ସଂସ୍କୃତିର ବାହକ ଏହି ଅରଣ୍ୟବାସୀମାନଙ୍କ ଜୀବନଚର୍ଯ୍ୟା ବିଷୟରେ ଆଲୋକପାତ କରିବା ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ ହେବ । ଏହି ମୁନି-ଋଷିମାନଙ୍କର ସରଳ, ନିରାଡ଼ମ୍ବର ତଥା ଶୁଦ୍ଧପୂତ ଜୀବନକୁ ଅନୁକରଣ କରି ଅରଣ୍ୟବାସୀ ଅନ୍ୟମାନେ ମଧ୍ୟ ଅନୁରୂପ ଭାବରେ ସେମାନଙ୍କ ଜୀବନ ଅତିବାହିତ କରୁଥିଲେ । ସେମାନେ ମଧ୍ୟ ଅଶ୍ରମ ସ୍ଥାପନ କରି ତାହାର ଶୃଙ୍ଖଳା ମଧ୍ୟରେ ଜୀବନ-ଚର୍ଯ୍ୟା କରୁଥିଲେ । ନିର୍ବାସିତ ରାମଙ୍କ ଆଶ୍ରମଜୀବନ ତଥା ଜୀବନର ଶେଷ ଦୁଇ ପର୍ଯ୍ୟାୟରେ ଉପନୀତ ହୋଇଥିବା (ବାନପ୍ରସ୍ଥ ଓ ସନ୍ନ୍ୟାସ) ବ୍ୟକ୍ତିମାନଙ୍କର ଆଶ୍ରମଜୀବନ ଏଠାରେ ଉଦାହରଣ ସ୍ୱରୂପ ନିଆଯାଇପାରେ । ଅତଏବ, ସେମାନଙ୍କ ଜୀବନ ଉପରେ ଆଲୋକପାତ କରିବା ମଧ୍ୟ ସମଧିକ କୌତୂହଳୋଦ୍ଦୀପକ ହେବ ।

## ଆଶ୍ରମବାସୀଙ୍କ ପ୍ରକାରଭେଦ

ଆଶ୍ରମବାସୀମାନଙ୍କୁ ସାଧାରଣ ଭାବରେ କୁହାଯାଉଥିଲା ତପସ୍ୱୀ, କାରଣ ସେମାନେ ତପସ୍ୟାରେ ରତ ଥିଲେ । କାହାଙ୍କର ତପସ୍ୟା ଅଧିକତର କଠିନ ଥିଲା ତ ଆଉ କାହାଙ୍କର ତପସ୍ୟା କମ୍ କଠିନ ଥିଲା । 'ତପଃ' ବା ତପସ୍ୟା ଥିଲା ସେମାନଙ୍କର ଧନସ୍ୱରୂପ । ତେଣୁ ସେମାନଙ୍କୁ କୁହାଯାଉଥିଲା 'ତପୋଧନ' । ସେମାନେ ସାଧାରଣତଃ ଦୁଇ ପ୍ରକାର ଥିବା ରାମାୟଣରେ ବର୍ଣ୍ଣିତ । ଗୋଟିଏ ପ୍ରକାରର ତପସ୍ୱୀ ହେଲେ ସାମୟିକ ତପସ୍ୱୀ ଏବଂ ଅନ୍ୟ ଗୋଟିଏ ପ୍ରକାରର ତପସ୍ୱୀ ହେଲେ ସ୍ଥାୟୀ ତପସ୍ୱୀ । ଜୀବନର ଚାରି ଆଶ୍ରମ ବା ଚାରି ପର୍ଯ୍ୟାୟର ସ୍ଥିତି ମଧ୍ୟରୁ ଶେଷ ଆଶ୍ରମ ଦୁଇଟି ହେଉଛି ବାନପ୍ରସ୍ଥାଶ୍ରମ ଓ ସନ୍ନ୍ୟାସାଶ୍ରମ । ଏହି ଦୁଇ ଅବସ୍ଥାରେ ଲୋକମାନଙ୍କୁ ଅରଣ୍ୟରେ ଆଶ୍ରମଜୀବନ କଟାଇବାକୁ ପଡ଼ୁଥିଲା । ସେତେବେଳେ ସେମାନଙ୍କୁ ମୁନି-ଋଷିଙ୍କ ଭଳି କୃଚ୍ଛ୍ର ବ୍ରତ ପାଳିବାକୁ ପଡ଼ୁଥିଲା । ରାମାୟଣର ବର୍ଣ୍ଣନା ଅନୁଯାୟୀ (୨।୩୮।୧୬-୨୩) ସେମାନଙ୍କୁ ଶାରୀରିକ ଯାବତୀୟ କଷ୍ଟ ମଧ୍ୟ ଦେଇ ମାନସିକ ପୁଷ୍ଟିଲାଗି ଉଦ୍ୟମ କରିବାକୁ ପଡ଼ୁଥିଲା । ସେମାନେ ନ୍ୟୂନତମ ଦୈନନ୍ଦିନ ଆବଶ୍ୟକତାକୁ ନେଇ ଚଳି-ଯାଉଥିଲେ । ସେମାନଙ୍କ ପାଇଁ ଇହଲୋକରେ ପାଇଲା ଭଳି ଆଉ କୌଣସି ବସ୍ତୁ କାମ୍ୟ ନଥିଲା । ସେମାନେ ଆଧ୍ୟାତ୍ମିକ ସିଦ୍ଧି ହାସଲ କରି ପରଲୋକର

ସୁଖ ଲାଗି ସଦା ଚେଷ୍ଟିତ ଥିଲେ । ରାମାୟଣର ଭାଷାରେ (୩।୬।୨୩) ମୃତ୍ୟୁ ପରେ ସ୍ୱର୍ଗପ୍ରାପ୍ତି ଥିଲା ସେମାନଙ୍କର ଏକାନ୍ତ କାମନା । ଏଠାରେ 'ମୋକ୍ଷପ୍ରାପ୍ତି'ର ଉଲ୍ଲେଖ କରାନଯାଇ 'ସ୍ୱର୍ଗପ୍ରାପ୍ତି'ର ଉଲ୍ଲେଖ କରାଯାଇଛି । କାରଣ ରାମାୟଣରେ କୁତ୍ରାପି 'ମୋକ୍ଷପ୍ରାପ୍ତି' କଥା କୁହାଯାଇନାହିଁ । ଅନ୍ୟ ପକ୍ଷରେ ଏଥିରେ 'ସ୍ୱର୍ଗପ୍ରାପ୍ତି' ଉପରେ ହିଁ ଗୁରୁତ୍ୱ ଦିଆଯାଇଛି । ସେମାନଙ୍କର ଏହି ସ୍ଥିତି ଉପରେ ଆଲୋକପାତ କରିବାକୁ ଯାଇ ରାମାଶ୍ରୟ ଶର୍ମା ଯଥାର୍ଥରେ କହନ୍ତି

> As this mode of life devolved upon these persons in their ripe age and in consequence as a more or less natural scheme, their efforts were directed not towards the attainment of any worldly objective but towards the cultivation of moral virtues like humility, compassion, truthfulness continence, abstinence from anger and the like. (୨)

ସେମାନେ ଥିଲେ ଅସ୍ଥାୟୀ ତପସ୍ୱୀ । ଭରଦ୍ୱାଜ, ଅତ୍ରି, ବାଲ୍ମୀକି, ଅଗସ୍ତ୍ୟ ଆଦି ମୁନିଙ୍କ ଆଶ୍ରମରେ ଅବସ୍ଥାନ କରୁଥିବା ବ୍ୟକ୍ତିମାନେ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

ବାନପ୍ରସ୍ଥାଶ୍ରମ ଓ ସନ୍ନ୍ୟାସାଶ୍ରମ ମଧ୍ୟରେ ଗୋଟିଏ ସୂକ୍ଷ୍ମ ପ୍ରଭେଦ ଅଛି । ଉଭୟ ଆଶ୍ରମରେ ବ୍ୟକ୍ତିଙ୍କୁ କୃଚ୍ଛ୍ର-ବ୍ରତ ଅବଲମ୍ବନ କରିବାକୁ ପଡ଼ୁଥିଲେ ହେଁ ବାନପ୍ରସ୍ଥାଶ୍ରମରେ ତାଙ୍କୁ ଅଗ୍ନିଙ୍କ ଅର୍ଚ୍ଚନା ତ୍ରିକାଳରେ (ସକାଳେ, ମଧ୍ୟାହ୍ନରେ ଓ ସନ୍ଧ୍ୟାରେ) କରିବାକୁ ପଡ଼ିଥାଏ । କିନ୍ତୁ ସନ୍ନ୍ୟାସାଶ୍ରମରେ ଏଭଳି ଅର୍ଚ୍ଚନା କରିବାକୁ ପଡ଼ିନଥାଏ । ଏହି ଆଶ୍ରମରେ ତାଙ୍କର ଏକମାତ୍ର କର୍ତ୍ତବ୍ୟ ଥାଏ ଇନ୍ଦ୍ରିୟଗୁଡ଼ିକୁ ସଂଯତ କରିବା, ଧ୍ୟାନ କରିବା ଏବଂ ଆତ୍ମାବିଷୟକ ଚିନ୍ତନ କରିବା । ଏହା କରି ସେ ଜୀବନର ଶେଷ ସମୟଟି ପାଇଁ ଅପେକ୍ଷାରତ ରହିଥା'ନ୍ତି । ବାନପ୍ରସ୍ଥ-ଅବସ୍ଥାରେ ବ୍ୟକ୍ତିଙ୍କୁ ନିଜ ସ୍ତ୍ରୀଙ୍କ ସହିତ ଏକତ୍ର ରହିବାର ସ୍ୱାଧୀନତା ମିଳୁଥିଲା । କିନ୍ତୁ ସନ୍ନ୍ୟାସ-ଅବସ୍ଥାରେ ତାଙ୍କୁ ଏକାକୀ ନିର୍ଜନ ସ୍ଥାନରେ ରହିବାକୁ ପଡ଼ୁଥିଲା । ଅତଏବ, ବାନପ୍ରସ୍ଥାଶ୍ରମର ପରବର୍ତ୍ତୀ ଉନ୍ନତ ଅବସ୍ଥା ହେଲା ସନ୍ନ୍ୟାସାଶ୍ରମ ।

ବାନପ୍ରସ୍ଥୀମାନଙ୍କର ଏକ ସ୍ୱାଭାବିକ ଗୁଣ ହେଲା ସେମାନେ ଏକାକୀ ରହୁନଥିଲେ । ଅନ୍ୟ ପକ୍ଷରେ ସେମାନେ ଦଳ ଦଳ ହୋଇ ଏକତ୍ର ରହୁଥିଲେ ।

ସେମାନଙ୍କର ଏହି ଦଳକୁ କୁହାଯାଉଥିଲା 'ବାନପ୍ରସ୍ଥ-ଗଣ' । ଦଣ୍ଡକାରଣ୍ୟ ଅଞ୍ଚଳରେ ଏଭଳି ଏକ ବୃହତ୍ 'ବାନପ୍ରସ୍ଥ-ଗଣ' ଥିବା କଥା ରାମାୟଣରେ (୩।୭।୧୮) ବର୍ଣ୍ଣିତ । ଅଗସ୍ତ୍ୟଙ୍କ ଆଶ୍ରମରେ ବହୁ ବାନପ୍ରସ୍ଥୀ ଥିଲେ । ରାମ ଯେତେବେଳେ ସୀତା ଓ ଲକ୍ଷ୍ମଣଙ୍କ ସାଥିରେ ତାଙ୍କ ଆଶ୍ରମକୁ ଆସିଥିଲେ, ସେ (ଅଗସ୍ତ୍ୟ) ସେତେବେଳେ ସେମାନଙ୍କର ସମୁଚିତ ସତ୍କାର କରିଥିଲେ । ସେହି କଥା ରାମାୟଣରେ ନିମ୍ନମତେ ବର୍ଣ୍ଣିତ

"ଅଗ୍ନିଂ ହୁତ୍ୱା ପ୍ରଦାୟାର୍ଘ୍ୟମତିଥୀନ୍ ପ୍ରତିପୂଜ୍ୟ ଚ ।
ବାନପ୍ରସ୍ଥେନ ଧର୍ମେଣ ସ ତେଷାଂ ଭୋଜନଂ ଦଦୌ ।। (୩)

ଅର୍ଥାତ୍ ସେ (ଅଗସ୍ତ୍ୟ) ପ୍ରଥମେ ଅଗ୍ନିରେ ଆହୁତି ଦେଲେ ଏବଂ ପରେ ବାନପ୍ରସ୍ଥ-ଧର୍ମ ଅନୁସାରେ ଅତିଥିମାନଙ୍କୁ ଭଲ ଭାବରେ ପୂଜା କରି ସେମାନଙ୍କୁ ଖାଇବାକୁ ଦେଲେ । ରାମାୟଣରେ ଅବଶ୍ୟ ଯତି, ସନ୍ନ୍ୟାସୀ ଓ ପରିବ୍ରାଜକ ଏଭଳି ଭିନ୍ନ ଭିନ୍ନ ନାମର ଉଲ୍ଲେଖ ଅଛି । ମନୁସ୍ମୃତିରେ (୬।୩୩-୮୬) ଏମାନଙ୍କୁ ସମସ୍ତଙ୍କୁ ଏକାର୍ଥବୋଧକ ବୋଲି କୁହାଯାଇଛି ଏବଂ ପୁଣି କୁହାଯାଇଛି ଯେ ଏମାନେ ହେଉଛନ୍ତି ବ୍ୟକ୍ତିର ଚତୁର୍ଥ ଆଶ୍ରମର ସ୍ୱରୂପ । ଏହାର ତାତ୍ପର୍ଯ୍ୟ ହେଉଛି ଏମାନେ ସମସ୍ତେ ହେଲେ ସନ୍ନ୍ୟାସାଶ୍ରମର ଅନୁବର୍ତ୍ତୀ । ରାମାୟଣ-ଯୁଗରେ ମୂଳତଃ ଏହି ସ୍ଥିତି ଥିଲା ବୋଲି ଆମକୁ ବିଶ୍ୱାସ କରିବାକୁ ହେବ ।

ଏହି ଅସ୍ଥାୟୀ ତପସ୍ୱୀମାନଙ୍କ ମଧ୍ୟରେ ଥିଲେ ଆଉ ଏକ ପ୍ରକାର ବ୍ୟକ୍ତି ଯେଉଁମାନେ କୌଣସି କାରଣରୁ ବନବାସ କରି ରହୁଥିଲେ । ରାମ, ଲକ୍ଷ୍ମଣ ଓ ସୀତାଙ୍କ କଥା ଏଠାରେ ଉଦାହରଣସ୍ୱରୂପ ନିଆଯାଇପାରେ । ରାମଙ୍କୁ ଚଉଦ ବର୍ଷ ଲାଗି ବନବାସ କରିବାକୁ ପଡ଼ିଥିଲା । ସୀତା ଓ ଲକ୍ଷ୍ମଣ ତାଙ୍କର ସହଗମନ କରିଥିବା ହେତୁ ସେ ଦୁହିଁଙ୍କୁ ମଧ୍ୟ ବନବାସ କରିବାକୁ ପଡ଼ିଥିଲା । ରାମ ଓ ଲକ୍ଷ୍ମଣ ତପସ୍ୱୀ ଭାବରେ ଜୀବନ କଟାଇଥିଲେ ଏବଂ ସୀତା ତପସ୍ୱିନୀ ଭାବରେ ଜୀବନ କଟାଇଥିଲେ । ଭରତ ମଧ୍ୟ ଜ୍ୟେଷ୍ଠ ଭ୍ରାତାଙ୍କ ପ୍ରତି ସମବେଦନା ପ୍ରକାଶ କରିବାକୁ ଯାଇ ଅଯୋଧ୍ୟାଠାରୁ କିଛି ଦୂରରେ ଥିବା ନନ୍ଦିଗ୍ରାମଠାରେ ତପସ୍ୱୀଙ୍କ ଭଳି କଠୋର, ସଂଯତ ଓ କୃଚ୍ଛ୍ର ଜୀବନ ବିତାଇ ଥିଲେ । ଏମାନଙ୍କର ଏଭଳି ଜୀବନ ଥିଲା ଅସ୍ଥାୟୀ ଏବଂ ବନବାସ-କାଳର ପୂର୍ତ୍ତି ସଙ୍ଗେ ସଙ୍ଗେ ଏ ପ୍ରକାର ଜୀବନର ପରିସମାପ୍ତି ଘଟିଥିଲା ।

ଆଉ କେତେକ ବ୍ୟକ୍ତି ଥିଲେ ଯେଉଁମାନେ ନିର୍ଦ୍ଦିଷ୍ଟ ଲକ୍ଷ୍ୟସାଧନ ଉଦ୍ଦେଶ୍ୟରେ ଜୀବନର କିଛି ଅଂଶ ତପସ୍ୟାରେ କଟାଉଥିଲେ ଏବଂ ସେହି ଲକ୍ଷ୍ୟଟିକୁ ହାସଲ କରିବାପରେ ତପସ୍ୟାବିହୀନ ହୋଇଉଠୁଥିଲେ । କୌଣସି ବିଶେଷ

ସ୍ଥାନ-ପ୍ରାପ୍ତି କମ୍ବା ଶକ୍ତି-ପ୍ରାପ୍ତି ଉଦ୍ଦେଶ୍ୟରେ ସେମାନେ ଏହା କରୁଥିଲେ ଏବଂ ତପସ୍ୟାକୁ ଦେବତାମାନଙ୍କ ଉପରେ ଏକ ଚାପ ପକାଇବାର ସାଧନ ରୂପେ ବ୍ୟବହୃତ କରୁଥିଲେ । ରାକ୍ଷସ ମାଲୀ, ସୁମାଳୀ ଓ ମାଲ୍ୟବାନ୍ ଏଭଳି ତପସ୍ୟା କରିଥିବା କଥା ରାମାୟଣରେ (୭।୪।୮-୧୪) ବର୍ଣ୍ଣିତ । ରାକ୍ଷସ ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ମଧ୍ୟ ଥିଲେ ଏହିଭଳି ଜଣେ ଜଣେ ତପସ୍ୱୀ । ସେମାନେ ଦୀର୍ଘ ଦିନ ଧରି କିପରି ଘୋର ତପସ୍ୟା କରିଥିଲେ ତାହା ରାମାୟଣରେ (୭।୧୦।୨) ସୁନ୍ଦର ଭାବରେ ବର୍ଣ୍ଣିତ । ଘୋର ତପସ୍ୟାବଳରେ ଦେବତାମାନଙ୍କଠାରୁ ବଳପୂର୍ବକ କିଛି ଗୋଟାଏ ପ୍ରସାଦ ବା ବର ହାସଲ କରିନେବା ନୀତିପୂର୍ଣ୍ଣ ତପଶ୍ଚର୍ଯ୍ୟାର ଅନ୍ତର୍ଭୁକ୍ତ ନଥିଲା । ବାସ୍ତବିକ, ଏହା ଥିଲା ତପସ୍ୟାର ଏକ ହୀନ ରୂପ । ଏହା ଆର୍ଯ୍ୟମାନଙ୍କଠାରେ ଆଦୌ ମାନ୍ୟତା ପାଉନଥିଲା । ରାକ୍ଷସମାନେ ହିଁ କେବଳ ନିଜର ହୀନ ଉଦ୍ଦେଶ୍ୟ ସାଧନ ନିମିତ୍ତ ଏଭଳି ତପସ୍ୟା କରୁଥିବା କଥା ରାମାୟଣରେ ବର୍ଣ୍ଣିତ ।

ଆଉ ଏକ ପ୍ରକାର ତପସ୍ୱୀ ଥିଲେ ଯେଉଁମାନେ ସାରା ଜୀବନ ତପସ୍ୱୀ ଭାବରେ ବିତାଉଥିଲେ । ବଶିଷ୍ଠ, ବିଶ୍ୱାମିତ୍ର, ବାଲ୍ମୀକି, ଅଗସ୍ତ୍ୟ, ଅତ୍ରି ଆଦି ମୁନି-ଋଷିମାନେ ଏହି ଶ୍ରେଣୀର ଅନ୍ତର୍ଗତ । ମୁନି-ଋଷିମାନେ ତପଶ୍ଚର୍ଯ୍ୟାରେ ରତ ଥିଲା ବେଳେ ଦେବତାମାନେ ସେମାନଙ୍କ ଉଦ୍ଦେଶ୍ୟ ଓ ଲକ୍ଷ୍ୟ ବିଷୟରେ ବେଳେ ବେଳେ ସନ୍ଦିହାନ ହୋଇ ଉଠୁଥିଲେ ଏବଂ ସେମାନଙ୍କ ତପୋଭଙ୍ଗ କରାଇବା ଲାଗି ନାନା ପ୍ରକାର ଉଦ୍ୟମ କରୁଥିଲେ । ବେଳେ ବେଳେ ସେମାନେ ଅପ୍ସରାମାନଙ୍କ ସାହାଯ୍ୟରେ ମୁନି-ଋଷିମାନଙ୍କୁ ପ୍ରଲୋଭିତ କରାଉ-ଥିଲେ । ଇନ୍ଦ୍ର ଥରେ ରମ୍ଭାଙ୍କୁ ପଠାଇ ଏବଂ ଆଉ ଥରେ ମେନକାଙ୍କୁ ପଠାଇ କିପରି ଭାବରେ ବିଶ୍ୱାମିତ୍ରଙ୍କ ତପୋଭଙ୍ଗ କରାଇଥିଲେ ତାହା ରାମାୟଣରେ ଅତି ରୋଚକ ଭାବରେ ବର୍ଣ୍ଣିତ । ଗୋଟିଏ ପ୍ରକାର ତପସ୍ୟାରେ ସକଳ ସିଦ୍ଧି ମିଳୁନ ଥିଲା । ପ୍ରତ୍ୟେକ ସିଦ୍ଧି ଲାଗି ଏକ ସ୍ୱତନ୍ତ୍ର ଧରଣର ତପସ୍ୟାର ଆବଶ୍ୟକତା ପଡ଼ୁଥିଲା । ବିଶ୍ୱାମିତ୍ର ବ୍ରହ୍ମର୍ଷି ହେବା ଉଦ୍ଦେଶ୍ୟରେ ବଡ଼ କଠୋର ତପସ୍ୟା କରିଥିଲେ । କିନ୍ତୁ ତାଙ୍କ ସହଜରେ ସେହି ପଦ ମିଳି ନଥିଲା । ତାଙ୍କୁ ପର୍ଯ୍ୟାୟକ୍ରମେ ରାଜର୍ଷିପଦ ମହର୍ଷିପଦ ଓ ବ୍ରହ୍ମର୍ଷିପଦ ମିଳିଥିବା କଥା ପିତାମହ ବ୍ରହ୍ମା ଘୋଷଣା କରି କହିଥିଲେ । ଶେଷ ପର୍ଯ୍ୟାୟର ତପସ୍ୟାରେ ପ୍ରୀତ ହୋଇ ବ୍ରହ୍ମା ଅନ୍ୟ ଦେବତାମାନଙ୍କ ଗହଣରେ ଥାଇ ତାଙ୍କୁ କହିଥିଲେ

"ବ୍ରହ୍ମର୍ଷେ ସ୍ୱାଗତଂ ତେଽସ୍ତୁ ତପସା ସ୍ମ ସୁତୋଷିତାଃ ।
ବ୍ରାହ୍ମଣ୍ୟଂ ତପସୋଗ୍ରେଣ ପ୍ରାପ୍ତବାନସି କୌଶିକ ॥" (୪)

ଅର୍ଥାତ୍ ହେ ବ୍ରହ୍ମର୍ଷି ! ତୁମକୁ ଆମେ ସ୍ୱାଗତ କରୁଛୁ । ଆମେ ତୁମ ତପସ୍ୟାରେ ଖୁବ୍ ସନ୍ତୁଷ୍ଟ । ହେ କୁଶିକନନ୍ଦନ ! ତୁମେ ନିଜର ଉଗ୍ର ତପସ୍ୟା-ବଳରେ ବ୍ରାହ୍ମଣତ୍ୱ ପାଇ ପାରିଛ । ବ୍ରାହ୍ମଣତ୍ୱ ପାଇବା ପୂର୍ବରୁ ସେ ଅବଶ୍ୟ ଖୁବ୍ କଠୋର ତପସ୍ୟା କରିଥିଲେ । କିନ୍ତୁ ବ୍ରହ୍ମା ତାଙ୍କୁ କେବଳ ମହର୍ଷିପଦର ଯୋଗ୍ୟ ବୋଲି ଘୋଷିତ କରିଥିଲେ । ସେ ଏଥିରେ କ୍ଷୁବ୍ଧ ହୋଇ ଏହାର କାରଣ ବ୍ରହ୍ମାଙ୍କୁ ପଚାରିଥିଲେ । ବ୍ରହ୍ମା ତାଙ୍କୁ ଉତ୍ତର ଦେବାକୁ ଯାଇ କହିଥିଲେ

"ନ ତାବତ୍ ତ୍ୱଂ ଜିତେନ୍ଦ୍ରିୟଃ ।" (୫)

ଅର୍ଥାତ୍ ତୁମେ ଏପର୍ଯ୍ୟନ୍ତ ଜିତେନ୍ଦ୍ରିୟ ହୋଇ ପାରିନାହଁ । ଏହାର ତାତ୍ପର୍ଯ୍ୟ ହେଲା, ବ୍ରହ୍ମର୍ଷିପଦ ପାଇବାକୁ ହେଲେ ଜଣକୁ କାମ, କ୍ରୋଧ ଆଦିକୁ ଜିଣିବାକୁ ପଡ଼ିବ । ଏହିପରି ଭାବରେ ରାମାୟଣର ବିଭିନ୍ନ ସ୍ଥାନରେ ଲକ୍ଷ୍ୟ ଓ ସିଦ୍ଧିର ବିଭିନ୍ନତା ନେଇ ତପସ୍ୟାର ବିଭିନ୍ନତା ଉପରେ ଗୁରୁତ୍ୱ ଦିଆହୋଇଛି ।

ଖ୍ରୀ: ପୂ: ୨ୟ ଶତାବ୍ଦୀରେ ଭରହୁତଠାରେ ଅଙ୍କିତ ଏକ ଆଶ୍ରମଦୃଶ୍ୟ ଆମେ ଦେଖିବାକୁ ପାଇଥାଉଁ । ଏହି ଦୃଶ୍ୟରେ ଦୁଇ ଜଣ ପୁରୁଷ ଓ ଜଣେ ସ୍ତ୍ରୀ ଠିଆହୋଇଛନ୍ତି ଏବଂ ଆଉ ଜଣେ ବ୍ୟକ୍ତି ହାତ ଯୋଡ଼ି ସେମାନଙ୍କୁ ସ୍ୱାଗତ କରୁଛନ୍ତି । ପୃଷ୍ଠଭୂମିରେ ଆଶ୍ରମର ଦୃଶ୍ୟ ମଧ୍ୟ ଅଛି । ବିଶିଷ୍ଟ ପ୍ରାଚ୍ୟତତ୍ତ୍ୱବିତ୍ କନିଙ୍ଗହାମ୍ ମତ ଦିଅନ୍ତି ଯେ ଏହି ଦୃଶ୍ୟରେ ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ପ୍ରୟାଗସ୍ଥିତ ଭରଦ୍ୱାଜ-ଆଶ୍ରମକୁ କିମ୍ବା ଚିତ୍ରକୂଟସ୍ଥିତ ଅତ୍ରି-ଆଶ୍ରମକୁ ପାଛୋଟି ନିଆଯାଉଛି । (୫-କ)

ରମ୍ଭା ଓ ମେନକାଙ୍କୁ ପଠାଇ କିପରି ଇନ୍ଦ୍ର ଋଷି ବିଶ୍ୱାମିତ୍ରଙ୍କ ତପୋଭଙ୍ଗ କରାଇଥିଲେ ସେ କଥା ପୂର୍ବରୁ କୁହାଯାଇଛି । ଏହିଭଳି ଆଉ ଅନେକ ଦୃଷ୍ଟାନ୍ତ ଆମେ ରାମାୟଣରେ ଦେଖିବାକୁ ପାଇଥାଉଁ । ଆଉ ଗୋଟିଏ ଦୃଷ୍ଟାନ୍ତ ହେଉଛନ୍ତି ଋଷି ଗୌତମ । ତାଙ୍କ ଉଗ୍ର ତପସ୍ୟାରେ ଭୟଭୀତ ହୋଇ ଇନ୍ଦ୍ର ତାଙ୍କ ସୁନ୍ଦରୀ ପତ୍ନୀ ଅହଲ୍ୟାଙ୍କ ସହିତ ବ୍ୟଭିଚାର କରିବାକୁ ପଛେଇ ନଥିଲେ । ସେ ଜାଣି-ଥିଲେ ଯେ ଏ କଥା ଜାଣିଲେ ଗୌତମ କ୍ରୋଧାନ୍ଧ ହୋଇ ତାଙ୍କୁ ଅଭିଶାପ ଦେବେ ଏବଂ ତଦ୍ଦ୍ୱାରା ତାଙ୍କ (ଗୌତମଙ୍କ) ତପୋବଳ ନଷ୍ଟ ହେବ । ବାସ୍ତବିକ, ତାହା ହିଁ ଘଟିଲା ଏବଂ ଉଭୟ ଇନ୍ଦ୍ର ଓ ଅହଲ୍ୟା ଗୌତମଙ୍କ ଦ୍ୱାରା ଅଭିଶପ୍ତ ହେଲେ । ଦେବତାମାନେ ଆଉ ଗୋଟିଏ କ୍ଷେତ୍ରରେ କୂଟ-କପଟ କରି ତପସ୍ୟା-ରତ ବ୍ୟକ୍ତିକୁ ତା'ର ଇଚ୍ଛାନୁସାରେ ବର ମଗାଇ ଦେଇନଥିଲେ । ଏହା ଘଟିଥିଲା କୁମ୍ଭକର୍ଣ୍ଣ କ୍ଷେତ୍ରରେ । ତା'ର ତପସ୍ୟାରେ ସନ୍ତୁଷ୍ଟ ହୋଇ ବ୍ରହ୍ମା ତା'କୁ ବର ଦେବା ପାଇଁ ଚାହିଁଥିଲେ । ସେ ପ୍ରକୃତରେ ଚାହୁଁଥିଲା ଛଅ ମାସରେ

ଦନେ ଶୋଇ ରହିବ ଏବଂ ଅବଶିଷ୍ଟ ସମସ୍ତ ଚେଇଁ ରହିବ । କିନ୍ତୁ ଏଥିରେ ଦେବତାମାନେ ଖୁବ ଡ଼ରିଗଲେ । ସେମାନଙ୍କ ଅନୁରୋଧ କ୍ରମେ ବାଗ୍‌ଦେବୀ କୁମ୍ଭକର୍ଣ୍ଣର କଣ୍ଠରେ ଆସି ବସିଲେ । ଏହା ଫଳରେ ସେ ବ୍ରହ୍ମାଙ୍କୁ ବର ମାଗିଲା ଛଅ ମାସ ଶୋଇବା ପାଇଁ ଏବଂ ଦିନେ ଛେଇଁ ରହିବା ପାଇଁ । ବ୍ରହ୍ମା ତାହା ଅତରେ ମଞ୍ଜୁର କରିଦେଲେ । କୁମ୍ଭକର୍ଣ୍ଣ ତା'ର ଭୁଲ ବୁଝିବା ପୂର୍ବରୁ ବର-ଦାନ କାର୍ଯ୍ୟଟି ସରି ଯାଇଥିଲା । ଏହିପରି ଭାବରେ ଦେବତାମାନେ ନାନା ପ୍ରକାର ଉପାୟ ଅବଲମ୍ବନ କରି ତପସ୍ୱୀମାନଙ୍କ ତପସ୍ୟାରେ ବାଧା ଉପୁଜାଉଥିଲେ । ଶର୍ମା ଏହି ମତର ପୁଷ୍ଟି ସାଧନ କରିବାକୁ ଯାଇ ଯଥାର୍ଥରେ କୁହନ୍ତି

> The gods are said to have tried many ingenious methods to detract such ascetics from their objective. Deputing the clestial damsels for the purpose was a wellknown practice. (୭)

ଏତେ ବାଧାବିଘ୍ନ ସତ୍ତ୍ୱେ କିନ୍ତୁ ତପସ୍ୱୀମାନେ ସେମାନଙ୍କ ତପଶ୍ଚରଣରେ ଆଗେଇ ଚାଲୁଥିଲେ ଏବଂ ପରିଶେଷରେ ନିଜ ନିଜର ଲକ୍ଷ୍ୟ-ସିଦ୍ଧି ପ୍ରାପ୍ତ ହେଉଥିଲେ । ଯେ ପ୍ରକୃତ ତପସ୍ୱୀ ସେ ନିଜର ସୁଖ-ସମୃଦ୍ଧି କିମ୍ବା ମଙ୍ଗଳ ଲାଗି ତପସ୍ୟା କରୁ ନଥିଲେ । ସେ ତାହା କରୁଥିଲେ ସମସ୍ତଙ୍କର ମଙ୍ଗଳ ପାଇଁ, ସମସ୍ତଙ୍କର ସୁଖ-ସମୃଦ୍ଧି ପାଇଁ । ସେ ତପସ୍ୟାର ଦୁଃଖ କଷ୍ଟକୁ ନିର୍ବିକାର ଭାବରେ ସହିଯାଉଥିଲେ ଅନ୍ୟମାନଙ୍କ ମୁହଁରେ ହସ ଫୁଟାଇବା ପାଇଁ । ଗୀତା କହିଲା ଭଳି (୧୨।୪) ସେମାନେ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ (ସର୍ବତ୍ର ସମବୁଦ୍ଧୟଃ) ଏବଂ ସମସ୍ତଙ୍କ ମଙ୍ଗଳରେ ରତ ଥିଲେ (ସର୍ବଭୂତହିତେ ରତାଃ) ।

ଏ. ଏସ୍. ଗେଡ଼େନ୍‌ଙ୍କ ଭଳି ପାଶ୍ଚାତ୍ୟ ପଣ୍ଡିତ କୁହନ୍ତି ଯେ ତାପସିକତା ଏକ ଆର୍ଯ୍ୟ ଚିନ୍ତାଧାରା ନୁହେଁ । ଅନ୍ୟ ପକ୍ଷରେ ଏହା ହେଉଛି ଏକ ଆର୍ଯ୍ୟେତର ଚିନ୍ତାଧାରା ଏବଂ ଅନାର୍ଯ୍ୟ-ସଂସ୍କୃତିର ସଂସ୍ପର୍ଶରେ ଆସିବା ପରେ ଯାଇ ଏହା ଆର୍ଯ୍ୟ-ମାନଙ୍କ ମଧ୍ୟରେ ଅନୁପ୍ରବେଶ କରିଛି । ଏହାର କାରଣ ସ୍ୱରୂପ ସେ କୁହନ୍ତି ଯେ ଋଗ୍‌ବେଦରେ ଖୁବ୍ କମ୍ ଥର 'ତପଃ' ଶବ୍ଦର ଉଲ୍ଲେଖ ଅଛି । ଏ ସମ୍ପର୍କରେ ତାଙ୍କ ବକ୍ତବ୍ୟ ହେଲା

> Practice of tapas was, in great part at least, adopted by the Aryans from the aboriginals or the tribes. In the earliest Sanskrit literature, the

hymns of the Rigveda, neither the word tapas nor the conception and thought that underlies it is of frequent reference. (୭)

ଏହା କିନ୍ତୁ ଆଦୌ ଠିକ୍ ନୁହେଁ । ତପସ୍ୟା ହେଉଛି ଏକ ଅତି ଆଦିମ ଆର୍ଯ୍ୟ ଚିନ୍ତାଧାରା । 'ତପଃ' ଶବ୍ଦଟିର ମାହାତ୍ମ୍ୟ ଏଭଳି ଯେ ଆଦିମ ଭାରତୀୟ ଚିନ୍ତାଧାରାରେ ଏହାକୁ ସୃଷ୍ଟି-ଧାରଣର କାରଣ ବୋଲି କୁହାଯାଇଛି । ମହାଭାରତର ଭାଷାରେ 'ସନ୍ତୋ ତପସା ଭୂମିଂ ଧାରୟନ୍ତି ।' ଅର୍ଥାତ୍ ସାଧୁ ଲୋକମାନେ ତପସ୍ୟା ବଳରେ ପୃଥିବୀକୁ ଧାରଣ କରିଥାନ୍ତି । ସାଧୁଲୋକମାନେ କଷ୍ଟ ସହନ୍ତି ଏବଂ ତାହାର ଫଳଶ୍ରୁତି ସ୍ୱରୂପ ପୃଥିବୀରେ ଧର୍ମରକ୍ଷା ହୁଏ ଏବଂ ଅନ୍ୟମାନେ ସୁଖରେ ରହନ୍ତି । ଆର୍ଯ୍ୟ ମୁନି-ଋଷିମାନେ ଏଇଥିପାଇଁ କଷ୍ଟ ସହୁଥିଲେ । ରାମ ଏଇଥିପାଇଁ ଚଉଦ ବର୍ଷ କାଳ ବନବାସର କଷ୍ଟ ଭୋଗିଥିଲେ । ଏଇଥିପାଇଁ ପାଣ୍ଡବମାନଙ୍କୁ ଅକଥନୀୟ ଯାତନାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତୈତ୍ତିରୀୟ ଉପନିଷଦରେ ମଧ୍ୟ 'ତପଃ' ଉପରେ ଗୁରୁତ୍ୱ ଦିଆଯାଇଛି ଏବଂ କୁହାଯାଇଛି ଯେ ବ୍ରହ୍ମ ତପସ୍ୟା ବଳରେ ହିଁ ଏହି ସୃଷ୍ଟିର ସର୍ଜନା କରିଥିଲେ । ଏହାର ଉକ୍ତି (୨।୬।୧) 'ସ ତପୋଽତପ୍ୟତ ସ ତପସ୍ତପ୍ତ୍ୱା ଇଦଂ ସର୍ବଂ ଅସୃଜତ' । ଏଠାରେ ଉଲ୍ଲେଖନୀୟ । ଏହାର ଅର୍ଥ ହେଲା, ସେ ତପସ୍ୟା କଲେ ଏବଂ ଏହି ତପସ୍ୟା-ବଳରେ ସେ ଏହି ସମସ୍ତ ସୃଷ୍ଟିକୁ ସର୍ଜନା କଲେ । ବୃହଦାରଣ୍ୟକ ଉପନିଷଦ ମଧ୍ୟ (୧।୨।୬) ସେହି ଉକ୍ତିଟିକୁ ଦୋହରାଇଥାଏ । ଏହି ତପଃର ବଳ ଯେ କେତେ ଅଧିକ ଏବଂ ଏହାର ସମ୍ଭାବନା ଯେ କେତେ ବିରାଟ ତତ୍‌ସଂପର୍କରେ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କର ନିମ୍ନଲିଖିତ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ

> Tapas, the energising of the conscious force, austere thinking, the inward travail of the spirit is the brooding which is responsible for the creative work. Tapas is the force by which some mighty possibility is actualised. (୮)

ପ୍ରାଚୀନତମ ଐତରେୟ ଉପନିଷଦରେ (୧।୪; ୩।୨) ଭଗବାନ ଏହି ଆତ୍ମିକ ତପସ୍ୟା ବଳରେ ହିରଣ୍ୟଗର୍ଭର ସୁନା ଅଣ୍ଡାର ସାରା ସୃଷ୍ଟି କରିଥିଲେ ବୋଲି ଯେଉଁ ସଙ୍କେତ ଦିଆଯାଇଛି ତାହା ମଧ୍ୟ ଏଠାରେ ଉଲ୍ଲେଖନୀୟ । ପୁନଶ୍ଚ ଋଗ୍‌ବେଦସ୍ଥ ୧୦ମ ମଣ୍ଡଳର 'ପୁରୁଷସୂକ୍ତରେ' ବିରାଟ ପୁରୁଷ ସୃଷ୍ଟି କରିବାର ସଂକଳ୍ପ କରି କିଭଳି ଭାବରେ ଗୋଟିଏ ଯଜ୍ଞ କରିଥିଲେ ଏବଂ କିଭଳି ଭାବରେ

ନିଜକୁ ତନ୍ତ୍ରିରେ ଆହୁତ ଦେଉଥିଲେ ତାହା ଅତି ରୋଚକ ଭାବରେ ବର୍ଣ୍ଣିତ । ଏହି ମାନସିକ ଶକ୍ତି ଥିଲା ତାଙ୍କର ତପସ୍ୟା ଏବଂ ତାହାର ଅନନ୍ତ ସମ୍ଭାବନା ସ୍ୱରୂପ ଏହି ସାରା ସୃଷ୍ଟି ସମ୍ଭବ ପାରିଥିଲା । ଏହି ଶକ୍ତି ହେଉଛି ତପସ୍ୟା କରିବା ବା କଷ୍ଟ ସହିବାର ଏକ ସଙ୍କେତ । ଏହାକୁ ଅନୁକରଣ କରି ଭାରତୀୟମାନେ ବୈଦିକ କାଳରୁ ହିଁ ବିଶ୍ୱର କଲ୍ୟାଣ ଉଦ୍ଦେଶ୍ୟରେ ନିଜ ଜୀବନରେ କଷ୍ଟ ସହିବାକୁ ଏକ ମହତ୍ତ୍ୱ ଧର୍ମ ବୋଲି ବିଚାରି ଆସିଛନ୍ତି । ଏହି କଷ୍ଟ ସହିବା ଯେ ଅନ୍ତର୍ମୁଖୀ ଆଧ୍ୟାତ୍ମିକ ଜୀବନର ଏକ ବିଶିଷ୍ଟ ବିଭାବ, ଏହି ଧାରଣା ଭାରତୀୟମାନଙ୍କର ବହୁ ଯୁଗରୁ ବୈଦିକ କାଳରୁ ହିଁ ରହି ଆସିଛି । ରାଧାକୃଷ୍ଣନ୍‌ଙ୍କ ଭାଷାରେ

> Suffering is the substance of spiritual life, the very flesh of reality, the blood that units us all. (୮-କ)

ସମସ୍ତ ଅଭିବୃଦ୍ଧିର ମୂଳରେ ଯେ କଷ୍ଟ ସହିବା ରହିଛି, ତାହା ସେମାନେ ଭଲ ଭାବରେ ବୁଝିପାରିଥିଲେ । ଏହି ମତର ପୁଷ୍ଟି ସାଧନ କରିବାକୁ ଯାଇ ରାଧାକୃଷ୍ଣନ୍ ଆଉ ଠାଏ କୁହନ୍ତି

> The Indians realised that suffering was incidental to all progress. (୯)

ଏହିସବୁ ବିଷୟର ଦୃଷ୍ଟିରୁ ଆମକୁ ସ୍ୱୀକାର କରିବାକୁ ହେବ ଯେ 'ତପଃ' ଏକ ଅତି ପ୍ରାଚୀନ ଆର୍ଯ୍ୟଚିନ୍ତାଧାରା ଏବଂ ବୈଦିକ କାଳରୁ ହିଁ ତାପସିକତାର ଅଭ୍ୟାସ ଗଢ଼ି ଆସୁଥିଲା । ଅତଏବ, ଏହା ଆର୍ଯ୍ୟେତର ସଂସ୍କୃତିରୁ ଆନୀତ ବୋଲି ବିଚାର କରିବା ଆଦୌ ଠିକ୍ ହେବନାହିଁ । ରାମାୟଣ ଯୁଗରେ ଯେଉଁ ତପସ୍ୱୀମାନେ ବା ମୁନି-ଋଷିମାନେ ଦୃଷ୍ଟିଗୋଚର ହେଉଥିଲେ, ସେମାନେ ଥିଲେ ବୈଦିକ ଋଷି-ମାନଙ୍କର ଅଭିନବ ସଂସ୍କରଣ । ରାବଣ ଓ କୁମ୍ଭକର୍ଣ୍ଣାଦିଙ୍କ ତପସ୍ୟା-ସାଧନରୁ ଜଣାଯାଉଛି ଯେ ଆର୍ଯ୍ୟେତର ରାକ୍ଷସମାନେ ମଧ୍ୟ ତପସ୍ୟାର ବଳ ବିଷୟ ବୁଝି ପାରିଥିଲେ ଏବଂ ସେମାନେ ମଧ୍ୟ ଏହା ମାଧ୍ୟମରେ ନାନା ପ୍ରକାର ସିଦ୍ଧି ପାଇବା ପାଇଁ ପ୍ରୟାସୀ ହୋଇଥିଲେ, ଯଦିଓ ସେମାନଙ୍କ ପାଖରେ ମାନସିକ କୃଷ୍ଟି ଅପେକ୍ଷା ଜାଗତିକ କୃଷ୍ଟି ଅଧିକତର ପ୍ରାଥମିକତା ପାଉଥିଲା । ଏହା ନିଶ୍ଚିତ ଭାବରେ ଆର୍ଯ୍ୟମାନଙ୍କର ସେମାନଙ୍କ ଉପରେ ପଡ଼ିଥିବା ପ୍ରଭାବର ଫଳଶ୍ରୁତି । ଅତଏବ, ତପସ୍ୟାସମ୍ପର୍କିତ ଚିନ୍ତାଧାରା ଆର୍ଯ୍ୟମାନଙ୍କଠାରୁ ହିଁ ଆର୍ଯ୍ୟେତର ଗୋଷ୍ଠୀର ଲୋକ-ମାନଙ୍କ ମଧ୍ୟରେ ପ୍ରବେଶ କରିଥିଲା ।

ରାମାୟଣରେ ଆଉ ଗୋଟିଏ ଗୋଷ୍ଠୀର ତପସ୍ୱୀଙ୍କ ନାମ ଉଲ୍ଲିଖିତ, ଯେଉଁମାନଙ୍କୁ କୁହାଯାଉଥିଲା 'ଶ୍ରମଣ' । କେତେକଙ୍କ ମତରେ ବୌଦ୍ଧ ଭିକ୍ଷୁମାନଙ୍କୁ କୁହା ଯାଉଥିଲା ଶ୍ରମଣ ଏବଂ ବୌଦ୍ଧ-ଯୁଗରେ ହିଁ ଏହି ଶବ୍ଦଟିର ସୃଷ୍ଟି ହୋଇଛି । ପରେ ରାମାୟଣରେ ଏହା ପ୍ରକ୍ଷେପ ଭାବରେ ଅନୁପ୍ରବେଶ କରିଛି । ରାମାୟଣର ଦୁଇଟି ପ୍ରଖ୍ୟାତ ଟୀକା, ଯଥା, ତିଲକ-ଟୀକା ଓ ଗୋବିନ୍ଦ-ରାଜ-ଟୀକାରେ ଶ୍ରମଣ ଶବ୍ଦକୁ ବୌଦ୍ଧ-ଭିକ୍ଷୁ ଅର୍ଥରେ ହିଁ ନିଆଯାଇଛି । ଏ ସଂପର୍କରେ ରାମାୟଣର ଗୋଟିଏ ପଙ୍କ୍ତିର (୧।୧୪।୧୨) ତିଲକଟୀକାରେ ଏବଂ ଆଉ ଗୋଟିଏ ପଙ୍କ୍ତିର (୪।୧୮।୨୩) ଗୋବିନ୍ଦରାଜ-ଟୀକାରେ ବ୍ୟାଖ୍ୟା ଦ୍ରଷ୍ଟବ୍ୟ । ଏହି ମତ କିନ୍ତୁ ଠିକ୍ ନୁହେଁ । ବାସ୍ତବିକ ଦେଖିବାକୁ ଗଲେ ଶ୍ରମଣ-ଗୋଷ୍ଠୀ ଗୋଟିଏ ପ୍ରାଚୀନ ଆର୍ଯ୍ୟ-ସନ୍ନ୍ୟାସିଗୋଷ୍ଠୀ ଯେଉଁ ବିଷୟରେ ଉଲ୍ଲେଖ ଆମେ ଉପନିଷଦ ଗ୍ରନ୍ଥରେ ମଧ୍ୟ ପାଇଥାଉଁ । ଉଦାହରଣସ୍ୱରୂପ ବୃହଦାରଣ୍ୟକ ଉପନିଷଦରେ (୪।୩।୨୨) ଆମେ ଶ୍ରମଣ ଶବ୍ଦର ଉଲ୍ଲେଖ ପାଇଥାଉଁ । ରାମାୟଣରେ ତପସ୍ୱିନୀ ଶବରୀଙ୍କୁ ଶ୍ରମଣୀ ବୋଲି କୁହାଯାଇଛି । କବନ୍ଧ ଶବରୀଙ୍କ ପରିଚୟ ଦେବାକୁ ଯାଇ କହୁଛି (୩।୭୩।୨୬) ଯେ ସେ ହେଉଛନ୍ତି ଜଣେ ଶ୍ରମଣୀ (ଶ୍ରମଣୀ ଶବରୀ ନାମ) । ଶବରୀ ଥିଲେ ଅଗ୍ନି-ପୂଜିକା ଏବଂ ନିଜକୁ ଶେଷରେ ଅଗ୍ନିଦେବଙ୍କଠାରେ ଆହୁତି ଦେଇ ପ୍ରାଣ-ତ୍ୟାଗ କରିଥିଲେ । ଠିକ୍ ଅନୁରୂପ ଭାବରେ ଅନ୍ଧମୁନି ଓ ତାଙ୍କ ପତ୍ନୀ ପୁତ୍ର-ବିରହରେ ଅଧୀର ହୋଇ ଅଗ୍ନିରେ ଆତ୍ମୋତ୍ସର୍ଗ କରିଥିବା କଥା ରାମାୟଣସ୍ଥ ଅଯୋଧ୍ୟାକାଣ୍ଡରେ ଆଉ ଠାଏ ବର୍ଣ୍ଣିତ । ଶବରୀ ଯାହା କରିଥିଲେ ତାହା ବୌଦ୍ଧ ଚିନ୍ତାଧାରାର ଆଦୌ ଅନୁବର୍ତ୍ତୀ ନୁହେଁ; ବରଂ ତାହାର ପରିପନ୍ଥୀ । ଅତଏବ, ସେ କେବେହେଲେ ବୌଦ୍ଧ ଶ୍ରମଣୀ ହୋଇ ନଥିବେ । ରାମାୟଣରେ ଆଉ ଠାଏ (୧।୧୪।୧୨) କୁହାଯାଇଛି ଯେ ଦଶରଥଙ୍କ ପୁତ୍ରେଷ୍ଟି-ଯଜ୍ଞ ସମୟରେ ଉଭୟ ବ୍ରାହ୍ମଣ ଓ ଶ୍ରମଣମାନଙ୍କୁ ଭୂରି-ଭୋଜନ ଦିଆ ଯାଇଥିଲା । 'ବ୍ରାହ୍ମଣା ଭୁଞ୍ଜତେ ନିତ୍ୟଂ...ଶ୍ରମଣାଶ୍ଚୈବ ଭୁଞ୍ଜତେ' ଆଦି ପଙ୍କ୍ତିମାନ ଏହାର ନିଦର୍ଶନ । ଅତଏବ ରାମାୟଣକାଳୀନ ଶ୍ରମଣମାନେ ଥିଲେ ଆର୍ଯ୍ୟ ତପସ୍ୱି-ଗୋଷ୍ଠୀର ଅନ୍ତର୍ଗତ, ବୌଦ୍ଧ ଭିକ୍ଷୁ-ଗୋଷ୍ଠୀର କିନ୍ତୁ ନୁହନ୍ତି । ରାମାୟଣକାଳୀନ ଶ୍ରମଣଧର୍ମର ପ୍ରଭାବ ବୌଦ୍ଧ ଶ୍ରମଣଧର୍ମ ଉପରେ ପଡ଼ିଥିବା ସମ୍ଭବପର ।

ରାମ ଯେତେବେଳେ ଦଣ୍ଡକାରଣ୍ୟସ୍ଥ ଜନସ୍ଥାନ ଅଞ୍ଚଳକୁ ଆସିଲେ, ସେତେବେଳେ ସେ ନାନା ଗୋଷ୍ଠୀର ବହୁସଂଖ୍ୟକ ତପସ୍ୱୀଙ୍କୁ ଦେଖିବାକୁ ପାଇଲେ । ସେମାନଙ୍କ ତପଃସାଧନର ମାର୍ଗ ଥିଲା ଭିନ୍ନ ଭିନ୍ନ । ଗୋଟିଏ ଗୋଷ୍ଠୀର ତପସ୍ୱୀ ଥିଲେ, ଯେଉଁମାନଙ୍କୁ କୁହାଯାଉଥିଲା 'ସଂପ୍ରକ୍ଷାଳ' । ସେମାନେ ଗୋଟିଏ

ବେଳା ଖାଉଥିଲେ ଏବଂ ଖାଇସାର ବାସନ-କୁସନ ମାଜ ରଖି ଦେଉଥିଲେ; ଆର
ବେଳା ପାଇଁ କିଛୁ ହେଲେ ଖାଦ୍ୟ ରଖୁ ନଥିଲେ । ଆଉ ଗୋଟିଏ ଗୋଷ୍ଠୀର
ତପସ୍ୱୀଙ୍କୁ କୁହାଯାଉଥିଲା 'ମରୀଚପ' । ସେମାନେ ସୂର୍ଯ୍ୟ-କିରଣ କିମ୍ବା ଚନ୍ଦ୍ର-
କିରଣ ପିଇ ବଞ୍ଚିରହୁଥିଲେ; ଆଉ କୌଣସି ଖାଦ୍ୟ ଖାଉନଥିଲେ । ପୁଣି ଗୋଟିଏ
ଗୋଷ୍ଠୀର ତପସ୍ୱୀଙ୍କୁ କୁହାଯାଉଥିଲା 'ଅଶ୍ମକୁଟ୍ଟ' । ସେମାନେ କଞ୍ଚା ଖାଦ୍ୟ-
ଦ୍ରବ୍ୟକୁ ପଥରରେ କୁଟିକରି ଖାଉଥିଲେ । 'ପତ୍ରାହାର' ବୋଲି ଆଉ ଗୋଟିଏ
ଗୋଷ୍ଠୀର ତପସ୍ୱୀ ଥିଲେ । ସେମାନେ କେବଳ ପତ୍ର ଖାଇ ଜୀବନ-ଧାରଣ
କରୁଥିଲେ । ଦାନ୍ତକୁ ଉଲୁଖଳ ବା ଶିଳପୁଆ ଭଳି ବ୍ୟବହାର କରୁଥିବା ଆଉ
ଗୋଟିଏ ଗୋଷ୍ଠୀର ତପସ୍ୱୀ ଥିଲେ । ସେମାନଙ୍କୁ କୁହାଯାଉଥିଲା 'ଦନ୍ତୋଲୂଖଳୀ' ।
ସେମାନେ ଦାନ୍ତରେ ପେଷି ସବୁ ଖାଦ୍ୟ ଖାଉଥିଲେ; ଆଉ କୌଣସି ପେଷଣ-
ବ୍ୟବହାର କରୁନଥିଲେ କିମ୍ବା ଖାଇବାରେ ହାତକୁ ବି ବ୍ୟବହାର କରୁନଥିଲେ ।
'ଉନ୍ମଜ୍ଜକ' ଗୋଷ୍ଠୀର ତପସ୍ୱୀମାନେ କଣ୍ଠ ପର୍ଯ୍ୟନ୍ତ ପାଣିରେ ବୁଡ଼ିରହି ତପସ୍ୟା
କରୁଥିଲେ । ଆଉ ଗୋଟିଏ ଗୋଷ୍ଠୀର ତପସ୍ୱୀଙ୍କୁ କୁହାଯାଉଥିଲା 'ଗାତ୍ରଶଯ୍ୟ' ।
ସେମାନେ ଶରୀରକୁ ଶଯ୍ୟା ଭାବରେ ବ୍ୟବହାର କରୁଥିଲେ; ଖଟ, ମସିଣା ଆଦି
ଅନ୍ୟ କୌଣସି ଶଯ୍ୟା ଲୋଡ଼ୁ ନଥିଲେ । ସେମାନେ ମୁଣ୍ଡ ତଳେ ହାତ ଦେଇ
ଶୋଉଥିଲେ । ପୁଣି ଗୋଟିଏ ପ୍ରକାର ତପସ୍ୱୀଙ୍କୁ କୁହାଯାଉଥିଲା 'ଅଶଯ୍ୟ' ।
ସେମାନେ ଆଦୌ ଶୋଉନଥିଲେ । 'ଅନବକାଶିକ' ବୋଲି ଆଉ ଗୋଟିଏ
ଗୋଷ୍ଠୀର ତପସ୍ୱୀ ଥିଲେ । ସେମାନେ ନିରନ୍ତର ସତ୍‌କର୍ମରେ ଲାଗି ରହୁଥିବା
ଫଳରେ ସେମାନଙ୍କୁ ଅବକାଶ ମିଳୁ ନଥିଲା । 'ସଲିଳାହାର' ଗୋଷ୍ଠୀର
ତପସ୍ୱୀମାନେ କେବଳ ପାଣି ପିଇ ବଞ୍ଚି ରହୁଥିଲେ । କେବଳ ପବନ ପିଇ
ବଞ୍ଚି ରହୁଥିବା ତପସ୍ୱୀଙ୍କୁ କୁହାଯାଉଥିଲା 'ବାୟୁଭକ୍ଷୀ' । ଖୋଲା ପଡ଼ିଆରେ
ଆକାଶ ତଳେ ରହୁଥିବା ତପସ୍ୱୀଙ୍କୁ କୁହାଯାଉଥିଲା 'ଆକାଶନିଳୟ' । ଆଉ
କେତେକ ତପସ୍ୱୀ ଥିଲେ ଯେଉଁମାନେ ସଦାବେଳେ ବେଦୀ ଉପରେ ଶୋଉଥିଲେ ।
ସେମାନେ 'ସ୍ଥଣ୍ଡିଳଶାୟୀ' ନାମରେ ଖ୍ୟାତ ଥିଲେ । ଆଉ ଗୋଟିଏ
ଗୋଷ୍ଠୀର ତପସ୍ୱୀଙ୍କୁ କୁହାଯାଉଥିଲା 'ଊର୍ଦ୍ଧ୍ୱବାସୀ' । ସେମାନେ ପର୍ବତ-ଶିଖର
ଅଥବା ଉଚ୍ଚ ସ୍ଥାନମାନଙ୍କରେ ରହୁଥିଲେ । 'ଦାନ୍ତ' ବୋଲି ଆଉ ଗୋଟିଏ
ଗୋଷ୍ଠୀର ତପସ୍ୱୀ ଥିଲେ । ସେମାନେ ମନ ଓ ଇନ୍ଦ୍ରିୟକୁ ସର୍ବଦା ସଂଯତ କରି
ରଖିଥିଲେ । ଆଉ ଗୋଟିଏ ଗୋଷ୍ଠୀର ତପସ୍ୱୀଙ୍କୁ କୁହାଯାଉଥିଲା 'ଆର୍ଦ୍ର-
ପଟବାସା' । ସେମାନେ ଓଦା ଲୁଗା ପିନ୍ଧୁଥିଲେ । 'ସଜପ' ବୋଲି ଆଉ
ଗୋଟିଏ ଗୋଷ୍ଠୀର ତପସ୍ୱୀ ଥିଲେ । ସେମାନେ ସର୍ବଦା ଜପରେ ରତ
ରହୁଥିଲେ । ଆଉ ଗୋଟିଏ ଗୋଷ୍ଠୀର ତପସ୍ୱୀଙ୍କୁ କୁହାଯାଉଥିଲା 'ତପୋନିଷ୍ଠ' ।

ସେମାନେ ଅତି ନିଷ୍ଠାର ସହିତ ତପସ୍ୟାରେ ରତ ରହୁଥିଲେ । 'ପଞ୍ଚାଗ୍ନି ସେବୀ' ବୋଲି ଆଉ ଗୋଟିଏ ଗୋଷ୍ଠୀର ତପସ୍ୱୀ ଥିଲେ । ସେମାନେ ପଞ୍ଚାଗ୍ନିର ସେବା କରୁଥିଲେ । ନିଜର ଚାରିପଟେ ନିଆଁ ଜାଳି ଏବଂ ମୁଣ୍ଡ ଉପରେ ସୂର୍ଯ୍ୟ-ତାପ ସହି ସେମାନେ ତପସ୍ୟା କରୁଥିଲେ । ରାମାୟଣର ବର୍ଣ୍ଣନା ଅନୁସାରେ (୩।୬।୨) ଏମାନେ ସମସ୍ତେ ଥିଲେ ବ୍ରହ୍ମନିଷ୍ଠ ତଥା ଏକାଗ୍ର ଯୋଗଯୁକ୍ତ (ସର୍ବେ ବ୍ରାହ୍ମ୍ୟା ଶ୍ରିୟା ଯୁକ୍ତା ଦୃଢ଼ଯୋଗସମାହିତାଃ) ।

ଏମାନଙ୍କ ବ୍ୟତୀତ ପୃଷ୍ଣି, ବାଲଖିଲ୍ୟ ଓ ବୈଖାନସ ଗୋଷ୍ଠୀର ତପସ୍ୱୀମାନେ ମଧ୍ୟ ରାମାୟଣ-ଯୁଗରେ ଥିଲେ । ଋଗ୍‌ବେଦର ୯ମ ମଣ୍ଡଳସ୍ଥ ୮୬ ତମ ସୂକ୍ତର ଦ୍ରଷ୍ଟା ହେଉଛନ୍ତି ଋଷି ପୃଷ୍ଣି । ରାମାୟଣ-କାଳୀନ ପୃଷ୍ଣିମାନେ ତାଙ୍କର ବଂଶଧର ହୋଇଥିବାର ସମ୍ଭାବନା ଅଛି । ବାଲଖିଲ୍ୟଗୋଷ୍ଠୀ ମଧ୍ୟ ଅନୁରୂପ ଭାବରେ ଋଗ୍‌ବେଦୀୟ ପ୍ରାଚୀନ ପରମ୍ପରା ଉପରେ ଅଧିଷ୍ଠିତ । ଋଗ୍‌ବେଦ ସମୟରେ ଏମାନେ ଥିଲେ ଏକ ବାଳକ-ଗୋଷ୍ଠୀର ଋଷି-ସମ୍ପ୍ରଦାୟ । ଏମାନେ ହେଉଛନ୍ତି ଋଗ୍‌ବେଦର ପରିଶିଷ୍ଟ ରୂପେ ପରିଚିତ ବାଲଖିଲ୍ୟ-ସୂକ୍ତର ଦ୍ରଷ୍ଟା । ରାମାୟଣକାଳୀନ ବାଲଖିଲ୍ୟ-ଗୋଷ୍ଠୀ ସେହି ସମ୍ପ୍ରଦାୟର ଦାୟାଦ ହୋଇଥିବେ ବୋଲି ମନେହୁଏ । ପ୍ରାଚୀନ ବୈଖାନସ ଶାସ୍ତ୍ରର ଅନୁବର୍ତ୍ତୀ ଥିବା ବୈଖାନସ-ଗୋଷ୍ଠୀର ବଂଶଧର ସ୍ୱରୂପ ରାମାୟଣ-କାଳୀନ ବୈଖାନସମାନେ ବିଦ୍ୟମାନ ଥିବେ ବୋଲି ଅନୁମାନ କରାଯାଏ । ଏମାନେ ଥିଲେ ବିଷ୍ଣୁ-ପୂଜକ । ପରବର୍ତ୍ତୀ କାଳରେ ଭାରତରେ ଯେଉଁ ଭାଗବତ-ପରମ୍ପରାର ସ୍ରଷ୍ଟାମାନେ ଆସିଥିଲେ, ଏମାନେ ହେଉଛନ୍ତି ସେମାନଙ୍କର ପୂର୍ବଜ । ଏବେ ମଧ୍ୟ ଦକ୍ଷିଣ ଭାରତର ଏକ ବୈଷ୍ଣବ ସମ୍ପ୍ରଦାୟକୁ 'ବୈଖାନସ' ବୋଲି କୁହାଯାଇଥାଏ ଏବଂ ସେମାନେ ନିଜକୁ ବୈଦିକ 'ବୈଖାନସ' ସମ୍ପ୍ରଦାୟର ଦାୟାଦ ବୋଲି ଦାବି କରନ୍ତି । ଏଥିରୁ ଅନୁମିତ ହୁଏ ଯେ ରାମାୟଣକାଳୀନ ତପସ୍ୱୀମାନଙ୍କ ଉପରେ ବୈଦିକ ପରମ୍ପରାର ପ୍ରଭାବ ସଂପୂର୍ଣ୍ଣ ରୂପେ ପଡ଼ିଥିଲା ।

### ଆଶ୍ରମର ନିର୍ମାଣ କୌଶଳ

ଆଶ୍ରମର ନିର୍ମାଣ କୌଶଳ ଥିଲା ଅତି ସରଳ । ସ୍ଥାନୀୟ ଅଞ୍ଚଳରେ ମିଳୁଥିବା ସାମଗ୍ରୀ ଦ୍ୱାରା ଏହା ନିର୍ମିତ ହେଉଥିଲା । ଗଛର ଡ଼ାଳ, ବାଉଁଶ, ବେତ, ଘାସ ଆଦିର ଉପଯୋଗ ଏଥିରେ କରାଯାଉଥିଲା । ଆଶ୍ରମର ଦୁଇଟି ଭାଗ ଥିଲା । ବହିର୍ଭାଗଟିର ନାମ ଥିଲା 'ପର୍ଣ୍ଣକୁଟୀ' ଏବଂ ଅନ୍ତର୍ଭାଗଟିର ନାମ ଥିଲା 'ଉଟଜ' ᵃ । ପଞ୍ଚବଟୀରେ ରାମଙ୍କ ନିର୍ଦ୍ଦେଶରେ ଲକ୍ଷ୍ମଣ ଆଶ୍ରମଟିକୁ

ତୋଳାଇଥିଲେ । ଏହାର ବର୍ଣ୍ଣନା ଅତି ରୋଚକ ଭାବରେ ରାମାୟଣରେ (୩।୧୫।୨୦-୨୩) ବର୍ଣ୍ଣିତ । ସେହି ବର୍ଣ୍ଣନା ଅନୁସାରେ ଏହି ପର୍ଣ୍ଣଶାଳାଟି ଥିଲା ଖୁବ୍ ବିସ୍ତୃତ । ଲକ୍ଷ୍ମଣ ପ୍ରଥମେ ମାଟି ଚକଟି କାନ୍ଥ ତିଆରି କଲେ । ତା'ପରେ ସେ ଖୁବ୍ ଟାଣ ଖୁମ୍ବମାନ ଆଣି ପୋତିଲେ । ଖୁମ୍ବ ଉପରେ ସେ ବଡ଼ ବଡ଼ ବାଉଁଶ ଆଣି ସେଗୁଡ଼ିକୁ ତେରଛା କରି ରଖିଲେ । ବାଉଁଶ ଉପରେ ସେ ଶମୀ ବୃକ୍ଷର ଡାଳ ଆଣି ବିଛାଇ ଦେଲେ । ଏହି ଡାଳଗୁଡ଼ିକୁ ସେ ବାଉଁଶ-ଗୁଡ଼ିକ ସହିତ ଖୁବ୍ ଟାଣ କରି ବାନ୍ଧି ଦେଲେ । ତା'ପରେ ସେ ଏହା ଉପରେ ଖଡ଼-ଘାସ ଓ ପତ୍ର ଆଣି ବିଛାଇ ଦେଲେ ଏବଂ ଆଶ୍ରମର ଚଟାଣକୁ ସମତଳ କରିଦେଲେ । ଏହିପରି ଭାବରେ ବୀର ଲକ୍ଷ୍ମଣ ସୁନ୍ଦର ଭାବରେ ଆଶ୍ରମଟି ତିଆରି କଲେ । ଆଶ୍ରମର ଦେବତାଙ୍କୁ 'ବାସ୍ତୁସ୍ପତି' କୁହାଯାଉଥିଲା । ଆଶ୍ରମ-ପ୍ରବେଶ ପୂର୍ବରୁ ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ତାଙ୍କ ଉଦ୍ଦେଶ୍ୟରେ ପୂଜାର୍ଚ୍ଚନା କରିବାକୁ ପଡ଼ୁଥିଲା । ଏହାର ନାମ ଥିଲା ବାସ୍ତୁ-ପୂଜା । ରାମ ଏହି ବାସ୍ତୁ-ପୂଜା କରି ସାରିବା ପରେ ଯାଇ ଲକ୍ଷ୍ମଣ ଓ ସୀତାଙ୍କ ସହିତ ଆଶ୍ରମ ମଧ୍ୟରେ ପ୍ରବେଶ କଲେ । ଏହି ବାସ୍ତୁପୂଜାର ପରମ୍ପରା ଏବେ ମଧ୍ୟ ଭାରତୀୟମାନଙ୍କ ନିକଟରେ ମାନ୍ୟତା ପାଉଛି ।

ସାଧାରଣତଃ ଆଶ୍ରମଗୁଡ଼ିକ ସହରଠାରୁ ଦୂରରେ ଅରଣ୍ୟ ମଧ୍ୟରେ ନିର୍ଜନ ସ୍ଥାନ ଦେଖି ତିଆରି କରାଯାଉଥିଲା । ରାମାୟଣର ବର୍ଣ୍ଣନା ଅନୁସାରେ (୨।୮।୧୮; ୩।୧୮।୩) ଯେଉଁ ଜାଗାରେ ମାଛି, ମଶା ଓ ଡାଆଁସମାନଙ୍କର ପ୍ରାଦୁର୍ଭାବ ନଥିବ ଏବଂ ଯେଉଁ ଜାଗାରେ ଆଶ୍ରମର ନିତ୍ୟବ୍ୟବହାର୍ଯ୍ୟ ଜିନିଷମାନ ସହଜରେ ମିଳୁଥିବ, ସେହି ଜାଗାଟି ଆଶ୍ରମ ଲାଗି ନିରୂପିତ ହେଉଥିଲା । ରାମ ପଞ୍ଚବଟୀଠାରେ ଆଶ୍ରମ-ନିର୍ମାଣ କରିବାର ନିମ୍ନଲିଖିତ କାରଣମାନ ରାମାୟଣରେ (୩।୨୦।୪-୫) ଉଲ୍ଲିଖିତ

କ) ସେହି ଜାଗାର ଅରଣ୍ୟ ଖୁବ୍ ମନୋରମ ଥିଲା;

ଖ) ସେଠାରେ ସହଜରେ ପାଣି ମିଳୁଥିଲା ଏବଂ ସେହି ପାଣି ଥିଲା ସ୍ୱାସ୍ଥ୍ୟ ପ୍ରତି ହିତକର; ଏବଂ

ଗ) ସେଠାରେ ସମିଧ, ପୁଷ୍ପ ଓ କୁଶ ପ୍ରଚୁର ପରିମାଣରେ ମିଳୁଥିଲା ।

ଏହିସବୁ ନ୍ୟୂନତମ ଓ ସ୍ୱାସ୍ଥ୍ୟ ପକ୍ଷରେ ହିତକର ଜିନିଷଗୁଡ଼ିକ ମିଳୁଥିବା ଜାଗାରେ ତତ୍କାଳୀନ ଆଶ୍ରମଗୁଡ଼ିକ ଅତି ସରଳ, ନିରାଡ଼ମ୍ବର, ଓ ସୁନ୍ଦର ଭାବରେ ନିର୍ମିତ ହେଉଥିଲା । ଏଗୁଡ଼ିକ ସାଧାରଣତଃ ହ୍ରଦ କୂଳରେ କିମ୍ବା ନଦୀ କୂଳରେ ନିର୍ମିତ ହେଉଥିଲା । ଶର୍ମାଙ୍କ ଭାଷାରେ :

The period of the Ramayana represents the heyday of the asramas, which were spread in a continuous chain along the banks of rivers (or lakes) from North to South. (୧୦)

ଭରଦ୍ୱାଜଙ୍କ ଆଶ୍ରମ ଥିଲା ଗଙ୍ଗା ଓ ଯମୁନାର ସଙ୍ଗମ-ସ୍ଥଳ ପ୍ରୟାଗଠାରେ । ଗଙ୍ଗାର କୂଳେ କୂଳେ ଆଉ ଅନେକ ଋଷିଙ୍କ ଆଶ୍ରମ ମଧ୍ୟ ଥିଲା ବୋଲି ରାମାୟଣରେ ବର୍ଣ୍ଣିତ । ରାମ ମଧ୍ୟ ଗୋଦାବରୀ ନଦୀ କୂଳରେ ପଞ୍ଚବଟୀରେ ତାଙ୍କ ଆଶ୍ରମ ସ୍ଥାପନ କରିଥିଲେ । ମତଙ୍ଗ ମୁନିଙ୍କ ଆଶ୍ରମ ଥିଲା ପମ୍ପା ହ୍ରଦର ତୀରବର୍ତ୍ତୀ ଅଞ୍ଚଳରେ । ତାଙ୍କ ଦେହତ୍ୟାଗ ପରେ ତାଙ୍କ ଶିଷ୍ୟା ଶବରୀ ମଧ୍ୟ ସେହି ଆଶ୍ରମରେ ରହୁଥିଲେ ।

**ପରିବେଶ**

ପୂର୍ବରୁ କୁହାଯାଇଛି ଆଶ୍ରମମାନ କିପରି ସୁନ୍ଦର ସୁନ୍ଦର ଜାଗା ଦେଖି ନଦୀକୂଳ କିମ୍ବା ହ୍ରଦକୂଳରେ ନିର୍ମିତ ହେଉଥିଲା । ଆଶ୍ରମର ଆରଣ୍ୟକ ପରିବେଶ ତାହାର ସୌନ୍ଦର୍ଯ୍ୟକୁ ଖୁବ୍ ବଢ଼ାଇ ଦେଉଥିଲା । ରାମ ନିଜେ ଚିତ୍ରକୂଟ ପର୍ବତ ଓ ସ୍ୱଚ୍ଛସଲିଳା ମନ୍ଦାକିନୀର ସାନ୍ନିଧ୍ୟରେ ଆସି ଏଭଳି ଆନନ୍ଦ ବିଭୋର ହୋଇ ଉଠିଥିଲେ ଯେ ତାଙ୍କୁ ଅଯୋଧ୍ୟାନଗରର ରମଣୀୟ ଦୃଶ୍ୟ ଅତି ତୁଚ୍ଛ ବୋଧ ହୋଇଥିଲା । ତାଙ୍କ କଣ୍ଠରେ ବାଲ୍ମୀକି ସୀତାଙ୍କ ଉଦ୍ଦେଶ୍ୟରେ କୁହାଇଛନ୍ତି

> ଦର୍ଶନଂ ଚିତ୍ରକୂଟସ୍ୟ ମନ୍ଦାକିନ୍ୟାଶ୍ଚ ଶୋଭନେ ।
> ଅଧିକଂ ପୁରବାସାଚ୍ଚ ମନ୍ୟେ ତବ ଚ ଦର୍ଶନାତ୍ ॥ (୧୧)

ଅଗୋ ସୁନ୍ଦରି ! ଏଠାରେ ତ ଚିତ୍ରକୂଟ ଓ ମନ୍ଦାକିନୀର ଦର୍ଶନ ମିଳୁଛି । ଏଠାରେ ନିରନ୍ତର ତୁମର ଦର୍ଶନ ବି ମିଳୁଛି । ସେହି କାରଣରୁ ଅଯୋଧ୍ୟା-ନଗରରେ ବାସ ଅପେକ୍ଷା ଏଠାକାର ବାସ ମତେ ଅଧିକ ସୁଖକର ବୋଧ ହେଉଛି । ଖାଲି ସେତିକି ନୁହେଁ, ମନ୍ଦାକିନୀ ନଦୀକୁ ନିଜର ପ୍ରିୟସଖୀ ବୋଲି ମନେ କରି ତାହାର ଜଳରେ ପ୍ରମୁଦିତ ମନରେ କ୍ରୀଡ଼ା କରିବା ପାଇଁ ରାମ ସୀତାଙ୍କୁ ଆଉ ଠାଏ (୨।୯୫।୧୪) ପରାମର୍ଶ ଦେଇଛନ୍ତି । ଏହିଭଳି ସୁନ୍ଦର ସୁନ୍ଦର ସ୍ଥାନମାନ ବାଛି ତପସ୍ୱୀମାନେ ସେମାନଙ୍କ ଆଶ୍ରମ ନିର୍ମାଣ କରୁଥିଲେ ।

ଆଶ୍ରମରେ ବ୍ୟକ୍ତି ପକ୍ଷରେ 'ବିବିକ୍ତବାସୀ' ବା 'ନିର୍ଜନବାସୀ' ହୋଇ ରହିବା ଥିଲା ନିତାନ୍ତ ବାଞ୍ଛନୀୟ । ତେଣୁ ନଗରଠାରୁ ଦୂରରେ ଅରଣ୍ୟ ମଧ୍ୟରେ

ଅତି ନିର୍ଜନ ସ୍ଥାନ ଦେଖି ଆଶ୍ରମ-ନିର୍ମାଣ କରାଯାଉଥିଲା । ରାମ ତାଙ୍କ ବନବାସ ସମୟରେ ଜନବସତିଠାରୁ ଦୂରରେ ରହିବାକୁ ପସନ୍ଦ କରୁଥିଲେ । ତେଣୁ ସୁଗ୍ରୀବ ତାଙ୍କୁ ଅନୁରୋଧ କଲେ ମଧ୍ୟ ସେ ସେହି ସମୟରେ କିଷ୍କିନ୍ଧାରେ ପ୍ରବେଶ କରିବାକୁ ମନା କରିଦେଇଥିଲେ । ବିବିକ୍ତବାସ ଓ ଜନସମାଜଠାରୁ ଦୂରରେ ବାସ ଯେ ଜ୍ଞାନର ଏକ ଏକ ସାଧନ ତାହା ଉପରେ ଗୀତା ମଧ୍ୟ (୧୩।୧୧) ଗୁରୁତ୍ୱ ଦେଇଥାଏ । ଚିତ୍ରକୂଟ ଥିଲା ଜନବସତିଠାରୁ ଦୂରରେ । ତେଣୁ ସେଠାରେ ଅନେକ ତପସ୍ୱୀ ସେମାନଙ୍କ ରମଣୀୟ ଆଶ୍ରମମାନ ରଚନା କରି ରହୁଥିଲେ । ରାମ ବନବାସ ସମୟରେ ପ୍ରଥମେ ସେହି ଅଞ୍ଚଳକୁ ଯାଇ ମୁନି-ଋଷିମାନଙ୍କ ଆଶ୍ରମ ପରିଦର୍ଶନ କରିଥିଲେ ଏବଂ ସେମାନଙ୍କୁ ସମ୍ମାନ ଜଣାଇଥଲେ । କିନ୍ତୁ ରାମଙ୍କ ପକ୍ଷେ ସେଠାରେ ଅଧିକ ଦିନ ରହିବା ସମ୍ଭବପର ହୋଇନଥିଲା । କାରଣ ତାହା ଅଯୋଧ୍ୟାର ନିକଟବର୍ତ୍ତୀ ହୋଇଥିବାରୁ ଭରତ ସେଠାକୁ ତାଙ୍କର ସେନାବାହିନୀ ସହିତ ଆସିଥିଲେ । ଦ୍ୱିତୀୟତଃ ସେଠାକାର ଭୂମି ଅସଂଖ୍ୟ ହାତୀ-ଘୋଡ଼ାଙ୍କ ବିଷ୍ଠା-ମୂତ୍ର ଦ୍ୱାରା ଅଶୁଦ୍ଧ ହୋଇଯାଇଥିଲା । ରାମ ତେଣୁ ସେହି ସ୍ଥାନକୁ ପରିତ୍ୟାଗ କରିଥିଲେ । ପରିବେଶର ଶୁଦ୍ଧତା ମଧ୍ୟ ଥିଲା ଆଶ୍ରମଜୀବନ ଲାଗି ଏକାନ୍ତ ବାଞ୍ଛନୀୟ ।

ତପସ୍ୱୀମାନେ ଏକତ୍ର କୁଟୀର ନିର୍ମାଣ କରି ରହୁଥିଲେ । ସେହି ସ୍ଥାନକୁ କୁହାଯାଉଥିଲା 'ଆଶ୍ରମମଣ୍ଡଳ' ବା 'ତପୋବନ' । ରାମ ଦଣ୍ଡକାରଣ୍ୟରେ ପ୍ରବେଶ କରି ଏହିପରି ଅନେକ 'ଆଶ୍ରମମଣ୍ଡଳ' ଦେଖିଥିବା କଥା ରାମାୟଣରେ (୩।୧।୧) ବର୍ଣ୍ଣିତ । ଆଶ୍ରମର ସବୁଠାରୁ ପବିତ୍ର ସ୍ଥାନ ଥିଲା 'ଅଗ୍ନିଶରଣ' ବା 'ଅଗ୍ନିଶାଳା' । ଏଠାରେ ହୋମ ଓ ଯଜ୍ଞ କରିବାଲାଗି ଏକ ବିସ୍ତୃତ ସ୍ଥାନ ଥିଲା । ଉତ୍ତର-ପୂର୍ବକୁ ମୁହାଁଇ କରି ତିଆରି ହୋଇଥିବା ବେଦୀ ଉପରେ ଅଗ୍ନିଙ୍କୁ ସଂସ୍ଥାପିତ କରାଯାଉଥିଲା । ଅତିଥିମାନଙ୍କ ଲାଗି ସ୍ୱତନ୍ତ୍ର ଭାବରେ ଅତିଥିଶାଳା ନିର୍ମିତ ହେଉଥିଲା । ଆଶ୍ରମର ପରିବେଶ ସମ୍ପର୍କରେ ରାମାୟଣରେ (୩।୧।୨-୮) ବିଶଦ ଭାବରେ ବର୍ଣ୍ଣିତ । ଆଶ୍ରମରେ କୁଶ ଓ ବଲ୍କଳ-ବସ୍ତ୍ର ବିସ୍ତୃତ ହୋଇ ରଖା ଯାଉଥିଲା । କୁଶର ଆବଶ୍ୟକତା ଥିଲା ଆସନ ନିମନ୍ତେ ଏବଂ ଯଜ୍ଞ-କର୍ମ ନିମିତ୍ତ । ଠିକ୍ ସେହିପରି ବଲ୍କଳ-ବସ୍ତ୍ରର ଆବଶ୍ୟକତା ଥିଲା ପରିଧେୟ ନିମିତ୍ତ । ବେଳେ ବେଳେ ଦୁର୍ଗମ ପଥରେ ମାର୍ଗଦର୍ଶନର କାର୍ଯ୍ୟ କରିବା ଲାଗି ବୃକ୍ଷଶାଖାରେ ବଲ୍କଳ-ବସ୍ତ୍ରଗୁଡ଼ିକୁ ବାନ୍ଧି ଦିଆ ଯାଉଥିଲା । ଭରତ ଏହିଭଳି ଚିହ୍ନ ଦେଖି ଚିତ୍ରକୂଟସ୍ଥ ରାମଙ୍କ ଆଶ୍ରମକୁ ବାଟ ପାଇପାରିଥିବା କଥା ରାମାୟଣରେ ଉଲ୍ଲିଖିତ । ମୁନି-ଋଷିମାନେ ଏଠାରେ ବ୍ରହ୍ମ-ବିଦ୍ୟାରେ ରତ ଥିଲେ । ଏହା ଫଳରେ ଏକ ବିଲକ୍ଷଣ ତେଜରେ ସାରା ଆଶ୍ରମମଣ୍ଡଳ ଉଦ୍ଭାସିତ

ହୋଇଉଠୁଥିଲା । ସୂର୍ଯ୍ୟମଣ୍ଡଳ ଆକାଶକୁ ପ୍ରଦୀପ୍ତ କରି ରଖିଲା ଭଳି ଏହି ତେଜ ଆଶ୍ରମଭୂମିକୁ ପ୍ରଦୀପ୍ତ କରି ରଖିଥିଲା । ଏହି ତେଜ ଏଭଳି ପ୍ରଖର ଓ ଜ୍ୱାଳାମୟୀ ଥିଲା ଯେ ରାକ୍ଷସମାନଙ୍କର ସେହି ଆଡ଼କୁ ଦେଖିବା ଥିଲା ଭାରି କଠିନ ବ୍ୟାପାର । ଏଠାରେ ସବୁ ପ୍ରାଣୀ ଶରଣ ପାଉଥିଲେ । ସେମାନଙ୍କ ମଧ୍ୟରେ ହିଂସ୍ର ଅଥବା ଅହିଂସ୍ର ସ୍ୱଭାବକୁ ନେଇ ଭେଦଭାବ ନଥିଲା । ଆହୁରି ସରଳ ଭାଷାରେ କହିବାକୁ ଗଲେ ସେଠାରେ ବାଘ ଓ ଛେଳି ଗୋଟିଏ ତୁଠରେ ପାଣି ପିଉଥିଲେ । ସେଠାକାର ଅଗଣା ସବୁବେଳେ ପରିଷ୍କାର-ପରିଚ୍ଛନ୍ନ (ସୁସମ୍ମାର୍ଜିତ ସଦା) ରହୁଥିଲା । ସେଠାରେ ବହୁସଂଖ୍ୟକ ବନ୍ୟପଶୁ ଥିଲେ ଏବଂ ପକ୍ଷିମାନଙ୍କର କାକଳିରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠୁଥିଲା । ଆଶ୍ରମମଣ୍ଡଳର ଦୃଶ୍ୟ ଥିଲା ଖୁବ୍ ମନୋରମ । ତେଣୁ ସ୍ୱର୍ଗର ଅପ୍ସରାମାନେ ସେଥିପ୍ରତି ଆକୃଷ୍ଟ ହୋଇ ସେଠାରେ ବିଚରଣ କରୁଥିଲେ । ବଡ଼ ବଡ଼ ଅଗ୍ନିଶାଳା, ସ୍ରୁବ ଆଦି ଯଜ୍ଞ-ପାତ୍ର, ମୃଗଚର୍ମ, ସମିଧ, କୁଶ, ଜଳପୂର୍ଣ୍ଣ କଳଶ, ଫଳ-ମୂଳ ଆଦି ଏହାର ଶୋଭାକୁ ବଢ଼ାଉଥିଲା । ସ୍ୱାଦିଷ୍ଟ ଫଳ ଦେଉଥିବା ବଡ଼ ବଡ଼ ବୃକ୍ଷ ଦ୍ୱାରା ଏହି ସ୍ଥାନ ଭରପୂର ଥିଲା । ଏଠାରେ ନିତ୍ୟ ବଳିବୈଶ୍ୱଦେବ ଓ ହୋମର ପୂଜନ-ପ୍ରକ୍ରିୟା ଚାଲୁଥିଲା ଏବଂ ବେଦମନ୍ତ୍ରସମୂହର ପବିତ୍ର ତଥା ଉଦାତ୍ତ ଧ୍ୱନିରେ ଗଗନ-ପବନ ପ୍ରକମ୍ପିତ ହୋଇଉଠୁଥିଲା । ଆଶ୍ରମସ୍ଥ ସରୋବରରେ ପଦ୍ମଫୁଲ ଫୁଟିଉଠୁଥିଲା ଏବଂ ତୀର ଦେଶରେ ବିଭିନ୍ନ ପ୍ରକାର ଫୁଲ ଭରପୂର ରହୁଥିଲା । ଆଶ୍ରମ-ମଣ୍ଡଳରେ ପ୍ରବୀଣ ଋଷିମାନେ ନିବାସ କରି ରହୁଥିଲେ । ସେମାନଙ୍କ ପରିଧାନ ଥିଲା କୃଷ୍ଣସାର ମୃଗର ଚର୍ମ ଏବଂ ଆହାର ଥିଲା ଫଳ-ମୂଳ । ସେମାନେ ଥିଲେ ଜିତେନ୍ଦ୍ରିୟ ପୁରୁଷ ଏବଂ ସୂର୍ଯ୍ୟଙ୍କ ଭଳି ତେଜସ୍ୱୀ । ସେଠାରେ ଥିବା ମହର୍ଷିମାନେ ଥିଲେ ସଂଯତାହାରୀ । ସେମାନଙ୍କ କଣ୍ଠରୁ ନିରନ୍ତ ବେଦ-ଧ୍ୱନି ଉଚ୍ଚରିତ ହେଉଥିଲା । ଏହା ଦ୍ୱାରା ସେହି ସ୍ଥାନଟି ବେଦଧ୍ୱନିରେ ଗୁଞ୍ଜରିତ ହେଉଥିବା ବ୍ରହ୍ମାଙ୍କ ଧାମ ଭଳି ଶୋଭା ପାଉଥିଲା । ଅତ୍ରି ମୁନିଙ୍କ ଆଶ୍ରମର ବର୍ଣ୍ଣନା ପ୍ରସଙ୍ଗରେ ଠାଏ (୨।୯୯।୧୬) କୁହାଯାଇଛି; "କପୋତାଙ୍ଗାରୁଣୋ ଧୂମୋ ଦୃଶ୍ୟତେ ପବନୋଦ୍ଧତଃ ।" ଅର୍ଥାତ୍ ପବନର ବେଗରେ ଉପରକୁ ଉଠୁଥିବା କପୋତକଣ୍ଠ ଭଳି ଶ୍ୟାମବର୍ଣ୍ଣର ଧୂଆଁ ଦେଖାଯାଉଛି । ରାତ୍ର୍ୟାଗମର ସୂଚନା ଦେବାକୁ ଯାଇ ଏହି ଆଶ୍ରମର ଦୃଶ୍ୟ ସମ୍ପର୍କରେ କୁହାଯାଇଛି ଯେ ରାତ୍ରିଚର ପ୍ରାଣୀମାନେ ସବୁଆଡ଼େ ବିଚରଣ କରୁଛନ୍ତି । ଏହି ତପୋବନର ମୃଗମାନେ ପୁଣ୍ୟକ୍ଷେତ୍ର ସ୍ୱରୂପ ଆଶ୍ରମ-ବେଦୀର ବିଭିନ୍ନ ଭାଗରେ ଶୋଇ ରହିଛନ୍ତି । ଦିବା ଓ ରାତ୍ରି ଉଭୟ ଲଗ୍ନରେ ଆଶ୍ରମର ପରିବେଶ ଶାନ୍ତ-କମନୀୟ ପ୍ରତୀତ ହେଉଥିଲା ।

ଏହା ଥିଲା ଦଣ୍ଡକାରଣ୍ୟସ୍ଥ ଆଶ୍ରମ-ମଣ୍ଡଳର ପରିବେଶ । ସ୍ଥୂଳତଃ ଏହି ପ୍ରକାର ସ୍ଥିତି ପ୍ରାୟ ସବୁ ଆଶ୍ରମରେ ଥିଲା । ଏଠାରେ ମାନବ-ଜୀବନକୁ ଦୋଷ-ଦୁଷ୍ଟ କରାଉଥିବା କାମ, କ୍ରୋଧ, ଈର୍ଷ୍ୟା ଆଦିର ଲେଶମାତ୍ର ଚିହ୍ନବର୍ଣ୍ଣ ନଥିଲା । ସବୁରି ମୁଖମଣ୍ଡଳ ଥିଲା ପ୍ରଶାନ୍ତ ଓ ହସ ହସ । ସମସ୍ତେ ଥିଲେ ନିଶ୍ଚିନ୍ତ ଓ ନିରୁଦ୍‌ବିଗ୍ନ । ଦୈନନ୍ଦିନ ଆବଶ୍ୟକତାର ପରିପୂର୍ତ୍ତି ଲାଗି ଆବଶ୍ୟକ ସାମଗ୍ରୀମାନ ପ୍ରଚୁର ପରିମାଣରେ ମିଳୁଥିବାରୁ କାହାରି ମନରେ ଭବିଷ୍ୟତ୍ ଲାଗି ଉଦ୍‌ବିଗ୍ନତା ଆଣି ସଞ୍ଚୟ-ମନୋବୃତ୍ତି ଜାଗ୍ରତ ହେଉନଥିଲା । ସେଠାରେ ଭୌତିକ ଧନ ପାଇଁ କେହି ଆଗ୍ରହୀ ନଥିଲେ; କାରଣ ସମସ୍ତେ ଥିଲେ ତପୋଧନରେ ଧନୀ । ସମସ୍ତେ ଆଧ୍ୟାତ୍ମିକତାର ଶୀର୍ଷରେ ଝଟକି ଉଠୁଥିଲେ । ସଂକ୍ଷେପରେ କହିବାକୁ ଗଲେ ସାରା ଆଶ୍ରମମଣ୍ଡଳକୁ ପ୍ରଶାନ୍ତ ଓ ପବିତ୍ରତା ଛାଇ ଦେଇଥିଲା । ଏଭଳି ଶୁଦ୍ଧ-ପୂତ ପ୍ରଶାନ୍ତ ପରିବେଶ ଆଶ୍ରମବାସୀମାନଙ୍କୁ ଆଧ୍ୟାତ୍ମିକ ସାଧନାର ମାର୍ଗରେ ଆଗେଇଯିବା ପାଇଁ ଯଥେଷ୍ଟ ଅନୁପ୍ରେରିତ କରୁଥିଲା । ମୁନି-ଋଷିମାନେ ରାତି ହେଲେ ଅଗ୍ନିହୋତ୍ର ଓ ସ୍ୱାଧ୍ୟାୟ ପରେ ଶିଷ୍ୟମାନଙ୍କ ଗହଣରେ ବସି ସେମାନଙ୍କୁ ନାନା ପ୍ରକାର ସୁନ୍ଦର ସୁନ୍ଦର କଥା ମାଧ୍ୟମରେ ଧର୍ମୋପଦେଶ ଦେଉଥିଲେ (ପ୍ରପନ୍ନା ରଜନୀ ପୁଣ୍ୟା ଚିତ୍ରାଃ କଥୟତଃ କଥାଃ) । (୧୧-କ)

## ସଂଯତ ତଥା ଶୃଙ୍ଖଳିତ ଜୀବନ

ଆଶ୍ରମଜୀବନ ଥିଲା ସୁଶୃଙ୍ଖଳିତ ତଥା ସୁସଂଯତ । ଏହି ଶୃଙ୍ଖଳା ଓ ସଂଯମକୁ କେହି ଆଶ୍ରମବାସୀ ମୁନି-ଋଷିମାନଙ୍କ ଉପରେ ଜୋରଜବରଦସ୍ତ କରି ଲଦି ଦେଇ ନଥିଲେ । ସେମାନେ ତ ଥିଲେ ପୂର୍ଣ୍ଣ ସ୍ୱାଧୀନ; ତେଣୁ ସେମାନଙ୍କ ଉପରେ କେହି ବଳପ୍ରୟୋଗ କରି କୌଣସି କାର୍ଯ୍ୟ କରାଇ ନେବାର ଅବକାଶ ହିଁ ନଥିଲା । ସେମାନେ କେବଳ ଥିଲେ ଧର୍ମର ଅଧୀନ । କେବଳ ଧର୍ମ ହିଁ ସେମାନଙ୍କ ଜୀବନକୁ ନିୟନ୍ତ୍ରିତ କରୁଥିଲା । ସେମାନେ ତାହା ଛଡ଼ା ଆଉ କାହାରି ଅଧୀନତା ସ୍ୱୀକାର କରୁନଥିଲେ । ସେମାନେ ସ୍ୱେଚ୍ଛାରେ ସରଳ, ନିରାଡ଼ମ୍ବର ଓ କୃଚ୍ଛ୍ର ଜୀବନ ବିତାଉଥିଲେ । ଶର୍ମାଙ୍କ ଭାଷାରେ

> The life of an ascetic was a voluntary choice for hardships. His main object was to accustom his body to the severest disciplines and vows and for that purpose he had evolved for himself a strenuous routine. (୧୨)

ସେମାନଙ୍କଠାରେ ଯେଉଁ ଶକ୍ତି ଥିଲା ଏବଂ ସମାଜରେ ସେମାନଙ୍କର ଯେଉଁ ପ୍ରତିପତ୍ତି ତଥା ପ୍ରଭାବ ଥିଲା, ତାହା ଫଳରେ ସେମାନେ ଚାହିଁଥିଲେ ସବୁ କିଛି ଭୋଗୈଶ୍ୱର୍ଯ୍ୟ ପାଇ ପାରିଥାନ୍ତେ । କିନ୍ତୁ ସେମାନେ ସ୍ୱେଚ୍ଛାରେ ସେସବୁକୁ ତ୍ୟାଗ କରିଥିଲେ । ଏ ପ୍ରକାର ତ୍ୟାଗ ବାସ୍ତବିକ ଅନନ୍ୟ ।

ଭରତ ଯେତେବେଳେ ପ୍ରୟାଗସ୍ଥିତ ଭରଦ୍ୱାଜଙ୍କ ଆଶ୍ରମକୁ ସୈନ୍ୟବାହିନୀ ସହିତ ଆସିଥିଲେ, ସେତେବେଳେ ସେ ମୁନିଙ୍କ ଦ୍ୱାରା ସାଡ଼ମ୍ବର ଅତିଥି-ସତ୍କାରରେ ଆପ୍ୟାୟିତ ହୋଇଥିଲେ । ରାଜକୀୟ ଢଙ୍ଗରେ ତାଙ୍କର ଯେଉଁ ଅତିଥି-ସେବା ହୋଇଥିଲା, ସେଥିରେ ଦିବ୍ୟ ବସ୍ତ୍ର, ଭୋଜନ, ଶଯ୍ୟା, ଆସନ ଆଦିର ଉପଯୋଗ କରାଯାଇଥିବା କଥା ଏବଂ ମନୋରଞ୍ଜନ ଉଦ୍ଦେଶ୍ୟରେ ସଙ୍ଗୀତଜ୍ଞ ଓ ନର୍ତ୍ତକୀମାନଙ୍କର ଆଗମନ ହୋଇଥିବା କଥା ରାମାୟଣରେ (୨।୯୧।୩୨-୩୫) ଅତି ରୋଚକ ଭାବରେ ବର୍ଣ୍ଣିତ । ବ୍ୟାସଙ୍କ ଭାଷାରେ କହିବାକୁ ଗଲେ

> ସ୍ୱୟଂ ସମସ୍ତ ବୈଭବପୂର୍ଣ୍ଣ ଆତିଥ୍ୟ ପ୍ରମାଣିତ କରତା ହୈ କି ମହର୍ଷି ଭରଦ୍ୱାଜ ଆଶ୍ରମବର୍ତ୍ତୀ ହୋକେ ଭୀ ଆବଶ୍ୟକତାନୁସାର କିତନେ ବିବିଧ ପ୍ରକାର କେ ସୁଖ-ସାଧନ ଜୁଟା ସକତେ ଥେ । (୧୩)

ଭରଦ୍ୱାଜ ଅନ୍ୟମାନଙ୍କ ପାଇଁ ଏଭଳି ସୁଖ-ସାଧନ ଜୁଟାଇ ପାରୁଥିଲେ । କିନ୍ତୁ ସେ ନିଜେ ଅତି ସରଳ ଓ ନିରାଡ଼ମ୍ବର ଜୀବନ ବିତାଉଥିଲେ । ଅନ୍ୟମାନଙ୍କ ଲାଗି ଯଥେଚ୍ଛା ବିଳାସର ବ୍ୟବସ୍ଥା କରି ପାରୁଥିଲେ । କିନ୍ତୁ ନିଜେ ଥିଲେ ସଂଯତ । ସବୁ ତପସ୍ୱୀ ଅଳ୍ପ-ବହୁତ ଏହିପରି ସରଳ ଓ ନିରାଡ଼ମ୍ବର ଜୀବନ ବିତାଉଥିଲେ । ସେମାନଙ୍କ ଦୈନନ୍ଦିନ ଜୀବନ ଏଭଳି ଶୃଙ୍ଖଳାବଦ୍ଧ ଥିଲା ଯେ ସେଥିରୁ ବିଚ୍ୟୁତ ହେବାର ଅବକାଶ ହିଁ ନଥିଲା । ଉଭୟ ଆଚାର ଓ ବିଚାରରେ ସେମାନେ ଥିଲେ ଶୁଦ୍ଧପୂତ । ଏହି ନୈତିକ ବଳରେ ବଳୀୟାନ୍ ହୋଇ ତେଣୁ ମହର୍ଷି ବାଲ୍ମୀକି ସେ ଦିନ ସୀତାଙ୍କ ସତୀତ୍ୱକୁ ବଜାୟ ରଖିବା ଉଦ୍ଦେଶ୍ୟରେ ରାମଙ୍କ ଆଗରେ ତାଙ୍କ ଦରବାରରେ ଉଦ୍‌ଘୋଷଣା କରି କହିଥିଲେ

> ମନସା କର୍ମଣାବାଚା ଭୂତପୂର୍ବଂ ନ କିଲ୍‌ବିଷମ୍ ।
> ତସ୍ୟାହଂ ଫଳମଶ୍ନାମି ଅପାପା ମୈଥିଲୀ ଯଦି । (୧୪)

ଅର୍ଥାତ୍ ମୁଁ ମନରେ, ବାଣୀରେ କିମ୍ବା କ୍ରିୟାରେ ପୂର୍ବରୁ କିଛି ପାପ କରିନାହିଁ । ଯଦି ମୈଥିଳୀନନ୍ଦିନୀ ସତୀ ନିଷ୍ପାପ ଥାଆନ୍ତି, ତା'ହେଲେ ମୋ'ର ସେହି ପାପଶୂନ୍ୟ ପୁଣ୍ୟକର୍ମର ଫଳ ମିଳୁ । ରାମାୟଣୀୟ ତପସ୍ୱୀ କେବଳ ଜ୍ଞାନୀ ନଥିଲେ, ସେ ମଧ୍ୟ ଥିଲେ ସୁସଂସ୍କୃତ । ଜ୍ଞାନ ବ୍ୟକ୍ତିତ୍ୱକୁ ବଢ଼ାଇ ନଥାଏ; ବରଂ ସଂସ୍କୃତି

ତାହାକୁ ବଢ଼ାଇ ଥାଏ । ଜ୍ଞାନ ଓ ସଂସ୍କୃତି ମଧ୍ୟରେ ଏହି ସୂକ୍ଷ୍ମ ପାର୍ଥକ୍ୟଟିକୁ ଦର୍ଶାଇବାକୁ ଯାଇ ରାଧାକୃଷ୍ଣନ୍ ଯଥାର୍ଥରେ କୁହନ୍ତି

Mere knowledge which gratifies curiosity is different from culture which refines personality. (୧୪-କ)

ରାମାୟଣୀୟ ତପସ୍ୱୀ ଏହି ସୁମହାନ୍ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ସେଥିପାଇଁ ସେ ସାରା ସମାଜର ଥିଲେ ପୂଜାସ୍ପଦ । ସକଳ ଶକ୍ତି, ସକଳ ଐଶ୍ୱର୍ଯ୍ୟର ଅଧିକାରୀ ସମ୍ରାଟ୍‌ମାନଙ୍କର ମସ୍ତକ ବି ସେମାନଙ୍କ ଆଗରେ ନଇଁ ଯାଉଥିଲା ।

ରାମାୟଣରେ ତପସ୍ୱୀଙ୍କ ଦୈନନ୍ଦିନ ଜୀବନଧାରା ଅତି ରୋଚକ ଭାବରେ ବର୍ଣ୍ଣିତ । ତାଙ୍କୁ ବ୍ରାହ୍ମ ମୁହୂର୍ତ୍ତରେ ଶଯ୍ୟାତ୍ୟାଗ କରିବାକୁ ପଡ଼ୁଥିଲା । ତତ୍‌ପରେ ସେ ପାଖରେ ଥିବା ହ୍ରଦ କିମ୍ବା ନଦୀକୁ ସ୍ନାନ କରିବା ପାଇଁ ଯାଉଥିଲେ । ବଲ୍‌କଲ ଓ କଳଶ ଧରି ତାଙ୍କର ଜଣେ ଶିଷ୍ୟ ତାଙ୍କୁ ଅନୁଗମନ କରୁଥିଲେ । ସେ ସ୍ନାନ ସାରି ସୂର୍ଯ୍ୟୋଦୟର ପୂର୍ବରୁ ଆଶ୍ରମକୁ ଫେରି ଆସୁଥିଲେ । ସେତେବେଳେ ତାଙ୍କ ବଲ୍‌କଲ-ବସ୍ତ୍ରରୁ ଝପ୍ ଝପ୍ ହୋଇ ପାଣି ଖସି ତଳେ ପଡ଼ୁଥିବା କଥାର ବର୍ଣ୍ଣନା ରାମାୟଣରେ (୩।୩।୨୭, ୧।୪୪।୨୪) ଦେଖିବାକୁ ମିଳିଥାଏ । ରାମାୟଣର ଆଉ ଗୋଟିଏ ସ୍ଥାନର ବର୍ଣ୍ଣନା ଅନୁଯାୟୀ (୨।୧୦୮।୧୮) ତାଙ୍କୁ ଦିନକୁ ତିନି ଥର ସ୍ନାନ କରିବାକୁ ପଡ଼ୁଥିଲା । ପ୍ରଥମ ସ୍ନାନଟି ଥିଲା ସୂର୍ଯ୍ୟୋଦୟର ଅବ୍ୟବହିତ ପୂର୍ବରୁ; ଦ୍ୱିତୀୟ ସ୍ନାନଟି ଥିଲା ମଧ୍ୟାହ୍ନ ସମୟରେ; ଏବଂ ତୃତୀୟ ସ୍ନାନଟି ଥିଲା ସୂର୍ଯ୍ୟାସ୍ତର ଅବ୍ୟବହିତ ପୂର୍ବରୁ । ସ୍ନାନ ପରେ ତାଙ୍କୁ ସୂର୍ଯ୍ୟଙ୍କୁ ନମସ୍କାରପୂର୍ବକ ସନ୍ଧ୍ୟାର୍ଚ୍ଚନା କରିବାକୁ ପଡ଼ୁଥିଲା । ଏହି ତିନୋଟି ହେଉଛି କାଳର ସନ୍ଧି-ଲଗ୍ନ । ତେଣୁ ଏହି ସମୟର ପୂଜାକୁ କୁହାଯାଏ ସଂଧ୍ୟା-ପୂଜା । ସ୍ନାନ ସମୟରେ ନଦୀଜଳରେ ଦଣ୍ଡାୟମାନ ଥାଇ ତାଙ୍କୁ ପିତୃଗଣଙ୍କ ଉଦ୍ଦେଶ୍ୟରେ ତର୍ପଣ କରିବାକୁ ପଡ଼ୁଥିଲା ଏବଂ ଗାୟତ୍ରୀ-ମନ୍ତ୍ର ଜପ କରିବାକୁ ପଡ଼ୁଥିଲା । ଏ କଥା ମନେ ରଖିବାକୁ ହେବ ଯେ ଏହି ଗାୟତ୍ରୀ-ମନ୍ତ୍ର ହେଉଛି ସବିତାଦେବଙ୍କ ଲାଗି ଉଦ୍ଦିଷ୍ଟ । ରାମାୟଣର ଆଉ ଗୋଟିଏ ସ୍ଥାନରେ (୩।୧୪।୯) କୁହାଯାଇଛି ଯେ ନଦୀର ଏକ ନିର୍ଜନ କୋଣରେ ସେ ଦେବତାମାନଙ୍କ ଉଦ୍ଦେଶ୍ୟରେ ସୁଗନ୍ଧଯୁକ୍ତ ପୁଷ୍ପ ଅର୍ପଣ କରୁଥିଲେ ।

ତପସ୍ୱୀ ଥିଲେ ଜଣେ ନିଷ୍ଠାପର ଅଗ୍ନିହୋତ୍ରୀ । ତେଣୁ ସେ ଅତି ନିଷ୍ଠାର ସହିତ ଆଶ୍ରମସ୍ଥ ଅଗ୍ନିହୋତ୍ରର ସଂରକ୍ଷଣ କରୁଥିଲେ । ସ୍ନାନ ପରେ ଉଭୟ ସକାଳେ ଓ ସନ୍ଧ୍ୟାରେ ତାଙ୍କୁ ଅଗ୍ନିହୋତ୍ର-କର୍ମ କରିବାକୁ ପଡ଼ୁଥିଲା ବୋଲି

ରାମାୟଣରେ ଆଉ ଠାଏ (୧।୪୮।୩୯-୪୦) ବର୍ଣ୍ଣିତ । ସେତେବେଳେ ତାଙ୍କୁ ଦେବତାମାନଙ୍କ ଉଦ୍ଦେଶ୍ୟରେ ତଥା ପିତୃଗଣଙ୍କ ଉଦ୍ଦେଶ୍ୟରେ 'ହବି' ଅର୍ପଣ କରିବାକୁ ପଡ଼ୁଥିଲା । ଏହି ହବି ଥିଲା ଘୃତ ତଥା ବନ୍ୟ ଚାଉଳର ଭାତ । ଏହି ଚାଉଳର ନାମ ଥିଲା 'ଶ୍ୟାମାକ' ବା 'ନୀବାର' । ଏହି ଅନ୍ନକୁ କୁହାଯାଉ- ଥିଲା ମୁନି-ଅନ୍ନ । କାରଣ ଏହି ଅନ୍ନ ହିଁ ଥିଲା ମୁନିମାନଙ୍କର ଖାଦ୍ୟ । ଏ ତ ଗଲା ଦୈନିକ ହୋମ କଥା । ଏତଦ୍‌ବ୍ୟତୀତ ପର୍ବକାଳରେ (ଅମାବାସ୍ୟାରେ ଓ ପୂର୍ଣ୍ଣିମାରେ) ତାଙ୍କୁ ବିଶିଷ୍ଟ ହୋମ ମଧ୍ୟ ସମ୍ପାଦନ କରିବାକୁ ପଡ଼ୁଥିଲା । ରାମାୟଣର ଭାଷାରେ (୩।୧୧।୧୩) ଏହି ହୋମର ନାମ ହେଉଛି 'ପର୍ବକାଳ- ହୋମ' । ଅମାବାସ୍ୟାରେ କରାଯାଉଥିବା ହୋମର ନାମ ହେଉଛି 'ଦର୍ଶ' ଏବଂ ପୂର୍ଣ୍ଣିମାରେ କରାଯାଉଥିବା ହୋମର ନାମ ହେଉଛି 'ପୌର୍ଣ୍ଣମାସ' ।

ତପସ୍ୱୀଙ୍କୁ ଖରା, ବର୍ଷା, ଶୀତ ସବୁ ଋତୁରେ କୃଚ୍ଛ୍ର ସାଧନାରେ ରତ ରହିବାକୁ ପଡ଼ୁଥିଲା । ସବୁ ପ୍ରକାର ଜଳବାୟୁକୁ ତାଙ୍କ ଦେହ ସହୁଯାଉଥିଲା ଏବଂ ତାଙ୍କଠାରେ ଜଳବାୟୁର ପରିବର୍ତ୍ତନରେ ସାମାନ୍ୟତମ ଭାବରେ ବି ବିକାର- ଭାବ ଦେଖାଯାଉଥିଲା । ତାଙ୍କ ମନର ଦୃଢ଼ତା ସହିତ ତାଳ ଦେଇ ଶରୀରର ଦୃଢ଼ତା ମଧ୍ୟ ଆସିଯାଇଥିଲା । ଶର୍ମାଙ୍କ ଭାଷାରେ :

> In fact, the entire life of the ascetic was subjected to extreme rigours. He acclimatised himself to the roughness of weather···In the asrama of Vasistha and among the big host of ascetics in Dandakaranya, Valmiki has mentioned several ascetics, who had wonderfully adapted themselves to one or the other type of rigour. (୧୫)

ତପସ୍ୱୀ ଇହଲୋକର ସୁଖକୁ ବର୍ଜନ କରି ପରଲୋକର ସୁଖ ପାଇଁ ଥିଲେ ସତତ ଉଦ୍ୟମଶୀଳ । ବାସ୍ତବରେ ତାଙ୍କର କର୍ତ୍ତବ୍ୟ ଥିଲା ସାଂସାରିକ ବିଷୟ ପ୍ରତି ମୋହଭାବ ନ ରଖିବା ଏବଂ ସାଂସାରିକ କାମନା-ବାସନାଠାରୁ ଦୂରରେ ରହିବା । ଏ. ଏଲ୍. ବାସମ୍‌ଙ୍କ ଭାଷାରେ

> The ascetic should set his whole mind on unworldiy things. (୧୫-କ)

ରାମାୟଣୀୟ ତପସ୍ୱୀ ଥିଲେ ଠିକ୍ ଏହି ମନୋଭାବର ବଶବର୍ତ୍ତୀ । ଆଧ୍ୟାତ୍ମିକ ଚିନ୍ତାଧାରା ମଧ୍ୟରେ ତାଙ୍କ ଜୀବନ ଅତିବାହିତ ହେଉଥିଲା ଏବଂ ସାଂସାରିକ ସୁଖକୁ ସେ ଅତି

ରୁଛ୍ଛ ମଣୁଥିଲେ । ସୁଶୃଙ୍ଖଳ ଓ ସୁସଂଯତ ଜୀବନ ବିତାଇବା ଦ୍ୱାରା ହିଁ ଏହା ସମ୍ଭବ ପାରୁଥିଲା ।

ଖାଦ୍ୟ ଓ ପରିଧାନରେ ସଂଯମ ରକ୍ଷା କରିବା ସଂଯତ ଓ ଶୃଙ୍ଖଳିତ ଜୀବନର ଆଉ ଦୁଇଟି ବିଶିଷ୍ଟ ବିଭବ । କାରଣ ଏହି ଦୁଇଟିରେ ଆଡ଼ମ୍ବର ଆସିଗଲେ କିମ୍ବା ଏହି ଦୁଇଟିର ରୁଚିକରତା ଲାଗି ଅଯଥା ମୋହ ଆସିଗଲେ ବ୍ୟକ୍ତିର ସରଳ ଜୀବନ-ଯାପନ ବ୍ୟାହତ ହୋଇଥାଏ । ରାମାୟଣୀୟ ତପସ୍ୱୀ ଏହି ଦୁଇଟି ଦିଗ ପ୍ରତି ଯଥୋଚିତ ସଂଯତ ଭାବ ଦର୍ଶାଉଥିବାର ନିଦର୍ଶନ ଆମେ ରାମାୟଣରେ ପାଇଥାଉଁ । ବ୍ୟାସ ଏହି କଥାଟି ଉପରେ ଗୁରୁତ୍ୱ ଦେବାକୁ ଯାଇ କହିଛନ୍ତି

> ସଂଯମିତ ଜୀବନ କେ ଅନୁରୂପ ତପସ୍ୱିୟୋଂ କା ବେଶ ଭୀ ବିରଲ ଔର୍ ବନ୍ୟ ସାମଗ୍ରୀ ସେ ନିର୍ମିତ ହୋତା ଥା । କୁଶ-ଚୀର, କୃଷ୍ଣମୃଗ-ଚର୍ମ ତଥା ପେଡ଼ୋଂ କୀ ଛାଲ୍ ଉନକେ ବସନ ଥେ । (୧୬)

ଗଛର ଛାଲକୁ ବସ୍ତ୍ର ରୂପେ ବ୍ୟବହାର କରୁଥିବାର ସଙ୍କେତ ଆମେ ରାମାୟଣର ଅନେକତ୍ର ଦେଖିବାକୁ ପାଇଥାଉଁ । ଗୋଟିଏ ସ୍ଥାନରେ ଥିବା (୨।୨୮।୧୩) 'ବଲ୍‌କଲାମ୍ବରଧାରଣମ୍' ପଙ୍‌କ୍ତିଟିକୁ ଏହାର ଏକ ନିଦର୍ଶନ ରୂପେ ନିଆଯାଇପାରେ । ଗଛର ଛାଲ ମଧ୍ୟ ଉତ୍ତରୀୟ ଭାବରେ ବ୍ୟବହୃତ ହେଉଥିଲା । ତାହାର ନିଦର୍ଶନ ଆମେ ପାଇବା ରାମାୟଣରେ (୨।୯୫।୬) ଆଉ ଗୋଟିଏ ପଙ୍‌କ୍ତିରେ ଯେଉଁଠି କୁହାଯାଇଛି 'ବଲ୍‌କଲୋତ୍ତରବାସସଃ' । ମୃଗ-ଚର୍ମ ଅଧୋବସ୍ତ୍ରର କାମ ଦେଉଥିଲା । ବେଳେ ବେଳେ ତପସ୍ୱୀମାନେ ସୂତାଲୁଗା ମଧ୍ୟ ପିନ୍ଧୁଥିଲେ । ତାହା ଗେରୁ ରଙ୍ଗର ଥିଲା ବୋଲି (କାଷାୟପରିଧାନଃ) ରାମାୟଣ କହିଥାଏ । (୧୭)

ତପସ୍ୱୀଙ୍କର ଆବଶ୍ୟକତା ଥିଲା ନ୍ୟୂନତମ । ତାଙ୍କର ନିତ୍ୟବ୍ୟବହାର୍ଯ୍ୟ ଜିନିଷଗୁଡ଼ିକ ହେଲା ବୃସୀ (ଉଦୁମ୍ବର କାଠରେ ତିଆରି ଆସନ), ବୃଷ୍ଣ (ଘାସରେ ତିଆରି ଆସନ), ଚୀର (ଘାସରେ ତିଆରି ଲୁଗା), ଜଟାବନ୍ଧନ (ଜଟା ବାନ୍ଧିବାର ଡ଼ୋରି), କଳଶ, କୃଷ୍ଣାଜିନ (କୃଷ୍ଣସାର ମୃଗର ଛାଲ), କମଣ୍ଡଳୁ, କୌପୀନ, କୁଠାର, କଷାୟ ବସ୍ତ୍ର, କାଷ୍ଠ-ରଜ୍ଜୁ (କାଠ ବାନ୍ଧିବାର ଦଉଡ଼ି), କାଷ୍ଠଘର, ମୌଞ୍ଜୀ (ମୁଞ୍ଜ ଘାସରେ ତିଆରି ଲୁଗା), ଗଛର ଛାଲି, ଯଜ୍ଞସୂତ୍ର (ପଇତା), ଓ ଯଜ୍ଞ-ଭାଣ୍ଡ (ଯଜ୍ଞରେ ଉପଯୋଗ ଲାଗି ବାସନ) । ଯେଉଁଠି ଯାହା ମିଳୁଥିଲା ତପସ୍ୱୀ ତାହା ଖାଉଥିଲେ । ତାଙ୍କର ଖାଦ୍ୟପାନୀୟରେ କିଛି ହେଲେ ଆଡ଼ମ୍ବର ନଥିଲା । ଆଶ୍ରମ-ଜୀବନର କୃଚ୍ଛ୍ରତା ବିଷୟରେ ରାମ ସୀତାଙ୍କୁ ଠାଏ ସାବଧାନ କରିଦେଇ କହିଛନ୍ତି :

"ଯଥାଲବ୍‌ଧେନ ସନ୍ତୋଷଃ କର୍ତ୍ତବ୍ୟସ୍ତେନ ମୈଥିଲି ।" (୧୭-କ)

ଅର୍ଥାତ୍ ଆଗୋ ମିଥିଳାନନ୍ଦନ ! (ଏଠାରେ) ଯେଉଁଠି ଯାହା ମିଳିବ ତାହା ଖାଇ ସନ୍ତୁଷ୍ଟ ରହିବାକୁ ହେବ । ସେ ମୁଣ୍ଡରେ ଜଟା ବାନ୍ଧିଥିଲେ ଏବଂ ନଖ ଓ ଦାଢ଼ି ରଖୁଥିଲେ । ତାଙ୍କ ସ୍କନ୍ଧରେ ଯଜ୍ଞୋପବୀତ ଥିଲା ପ୍ରଲମ୍ବିତ । ଏହାର ଅନ୍ୟ ନାମ ଥିଲା 'ବ୍ରହ୍ମସୂତ୍ର' । ସେ କଟୋଉ ପିନ୍ଧୁଥିଲେ ଏବଂ ଦଣ୍ଡ-କମଣ୍ଡଳୁ ଧାରଣ କରୁଥିଲେ । ବସ୍ତୁତଃ ତପସ୍ୱୀମାନେ ଜୀର୍ଣ୍ଣଶୀର୍ଣ୍ଣ ତଥା ଲୋମଶତଚର୍ମ ରୂପ ଧାରଣ କରୁଥିଲେ ବୋଲି ରାମାୟଣରେ ଠାଏ (୩।୧।୫୦) ବର୍ଣ୍ଣିତ । ସେମାନେ ଶାରୀରିକ ଦୃଷ୍ଟିରୁ ଜୀର୍ଣ୍ଣ-ଶୀର୍ଣ୍ଣ ଦିଶୁଥିଲେ ମଧ୍ୟ ଆଧ୍ୟାତ୍ମିକ ତେଜ ଦ୍ୱାରା ଥିଲେ ଉଦ୍ଭାସିତ । ତେଣୁ ସେମାନଙ୍କ ବ୍ୟକ୍ତିତ୍ୱର ଝଟକ ଜମା ଊଣା ଦିଶୁନଥିଲା । ସେମାନଙ୍କ ହୃଦୟ ସବୁ ଜୀବଙ୍କ ପ୍ରତି କରୁଣାରେ ଉଚ୍ଛୁଳି ଉଠୁଥିଲା । ଆରଣ୍ୟକ ପଶୁ-ପକ୍ଷୀମାନେ ମଧ୍ୟ ସେମାନଙ୍କଠାରେ ଆଶା ଓ ବିଶ୍ୱାସ ସ୍ଥାପନ କରିପାରୁଥିଲେ ବୋଲି ରାମାୟଣ (୨।୫୮।୧୩) କହିଥାଏ ।

ଆଶ୍ରମ-ଜୀବନରେ ଶିଷ୍ଟାଚାରର ଶୃଙ୍ଖଳା ଥିଲା ଖୁବ୍ ଦୃଢ଼ । ଉଭୟ ଆଶ୍ରମବାସୀ ଓ ଆଶ୍ରମକୁ ବାହାରୁ ଆସୁଥିବା ବ୍ୟକ୍ତିମାନେ ଏହି ଶିଷ୍ଟାଚାରର ଦୃଢ଼ ଶୃଙ୍ଖଳାକୁ ଗଭୀର ସମ୍ମାନ ଦେଖାଉଥିଲେ । ଆଶ୍ରମ-ଜୀବନରେ ସର୍ବଦା ଭଦ୍ର ବ୍ୟବହାର ହିଁ ଥିଲା କାମ୍ୟ । ତହିଁରେ ଥଟ୍ଟା-ତାମସା ବା ହାସ-ପରିହାସ ଥିଲା ସର୍ବଥା ବର୍ଜନୀୟ । ରାମ ମାୟାମୃଗରୂପୀ ମାରୀଚକୁ ମାରି ଆଶ୍ରମକୁ ଫେରି ଆସିଛନ୍ତି । ସେଠାରେ ଆଶ୍ରମରେ ସେ ସୀତାଙ୍କୁ ଦେଖିବାକୁ ପାଇନାହାନ୍ତି । ତାଙ୍କୁ ବହୁତ ଖୋଜାଖୋଜି କରିଛନ୍ତି । ତାଙ୍କର ଧାରଣା ହୋଇଛି ଯେ ସୀତା ବୋଧହୁଏ କୌତୁକ ଦେଖାଇବା ଉଦ୍ଦେଶ୍ୟରେ କେଉଁଠି ଲୁଚି ରହିଛନ୍ତି । ଆଶ୍ରମ-ଜୀବନରେ ଏତେଟା କୌତୁକତା, ଏତେଟା ଥଟ୍ଟା-ପରିହାସ ଜମା ଶୋଭା ପାଏ ନାହିଁ । ସେ ତେଣୁ କହିଛନ୍ତି

ବିଶେଷେଣାଶ୍ରମସ୍ଥାନେ ହାସୋଽୟଂ ନ ପ୍ରଶସ୍ୟତେ ।
ଅବଗଚ୍ଛାମି ତେ ଶୀଳଂ ପରିହାସପ୍ରିୟଂ ପ୍ରିୟେ ॥ (୧୮)

ଅର୍ଥାତ୍ ଆଗୋ ପ୍ରିୟେ ତୁମର ସ୍ୱଭାବ ଯେ ପରିହାସପ୍ରିୟ ସେ କଥା ମୁଁ ଜାଣିଛି । ଆଶ୍ରମରେ କିନ୍ତୁ ଏତେଟା ହାସ-ପରିହାସ ଶୋଭା ପାଏନାହିଁ । ରାମାୟଣର ଆଉ ଠାଏ ଆମେ ଦେଖୁଁ ଯେ (୩।୧।୧୦) ରାମ ଅତ୍ରି ମୁନିଙ୍କ ଆଶ୍ରମରେ ପ୍ରବେଶ କରିବା ପୂର୍ବରୁ ତାଙ୍କ ଧନୁର ଗୁଣକୁ କାଢ଼ି ଦେଇଥିଲେ (ବିଜ୍ୟଂ କୃତ୍ୱା ମହାବଳଃ) । ଏହାର ଥିଲା ଦୁଇଟି ଉଦ୍ଦେଶ୍ୟ । ପ୍ରଥମଟି ହେଲା ମୁନିଙ୍କୁ ସମ୍ମାନ ଦେଖାଇବା ଏବଂ ଦ୍ୱିତୀୟଟି ହେଲା ଆଶ୍ରମବାସୀ ଜୀବଜନ୍ତୁମାନଙ୍କୁ ଭୟରୁ ମୁକ୍ତ ରଖାଇବା ।

ଆଶ୍ରମର ଶାନ୍ତ ପରିବେଶ ଉପରେ ବାଧାପ୍ରାପ୍ତ ନହେବ ସେଥିପାଇଁ ଆଶ୍ରମବାସୀ ତଥା ବାହାରୁ ଆସୁଥିବା ଆଗନ୍ତୁକମାନେ ମଧ୍ୟ ଦୃଷ୍ଟି ଦେଉଥିଲେ । ରାମାୟଣରେ ସମାନ ଭାବରେ ଆଉ ଠାଏ (୨।୯୦।୧-୨) କୁହାଯାଇଛି ଭରତ ଉପରେ ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ପ୍ରବେଶ କରିବା ପୂର୍ବରୁ ତାଙ୍କ ସୈନ୍ୟସାମନ୍ତଙ୍କୁ ଦୂରରେ ରଖାଇ ଦେଇଥିଲେ ଏବଂ ନିଜର ରାଜକୀୟ ପୋଷାକ-ପରିଚ୍ଛଦକୁ କାଢ଼ିଦେଇ ସରଳ ଓ ନିରାଡ଼ମ୍ବର ପୋଷାକ ପିନ୍ଧିଥିଲେ । ଭରତଙ୍କର ଏଭଳି ବ୍ୟବହାର ମଧ୍ୟ ଦୁଇଟି ବିଷୟର ସୂଚନା ଦେଇଥାଏ । ପ୍ରଥମଟି ହେଲା ମୁନିଙ୍କୁ ସମ୍ମାନ ଦେଖାଇବା ଏବଂ ଦ୍ୱିତୀୟଟି ହେଲା ଆଶ୍ରମର ଶାନ୍ତ ପରିବେଶ ପ୍ରତି ସମଧିକ ସମ୍ମାନ ଦେଖାଇବା ।

ସାରା ଆଶ୍ରମମଣ୍ଡଳରେ ସତେ ଯେପରି ସଦାଚାର ସ୍ଥାଇହୋଇ ରହିଥିଲା । କାହାରି ମନରେ ହିଂସା, ଦ୍ୱେଷ, ଅସତ୍ୟ ଆଦି କଦାଚାର ପ୍ରତି ସ୍ପୃହା ନଥିଲା । ତାହାର ପରିବେଶ ଏତେ ପାବନ ଥିଲା ଯେ ତାହାର ସଂସ୍ପର୍ଶରେ ଆସିବା ମାତ୍ରେ ପାପୀ ଲୋକ ମଧ୍ୟ ପୁଣ୍ୟବାନ୍ ହୋଇ ଉଠୁଥିଲା—ମିଥ୍ୟାବାଦୀ ଲୋକ ମଧ୍ୟ ସତ୍ୟବାଦୀ ହୋଇ ଉଠୁଥିଲା । ଅଗସ୍ତ୍ୟଙ୍କ ଆଶ୍ରମର ପରିବେଶ କଥା ଏଠାରେ ବିଚାରକୁ ନିଆଯାଇପାରେ । ଏ ସଂପର୍କରେ ରାମାୟଣରେ କୁହାଯାଇଛି

ନାତ୍ର ଜୀବେନ୍ମୃଷାବାଦୀ କ୍ରୂରୋ ବା ଯଦି ବା ଶଠଃ ।
ନୃଶଂସୋ ପାପବୃତ୍ତୋ ବା ମୁନିରେବ ତଥାବିଧଃ ॥ (୧୯)

ଅର୍ଥାତ୍ ମୁନି (ଅଗସ୍ତ୍ୟ) ଏଭଳି ଥିଲେ ଯେ ଏଠାରେ (ସ୍ୱାଙ୍କ ଆଶ୍ରମରେ) କେହି ମିଥ୍ୟାବାଦୀ, କ୍ରୂର, ଶଠ, ନୃଶଂସ ଅଥବା ପାପାଚାରୀ ବ୍ୟକ୍ତି ଜୀବିତ ରହିପାରୁ-ନଥିଲେ । ତାଙ୍କ ପ୍ରଭାବରେ ଉପରେ ସମସ୍ତେ ସଂଯତାହାର କରି ଧର୍ମର ଆରାଧନା କରୁଥିଲେ ତାହା ପରବର୍ତ୍ତୀ ଶ୍ଲୋକଟିରେ ଉଲ୍ଲିଖିତ । ଏହାର ମର୍ମ ହେଲା "ଏଠାରେ ଧର୍ମର ଆରାଧନା କରିବା ନିମିତ୍ତ ଦେବତା, ଯକ୍ଷ, ନାଗ ଓ ପକ୍ଷୀ ନିୟମିତ ଆହାର କରି ରହୁଥିଲେ ।" ଅଗସ୍ତ୍ୟଙ୍କ ଆଶ୍ରମଙ୍କ ସ୍ଥିତି ଯାହା, ଅଳ୍ପ-ବହୁତ ପରିମାଣରେ ସବୁ ଆଶ୍ରମର ସ୍ଥିତି ପ୍ରାୟ ତାହା ହିଁ ଥିଲା । ସବୁଠାରେ ହିଁ ତପସ୍ୟା ସହିତ ଆତ୍ମସଂଯମ, ସଦାଚାର, ସତ୍ୟନିଷ୍ଠତା ଆଦି ସଦ୍‌ଗୁଣମାନ ନିଷ୍ଠାର ସହିତ ପାଳିତ ହେଉଥିଲା । ଏହି ମତର ପୁଷ୍ଟିସାଧନ କରିବାକୁ ଯାଇ ବ୍ୟାସ ଯଥାର୍ଥରେ କୁହନ୍ତି

> ତପସ୍ୟା କେ ଅନ୍ତର୍ଗତ ଆତ୍ମ-ସଂଯମ, ଆତ୍ମତ୍ୟାଗ, ଔର୍ କଷ୍ଟସହନ କେ ବିବିଧ ପ୍ରକାର କେ ବ୍ରତ ଆତେ ଥେ, ଜିନକା ଲକ୍ଷ୍ୟ ହୃଦୟ କୀ ବାସନାଓଁ କୋ ଦୂର କରନା ଥା । ତପସ୍ୟା କୀ ଅବଧି ମେଂ ତପସ୍ୱିୟୋଂ କୋ ଧର୍ମ-ପାଲନ, ବେଦୋଂ କା ସ୍ୱାଧ୍ୟାୟ, ନିୟତାହାର, ଇନ୍ଦ୍ରିୟ-ସଂଯମ, ସଦାଚାର, ସତ୍ୟ ଔର ସମାଧି କା ଅଭ୍ୟାସ କରନା ପଡ଼ତା ଥା । ତପସ୍ୟା ମେଂ ସଫଳତା ବହୁତ-କୁଛ ସ୍ଥାନ-ବିଶେଷ କୀ ପବିତ୍ରତା ପର ନିର୍ଭର ମାନୀ ଜାତୀ ଥୀ । (୨୦)

ତପସ୍ୟାର ଯେଉଁଭଳି ବର୍ଣ୍ଣନା ରାମାୟଣରେ ଦିଆଯାଇଛି ତହିଁରୁ ଆମେ ବୁଝିପାରିବା ଯେ ତାହା ଦ୍ୱାରା ଶରୀରକୁ ଖୁବ୍ କଷ୍ଟ ଦିଆଯାଉଥିଲା । ଏବେ ପ୍ରଶ୍ନ ହୋଇ-ପାରେ, ତପସ୍ୱୀମାନେ ଏଭଳି ସ୍ୱେଚ୍ଛାରେ କାହିଁକି କଷ୍ଟ ସହୁଥିଲେ ? ଏହାର ଏକମାତ୍ର ଉତ୍ତର ହେଉଛି, ସେମାନେ ଥିଲେ କାମନା-ବାସନାଠାରୁ ବହୁତ ଦୂରରେ । ସେମାନେ ମାନସିକ ସୁଖରେ ବଞ୍ଚିରହୁଥିଲେ, ଶାରୀରିକ ସୁଖରେ କିନ୍ତୁ ନୁହେଁ । ଏହି ତପସ୍ୟା ବିଷୟରେ ପ୍ରଶଂସାସୂଚକ ମନ୍ତବ୍ୟ ଦେବାକୁ ଯାଇ ସୁକୁମାରୀ ଭଟ୍ଟାଚାର୍ଯ୍ୟ ଯଥାର୍ଥରେ କହନ୍ତି

> It is not depicted as privation for it can be enjoyed if one has a mind attended to nature which vibrates at beauty and is content to live in love and peace. (୨୦-କ)

ଆଶ୍ରମର ତପୋନିଷ୍ଠ ଜୀବନର ଏହା ଥିଲା ବିପୁଳ ମହିମା । ତପସ୍ୟାର ବଳ ଯେ ଅତି ମହାନ୍ ଏ କଥା ରାମାୟଣୀୟ ତପସ୍ୱୀମାନେ ଭଲ ଭାବରେ ହୃଦୟଙ୍ଗମ କରିଥିଲେ । ତେଣୁ ସେହି ବଳରେ ବଳୀୟାନ୍ ହେବା-ପାଇଁ ସେମାନେ ସତତ ଉଦ୍ୟମରତ ଥିଲେ । ଜାଗତିକ ଧନ-ରତ୍ନଠାରୁ ତାହା ଥିଲା ଶ୍ରେଷ୍ଠତର ଧନ । ରାମାୟଣରେ ତେଣୁ ମୁନି-ଋଷିମାନଙ୍କୁ ଅନେକ ସ୍ଥାନରେ 'ତପୋଧନ', 'ତପୋନିଧି' ଆଦି ନାମରେନାମିତ କରାଯାଇଛି । ତପସ୍ୟାର ଅନନ୍ତ ସମ୍ଭାବନା ଉପରେ ଆଲୋକପାତ କରିବାକୁ ଯାଇ ରାଧାକୃଷ୍ଣନ୍ ଠାଏ କହିଛନ୍ତି

> It is through tapas, through the inward travail of the spirit, that anything great can be achieved.

> The Upanishad says that Supreme actualises mighty possibilities through tapas. (୨୧)

ସମାସ୍ତୁଣୀୟ ତପସ୍ୱୀମାନେ ଏହିଭଳି ତପଃର ଅଧିକାରୀ ହେବା ପାଇଁ ସର୍ବଦା ଉଦ୍ୟମଶୀଳ ଥିଲେ ଏବଂ ସେମାନଙ୍କ ମଧ୍ୟରୁ ଅନେକ ଏଥିରେ ସଫଳକାମ ହୋଇଥିଲେ । ମୋଟାମୋଟି ଭାବରେ ଏହା ହେଲା ସେମାନଙ୍କର ସଂଯତ ତଥା ଶୃଙ୍ଖଳିତ ଜୀବନ-ଚର୍ଯ୍ୟାର ଏକ ଆକଳନ ।

## ଆଶ୍ରମରେ ନାରୀ

ଭାରତୀୟ ସଂସ୍କୃତିର ଇତିହାସ ପର୍ଯ୍ୟାଲୋଚନା କଲେ ଆମେ ନାରୀର ସ୍ଥିତି ବିଷୟ ନେଇ ଏକ କ୍ରମିକ ଅବନତିର ଚିତ୍ର ଦେଖିବାକୁ ପାଇଥାଉଁ । ପ୍ରାଥମିକ ଖ୍ରୀଷ୍ଟାବ୍ଦମାନଙ୍କରେ ସୃଷ୍ଟ ହୋଇଥିବା ସ୍ମୃତି ଗ୍ରନ୍ଥମାନ ଅନୁଧ୍ୟାନ କରି ଆମେ ଜାଣିପାରୁଁ ଯେ ସେତେବେଳକୁ ନାରୀର ସାମାଜିକ ସ୍ଥିତି ବଡ଼ ଦୁର୍ବଳ ହୋଇ ଯାଇଥିଲା । ମୌର୍ଯ୍ୟ ଯୁଗରୁ ହିଁ (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) ଏଭଳି ସ୍ଥିତିର ଅସ୍ତୁମାରମ୍ଭ ହୋଇଥିଲା ଏବଂ ଭାରତୀୟ ସଂସ୍କୃତି ଓ ଗ୍ରୀସୀୟ ସଂସ୍କୃତିର ପାରସ୍ପରିକ ଯୋଗାଯୋଗ ଓ ସମ୍ମିଶ୍ରଣ ଫଳରେ ଏହି ସ୍ଥିତି ଆହୁରି ତ୍ୱରାନ୍ୱିତ ହୋଇ ଯାଇଥିଲା । କୌଟଲ୍ୟ ତାଙ୍କ ଅର୍ଥଶାସ୍ତ୍ରରେ ନାରୀ କେତେ ପରିମାଣର ସ୍ତ୍ରୀଧନ ନିଜ ଅଧୀନରେ ରଖିପାରିବ, ତାହାର ସୀମା ଧାର୍ଯ୍ୟ କରିଦେଇଥିଲେ । ତାଙ୍କ ମତରେ ନାରୀ ନିଜ ପାଖରେ ୨୦୦୦ ରୌପ୍ୟ ପର୍ଯ୍ୟନ୍ତ ଧନ ରଖିପାରିବ ଏବଂ ବାକି ଅର୍ଥ ତା'ର ସ୍ୱାମୀ ନ୍ୟାସୀ ହିସାବରେ ତା' ପାଇଁ ରଖିବେ । ଅଥଚ ପୁରୁଷର ସମ୍ପତ୍ତି ଲାଗି ସେପରି କିଛି ସୀମା ଧାର୍ଯ୍ୟ କରାଯାଇନାହିଁ । ନାରୀକୁ ପୁରୁଷଠାରୁ ନିମ୍ନତର ଶ୍ରେଣୀରେ ରଖାଯାଇଛି । ଏତଦ୍‌ବ୍ୟତୀତ ବିଭିନ୍ନ ଅପରାଧ ପାଇଁ ଦଣ୍ଡବିଧାନର ବ୍ୟବସ୍ଥା କରିବାରେ ନାରୀ ପ୍ରତି ପାତର-ଅନ୍ତର-ଭାବ ଦେଖାଯାଇଥିଲା । (୨୨) କିନ୍ତୁ ବୈଦିକ ଯୁଗରେ ସ୍ଥିତି ଥିଲା ଭିନ୍ନ । ସେତେବେଳେ ନାରୀ ପ୍ରାୟ ପୁରୁଷର ସମକକ୍ଷ ଥିଲା । ଉଭୟ ଉପନୟନ-ପ୍ରକ୍ରିୟା ମଧ୍ୟଦେଇ ଗତି କରୁଥିଲେ । ଅପାଳା, ଘୋଷା, ବିଶ୍ୱବାରା ଆଦି ଋଷିମାନେ ଅନେକ-ଗୁଡ଼ିଏ ବେଦମନ୍ତ୍ର ରଚନା କରିଥିବା କଥାଟି ଏହି ସ୍ଥିତିକୁ ପ୍ରମାଣିତ କରିଥାଏ । ଉପନିଷଦ-ଯୁଗରେ ମଧ୍ୟ ଗାର୍ଗୀଙ୍କ ଭଳି ବିଦୁଷୀ ନାରୀ ଥିଲେ ଯାହାଙ୍କୁ କି ଯୁକ୍ତିରେ ପରାସ୍ତ କରିବା ଯାଜ୍ଞବଲ୍‌କ୍ୟଙ୍କ ଭଳି ବ୍ରହ୍ମଜ୍ଞାନୀ ଋଷିଙ୍କ ପକ୍ଷରେ ଅସମ୍ଭବ ହୋଇ ଉଠିଥିଲା । ସେ ଗାର୍ଗୀଙ୍କ ପ୍ରଶ୍ନ-ବାଣ ଦ୍ୱାରା ବ୍ୟତିବ୍ୟସ୍ତ ହୋଇ ଶେଷରେ କହିଥିଲେ, "ଗାର୍ଗୀ ! ତୁମେ ଆଉ ଆଗକୁ ଆଗାଅ ନାହିଁ ।

ଯଦି ତାହା କରିବ, ତା'ହେଲେ ତୁମ ମୁଣ୍ଡ ଛିଣ୍ଡି ପଡ଼ିବ ।" ରାମାୟଣ ଯୁଗରେ ଅଳ୍ପ-ବହୁତ ପରିମାଣରେ ଏହି ପ୍ରକାର ସ୍ଥିତି ପ୍ରାପ୍ତ ଥିଲା । ଏଭଳି ପରିସ୍ଥିତିରେ ଯେଣୁ କୌଶଲ୍ୟା, କୈକେୟୀ, ସୀତା, ତାରା, ମନ୍ଦୋଦରୀ ଆଦି ବିଦୁଷୀ ମହିଳାମାନଙ୍କର ବିଦ୍ୱତ୍ତା ସମ୍ଭବ ପାରିଥିଲା । ଏ ସମ୍ପର୍କରେ ସବିଶେଷ ଆଲୋଚନା ପୂର୍ବବର୍ତ୍ତୀ ପରିଚ୍ଛେଦରେ କରାଯାଇଛି । ବର୍ତ୍ତମାନ ଆଶ୍ରମ-ଜୀବନରେ ନାରୀର ସ୍ଥିତି କିଭଳି ଥିଲା ତାହା ବିଚାର୍ଯ୍ୟ ।

ରାମାୟଣରେ ନାରୀମାନେ ତପସ୍ୱିତା-ବ୍ରତ ଆଚରଣ କରୁଥିବାର ଅନେକ ପ୍ରମାଣ ଆମେ ଦେଖିବାକୁ ପାଇଥାଉଁ । ଏଭଳି ନାରୀମାନଙ୍କୁ କୁହାଯାଉଥିଲା 'ତପସ୍ୱିନୀ' ବା 'ତାପସୀ' । କ୍ଷେତ୍ରବିଶେଷରେ ଏଭଳି ନାରୀଙ୍କୁ 'ଶ୍ରମଣୀ' ବୋଲି ମଧ୍ୟ କୁହାଯାଉଥିଲା । ପୁରୁଷମାନଙ୍କ ଭଳି ନାରୀମାନେ ମଧ୍ୟ କଠୋର ତପସ୍ୟାରେ ରତ ରହୁଥିଲେ । ଉଦାହରଣସ୍ୱରୂପ, ବେଦବତୀ ବିଷ୍ଣୁଙ୍କୁ ସ୍ୱାମୀ ରୂପରେ ପାଇବାର ଅଭିଳାଷ ରଖି କଠୋର ତପସ୍ୟା କରିଥିଲେ । ଆଉ ଏକ ଉଦାହରଣ ହେଉଛନ୍ତି ଅତ୍ରି-ପତ୍ନୀ ଅନସୂୟା । ରାମ ବନବାସ କାଳରେ ଅତ୍ରି ମୁନିଙ୍କ ଆଶ୍ରମକୁ ଯାଇଥିବା ଅବସରରେ ସେ (ଅତ୍ରି) ସ୍ୱପତ୍ନୀଙ୍କ ପରିଚୟ ଦେବାକୁ ଯାଇ କହିଥିଲେ

ତାମିମାଂ ସର୍ବଭୂତାନାଂ ନମସ୍କାର୍ଯ୍ୟାଂ ତପସ୍ୱିନୀମ୍ ।
ଅଭିଗଚ୍ଛତୁ ବୈଦେହୀ ବୃଦ୍ଧାଂ ଅକ୍ରୋଧନାଂ ସଦା ।" (୨୩)

ଅର୍ଥାତ୍ ଏଇ ସେ (ଅନସୂୟା) ହେଉଛନ୍ତି ବୃଦ୍ଧା । ସେ ସର୍ବଦା କ୍ରୋଧହୀନା ଥାଆନ୍ତି । ସେ ହେଉଛନ୍ତି ତପସ୍ୱିନୀ ଏବଂ ସବୁ ପ୍ରାଣୀଙ୍କର ନମସ୍କାରର ଯୋଗ୍ୟା । ବିଦେହନନ୍ଦିନୀ ସୀତା ତାଙ୍କ ପାଖକୁ ଯାଆନ୍ତୁ । ଖାଲି ସେତିକି ନୁହେଁ । ସେ ଆଉ ମଧ୍ୟ କହିଥିଲେ ଯେ (୨।୧୧୭।୧୦-୧୧) ଦଶ ହଜାର ବର୍ଷ ଧରି ସେ (ଅନସୂୟା) ସଂଯମର ସହିତ କଠିନ ତପସ୍ୟା କରିଥିଲେ (ଉଗ୍ରେଣ ତପସା ଯୁକ୍ତା ନିୟମୈଶ୍ଚାପ୍ୟଲଂକୃତାଃ । ଦଶବର୍ଷ ସହସ୍ରାଣି ଯୟା ତପ୍ତଂ ମହତ୍ତପଃ ।) ଏହି ପରିଚୟରୁ ଜଣାପଡୁଛି ଯେ ଅନସୂୟା ବଶିଷ୍ଠ, ବିଶ୍ୱାମିତ୍ର, ଆଦି ମହର୍ଷିମାନଙ୍କଠାରୁ କୌଣସି ଗୁଣରେ ଊଣା ନଥିଲେ । ତାଙ୍କୁ ଧର୍ମର ତତ୍ତ୍ୱ-ଜ୍ଞାନ ଭଲ ଭାବରେ ଜଣାଥିଲା । ରାମାୟଣରେ (୨।୧୧୯।୧୨) ଯେଣୁ ତାଙ୍କୁ 'ଧର୍ମଜ୍ଞା' ବୋଲି ଅଭିହିତ କରାଯାଇଛି । ତାଙ୍କୁ ଯେଉଁ ସିଦ୍ଧି ମିଳିଥିଲା, ତାହା ଥିଲା ଅପୂର୍ବ ତଥା ଅନନ୍ୟ । ଅନ୍ୟ ତପସ୍ୱୀ-ତପସ୍ୱିନୀଙ୍କ ପାଇଁ ତାହା

ଥିଲା ଦୁର୍ଲ୍ଲଭ । ସେ ସୀତାଙ୍କ ଉପରେ ପ୍ରୀତା ହୋଇ ତାଙ୍କୁ ମଳିନ ନପଡ଼ିବା ଭଳି ଦିବ୍ୟ ବସ୍ତ୍ର ଓ ଆଭୂଷଣମାନ ଉପହାରସ୍ୱରୂପ ଦେଇଥିଲେ । ତାଙ୍କର ଅନନ୍ୟ ସିଦ୍ଧିର ଫଳ ହିସାବରେ ସେ ଏଭଳି ଦିବ୍ୟ ସାମଗ୍ରୀଗୁଡ଼ିକର ଅଧିକାରିଣୀ ହୋଇପାରିଥିଲେ । ଏହି ଦୃଷ୍ଟିରୁ ଦେଖିଲେ ଅନସୂୟା ଥିଲେ ଜଣେ ଅସାଧାରଣ ଅଧ୍ୟାତ୍ମବାଦିନୀ ତପସ୍ୱିନୀ ।

ମତଙ୍ଗ ମୁନିଙ୍କ ଶିଷ୍ୟା ଶବରୀ ଥିଲେ ଆଉ ଜଣେ ତପସ୍ୱିନୀ । ଅନ୍ୟାନ୍ୟ ମୁନି-ଋଷିଙ୍କ ଭଳି ସେ ମଧ୍ୟ ମୁଣ୍ଡରେ ଜଟା ବାନ୍ଧୁଥିଲେ ଏବଂ 'ଚୀର' (ଘାସର ଲୁଗା) ଓ କୃଷ୍ଣସାର ମୃଗର ଛାଲ ପିନ୍ଧୁଥିଲେ । ରାମାୟଣସ୍ଥ (୩।୭୪।୩୨) 'ଚୀରକୃଷ୍ଣାଜିନାମ୍ବରା' ପଙ୍‌କ୍ତିଟି ତାଙ୍କର ଏବଂବିଧ ରୂପର ପରିଚାୟକ । ରାମାୟଣରେ ଆଉ ଠାଏ (୩।୭୪।୬) ତାଙ୍କୁ 'ସିଦ୍ଧା' ବୋଲି ଅଭିହିତ କରାଯାଇଛି । ଏହାର ତାତ୍ପର୍ଯ୍ୟ ହେଲା, ସେ ଆଧ୍ୟାତ୍ମିକ ସିଦ୍ଧିର ଅଧିକାରିଣୀ ହୋଇପାରିଥିଲେ । ଆଉ ଗୋଟିଏ ସ୍ଥାନରେ (୩।୭୪।୮) ତାଙ୍କୁ 'ଶ୍ରମଣୀଂ ଧର୍ମସଂସ୍ଥିତାଂ' ବୋଲି କୁହାଯାଇଛି । ସେ ଥିଲେ ଧର୍ମରେ ମତି ରଖିଥିବାର ଜଣେ ତପସ୍ୱିନୀ । ରାମଙ୍କ ସମ୍ମୁଖରେ ସେ ଅଗ୍ନିରେ ଆତ୍ମାହୁତି ଦେଇ ଆତ୍ମ-ସମାଧି ଲାଭ କରିଥିଲେ ଏବଂ ଦିବ୍ୟ ଦେହ ଧରି ସ୍ୱର୍ଗଧାମକୁ ଯାଇଥିଲେ । ଏହିସବୁ ସିଦ୍ଧି ସେ ଉଗ୍ର ତପସ୍ୟାବଳରେ ହିଁ ପାଇପାରିଥିଲେ ।

ଉପରୋକ୍ତ ଆଲୋଚନାରୁ ପ୍ରତୀତ ହୁଏ ଯେ ରାମାୟଣ-ଯୁଗରେ ତପସ୍ୱିତା କେବଳ ପୁରୁଷମାନଙ୍କ ମଧ୍ୟରେ ସୀମାବଦ୍ଧ ନଥିଲା । ଅନ୍ୟ ପକ୍ଷରେ ଏହାର ଦ୍ୱାର ନାରୀମାନଙ୍କ ପାଇଁ ମଧ୍ୟ ଉନ୍ମୁକ୍ତ ଥିଲା । ପୁରୁଷମାନଙ୍କ ଭଳି ନାରୀମାନେ ମଧ୍ୟ ଆଶ୍ରମପଦଗୁଡ଼ିକୁ ମଣ୍ଡନ କରୁଥିଲେ ।

## ରାଜଶକ୍ତି, ସମାଜ ଓ ଆଶ୍ରମ

ରାମାୟଣ-ଯୁଗରେ ରାଜଶକ୍ତି, ସମାଜ ଓ ଆଶ୍ରମ ମଧ୍ୟରେ ପାରସ୍ପରିକ ସମ୍ପର୍କ ଥିଲା ଖୁବ୍ ନିବିଡ଼ ତଥା ଦୃଢ଼ । ଆଶ୍ରମରେ ଥିବା ତପସ୍ୱୀମାନେ ଥିଲେ ଧର୍ମର ପ୍ରବକ୍ତା । କେଉଁ କର୍ମ ଧର୍ମର ଅନୁକୂଳ ସେଥି ନିମିତ୍ତ ସୁପରାମର୍ଶ ସେମାନଙ୍କଠାରୁ ମିଳୁଥିଲା । ସମାଜର ସମସ୍ତଙ୍କ ପ୍ରତି ସେମାନଙ୍କ କରୁଣାର ସ୍ରୋତସ୍ୱିନୀଟି ଉଚ୍ଛୁଳି ଉଠୁଥିଲା । ସେମାନେ ଯେଉଁ ଆଧ୍ୟାତ୍ମିକ ଚିନ୍ତନରେ ରତ ଥିଲେ ତାହାର ଲକ୍ଷ୍ୟ କେବଳ ନଥିଲା ସେମାନଙ୍କ ନିଜର ଅଭ୍ୟୁଦୟ ଘଟାଇବା, ବରଂ ତାହାର ଲକ୍ଷ୍ୟ ଥିଲା ସମସ୍ତଙ୍କର ଅଭ୍ୟୁଦୟ ଘଟାଇବା ।

ବ୍ୟାସଦେବ ମହାଭାରତରେ କୋଟି କୋଟି ଗ୍ରନ୍ଥର ସାରବସ୍ତୁକୁ ଗୋଟିଏ ମାତ୍ର ଶ୍ଳୋକାର୍ଦ୍ଧରେ ବତାଇବାକୁ ଯାଇ କହିଛନ୍ତି

ପରୋପକାରଃ ପୁଣ୍ୟାୟ ପାପାୟ ପରପୀଡ଼ନମ୍ ।

ଅର୍ଥାତ୍ ଅନ୍ୟର ଉପକାର କରିବା ହେଉଛି ପୁଣ୍ୟ ଏବଂ ଅନ୍ୟକୁ କଷ୍ଟ ଦେବା ହେଉଛି ପାପ । ରାମାୟଣୀୟ ତପସ୍ୱୀମାନଙ୍କ ଜୀବନରେ ଠିକ୍ ଏହି ଚିନ୍ତାଧାରାଟି କାର୍ଯ୍ୟରେ ରୂପାୟିତ ହେଉଥିଲା । ସେମାନେ ସମସ୍ତଙ୍କର ଭଲ ଚାହୁଁଥିଲେ ଏବଂ ସେଥିପାଇଁ ଦେଶର ଶାସକ ତଥା ସାମାଜିକ ଧର୍ମର ରକ୍ଷକ ରାଜଶକ୍ତି ସହିତ ସମନ୍ୱୟ ରକ୍ଷା କରୁଥିଲେ । ରାଜାମାନେ ମଧ୍ୟ ତପସ୍ୱୀମାନଙ୍କୁ ଏହି କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ସେତେବେଳେ ଆର୍ଯ୍ୟେତର ରାକ୍ଷସମାନଙ୍କ ପକ୍ଷରୁ ଆର୍ଯ୍ୟ ସଂସ୍କୃତିର କେନ୍ଦ୍ର ଭଳି ଥିବା ଆଶ୍ରମଗୁଡ଼ିକ ଉପରେ ବାରମ୍ବାର ବିପଦ ଆସୁଥିଲା । ସେମାନେ ମୁନି-ଋଷିମାନଙ୍କ ଯଜ୍ଞରେ ନାନା ପ୍ରକାର ବାଧା-ବିଘ୍ନ ଉପୁଜାଉଥିଲେ । ବିଶ୍ୱାମିତ୍ରଙ୍କ ଯଜ୍ଞରେ ଏଭଳି ବାଧାବିଘ୍ନ ଆସିବାରୁ ସେ ସାହାଯ୍ୟ ପାଇଁ ରାଜା ଦଶରଥଙ୍କ ଦ୍ୱାରସ୍ଥ ହୋଇଥିଲେ ଏବଂ ତାଙ୍କ ଅନୁରୋଧକ୍ରମେ ଦଶରଥ ତାଙ୍କ ଦୁଇ ପୁତ୍ର ରାମ ଓ ଲକ୍ଷ୍ମଣଙ୍କୁ ଯଜ୍ଞ-ରକ୍ଷା ଲାଗି ପଠାଇଥିଲେ । ସେ ଦୁହେଁ ବାହୁବଳରେ କିପରି ରାକ୍ଷସ-ଭୟ ନିବାରଣ କରି ବିଶ୍ୱାମିତ୍ରଙ୍କ ଯଜ୍ଞ-ରକ୍ଷା କରିଥିଲେ ତାହା ରାମାୟଣରେ ରୋଚକ ଭାବରେ ବର୍ଣ୍ଣିତ । ବନବାସ ସମୟରେ ମଧ୍ୟ ରାମ ତାଙ୍କର ରାଜପୁତ୍ରସୁଲଭ କର୍ତ୍ତବ୍ୟକୁ ଭୁଲି ନଥିଲେ । ସେ ରାକ୍ଷସମାନଙ୍କୁ ମାରି ଦଣ୍ଡକାରଣ୍ୟର ଆଶ୍ରମମଣ୍ଡଳକୁ ସେମାନଙ୍କ ଉପଦ୍ରବରୁ ମୁକ୍ତ କରିଥିଲେ । ମୁନି-ଋଷିମାନେ ଯେ ରାକ୍ଷସମାନଙ୍କଠାରୁ ବଳରେ ହୀନ ଥିଲେ ସେ କଥା ଭାବିବା ଠିକ୍ ନୁହେଁ । ବିଶ୍ୱାମିତ୍ରଙ୍କ ଭଳି ଋଷି ତ ଥିଲେ ନାନା ପ୍ରକାର ଦିବ୍ୟାସ୍ତ୍ରର ଅଧିକାରୀ । ଅଗସ୍ତ୍ୟଙ୍କ ପାଖରେ ମଧ୍ୟ ସେହିଭଳି ଦିବ୍ୟାସ୍ତ୍ର ସମ୍ପର୍କୀୟ ଜ୍ଞାନ ଥିଲା । ଏତଦ୍‌ବ୍ୟତୀତ ସେମାନଙ୍କଠାରେ ଯେଉଁ ଅଲୌକିକ ବ୍ରହ୍ମଶକ୍ତି ଥିଲା, ତାହା ଥିଲା ଅସ୍ତ୍ରଶକ୍ତିଠାରୁ ବହୁ ଗୁଣ ଅଧିକ । କିନ୍ତୁ ଯୁଦ୍ଧ କରିବା ଏବଂ ହିଂସା-ଭାବ ଦେଖାଇବା ସେମାନଙ୍କ ଧର୍ମର ଅନୁକୂଳ ନଥିଲା । ତାହା ଥିଲା କ୍ଷତ୍ରିୟଧର୍ମୋଚିତ କାର୍ଯ୍ୟ । ତେଣୁ ମୁନିଋଷିମାନେ ସେହି କାର୍ଯ୍ୟରୁ ବିରତ ରହୁଥିଲେ ଏବଂ ତାହାକୁ କ୍ଷତ୍ରିୟମାନଙ୍କ ଉପରେ ଛାଡ଼ି ଦେଉଥିଲେ । ବର୍ଣ୍ଣଧର୍ମ ଉପରେ ଗୁରୁତ୍ୱ ଦେଉଥିବା ରାମାୟଣ-ଯୁଗରେ ଏହାକୁ ଟାଳିଦେବାର ଅବକାଶ ନଥିଲା ।

ଏ ତ ଗଲା ରାଜଶକ୍ତିର ତପସ୍ୱୀମାନଙ୍କୁ ସାହାଯ୍ୟ କରିବା କଥା । ତପସ୍ୱୀମାନେ ମଧ୍ୟ ରାଜଶକ୍ତିକୁ ଧର୍ମରକ୍ଷା ଲାଗି ଅଧିକତର ବଳଶାଳୀ ହେବାରେ ସାହାଯ୍ୟ କରିଥିଲେ । ରାମ ସୁରୁରୁ ରୂପେ ଯଜ୍ଞରକ୍ଷା କାର୍ଯ୍ୟଟି ସଂପାଦନ କରିବାରେ ବିଶ୍ୱାମିତ୍ର ତାଙ୍କ ଉପରେ ଖୁବ୍ ସନ୍ତୁଷ୍ଟ ହୋଇଥିଲେ ଏବଂ ତାଙ୍କୁ 'ବଳା' ଓ 'ଅତିବଳା' ନାମକ ଦୁଇଟି ଦିବ୍ୟ ବିଦ୍ୟା ଦାନ କରିଥିଲେ । ଏହି ବିଦ୍ୟାର ଅଧିକାରୀ ହେବାରେ ରାମଙ୍କର କ୍ଷୁଧା-ଶୋଷ ଚାଲିଗଲା ଏବଂ ସେ ଅଧିକତର ଶକ୍ତିମାନ୍ ହୋଇଉଠିଲେ । ଏତଦ୍ ବ୍ୟତୀତ ସେ ରାମଙ୍କୁ ଅନେକଗୁଡ଼ିଏ ଦିବ୍ୟାସ୍ତ୍ରର ପ୍ରୟୋଗ-କୌଶଳ ମଧ୍ୟ ଶିଖାଇଥିଲେ । ବନବାସ କାଳରେ ଅଗସ୍ତ୍ୟଙ୍କ ଆଶ୍ରମରୁ ମଧ୍ୟ ରାମ ଆଉ କେତେକ ଦିବ୍ୟାସ୍ତ୍ର ପାଇଥିଲେ । ଏହିସବୁ ଦିବ୍ୟାସ୍ତ୍ରର ଅଧିକାରୀ ହେବା ଫଳରେ ସେ ଦଣ୍ଡକାରଣ୍ୟରେ ଅତି ସହଜରେ ଖର, ଦୂଷଣ ଆଦି ରାକ୍ଷସମାନଙ୍କୁ ନିଧନ କରି ପାରିଥିଲେ ଏବଂ ପରେ ରାବଣକୁ ମଧ୍ୟ ସବଂଶ ମାରିପାରିଥିଲେ । ଏହିପରି ଭାବରେ ରାମଙ୍କ ଧର୍ମ-ରକ୍ଷା କାର୍ଯ୍ୟରେ ମୁନି-ଋଷିମାନଙ୍କ ସାହାଯ୍ୟର ଉପଯୋଗ କରାଯାଇଥିଲା । ଅତଏବ, ଦେଶରେ କିପରି ସୁଖ-ଶାନ୍ତି ବିରାଜିବ, ସମାଜରେ କିପରି ଧର୍ମରକ୍ଷା ହେବ ସେଥିପାଇଁ ରାଜଶକ୍ତି ଓ ଆଶ୍ରମଶକ୍ତି ପରସ୍ପରକୁ ସାହାଯ୍ୟ କରୁଥିଲେ । ବାସ୍ତବିକ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ପାରସ୍ପରିକ ସହଯୋଗରେ, ଜ୍ଞାନ ଓ ବଳର ପାରସ୍ପରିକ ସାହାଯ୍ୟରେ ରାମାୟଣୀୟ ସଂସ୍କୃତି ଉଜ୍ଜୀବିତ ହୋଇ ରହିପାରିଥିଲା ତଥା ବିସ୍ତାରିତ ମଧ୍ୟ ହୋଇପାରିଥିଲା ।

ରାଜା ଓ ତପସ୍ୱୀମାନଙ୍କ ମଧ୍ୟରେ ଥିବା ଏହି ନିବିଡ଼ ସମ୍ପର୍କ ବିଷୟରେ ସୂଚନା ଦେବାକୁ ଯାଇ ଶର୍ମା ଯଥାର୍ଥରେ କୁହନ୍ତି

> Since the asramas were situated not very far from the towns, communication between the towns and the asramas was neither difficult nor very rare. The sages used to be invariably present at the big sacrifices conducted by kings. They also approached him in the hour of their need. (୨୪)

ତପସ୍ୱୀମାନେ ସାଧାରଣ ଲୋକମାନଙ୍କୁ ଶିକ୍ଷିତ ତଥା ସଂସ୍କୃତ କରାଇବା ଦିଗରେ ଅବଶ୍ୟ ଦୃଷ୍ଟି ଦେଉଥିଲେ । ସେମାନଙ୍କ ଆଶ୍ରମସମୂହର ଶାନ୍ତ, ଶିଷ୍ଟ, ପୂତ,

ପବିତ୍ର ବାତାବରଣର ପ୍ରଭାବ ଅବଶ୍ୟ ଜନସାଧାରଣଙ୍କ ଉପରେ ପଡ଼ୁଥିଲା । କିନ୍ତୁ ସେମାନଙ୍କ ବିଶେଷ ଦୃଷ୍ଟି ପଡ଼ୁଥିଲା ରାଜଶକ୍ତିକୁ ସୁସଂସ୍କୃତ କରିବା ଉପରେ, ରାଜା-ରାଜପୁତ୍ରମାନଙ୍କୁ ସଂସ୍କୃତିର ଧାରାରେ ଉତ୍ତମ ଭାବରେ ଦୀକ୍ଷିତ କରିବା ଉପରେ ଏବଂ ସନାତନ ଧର୍ମକୁ ରକ୍ଷା କରିବାପାଇଁ ଉଦ୍‌ବୁଦ୍ଧ କରିବା ଉପରେ । ଭରଦ୍ୱାଜ ମୁନି ତାଙ୍କ ଆଶ୍ରମରେ ରାତି ହେବା ମାତ୍ରେ ରାମ-ଲକ୍ଷ୍ମଣଙ୍କୁ ପାଖରେ ବସାଇ ନାନା ପ୍ରକାର ସ୍ୱାଦ୍ୟ ତଥା ହୃଦ୍ୟ କାହାଣୀ ମାଧ୍ୟମରେ ଦୁହିଁଙ୍କୁ ଧର୍ମ ଓ ଦର୍ଶନ ସଂପର୍କରେ ଶିକ୍ଷା ଦେଇଥିବା କଥା ରାମାୟଣରେ (୨।୫୪।୩୪) ବର୍ଣ୍ଣିତ । ବିଶ୍ୱାମିତ୍ର ମଧ୍ୟ ରାମ-ଲକ୍ଷ୍ମଣଙ୍କ ସାନ୍ନିଧ୍ୟର ସମଧିକ ସଦୁପଯୋଗ କରିଥିଲେ । ସେ ଦୁହେଁ ଅଯୋଧ୍ୟାରୁ ସିଦ୍ଧାଶ୍ରମକୁ ଯିବା ବାଟରେ ଏବଂ ସେଠାରୁ ପୁଣି ମିଥିଳାକୁ ଯିବା ବାଟରେ ବିଶ୍ୱାମିତ୍ର ଦୁହିଁଙ୍କୁ ନାନା ପ୍ରକାର ଉପଦେଶ ଦେଇଥିଲେ ଏବଂ ଦୁହିଁଙ୍କ ଆଗରେ ନାନା ପ୍ରକାର ରହସ୍ୟମୟ ତଥ୍ୟର ଉଦ୍‌ଘାଟନ କରିଥିଲେ । ରାଜଶକ୍ତି ଥିଲା ଦେଶ ତଥା ସମାଜର ରକ୍ଷକ । ତେଣୁ ରାଜା ତଥା ରାଜପୁତ୍ରମାନଙ୍କୁ ଧର୍ମରକ୍ଷା ଦିଗରେ ସଚେତନ କରାଇବା ଉପରେ ମୁନି-ଋଷିମାନେ ଅଧିକତର ପ୍ରାଥମିକତା ଦେଉଥିଲେ । ରାମଙ୍କୁ ଦିବ୍ୟାସ୍ତ୍ରମାନ ଦେଇ ଅଧିକତର ଶକ୍ତିଶାଳୀ କରାଇବା ମୂଳରେ ମୁନି-ଋଷିଙ୍କର ଏହି ଲକ୍ଷ୍ୟ ହିଁ ନିହିତ ଥିଲା ।

ରାଜାମାନେ ମୁନିଋଷିମାନଙ୍କୁ ଯେମିତି ମାନ୍ୟତା ଦେଖାଉଥିଲେ ମୁନି-ଋଷିମାନେ ମଧ୍ୟ ଠିକ୍ ଅନୁରୂପ ଭାବରେ ସେମାନଙ୍କୁ (ରାଜାମାନଙ୍କୁ) ଶ୍ରଦ୍ଧା କରୁଥିଲେ । ରାଜାମାନେ ମୃଗୟାବିନୋଦରେ ଅରଣ୍ୟକୁ ଗଲାବେଳେ ନିଶ୍ଚିତ ରୂପେ ମୁନି-ଆଶ୍ରମମାନଙ୍କୁ ଯାଇ ମୁନିମାନଙ୍କୁ ସମ୍ମାନ ଦେଖାଉଥିଲେ ଏବଂ ସେମାନଙ୍କୁ କୁଶଳ-ପ୍ରଶ୍ନ ପଚାରୁଥିଲେ । ମୁନିମାନେ ମଧ୍ୟ ରାଜାମାନଙ୍କୁ ଭେଟିଲେ ସେମାନଙ୍କୁ କୁଶଳ-ପ୍ରଶ୍ନ ପଚାରୁଥିଲେ । ବିଶ୍ୱାମିତ୍ର ଦଶରଥଙ୍କ ରାଜଦରବାରକୁ ଆସି ଅର୍ଘ୍ୟାଦି ଦ୍ୱାରା ସତ୍କୃତ ହୋଇସାରିବା ପରେ ତାଙ୍କୁ ପ୍ରଶ୍ନ ପଚାରିଥିଲେ

ଅପି ତେ ସନତାଃ ସର୍ବେ ସାମନ୍ତରିପବୋ ଜିତାଃ ।
ଦୈବଂ ଚ ମାନୁଷଂ ଚୈବ କର୍ମ ତେ ସାଧ୍ୱନୁଷ୍ଠିତମ୍ ।। (୨୫)

ଅର୍ଥାତ୍ ହେ ରାଜନ୍ ! ଆପଣଙ୍କ ରାଜ୍ୟର ସୀମାନ୍ତବର୍ତ୍ତୀ ଶତ୍ରୁରାଜା ଆପଣଙ୍କ ନିକଟରେ ନତମସ୍ତକ ଅଛନ୍ତି ତ ? ଆପଣ ସେମାନଙ୍କ ଉପରେ ବିଜୟ ହାସଲ୍

କରିଛନ୍ତି ତ ? ଆପଣଙ୍କର ଯାଗ-ଯଜ୍ଞ ଆଦି ଦେବକର୍ମ ଓ ଅତିଥିସତ୍କାର ଆଦି ମନୁଷ୍ୟକର୍ମ ଠିକ୍ ଭାବରେ ଚାଲିଛି ତ ? ଦଶରଥ ବିଶ୍ୱାମିତ୍ରଙ୍କର ତାଙ୍କ ରାଜପୁରୀକୁ ଆଗମନରେ ନିଜକୁ କୃତକୃତ୍ୟ ମଣିଥିଲେ । ମରଣଧର୍ମୀ ମନୁଷ୍ୟକୁ ଅମୃତ ମିଳିଲେ ଯେମିତି ଲାଗେ, ନିର୍ଜନ ପ୍ରଦେଶରେ ବର୍ଷା ହେଲେ ଯେମିତି ଲାଗେ, ସନ୍ତାନହୀନ ବ୍ୟକ୍ତିକୁ ସନ୍ତାନଟିଏ ମିଳିଲେ ଯେମିତି ଲାଗେ, ଦରିଦ୍ରକୁ ହଜିଲା ଧନ ମିଳିଗଲେ ଲୋକକୁ ଯେମିତି ଲାଗେ, ବିଶ୍ୱାମିତ୍ରଙ୍କ ଆଗମନ ତାଙ୍କୁ ଠିକ୍ ସେମିତି ଲାଗୁଛି ବୋଲି ଦଶରଥ କହିଥିଲେ । ରାମାୟଣ-ଯୁଗରେ ରାଜା ଓ ତପସ୍ୱୀଙ୍କ ମଧ୍ୟରେ ସମ୍ପର୍କ କିପରି ମଧୁମୟ ଥିଲା ତାହା ଏଥିରୁ ସହଜରେ ଅନୁମେୟ ।

ଉପରୋକ୍ତ ଆଲୋଚନା ଦୃଷ୍ଟେ ଆମେ ରାମାୟଣକାଳୀନ ଆଶ୍ରମ-ଜୀବନ ସଂପର୍କରେ ନିମ୍ନଲିଖିତ ସିଦ୍ଧାନ୍ତରେ ଉପନୀତ ହୋଇପାରିବା

କ) ତପସ୍ୱୀମାନେ ସାଧାରଣତଃ ଦୁଇ ଭାଗରେ ବିଭକ୍ତ ହୋଇଥିଲେ, ଯଥା, ସ୍ଥାୟୀ ତପସ୍ୱୀ ଓ ଅସ୍ଥାୟୀ ତପସ୍ୱୀ ।

ଖ) ସାରା ଜୀବନ ତପସ୍ୟାରେ ବିତାଇ ଦେଉଥିବା ମୁନି-ଋଷିମାନେ ହେଲେ ସ୍ଥାୟୀ ତପସ୍ୱୀ ଏବଂ ବର୍ଣ୍ଣଧର୍ମ ଅନୁସାରେ ଶେଷ ଦୁଇ ପର୍ଯ୍ୟାୟରେ, ଯଥା, ବାନପ୍ରସ୍ଥ ଓ ସନ୍ନ୍ୟାସ ପର୍ଯ୍ୟାୟରେ ରହୁଥିବା ବ୍ୟକ୍ତିମାନେ ହେଲେ ଅସ୍ଥାୟୀ ତପସ୍ୱୀ । ଏତଦ୍‌ବ୍ୟତୀତ କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ ପାଇଁ କିଛି ସମୟ ଲାଗି ତପସ୍ୟା କରୁଥିବା ବ୍ୟକ୍ତିମାନେ ମଧ୍ୟ ହେଲେ ଅସ୍ଥାୟୀ ତପସ୍ୱୀ ।

ଗ) ତପସ୍ୱୀତା-ବ୍ରତର ପରମ୍ପରା କିଛି ନୂତନ ନୁହେଁ; ତାହା ବୈଦିକ କାଳରୁ ହିଁ ଗଢ଼ି ଆସୁଥିଲା ।

ଘ) ରାମାୟଣକାଳୀନ ଶ୍ରମଣ-ଗୋଷ୍ଠୀ ବୌଦ୍ଧ ଶ୍ରମଣଗୋଷ୍ଠୀର ଅନ୍ତର୍ଭୁକ୍ତ ନୁହନ୍ତି ।

ଙ) ତପଃସାଧନର ମାର୍ଗକୁ ନେଇ ତପସ୍ୱୀମାନଙ୍କର ନାମ ଥିଲା ଭିନ୍ନ ଭିନ୍ନ ।

ଚ) ଆଶ୍ରମର ଏକ ନିର୍ଦ୍ଦିଷ୍ଟ ନିର୍ମାଣ-ବିଧି ଥିଲା ଏବଂ ଏହାର ନିର୍ମାଣରେ ସେହି ଅନୁସୃତ ହେଉଥିଲା ।

ଛ) ସ୍ଥାନୀୟ ଅଞ୍ଚଳରେ ମିଳୁଥିବା ସାମଗ୍ରୀଗୁଡ଼ିକ ଦ୍ୱାରା ହିଁ ଆଶ୍ରମ ନିର୍ମିତ ହେଉଥିଲା ।

ଜ) ଆଶ୍ରମର ଦୁଇଟି କୋଠରି ଥିଲା । ବାହାର କୋଠରିଟିକୁ କୁହାଯାଉଥିଲା 'ପର୍ଣ୍ଣକୁଟୀ' ଏବଂ ଭିତର କୋଠରିଟିକୁ କୁହାଯାଉଥିଲା 'ଉଟଜ' ।

(ଝ) ଆଶ୍ରମର ପରିବେଶ ଥିଲା ଶାନ୍ତ, କାନ୍ତ ଓ ସୁସ୍ଥ ।

ଞ) ତପସ୍ୱୀମାନେ ସରଳ ଓ ନିରାଡ଼ମ୍ବର ଜୀବନ ବିତାଉଥିଲେ ଏବଂ ସେମାନଙ୍କ ଜୀବନର ଆବଶ୍ୟକତା ଥିଲା ନ୍ୟୁନତମ ।

ଟ) ସେମାନେ ଏକ ସଂଯତ ତଥା ଶୃଙ୍ଖଳିତ ଜୀବନ ବିତାଉଥିଲେ ।

ଠ) ସେମାନେ ଥିଲେ ଆଧ୍ୟାତ୍ମିକତାର ତେଜରେ ପ୍ରଦୀପ୍ତ ଏବଂ ସେମାନଙ୍କର ପ୍ରଭାବ ସବୁ ଆଶ୍ରମବାସୀ ତଥା ସାରା ପରିବେଶ ଉପରେ ପଡ଼ୁଥିଲା ।

ଡ଼) ସେମାନଙ୍କର ରାଜଶକ୍ତି ସହିତ ସମ୍ପୂର୍ଣ୍ଣ ସହଯୋଗ ଥିଲା ଏବଂ ରାଜଶକ୍ତି ମଧ୍ୟ ସେମାନଙ୍କୁ ସାହାଯ୍ୟ କରୁଥିଲା ।

ଢ଼) ସେମାନେ ମଧ୍ୟ ଥିଲେ ସମାଜର ଶୁଭଚିନ୍ତକ ।

ଣ) ଆଶ୍ରମଗୁଡ଼ିକ ସଂସ୍କୃତିର କେନ୍ଦ୍ରବିନ୍ଦୁ ଥିଲା ଏବଂ ତପସ୍ୱୀମାନେ ଥିଲେ ସଂସ୍କୃତିର ପୋଷକ ତଥା ରକ୍ଷକ ।

ତ) ତପସ୍ୱି-ଜୀବନ ଉଭୟ ପୁରୁଷ ଓ ନାରୀଙ୍କ ପାଇଁ ଉନ୍ମୁକ୍ତ ଥିଲା ।

ସଂକ୍ଷେପରେ ଏହା ହେଲା ରାମାୟଣକାଳୀନ ଆଶ୍ରମଜୀବନର ଏକ ଝଲକ ଭାବମୂର୍ତ୍ତି ।

## ଟିପ୍ପଣୀ

(୧) Radhakumud Mukharji, Ancient India Education, Rabindranath Tagore quoted, p. 35.

(୨) Ramashraya Sharma, A Socio-Political Study of the Valmiki Ramayana, Motilal Banarasidass (1986) p. 127.

(୩) ରାମାୟଣ, ୩।୧୨।୨୭ ।

(୪) ତତ୍ରୈବ, ୧।୬୫।୧୯ ।

(୫) ତତ୍ରୈବ, ୧।୬୩।୨୧ ।

(୫-କ) ଶାନ୍ତକୁମାର ନାନୁରାମ ବ୍ୟାସ, ରାମାୟଣକାଳୀନ ସଂସ୍କୃତି (ହିନ୍ଦୀ), କନଙ୍ଗ୍ ଫାମ୍ ଇଣ୍ଡିଆ, ପୃ. ୨୩୭ ।

(୬) R. Sharma, op. cit, p. 129.

(୭) A. S. Geden, "Asceticism (Hindu)", Encyclopaedia of Religion and Ethics, Vol. II, p. 88,

(୮) S. Radhakrishnan,, East and West in Religion, Allen & Unwin, London (3rd Impression, 1954), p. 76.

(୮-କ) Ibid, p. 127.

(୯) S. Radhakrishnan, Indian Philosophy, Vol. I, p. 132.

(୧୦) R. Sharma, op. cit, p. 130.

(୧୧) ରାମାୟଣ, ୨।୯୫।୧୨ ।

(୧୧-କ) ତତ୍ରୈବ, ୨।୫୪।୩୪ ।

(୧୨) R. Sharma, op. cit, p. 131.

(୧୩) ଶାନ୍ତକୁମାର ନାନୁରାମ ବ୍ୟାସ, ରାମାୟଣକାଳୀନ ସଂସ୍କୃତି (ହିନ୍ଦୀ) ପୃ. ୨୩୮ ।

(୧୪) ରାମାୟଣ, ୭।୯୭।୨୧ ।

(୧୪-କ) S. Radhakrishnan, The Foundation of Civilization—Ideas and Ideals, Orient Paperbacks (1990), p. 26.

(୧୫) R. Sharma, op. cit, pp. 133-134.

(୧୫-କ) A. L. Basham, The Wonder that was India, p. 340.

(୧୬) ଶାନ୍ତକୁମାର ନାନୁରାମ ବ୍ୟାସ, ରାମାୟଣକାଳୀନ ସଂସ୍କୃତି, ପୃ. ୨୪୦ ।

(୧୭) ରାମାୟଣ, ୨।୧୨।୯୮ ।

(୧୭-କ) ତତ୍ରୈବ, ୨।୨୮।୧୭ ।

(୧୮) ତତ୍ରୈବ, ୩।୭୨।୭ ।

(୧୯) ତତ୍ରୈବ, ୩।୧୧।୯୦ ।

(୨୦) ଶାନ୍ତିକୁମାର ନନ୍ଦୁରାମ ବ୍ୟାସ, ରାମାୟଣକାଳୀନ ସଂସ୍କୃତି (ହିନ୍ଦୀ), ପୃ. ୨୪୦-୨୪୧ ।

(୨୦-କ) Sukumari Bhattacharji, "Validity of the Ramayana Values," The Ramayana Tradition in Asia, Sahitya Akademi (1980), p. 90.

(୨୧) S. Radhakrishnan, The Foundation of Civilization—Ideas and Ideals, Orient Paperbacks (1990), p. 46.

(୨୨) ଅର୍ଥଶାସ୍ତ୍ର, ୩।୨; ୩।୩ ।

(୨୩) ରାମାୟଣ, ୨।୧୧୭।୧୩ ।

(୨୪) R. Sharma, op. cit, p. 137.

(୨୫) ରାମାୟଣ, ୧।୧୮।୪୭ ।



# ଶବ୍ଦସୂଚୀ

## ଅ

## ବ

**ଭ**

